## ଜ୍ଞାନର ଅର୍ଥନୀତି ସମ୍ବନ୍ଧରେ ପଦେ ଦି'ପଦ...

ଜ୍ଞାନ ହିଁ ସଭ୍ୟତା ଓ ସଂସ୍କୃତିର ମାପକାଠି ବୋଲି ପ୍ରମାଣିତ ହୋଇସାରିଲାଣି । ଜ୍ଞାନଦୀପ୍ତ ସମାଜ ବ୍ୟବସ୍ଥାର ମୂଳଦୁଆ ସର୍ବପ୍ରଥମେ ଭାରତରେ ହିଁ ପଡ଼ିଥିଲା । ଭାରତର ବଳ, ବୀର୍ଯ୍ୟ ଓ ଶୌର୍ଯ୍ୟ କହିଲେ ଜ୍ଞାନକୁ ହିଁ ବୁଝାଏ । ଉନବିଂଶ ଶତାବ୍ଦୀ ଇଉରୋପର ଶତାବ୍ଦୀ ଥିଲା, ବିଂଶ ଶତାବ୍ଦୀ ଆମେରିକାର ଶତାବ୍ଦୀ ଥିଲା, ପରନ୍ତୁ ଏକବିଂଶ ଶତାବ୍ଦୀ ଏସିଆର ଶତାବ୍ଦୀ ହେବ । ସମଗ୍ର ବିଶ୍ୱବ୍ୟବସ୍ଥାକୁ, ସମଗ୍ର ବିଶ୍ୱର ଅର୍ଥନୈତିକ ଢାଞ୍ଚାକୁ ଏସିଆ ମହାଦେଶ ହିଁ ପରିଚାଳିତ କରିବ ।

ପୃଥିବୀର ସର୍ବଶ୍ରେଷ୍ଠ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ର ଆମେରିକାର ଅଭିବୃଦ୍ଧି ଭାରତୀୟ ଇଂଜିନିୟର, ଡାକ୍ତର, ବୈଜ୍ଞାନିକ ଓ ବୁଦ୍ଧିଜୀବୀମାନେ ହିଁ ଆମେରିକାରେ ରହି ନିୟନ୍ତ୍ରିତ କରୁଛନ୍ତି । ସମଗ୍ର ଆମେରିକାରେ ଆମେରିକୀୟଙ୍କୁ ଛାଡ଼ିଦେଲେ ଭାରତୀୟ ଅଧିବାସୀଙ୍କ ସଂଖ୍ୟା ସର୍ବବୃହତ୍ । ଏହି ପରିପ୍ରେକ୍ଷୀରେ ସମଗ୍ର ଭାରତର ଜ୍ଞାନାଦୀପ୍ତ ଐଶ୍ୱର୍ଯ୍ୟ, ସମଗ୍ର ବିଶ୍ୱ ଅର୍ଥନୀତି, ସମଗ୍ର ବିଶ୍ୱର ସମଗ୍ର ଜ୍ଞାନସଂପତ୍ତି ଭାରତବର୍ଷରେ ଠୁଳ ହେବାକୁ ଯାଉଛି । ଭାରତ ହିଁ ହେବ ସମଗ୍ର ବିଶ୍ୱର ଜ୍ଞାନର ରତ୍ନାଘର ଓ ଜ୍ଞାନର ରାଜଧାନୀ । ଜ୍ଞାନ ଗାରିମାରେ ଗୌରବାନ୍ୱିତ ଭାରତର ବଂଶଧରଙ୍କୁ ନେଇ ଗର୍ବ କରୁଥିବା ଭାରତୀୟମାନଙ୍କ ଭାରତବର୍ଷରେ ବିଶ୍ୱର ବିଜୟବାନା ଉଡ୍ଡୀୟମାନ ହେବ, ଏହା ସ୍ୱତଃସିଦ୍ଧ ଓ ସମୟର ଏକ ମନ୍ତ୍ରବଦ୍ଧ ଆହ୍ୱାନ ।

ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, ଶିଳ୍ପସଂସ୍କୃତି, ପେଟେଣ୍ଟ୍ ସାମ୍ରାଜ୍ୟ ଏବଂ ଭାରତର ବହୁବିଧ ଯୋଜନା ଓ ପରିକଳ୍ପନାର ରୂପାୟନ ପୁସ୍ତକଟିର ଛତ୍ରେଛତ୍ରେ ପ୍ରସ୍ଫୁଟିତ । ଗୁଣୀ ପାଠକସମାଜ ରଚନାଗୁଡ଼ିକର ମଧୁ ଆସ୍ୱାଦନ କରିବେ ଓ ଜ୍ଞାନବିଜ୍ଞାନର ପବିତ୍ର ସ୍ରୋତରେ ଅବଗାହନ କରି ଭାରତବର୍ଷକୁ ଏକ ପ୍ରଚଣ୍ଡ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରରେ ରୂପାନ୍ତରିତ କରିବେ, ...ଏତିକି ଆଶା ।

# ଜ୍ଞାନର ଅର୍ଥନୀତି

ଲେଖକ :

ଡଃ. ଚିତ୍ତରଞ୍ଜନ ମିଶ୍ର




ପ୍ରକାଶକ :

**ବସନ୍ତ ପବ୍ଲିକେଶନ୍ସ**

ଡଗରପଡ଼ା, କଟକ - ୭୫୩୦୦୨



# ଜ୍ଞାନର ଅର୍ଥନୀତି

■ ଲେଖକ : ଡଃ. ଚିତ୍ତରଞ୍ଜନ ମିଶ୍ର ■ ପ୍ରକାଶକ : **ବସନ୍ତ ପବ୍ଲିକେଶନ୍ସ,** ଡଗରପଡ଼ା, କଟକ - ୨ ■ ମୁଦ୍ରଣ : ଦୀପକ୍ ପ୍ରେସ୍, ଷ୍ଟୋନୀ ରୋଡ଼, କଟକ- ୨, ■ ପ୍ରଥମ ପ୍ରକାଶନ : ୨୦୦୭ ■ ମୂଲ୍ୟ : ଟ. ୧୮୦.୦୦ (ଏକଶହ ଅଶୀ ଟଙ୍କା ମାତ୍ର)

## GYANARA ARTHANITI

■ By **Dr. Chitta Ranjan Mishra** ■ Publisher **BASANTA PUBLICATIONS,** Dagarpara, Cuttack - 2, ■ Printer : **DEEPAK PRESS,** Stony Road, Cuttack - 2, ■ First Edition : **2007** ■ Price : **Rs. 180.00 (Rupees One hundred eighty Only)**

## ସାମାନ୍ୟ କଥନ ... 

# ସ୍ମୃତିର ବାଲିଘର

**ଆ**ମ ଶିଶୁ ଶ୍ରେଣୀକି ଲାଗି ପୋଷ୍ଟମ୍ୟାନ୍ ଭଜନାଥଙ୍କ ଘର । ଭାରି ସାଧାସିଧା ମଣିଷଟିଏ । ଗାନ୍ଧୀ ଗୋପବନ୍ଧୁଙ୍କ ଚିନ୍ତାଧାରାର ମଣିଷ । ଛୋଟ ଖଦଡ଼ ଧୋତିଟିଏ ଓ କାନ୍ଧରେ ଖଦଡ଼ ଗାମୁଛା ଖଣ୍ଡେ ପକେଇ ଗାଁ ଗାଁ ବୁଲି ହାଟ ବାଟରେ ଚିଠି ବାଣ୍ଟିବା ମୁଁ ପିଲାଦିନୁ ଦେଖିଆସିଛି । ମୋ ହେତୁ ପାଇଲାବେଳୁ ଆମ ଅଞ୍ଚଳର ପୋଷ୍ଟମ୍ୟାନ୍ ବୋଲି ମୁଁ ତାଙ୍କୁ ହିଁ ଜାଣେ । ତାଙ୍କର ଆଉ ଜଣେ ସହକର୍ମୀ ଥିଲେ । ନାଁ ତାଙ୍କର ଗୋବିନ୍ଦ । ଆମେ ଛୋଟ ଛୋଟ ପିଲାଏ ତାଙ୍କୁ 'ଭଜ ଭାଇ, ଗୋବିନ୍ଦ ଭାଇ' ବୋଲି ଡାକୁ । 'ଭଜ-ଗୋବିନ୍ଦ' ନାଁରେ ସେ ସବୁଠି ଜଣା । କିଛି ଗାଁରେ ଭଜଭାଇ ତ ଆଉ କିଛି ଗାଁରେ ଗୋବିନ୍ଦଭାଇ ଚିଠି ବାଣ୍ଟନ୍ତି । ଗୋବିନ୍ଦ ଭାଇଙ୍କ ଗୋଡ଼ ଟିକେ ଛୋଟା, ହେଲେ ମନଟା ତାଙ୍କର ଛୋଟ ନୁହେଁ । ଉଭୟଙ୍କ ସହ ଆମ ପିଲାମାନଙ୍କ ସମ୍ପର୍କ 'ଚିଠି ସହ ଅକ୍ଷରର ଓ ଅକ୍ଷର ସହ ଭାବର ସମ୍ପର୍କ' ପରି ।

ଆମ ସ୍କୁଲ ରାମଚନ୍ଦ୍ରପୁର ଜୁନିୟର ବେସିକ୍ ସ୍କୁଲର ଗେଟ୍ ଦୁଆର ମୁହଁକୁ ଲାଗି ଏକ ବଖୁରିଆ ଆଜବେଷ୍ଟ ପକା ମାଟି ଘରଟିଏ । ସେଇଠି ପୋଷ୍ଟଅଫିସ୍ ହୁଏ । ଇଟା ଖୁଣ୍ଟ କିନ୍ତୁ ମାଟି ଘର । ଜଣେ ମୁସଲମାନ ଭଦ୍ରଲୋକ ପୋଷ୍ଟମାଷ୍ଟର ଥା'ନ୍ତି । ନାଁ ତାଙ୍କର ମନେ ପଡୁନି । ଘର ତାଙ୍କର ବରୀରେ । ସକାଳୁ ସାଇକେଲ ଚଢ଼ି ସେ ପୋଷ୍ଟଅଫିସ୍ ଆସନ୍ତି । ଖରା, ବର୍ଷା, ଶୀତ, କାକରକୁ ତାଙ୍କର ନିଘା ନ ଥାଏ । ତିନିଜଣ

ଏକଜୁଟ ହୋଇ ବଖରାଟିରେ ବସି ଚିଠିପତ୍ର କାମ କରନ୍ତି । ଚାକିରି ଜୀବନ ବିତାନ୍ତି । ସୁଖ ଦୁଃଖ, ହସ କାନ୍ଦ ହୁଅନ୍ତି । ମୋ ସ୍କୁଲ ପାଠପଢ଼ା ସହ ଏହି ବଖୁରିଆ ପୋଷ୍ଟଅଫିସ୍ ଘରଟି ଓତଃପ୍ରୋତ ଭାବେ ଜଡ଼ିତ ହୋଇଯାଇଥାଏ । ସକାଳ ୭ଟା ବେଳେ ସ୍କୁଲ ଗଲାବେଳକୁ ପୋଷ୍ଟଅଫିସ୍ ଓ ସ୍କୁଲ୍ ପାଠ ସାରି ଘରକୁ ବାହୁଡ଼ିଲାବେଳକୁ ସେହି ପୋଷ୍ଟଅଫିସ୍ । ସତେ ଯେମିତି ସେହି ବଖୁରିଆ ଘରଟି ମୋ ଜୀବନର ଚଉହଦୀକୁ ଆବୋରି ରହିଥାଏ, ଜଗି ରହିଥାଏ, ଘେରି ରହିଥାଏ । ସକାଳେ ଗଲାବେଳେ ଆମ ଘରୁ ଅବା ସାଇପଡ଼ିଶାଙ୍କ ଘରୁ ଚିଠି ନେଇ ଚିଠିବାକ୍ସଟିରେ ପକେଇଦିଏ । ପୁଣି ସ୍କୁଲ୍ ଛୁଟିସାରି ଆସିଲାବେଳକୁ କାହାର କିଛି ଚିଠିପତ୍ର ଥିଲେ, ଡାକଘରୁ ଧରିଆଣି ଗାଁରେ ବାଣ୍ଟିଦିଏ । ଆମ ସାମ୍ନାରେ ଡାକ ବ୍ୟାଗ୍ ଖୋଲାଯାଏ ଓ ଚିଠିପତ୍ର ସବୁ ସଜଡ଼ାଯାଏ । ଆମ ଗାଁ ଲୋକଙ୍କ କିଛି ଚିଠି ଥିଲେ ଭଜଭାଇ ମୋ ହାତରେ ଦେଇଦିଅନ୍ତି ଲୋକଙ୍କୁ ଦେଇଦେବାପାଇଁ । ସେ ଜାଣନ୍ତି, ମୁଁ ଚଗଲାପିଲା ନୁହେଁ ଓ ଚିଠି ଠିକ୍ ଠିକ୍ ଯଥା ଲୋକଙ୍କୁ ନିଶ୍ଚୟ ଦେଇଦେବି । ଏଇମିତି ଦିନରାତି ବିତି ଚାଲେ । ସକାଳ ହୁଏ ସଞ୍ଜ ହୁଏ । ଚିଠି ବାକ୍ସ ଓ ଚିଠିର ମାୟାମୋହ ଭିତରେ ଆମ ସ୍କୁଲ୍ ଜୀବନ ସମୟ ସୁଅରେ ବହି ଚାଲେ । ବହିଚାଲେ ବ୍ରାହ୍ମଣୀ ନଦୀର ସୁଅପରି, ସୁଅ ମୁହଁରେ ପତର ପରି, ଅପର୍ଣ୍ଣିର ସାରୁ ପତ୍ରରେ ଜୀବନ ପରି । ଝାଉଁ ଗଛର ସାଇଁ ସାଇଁ ପବନ ପରି, ନୀଳ ଆକାଶର ତୋଫା ଜହ୍ନ ପରି ।

ମୁଁ ଧୀରେ ଧୀରେ ସମୟ କୋଳରେ ବଡ଼ ହୁଏ । ଶିଶୁ ଶ୍ରେଣୀରୁ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ... । ସମୟର ଶଗଡ଼ଗୁଳାରେ ଦିନଗୁଡ଼ାକ ବାସି ହୋଇଯାଏ । ପୁଣି ନୂଆ ଦିନ, ପୁଣି ନୂଆ ସକାଳ । ପୁଣି ନୂଆ ମଣିଷ, ପୁଣି ନୂଆ ସମୟ । ହେଲେ, ଗାଁ ଦାଣ୍ଡରୁ ସ୍କୁଲ ପର୍ଯ୍ୟନ୍ତ ଲମ୍ବି ଯାଇଥିବା ଅଙ୍କା ବଙ୍କା ରାସ୍ତାଟିର ଦୈର୍ଘ୍ୟ ଓ ପ୍ରସ୍ଥ ଠିକ୍ ସେମିତି ରହିଥାଏ । ହେମନ୍ତ, ଶୀତ, ବସନ୍ତ ଓ ଗ୍ରୀଷ୍ମ, ବର୍ଷା, ଶରତର ଆଗମନ ଓ ପ୍ରସ୍ଥାନ ପର୍ବ ଛାରି ରୁହେ । ସମୟ ଆଗେଇଯାଏ ଆଉ ମୁଁ ସମୟର ପିଛା ଧରି ଖେପା ମାରି

ଚାଲିଥାଏ, ଝୁଣ୍ଟୁଥାଏ, ପଡୁଥାଏ, ଉଠୁଥାଏ, ପୁଣି ଗୋଡ଼ ଭିଡ଼ି ଠିଆହୋଇ ଚାଲୁଥାଏ ।

ସମୟ ନଇରେ ବୟସର ଢେଉ ଦିନକୁ ଦିନ ବଢ଼ି ବଢ଼ି ଚାଲେ । ପୂର୍ଣ୍ଣିମାରୁ ଅମାବାସ୍ୟା, ଅମାବାସ୍ୟାରୁ ପୁଣି ପୂର୍ଣ୍ଣିମା । ସମୟର ଚକ ଗଡ଼ି ଚାଲେ, ଗଡ଼ି ଗଡ଼ି ଚାଲେ । ମନ ସ୍ୱପ୍ନର ତାଜମହଲ ଗଢ଼େ । ନଡ଼ିଆ ଖଢ଼େଇରେ ଗାଁ ଦାଣ୍ଡ ମାଟି ଖୋଳି ଚୁଲିଟିଏ କରି ମିଛି ମିଛିକା ଭାତ ରାନ୍ଧେ । ଡାଲି, ଚାଉଳ, ପାଣି ସବୁ କିଛି ମିଛି ମିଛିକା । ମିଛର ମାୟା ମରୀଚିକା ମଧ୍ୟରେ ବର୍ଷ, ମାସ, ଦିନ, ଦଣ୍ଡର ଅଙ୍କ କଷି ଚାଲେ । ପଣସ ପତ୍ରରେ ସେଇ ମିଛି ମିଛିକା ଭାତ, ଡାଲି, ତରକାରୀ, ଭଜା ବାଢ଼ିଦେଇ ସାଙ୍ଗ ସାଥୀଙ୍କ ମେଳରେ ଭୋଜନ କରୁ । ବାସନ ମାଜୁ, ଘର ସଜାଡୁ, ପୁଣି ଖେଳ ସରିଲେ ଘର ଭାଙ୍ଗୁ। ପୁଣି ମିଛି ମିଛିକା ଘରଟିଏ ତୋଳିବା ପାଇଁ ଆସନ୍ତାକାଲିକୁ ଅପେକ୍ଷା କରି ଚାହିଁ ରହୁଁ । ସପନ ସବାରୀକୁ ପିଠିରେ ବୋହି ବୋହୂ-ବୋହୂକା ଗୀତ ଗାଉ । ରଜ ଦୋଳି ଖେଳ, ପୁଚି ଖେଳ, ଦୌଡ଼ି ଡିଆଁ ଏମିତି ଆଉ କେତେ କ'ଣ ଖେଳ । ସବୁ ହସ କାନ୍ଦର ଦିନଗୁଡ଼ାକୁ ଟା ଟା କରିଦେଇ ସମୟର ବଡ଼ ଦାଣ୍ଡରେ ଆମେ ଆଗକୁ ଗୋଡ଼ ବଢ଼ଉ ।

ଆଜି ମନେ ପଡୁଛି, ମୋର ପିଲା ଦିନର ସେଇ ସାଙ୍ଗ ସାଥୀଙ୍କ କଥା । ସରଗର ଚାନ୍ଦପରି ତାଙ୍କ ହସ ହସ ମୁହଁ । ମାନ ଅଭିମାନଭରା ଲୁହଭିଜା ଆଖିର କାତରତା ଓ ମୁଢ଼ି ନଡ଼ିଆ ଖିଆର ସାଙ୍ଗମେଳ କଥା । ସୁନ୍ଦରୀ ଦାସ, ଭଗବତୀ ମଲ୍ଲିକ, ଦେବକୀ କର, ସୁମିତ୍ରା ବିଶ୍ୱାଳ, ଶଶୀ ଗିରି, ପ୍ରେମ ସୁନ୍ଦର ମିଶ୍ର, କରୁଣାକର ବେଉରିଆ ଓ ଦଶରଥ ସାମଲ ଆଦିଙ୍କ କଥା । ତାଙ୍କ ସହ ବିତେଇବା ପିଲାଦିନର ସୁଖ ଦୁଃଖର ଦିନଗୁଡ଼ାକ ଆଜି ଭାରି ମନେପଡୁଛି । ବହୁଦିନରୁ ରାସ୍ତା ଭାଙ୍ଗି ସେମାନେ ଚାଲିଗଲେଣି ନିଜନିଜ ବାଟରେ । ବାହାସାହା ହୋଇ ଘର ସଂସାର କରି ପୁଅ, ନାତି, ନାତୁଣୀ କମେଇଲେଣି । ବୟସର ବୋଝରେ ବୁଢ଼ା ବୁଢ଼ୀ ବି ହୋଇଯିବେଣି । ଆଜି

ମନ ଛାହୁଁଛି ତାଙ୍କ ପୁଅ ନାତିଙ୍କୁ ଟିକେ ଦେଖିବାକୁ । ଭାରି ଇଚ୍ଛା ହେଉଛି ଜୀବନ ଜଞ୍ଜାଳରୁ ଟିକିଏ ଫୁରୁସତ ମିଳିଲେ ସେମାନଙ୍କ ଗହଣରେ ଘଡ଼ିଏ ବିତେଇବାକୁ, ତାଙ୍କ ହସ ଲୁହର ସଂସାର ଟିକେ ଦେଖିବାକୁ; ପୁଣି ଆମ୍ବତ୍ୱାଳରେ ବସିରହି ଗାଈ ଚରଉ ଚରଉ ବଇଁଶୀ ବଜେଇବାକୁ, ନଈରେ ପହଁରିବାକୁ, ପାହାଡ଼ ଚଢ଼ିବାକୁ, ଆକାଶକୁ ନିଶୁଣୀ ବାନ୍ଧିବାକୁ । କେଡ଼େ ସରଳ ମନ ଓ ହୃଦୟ ନେଇ ଆମେ ସେତେବେଳେ ସାଙ୍ଗ ମେଳ ହେଉଥିଲୁ । ସଂସାରର ମାୟାମରୀଚିକା କ'ଣ ଆମେ ତା'ର ବିନ୍ଦୁ ବିସର୍ଗ ବି ଜାଣି ନ ଥିଲୁ । କୁଆଡ଼େ ହଜିଗଲା ସେ ସୁନେଲି ରୂପେଲି ଦିନଗୁଡ଼ାକ ? ଝଡ଼ବର୍ଷାର ଶୀତରାତି ଗୁଡ଼ାକ ? ଆଜି ଖାଲି ଛାତି ଫାଟି କୋହ ଉଠେ, ଆତ୍ମା ଆତ୍ମ ବିସର୍ଜନ କରେ, କୋହର ହିମାଳୟ ପାହାଡ଼ ସମ୍ଭାଳିବାକୁ ମନର ବନ୍ଧବାଡ଼ ବି ନିଅଣ୍ଟ ପଡ଼େ । ଦୀର୍ଘଶ୍ୱାସ ଓ ମରୀଚିକାକୁ ପାଥେୟ କରି ବଞ୍ଚିବାକୁ ପଡ଼େ । ଅର୍ଜିଥିବା ସବୁ ଅଭିଜ୍ଞତାକୁ ଠୁଳକରି ମୁଁ ଛାତିରେ ହାତଦେଇ ଏତିକି କହିପାରେ, 'ଏଠି ବଞ୍ଚିବା ବଡ଼ ମୁସ୍କିଲ ବ୍ୟାପାର । ପରନ୍ତୁ, ଜନ୍ମ ହେଲେ ତ ବଞ୍ଚିବାକୁ ପଡ଼ିବ, ଆଉ ମରିବାକୁ ବି ।'

ହେ ଈଶ୍ୱର ! ତୁମେ ସମୟ ସୃଷ୍ଟି କଲ କାହିଁକି ? କାହିଁକି ସମୟକୁ ଛାଡ଼ିଦେଲ ତା' ବାଟରେ ଡଗଡଗ ହୋଇ ଚାଲିଯିବା ପାଇଁ ? କାହିଁକି ସମୟକୁ ଲଗାମ ଦେଲନି ? କାହିଁକି ସମୟ ଗଡ଼ି ଚାଲିଛି ? କୁଆଡ଼େ ସେ ଯିବ, କା' ପାଖକୁ ବା ଯିବ ? ତା'ର ଗନ୍ତବ୍ୟ ସ୍ଥଳ କେଉଁଠି ? ଏ ସବୁ ପ୍ରଶ୍ନର ଉତ୍ତର ତୁମେ କାହିଁକି ଦଉନ ? କାହିଁକି ତୁମେ ନିଦା ବିଷ୍ଣୁଟିଏ ହୋଇ ବସିରହିଛ ବଡ଼ ଦାଣ୍ଡର ବଡ଼ ଦେଉଳରେ ? କାହିଁକି ଆମକୁ ବାଟୋଇଟିଏ କରିଦେଲ ? ବାଟ ଅବାଟ କ'ଣ ଆମେ ଜାଣିନୁ । ମଡ଼ାବାଟ, ଅମଡ଼ାବାଟ ଆମପାଇଁ ସବୁ ସମାନ । ଅନ୍ଧାଧୁନ୍ଦିଆ ମାଡ଼ିଚାଲିଛୁ ଆଖିରେ ଅନ୍ଧପୁଟୁଳିଟିଏ ବାନ୍ଧି । ଏ ଯାତ୍ରାର ଆରମ୍ଭ କେଉଁଠି ଆମେ ଜାଣିନୁ, ଅନ୍ତ କେଉଁଠି ଆମେ ଜାଣିନୁ । ସମୟର ଚକ୍ରବ୍ୟୁହରେ ପଡ଼ି ଆମେ ଯାହା ଖାଲି ଛଟପଟ ହେଉଛୁ । ସମସ୍ୟାର ଜତୁ ଗୃହରେ ବଞ୍ଚିରହିଛୁ । ଅଗ୍ନି ସଂଯୋଗ

ଯାହା ଖାଲି ବାକି । ଏଠି ଶକୁନିଙ୍କର ଅଭାବ ନାହିଁ, ଏଠି ପୁରୋଚନଙ୍କର ଅଭାବ ନାହିଁ. ଏଠି ଦୁର୍ଯ୍ୟୋଧନଙ୍କର ବି ଅଭାବ ନାହିଁ । ଏଠି ଅଭାବ ଖାଲି ତୁମେ, ଏଠି ଅଭାବ ଖାଲି ତୁମର ସ୍ନେହ, ତୁମର ମମତା, ତୁମର ଆଶୀର୍ବାଦ । ସମୟକୁ ତ୍ରାହି ତ୍ରାହି ଡାକୁଛୁ । ପୋଷ ପୋଷ ଲହୁ ପିଉଛୁ, ଲୁହ ପିଉଛୁ । ଜଳର ଏଠି ଘୋର ଅଭାବ, ଶୋଷ ତ ମେଣ୍ଟୁନି, ମେଣ୍ଟିବାର ବି ନାହିଁ ।

ଏଠି ସପନ ଦେଖିବା ସମସ୍ତଙ୍କ ଭାଗ୍ୟରେ ଜୁଟେନା । ଏଠି ପୁନେଇ ରାତିର ଜହ୍ନ ସମସ୍ତେ ଦେଖିପାରନ୍ତିନି । ଏଠି ଅମାବାସ୍ୟାର କିଟିମିଟି ଅନ୍ଧକାର ସମସ୍ତଙ୍କ ଆଖିକୁ ଦେଖାଯାଏନା । ଏଠି ସୁନା ଥାଳିରେ ସମସ୍ତେ ଭାତ ଖାଆନ୍ତିନି । ଏଠି 'ନିଜ ବାପା ବାହାଘରର ଚଉଠି ରାତିର ଭୋଜି ଖାଇବା' ସମସ୍ତଙ୍କ କପାଳରେ ଜୁଟେନା । ଏଠି 'ନିଜ ଘରେ ନିଜେ କୁଣିଆ' ହେବାର ସୁଯୋଗ ସମସ୍ତଙ୍କ ଭାଗ୍ୟରେ ନ ଥାଏ । ଏଠି ଜିତିଥିବା ବାଜିକୁ ସମସ୍ତେ ହାରନ୍ତିନି । ଏଠି ସମସ୍ତଙ୍କ ଘର ଦୁଆର ମୁହଁରେ ଚଉଁରା ନ ଥାଏ । ଏଠି ସବୁ ଘରର ବୋହୂ ସଞ୍ଜବେଳେ ଦିଅଁଙ୍କୁ ଦୀପ ଦିଅନ୍ତି ନାହିଁ । ଏଠି ସମସ୍ତଙ୍କ ଘର ଚାଳରେ ପାରା ବସେନା । ଏଠି ସବୁ ଘରର ବୋହୂ ପାରାଙ୍କୁ ଆଧାର ଦିଅନ୍ତି ନାହିଁ । ଏଠି ସବୁ ପୁରୁଷ ବାପା ହୋଇ ପାରନ୍ତିନି । ଏଠି ସବୁ ଝିଅ ବି ମା' ଡାକ ଶୁଣନ୍ତିନି । ଏଠି ସବୁ ମା' କୌଶଲ୍ୟା ହୋଇ ପାରନ୍ତିନି । ଏଠି ସବୁ ସ୍ତ୍ରୀ ସୀତା ହୋଇ ପାରନ୍ତିନି । ଏଠି ସବୁ ସ୍ତ୍ରୀ ଦ୍ରୌପଦୀ ହୋଇ ପାରନ୍ତିନି । ଏଠି ସବୁ ଜେଜେବାପା ଭୀଷ୍ମ ହୋଇ ପାରନ୍ତିନି । ଏଠି ସବୁ ବହି ରାମାୟଣ ହୋଇପାରେନା । ଏଠି ସବୁ ଶାସ୍ତ୍ର ଗୀତାକୁ ଟପିପାରନ୍ତିନି । ଏଇଟା ତ ଦୁନିଆ । ମାୟାମରିଚିକାର ଏକ ବିରାଟ ଉପତ୍ୟକା । ଆଉ ଆମେ ସବୁ, ଏଇ ଅଜଣା ଉପତ୍ୟକାର ଜଣେ ଜଣେ ବାଟହୁଡ଼ା ମଣିଷ । କେବଳ ମଣିଷର ସଂଜ୍ଞା ବହନ କରିଚାଲିଥିବା, ମଣିଷର ମୁଖା ପିନ୍ଧିଥିବା, ମଣିଷର ସର୍ବନାମ, ଅବ୍ୟୟ ଓ କ୍ରିୟାକୁ ପ୍ରଦର୍ଶନ କରୁଥିବା ଜଣେ ଜଣେ ଅମଣିଷ ।

ଏଇ ମଣିଷପଣିଆ ଓ ଅମଣିଷପଣିଆର ମହାଭାରତ ଯୁଦ୍ଧକୁ ମୁଁ ପିଲାଟିଦିନରୁ ଦେଖି ଆସିଛି, ଭୋଗି ଆସିଛି, ଅଙ୍ଗେ ନିଭେଇ ଆସିଛି । ଶବ୍ଦ ବ୍ରହ୍ମଙ୍କ ସାଙ୍ଗରେ ଖେଳି ଆସିଛି, ମିତ ବସି ଆସିଛି । ଶବ୍ଦଗୁଡ଼ାକୁ ଆପଣାର କରିନେବାପାଇଁ କାନିରେ ସାଉଁଟି ଆଣିଛି, ଅଗଣାରୁ ଗୋଟେଇ ଆଣିଛି, ମନର ଚଟାଣରେ ବିଛେଇ ଦେଇଛି । ଶବ୍ଦଗୁଡ଼ାକ ଭାରି ଅଭିମାନୀ, ତାଙ୍କୁ ଗେଲ ନ କଲେ ସେ ରୁଷି ବସିବେ, ତାଙ୍କ ଉପରେ ରୋଷ କଲେ ସେମାନେ ରୋଷ କରିବେ । ସେମାନେ ଆଦି ବ୍ରହ୍ମର ଅଂଶ ବିଶେଷ । ସ୍ୱୟଂ ବ୍ରହ୍ମ, ସ୍ୱୟଂ ଓଁକାର । ଏଇ ଶବ୍ଦ ଗୁଡ଼ାକର ମାୟା ଜାଲରେ, ଓଁକାରର ଆକର୍ଷଣରେ କେଜାଣି କାହିଁକି ମୁଁ ପିଲାଟି ଦିନରୁ ଛନ୍ଦିହୋଇ ଯାଇଛି, ବାନ୍ଧି ହୋଇ ଯାଇଛି - ଗାଈଟିଏ ଖୁଣ୍ଟରେ ବନ୍ଧା ହେଲାପରି । ଏଇ ଶବ୍ଦର ଆକର୍ଷଣ, ଏଇ ଶବ୍ଦ ବ୍ରହ୍ମର ବ୍ରହ୍ମତ୍ୱ ପିଲାଟିଦିନରୁ ମୋ ହାତରେ ଧରେଇ ଦେଇଛି ସିଲଟ ଆଉ ଖଡ଼ିଟିଏ, କାଗଜ କଲମ ଆଉ ଦୁଆତଟିଏ ଓ କାନ୍ଧରେ ଦଉଡ଼ିଲଗା ବରଡ଼ା ଚଟଟିଏ । ଏଇ ଶବ୍ଦ ବ୍ରହ୍ମର ମାୟା ମରୀଚିକା ମତେ ଟାଣିଆଣିଛି ଆପଣଙ୍କ ପାଖକୁ । ଆପଣଙ୍କ ସ୍ନେହ ପାଇଛି, ମମତା ପାଇଛି । ଦି' ଧାଡ଼ି ଲେଖାଲେଖି କରି ବହିଟିଏ 'ଜ୍ଞାନ ଓ ଅର୍ଥନୀତି'କୁ ଗୋଟିଏ ରଜ୍ଜୁରେ ବାନ୍ଧିବାକୁ ଚେଷ୍ଟାକରିଛି । ସମୟର ଦିଗ୍‌ବଳୟକୁ ହାତ ବଢ଼େଇ ଛୁଇଁବାକୁ ଚେଷ୍ଟା କରିଛି; ଜ୍ଞାନ ମାଧ୍ୟମରେ, ଅର୍ଥନୀତି ମାଧ୍ୟମରେ । ଆଶା, ରଚନାଟି ଆପଣଙ୍କର ଆଦର ଓ ଆଶୀର୍ବାଦ ଲାଭ କରିବ ।

ଆଜି ଏତିକି...

# ସୂଚୀପତ୍ର

**ବିଷୟ** **ପୃଷ୍ଠା**

# ଭାରତ - ଏକ ବିଶାଳକାୟ ଦୈତ୍ୟ ନା ଏକ କ୍ଷୁଦ୍ର ବାମନ !

ସ୍ୱାଧୀନତା ପ୍ରାପ୍ତିର ୫୯ ବର୍ଷ ପରେ ଭାରତବର୍ଷର ଅବୋଲକରା କାହାଣୀକୁ ଗୋଟିଏ ଶବ୍ଦ 'ଯଦି'ରେ କୁହାଯାଇପାରିବ, ଯାହାକି ଅସଂଖ୍ୟ ହାତଛଡ଼ା ସୁଯୋଗର ଏକ ସର୍ଟହ୍ୟାଣ୍ଡ ଭାଷା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ନୁହେଁ ଯେ ସଫଳତା ଭାରତର ପଦ ବନ୍ଦନା କରିନାହିଁ । ଭାରତ ଏକ ସଦା ଚଳଚ୍ଚଞ୍ଚଳ ଗଣତନ୍ତ୍ର । କୁଶଳୀ ମାନବ ସମ୍ବଳର ଏକ ବୃହତ୍ ଗନ୍ତାଘର । ଅଫୁରନ୍ତ ଆତ୍ମବିଶ୍ୱାସରେ ଭରପୁର ଏକ ମଧ୍ୟମବର୍ଗ ଜନସାଧାରଣଙ୍କ ରାଷ୍ଟ୍ର । ଅତ୍ୟନ୍ତ ମର୍ଯ୍ୟାଦାସମ୍ପନ୍ନ 'କଟିଂ ଏଜ୍ ଟେକ୍ନୋଲୋଜି' ବା 'ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟା'କୁ ଆଧାର କରି ସର୍ବଦିଗବ୍ୟାପ୍ତ ସମସ୍ୟାର ସର୍ବନାଶ କରିବାକୁ ବଦ୍ଧପରିକର ଥିବା ରାଷ୍ଟ୍ରଟି ହେଲା ଭାରତବର୍ଷ ଏବଂ ସର୍ବୋପରି ଏକ ବିପୁଳ ବଜାରର ମାଲିକାନା ସ୍ୱତ୍ୱ ଯେଉଁ ରାଷ୍ଟ୍ରର ଏକ ମୁଖ୍ୟ ପୁଞ୍ଜି ସେ ରାଷ୍ଟ୍ରଟି ଭାରତବର୍ଷ ନୁହେଁ ତ ଆଉ କିଏ ? ଏପରି କିଛି ଯତ୍‌ସାମାନ୍ୟ ସଫଳତା ଭାରତବର୍ଷର ସର୍ବଜନ ସମ୍ମତ ଅସୀମ ଦକ୍ଷତା ସହ ଠିକ୍ ମେଳ ଖାଉନାହିଁ । ତଥାପି ଫଳାଫଳ ଓ ଦକ୍ଷତା ମଧ୍ୟରେ ଥିବା ଅସମାନତାର ସଦା ସର୍ବଦା ସମ୍ମୁଖୀନ ହୋଇ ପ୍ରଗତିର କଣ୍ଟକିତ ପଥରେ ଭାରତବର୍ଷ ଆଶାର ବାଟୋଇଟିଏ ହୋଇ ଦିନରାତି ଆଗେଇ ଚାଲିଛି ।

ଭାରତବର୍ଷ ଏକ କ୍ଷୁଦ୍ର ଅର୍ଥନୀତି ଧନ୍ୟ ବିଶାଳକାୟ ରାଷ୍ଟ୍ର । ପୃଥିବୀର ୧୬ ପ୍ରତିଶତ ଲୋକେ ଭାରତବର୍ଷର ବାସିନ୍ଦା ଅଟନ୍ତି । ହେଲେ ବିଶ୍ୱ ପୃଷ୍ଠଭୂମିରେ ଭାରତର ମୋଟ ରାଷ୍ଟ୍ରୀୟ ଉତ୍ପାଦନ କେବଳ ୧.୫ ପ୍ରତିଶତ, ଅବସ୍ଥା ଆହୁରି ସାଂଘାତିକ ଯେ ବିଶ୍ୱ ବାଣିଜ୍ୟ କାରବାରରେ ଭାରତର ଯୋଗଦାନ କେବଳ ମାତ୍ର ୦.୭ ପ୍ରତିଶତ । ୬୦ ଦଶକର ପ୍ରାରମ୍ଭରେ ଭାରତ ଏବଂ ଦକ୍ଷିଣ କୋରିଆ ଅଭିବୃଦ୍ଧିର ଏକ ସ୍କେଲରେ ଠିଆହୋଇଥିଲେ । ଆଜି ଦକ୍ଷିଣ କୋରିଆର ମୁଣ୍ଡପିଛା

ରୋଜଗାର ଭାରତର ମୁଣ୍ଡପିଛା ରୋଜଗାର ଠାରୁ ୨୦ଗୁଣ ଅଧିକ । ଏସୀୟ ବ୍ୟାଘ୍ରସମ ରାଷ୍ଟ୍ରମାନେ ଏବଂ ଚୀନ ମିଳିମିଶି ଗୋଟିଏ ପିଢ଼ିରେ ଭାରତବର୍ଷକୁ ପଛକୁ ଠେଲି ଦେଇ ଆଗକୁ ଆଗକୁ ମାଡ଼ି ଚାଲିଲେ । ଭାରତ ଏକ ବିଶାଳକାୟ ହାତୀ ହୋଇ ଯାହା ଖାଲି ପଡ଼ି ରହିଛି ।

ଏକ ବିଶାଳକାୟ ହାତୀ ହୋଇ ସମୟ ବୁକୁରେ ପଡ଼ି ରହିବା କ'ଣ ଭାରତର ଭାଗ୍ୟଲେଖ ? କ'ଣ କଲେ ଆମେ ନିଶ୍ଚିତ ହୋଇ ରହିବା ଯେ ଭାରତ ପ୍ରଗତିର ବସ୍‌ରେ ଯାତ୍ରୀ ହେବା ପାଇଁ ସୁଯୋଗକୁ ଆଉଥରେ ହାତଛଡ଼ା କରିବ ନାହିଁ ? ଭାରତ କିପରି ପାଶ୍ଚାତ୍ୟ ଜଗତରେ ଦେଖା ଦେଇଥିବା ସାଂପ୍ରତିକ ଅର୍ଥନୈତିକ ଓଲଟ ଢେଉକୁ ନିଜ ପଟିଆ କରି ସମୟ ଓ ସୁଯୋଗକୁ ରାଷ୍ଟ୍ରୀୟ ପ୍ରଗତି ପାଇଁ ବାଛି ଲଗେଇ ଦେବ ? ଫେବୃୟାରୀ ୨୮ରୁ ମାର୍ଚ୍ଚ ୨ତାରିଖ ମଧ୍ୟରେ ପ୍ରଖ୍ୟାତ ସାପ୍ତାହିକ ନିୟୁଜ ମ୍ୟାଗାଜିନ 'ଇଣ୍ଡିଆ ଟୁଡ଼େ' ଦ୍ୱାରା ନୂଆଦିଲ୍ଲୀରେ ଆୟୋଜିତ ହୋଇଥିବା '୨ୟ ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭ'ରେ ଏପରି କେତେକ ମୁଦ୍ଦା ତର୍କ ବିତର୍କର ପରିସରକୁ ଆସିଥିଲା । ଏହି ସମ୍ମିଳନୀର ମୁଖ୍ୟ ଆଲୋଚ୍ୟ ବିଷୟଟି ଥିଲା -'ଭାରତବର୍ଷ-୨୦୦୩ : ଏକ ବିଶାଳକାୟ ଦୈତ୍ୟ ନା ଏକ କ୍ଷୁଦ୍ର ବାମନ !' ଏହି ସମ୍ମିଳନୀରେ ଆମେରିକାର ଭୂତପୂର୍ବ ରାଷ୍ଟ୍ରପତି ବିଲ କ୍ଲିଣ୍ଟନ, ଭାରତର ରାଷ୍ଟ୍ରପତି ଡଃ ଏ.ପି.ଜେ. ଅବଦୁଲ କଲାମ, ଶ୍ରୀଲଙ୍କାର ପ୍ରଧାନମନ୍ତ୍ରୀ ରନିଲ ବିକ୍ରମ ସିଂହ, ପ୍ରଖ୍ୟାତ ଭବିଷ୍ୟତ ପ୍ରବକ୍ତା ଆଲ୍‌ଭିନ୍ ଟୋଫଲର୍, ଭାରତୀୟ ଜନତା ପାର୍ଟିର ଜେନେରାଲ ସେକ୍ରେଟାରୀ ପ୍ରମୋଦ ମହାଜନ, ଅର୍ଥନୀତିଜ୍ଞ କେନେଥ କୋର୍ଟିସ, କେନ୍ଦ୍ରମନ୍ତ୍ରୀ ଅରୁଣ ସୌରୀ, ଆମେରିକାର ୟାଲେ ବିଶ୍ୱବିଦ୍ୟାଳୟର ଅର୍ଥନୀତି ପ୍ରଫେସର ଟି.ଏନ. ଶ୍ରୀନିବାସନ୍, କେନ୍ଦ୍ରମନ୍ତ୍ରୀ ଅରୁଣ ଜେଟଲୀ, ପୂର୍ବତନ କେନ୍ଦ୍ରମନ୍ତ୍ରୀ ପି. ଚିଦାମ୍ବରମ, କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ଏସ.ଏମ. କ୍ରିଷ୍ଣା, ଗୁଜୁରାଟର ମୁଖ୍ୟମନ୍ତ୍ରୀ ନରେନ୍ଦ୍ର ମୋଦି, ନ୍ୟାସନାଲ କନ୍‌ଫର୍‌ଏନ୍ସର ସଭାପତି ତଥା ପୂର୍ବତନ କେନ୍ଦ୍ରମନ୍ତ୍ରୀ ଓମର ଅବଦୁଲ୍ଲା, ପାକିସ୍ତାନ କ୍ରିକେଟ ଦଳର ପୂର୍ବତନ ଅଧିନାୟକ ତଥା ସଂପ୍ରତି ତେହରିକ୍-ଇ-ଇନ୍‌ସାଫ ଦଳର ସଭାପତି ଓ ଜାତୀୟ ଆସେମ୍ବ୍ଲିର ସଦସ୍ୟ ଇମ୍ରାନ୍ ଖାନ୍, ଚଳଚ୍ଚିତ୍ର ନିର୍ଦ୍ଦେଶକ ଶେଖର କପୁର ଆଦି ବହୁ ମାନ୍ୟଗଣ୍ୟ ନିମନ୍ତ୍ରିତ ବକ୍ତା ଭାରତର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସ୍ୱପ୍ନକୁ ପ୍ରାଞ୍ଜଳ ଭାବେ ସେମାନଙ୍କର ଅଭିଭାଷଣ ମାଧ୍ୟମରେ ଉପସ୍ଥାପନ କରିଥିଲେ, ଯାହାକି ଅତ୍ୟନ୍ତ ସାରଗର୍ଭକ ଓ

ହୃଦୟସ୍ପର୍ଶୀ ହୋଇଥିଲା । ବିଲ୍ କ୍ଲିଣ୍ଟନ ସୁରକ୍ଷାଗତ କାରଣରୁ ସଶରୀରରେ ଉପସ୍ଥିତ ହୋଇ ନ ପାରି ଉପଗ୍ରହ ମାଧ୍ୟମରେ ନିଜର ଦୁର୍ଦ୍ଧାନ୍ତ ତଥା ଓଜସ୍ୱିନୀ ବକ୍ତବ୍ୟ ପ୍ରଦାନ କରି ଉପସ୍ଥିତ ଜନ ସମୁଦାୟଙ୍କୁ ଉଦ୍‌ବୋଧନ ଦେଇଥିଲେ । ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭରେ ଭାରତୀୟ ଗଣତନ୍ତ୍ର ବ୍ୟବସ୍ଥା, ଆଇନ ବ୍ୟବସ୍ଥା, ପଡ଼ୋଶୀ ରାଷ୍ଟ୍ର ସମସ୍ୟା, ରାଷ୍ଟ୍ରୀୟ ଦୃଷ୍ଟିଭଙ୍ଗୀ ଏବଂ ଏପରିକି ଭାରତର କଳା ଓ ସଂସ୍କୃତିକୁ ନେଇ ଗଭୀର ଆଲୋଚ଼ନା ଓ ପର୍ଯ୍ୟାଲୋଚ଼ନା ହୋଇଥିଲା ।

ଏପରି ଏକ ଅଧିବେଶନ ଏବଂ ଅଧିବେଶନରେ ଆଲୋଚ଼୍ୟ ବିଷୟବସ୍ତୁ ପ୍ରକୃତରେ ଅତ୍ୟନ୍ତ ସମୟୋପଯୋଗୀ ଥିଲା । ଆଜିର ବିଶ୍ୱ ବ୍ୟବସ୍ଥାରେ କେବଳ ସାମରିକ ଶକ୍ତି କୌଣସି ରାଷ୍ଟ୍ରର ଭାଗ୍ୟକୁ ନିର୍ଦ୍ଧାରଣ କରି ପାରିବ ନାହିଁ ବରଂ ଅର୍ଥନୀତି ଦ୍ୱାରା ରାଷ୍ଟ୍ରର ଭବିଷ୍ୟତ ନିର୍ଦ୍ଧାରଣ କରାଯାଇ ପାରିବ । ପରନ୍ତୁ ଅର୍ଥନୀତି ରାଜନୈତିକ୍, ସାମାଜିକ ଏବଂ ଉଦ୍ଭାବନଧର୍ମୀ ପରିବେଶର ଛାଞ୍ଚରେ ତା'ର ରୂପ ଲାବଣ୍ୟକୁ ପରିପ୍ରକାଶ କରିଥାଏ । ପାଶ୍ଚାତ୍ୟ ରାଷ୍ଟ୍ର ଜ୍ଞାନକେନ୍ଦ୍ରୀକ ସମାଜ ବ୍ୟବସ୍ଥାକୁ ଆଦରି ନେଇଥିଲେ ମଧ୍ୟ ନାଟକୀୟଭାବେ ତାହା ଏବେ ବିପରୀତମୁଖୀ ଧାବନ କରୁଥିବାରୁ ଇତିହାସର ମୋଡ଼ ବଦଳେଇ ଦେବାରେ ସକ୍ଷମ ହୋଇପାରିବ ବୋଲି ଦାବୀ କରୁଛି । ଜାପାନ ଗତ ଏକ ଦଶକ ଧରି ଯେପରି ଅଭିଜ୍ଞତା ଅର୍ଜନ କରି ଚାଲିଛି, ତାହା ଦେଖି ଭୟ ପ୍ରକାଶ ପାଉଛି ଯେ ବିକଶିତ ବଜାର ଅର୍ଥନୀତି ସତେଯେପରି ମାନ୍ଦାବସ୍ଥାକୁ ଆବୋରି ନେବାକୁ ଅପେକ୍ଷା କରି ବସି ରହିଛି ।

ଏସବୁ ପ୍ରତିବନ୍ଧକ ଓ ଝଡ଼ ଝଞ୍ଜା ସତ୍ତ୍ୱେ ଦୁଇଟି ମହାଦୈତ୍ୟ ଚୀନ ଓ ଭାରତ ଧରା ବୁକୁରେ ସଗର୍ବେ ମୁଣ୍ଡ ଟେକି ଠିଆ ହେବାକୁ ପ୍ରତିଜ୍ଞାବଦ୍ଧ । ଏହି ଦୁଇ ରାଷ୍ଟ୍ରର ଭୌଗୋଳିକ ଆକାର, ଅନ୍ତର୍ନିହିତ ଶକ୍ତି ଓ ପ୍ରଚ଼ଣ୍ଡ ପ୍ରାକୃତିକ ବୈଭବ ମିଳିମିଶି ବିଶ୍ୱର ଯେ କୌଣସି ମାନଦଣ୍ଡକୁ ଭାଙ୍ଗି ଚୁରମାର କରିଦେବାର ସମ୍ପୂର୍ଣ୍ଣ କ୍ଷମତା ରଖିଛି । ଏକ ଅଡୁଆ ରାଜନୈତିକ ବ୍ୟବସ୍ଥା ମଧ୍ୟ ଦେଇ ଗତିକରି ଚୀନ କ୍ରମାଗତ ଭାବେ ୧୦ ପ୍ରତିଶତ ଅଭିବୃଦ୍ଧି ହାର ହାସଲ କରି ଚାଲିବା ବିଶ୍ୱ ଅର୍ଥନୀତିର କମଳ ଲୋଚ଼ନକୁ ଝଲସେଇ ଦେଇଛି । ନବେ ଦଶକର ପ୍ରାରମ୍ଭରୁ ଭାରତବର୍ଷ ଠୁକୁଠୁକୁ କରି ଚାଲୁଥିବା ଅଭିବୃଦ୍ଧିର ହିନ୍ଦୁହାରକୁ ପଛରେ ପକେଇ ଦେଇ ଆଗକୁ ଆଗକୁ ପାହୁଣ୍ଡ ବଢ଼େଇ ଚାଲିଛି । ଏବେ ଭାରତ ପ୍ରତିବର୍ଷ ୫ ରୁ ୬ ପ୍ରତିଶତ ଅଭିବୃଦ୍ଧି ହାରକୁ ଜାବୁଡ଼ି ଧରି ବାଟ ଚାଲୁଛି । ଭାରତ ଏକ ଗ୍ଲୋବାଲ ସୁପର ପାୱାର ବା

ବିଶ୍ୱ ମହାଶକ୍ତି ହେବାପାଇଁ ମନରେ ବଡ଼ ଆଣ୍ଠ ବାନ୍ଧି ବସିଛି । ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ପ୍ରଗତିର ରାଜରାସ୍ତାରେ କେତେବେଳେ ଆଣ୍ଠୁ ମାଡ଼ି ବସି ପଡୁଛି ତ, କେତେବେଳେ ଗୁରୁ ଗର୍ଜନ କରି ବୀର ଦର୍ପରେ ଆଗକୁ ଆଗକୁ ମାଡ଼ି ଯାଉଛି ଅବା କେତେବେଳେ ସମୟ ସାଙ୍ଗରେ ଦୌଡୁ ଦୌଡୁ ବେଳ ଉଛୁର ହୋଇ ଯାଉଛି । ଯେହେତୁ ଭାରତ ବିଶ୍ୱ ଅର୍ଥନୀତିର ଏକ ଅଂଶ ବିଶେଷ, ତେଣୁ କେବଳ ଭାରତୀୟ ମାନଦଣ୍ଡ ବ୍ୟବହାର କରି ସେ ନିଜକୁ ମାପି ପାରିବ ନାହିଁ । ଆଜିର ସମୟ ଭାରତର ସମୟ ଓ ଭାରତର ପଣତ କାନିରେ ତାହା ବାନ୍ଧି ହୋଇ ଯାଇଛି । ଆଜିର ସମୟ ଭାରତର କାନିରେ ଯାହାକିଛି ବି ଅଜାଡ଼ି ଦେବ, ତାହା ଭାରତ ପାଇଁ ସ୍ୱାଗତଯୋଗ୍ୟ । ରାଷ୍ଟ୍ରୀୟ ଆଶା ଆକାଂକ୍ଷାକୁ ବାସ୍ତବତାରେ ରୂପାନ୍ତରିତ କରିବା ଭାରତ ପାଇଁ ଆଜି ମୁଖ୍ୟ ଚ୍ୟାଲେଞ୍ଜ ହୋଇ ପଡ଼ିଛି ।

ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭର ମୁଖ୍ୟ ନାୟକ ଓ ଅଭିବକ୍ତା ବିଲ୍ କ୍ଲିଣ୍ଟନ ଉପଗ୍ରହ ମାଧ୍ୟମରେ ପ୍ରଦାନ କରିଥିବା ତାଙ୍କର ବର୍ଣ୍ଣାଢ଼୍ୟ ଓ ସାରଗର୍ଭକ ଅଭିଭାଷଣର ସଂକ୍ଷିପ୍ତ ବିବରଣ ଏହି ରଚ଼ନାଟି ମାଧ୍ୟମରେ ପରିବେଷଣ କରାଯିବାର ପ୍ରୟାସ କରାଯାଇଛି । ଆମେରିକାର ୪୨ତମ ରାଷ୍ଟ୍ରପତି ସମ୍ମାନାସ୍ପଦ ଉଇଲିୟମ ଜେଫେରସନ କ୍ଲିଣ୍ଟନ ନ୍ୟୁୟର୍କରେ ବସିରହି ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱର ଛଟା ମାଧ୍ୟମରେ ନୂଆଦିଲ୍ଲୀର ଶ୍ରୋତାମଣ୍ଡଳୀଙ୍କୁ ଏକ ବିରାଟ ସ୍କ୍ରିନ୍ ମାଧ୍ୟମରେ ନିଜର ଓଜସ୍ୱିନୀ ଅଭିଭାଷଣ ପ୍ରଦାନ କରି ମନ୍ତ୍ରମୁଗ୍ଧ କରି ଦେଇଥିଲେ । ଭାରତ ପ୍ରତି ଥିବା ତାଙ୍କର ଅହେତୁକ ଆଗ୍ରହ, ଭବିଷ୍ୟତ ଭାରତବର୍ଷର ସ୍ୱପ୍ନ ତଥା ଆନ୍ତର୍ଜାତିକ ପୃଷ୍ଠଭୂମିରେ ଭାରତର ସ୍ଥାନ କେଉଁଠି; ତାହା ତାଙ୍କ ବକ୍ତବ୍ୟର କେନ୍ଦ୍ରବିନ୍ଦୁ ଥିଲା । ଏହି ତାରକା ବକ୍ତା ବିଲ୍ କ୍ଲିଣ୍ଟନ ଯେଉଁଦିନ ତାଙ୍କ ଅଭିଭାଷଣ ପ୍ରଦାନ କଲେ, ଠିକ୍ ସେହି ଦିନ ଭାରତ-ପାକିସ୍ଥାନ ବିଶ୍ୱ କପ କ୍ରିକେଟ ମ୍ୟାଚ଼ରେ ଭାରତ ପାକିସ୍ଥାନକୁ ହରେଇ ଥାଏ ଓ ଭାରତ ସାରା ଖୁସିର ଲହଡ଼ି ଭାଙ୍ଗୁଥାଏ । ବିଲ କ୍ଲିଣ୍ଟନ ନିଜେ ମଧ୍ୟ ଏହି ମ୍ୟାଚ଼କୁ ଉପଭୋଗ କରିଥିଲେ ଓ ତାଙ୍କ ବକ୍ତବ୍ୟରେ ମଧ୍ୟ ସେ ଏ ବିଷୟ ଉପସ୍ଥାପନ କରିଥିଲେ । ଭାରତର ଖୁସି ସହ ସମଖୁସି ହୋଇ ଏକ ଉତ୍ସାହୀ ଶ୍ରୋତା ମଣ୍ଡଳୀଙ୍କୁ ଆଖି ଆଗରେ ପାଇ ତାଙ୍କ ଖୁସିର ପାରାବାର ସତେ ଯେପରି କୂଳ କିନାରା ଲଙ୍ଘନ କରୁଥିଲା । ତାଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଅଭିଭାଷଣ ଓ ତା'ର ପରବର୍ତ୍ତୀ ଭାବୋଦ୍ଦୀପକ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ ଅତ୍ୟନ୍ତ ହୃଦୟସ୍ପର୍ଶୀ ଓ ବୌଦ୍ଧିକ ବ୍ୟଞ୍ଜନର ସମାହାର ଥିଲା, ଯାହାକି ରାତ୍ରୀକାଳୀନ

ଭୋଜନର ମୁଖ୍ୟ ଆକର୍ଷଣ ଥିଲା । ତାଙ୍କ ଅଭିଭାଷଣର ପ୍ରାଣବିନ୍ଦୁ ଥିଲା କନ୍‌କ୍ଲେଭର ଶିରୋନାମା ବିଷୟବସ୍ତୁ - 'ଆଗାମୀ କାଲିର ଭାରତବର୍ଷ - ଏକ ବିଶାଳକାୟ ଦୈତ୍ୟ ନା ଏକ କ୍ଷୁଦ୍ର ବାମନ' । ଗୁରୁ ଗମ୍ଭୀର ସ୍ୱରରେ ଅତ୍ୟନ୍ତ ଦାମ୍ଭିକତାର ସହ ଆମେରିକାର ବିଦାୟୀ ରାଷ୍ଟ୍ରପତି ବିଲ କ୍ଲିଣ୍ଟନ କୁହନ୍ତି ଯେ ''ଭାରତବର୍ଷକୁ ଏକ କ୍ଷୁଦ୍ର ବାମନ ହୋଇ ରହିବାକୁ ବିଶ୍ୱ ସମୁଦାୟ ଆଦୌ କୌଣସି ସୁଯୋଗ ଦେବନାହିଁ । ଭାରତକୁ ଏକ ବିଶାଳକାୟ ଦୈତ୍ୟ ହେବାକୁ ପଡ଼ିବ ହିଁ ପଡ଼ିବ ଏବଂ ଉପଯୁକ୍ତ ଧରଣର ଦୈତ୍ୟ ହେବା ନିତାନ୍ତ ବାଞ୍ଛନୀୟ ।''

ଭାରତବର୍ଷ ପାଇଁ ତାଙ୍କ ଦୃଷ୍ଟିକୋଣର ଅବତାରଣା କରି ବିଲ୍ କ୍ଲିଣ୍ଟନ୍ ଭାରତବର୍ଷର ମୁଖ୍ୟ ଚ୍ୟାଲେଞ୍ଜ ଯଥା - କାଶ୍ମୀର ସମସ୍ୟା, ଏଡ୍‌ସ ରୋଗ, ସାଂପ୍ରତିକ ଦଙ୍ଗା ହଙ୍ଗାମା ଏବଂ ଉପମହାଦେଶରେ ପରମାଣୁ ଅସ୍ତ୍ରଶସ୍ତ୍ରର ଭୟ ଆଦି ବିଷୟବସ୍ତୁ ଗୁଡ଼ିକୁ ପ୍ରାଞ୍ଜଳ ଭାବରେ ବିଶ୍ଳେଷଣ କରିଥିଲେ । ତାଙ୍କର ବିଶ୍ଳେଷଣାତ୍ମକ ଅନୁଶୀଳନ ଏବଂ ଚିନ୍ତା ଚେତନାଦ୍ୟୋତକ ଅଭିଭାଷଣର ମୂଳ କଥାଟି ଥିଲା - ''ଆଜିର ବିଶ୍ୱ ବ୍ୟବସ୍ଥାରେ ପ୍ରତ୍ୟେକଟି ରାଷ୍ଟ୍ର ଅନ୍ୟରାଷ୍ଟ୍ର ଉପରେ ନିର୍ଭରଶୀଳ'' ଏବଂ ଏହି ପରସ୍ପର ନିର୍ଭରଶୀଳତା ହିଁ ଏକବିଂଶ ଶତାବ୍ଦୀର ପ୍ରାଣ ପ୍ରାଚୁର୍ଯ୍ୟ ଅଟେ । ତାଙ୍କ ଦୃଷ୍ଟିକୋଣରେ ଏହି ବିଶ୍ୱସ୍ତରୀୟ ନିର୍ଭରଶୀଳତାକୁ ଅତି ସରଳ ଭାଷାରେ କହିଲେ ଏହାହିଁ ହେବ ଯେ ଆମ ସମସ୍ତଙ୍କ ଭାଗ୍ୟ ଗୋଟିଏ ଦଉଡ଼ିରେ ବନ୍ଧା ଏବଂ ଯେତେ ଚେଷ୍ଟା କଲେ ବି ଆମେ ପରସ୍ପରଠୁଁ ଆଦୌ ଅଲଗା ହୋଇପାରିବା ନାହିଁ । ପରସ୍ପର ନିର୍ଭରଶୀଳତାର ବିଯୁକ୍ତ ଦିଗଟିକୁ ଉଦାହରଣ ପ୍ରସଙ୍ଗରେ ବୁଝାଇବାକୁ ଯାଇଁ ବିଲ୍ କ୍ଲିଣ୍ଟନ ନିୟୁର୍କର ଟ୍ରେଡ଼୍ ସେଣ୍ଟର ଉପରେ ହୋଇଥିବା ସେପ୍ଟେମ୍ବର ୧୧, ୨୦୦୧ ମସିହାର ଲୋମ ହର୍ଷଣକାରୀ କାହାଣୀର ବର୍ଣ୍ଣନା କରି ଅଲ-କାଇଦା ଗୋଷ୍ଠୀର ଦେଶ-ଦେଶ ମଧ୍ୟରେ ଥିବା ମୁକ୍ତ ସୀମାର ବ୍ୟବହାର, ସହଜସାଧ ଭ୍ରମଣ, ଇମିଗ୍ରେସନ ଏବଂ ସୂଚନା ଓ ପ୍ରଯୁକ୍ତିବିଦ୍ୟାର ବ୍ୟବହାର ଉପରେ ଅବାଧ ପ୍ରବେଶ ଅଧିକାର ଉପରେ ଆଲୋକପାତ କରିଥିଲେ । ଭାରତ ଏବଂ ପାକିସ୍ଥାନର ପରସ୍ପର ନିର୍ଭରଶୀଳତା ଭାରତରେ ବସବାସ କରୁଥିବା ହିନ୍ଦୁ ଓ ମୁସଲମାନ ଭାଇଭଉଣୀମାନଙ୍କ ପରସ୍ପର ନିର୍ଭରଶୀଳତା ପରି । ଏକବିଂଶ ଶତାବ୍ଦୀର ବିଶ୍ୱ ନେତୃବୃନ୍ଦଙ୍କୁ ଆହ୍ୱାନ ଦେଇ ବିଲ କ୍ଲିଣ୍ଟନ କୁହନ୍ତି ଯେ ଏହି ପରସ୍ପର ନିର୍ଭରଶୀଳତାର ବୀଜହିଁ ଏକବିଂଶ ଶତାବ୍ଦୀର ଅଭୂତପୂର୍ବ ଅଭିବୃଦ୍ଧିର କାରଣ ହେବ ।

କ୍ଲିଣ୍ଟନଙ୍କ ଆମୂଳଚୂଳ ଅଭିଭାଷଣ ଯଦିଓ ରାଜନୀତିର ରଙ୍ଗତୂଳୀରେ ସମ୍ପୂର୍ଣ୍ଣଭାବେ ଚିତ୍ରିତ ହୋଇଥିଲା, ପରନ୍ତୁ ସେ ଆଶା କରିଥିଲେ ଯେ ଯଦି ଭାରତ ତା'ର ଅର୍ଥନୈତିକ ଅଭିବୃଦ୍ଧିର ହାରକୁ ୭ ପ୍ରତିଶତର ପାଖାପାଖି ସ୍ଥିର କରି ରଖି ପାରିବ; ତେବେ ଭାରତ ପାଇଁ ବାମନର ସମ୍ବୋଧନ ଆଦୌ ପ୍ରଯୁଜ୍ୟ ହେବନାହିଁ । ଯଦି ଭାରତ ଏକ ବିଶ୍ୱ ମହାଶକ୍ତି ହୋଇ ଉଭା ହୁଏ, ତେବେ ଭାରତକୁ ତା'ର ସମସ୍ତ ନାଗରିକମାନଙ୍କୁ ପୂର୍ଣ୍ଣ କ୍ଷମତା ପ୍ରଦାନ କରିବାକୁ ପଡ଼ିବ; ଯଦ୍ୱାରା ସେମାନଙ୍କର ଦକ୍ଷତା ଓ ବାସନାର ଶତପ୍ରତିଶତ ପରିସ୍ଫୁଟନ ହୋଇପାରିବ । ବିଭିନ୍ନ ଅଞ୍ଚଳ ସହ ସମୁଦାୟ ବିଶ୍ୱକୁ ଗୋଟିଏ ପୃଷ୍ଠଭୂମିରେ ଦଣ୍ଡାୟମାନ ହେବାକୁ ପଡ଼ିବ । ଏପରି ଏକ ଭାରତବର୍ଷକୁ ବିଶ୍ୱ ଆଖି ପୁରେଇ ଦେଖିବାକୁ ଚାହୁଁଛି, ଯେଉଁ ଭାରତବର୍ଷ ଏକ ଯୁକ୍ତ-ଭାବାପନ୍ନ ଶକ୍ତି ରୂପେ ଉଦ୍‌ଭାସିତ ହୋଇ ଏକ ନୂତନ ବିଶ୍ୱ ବ୍ୟବସ୍ଥାର ନିର୍ମାଣ କରିବ; ଯେଉଁଠି ଯୁଦ୍ଧର କଳା ବାଦଲ ନ ଥିବ କି ଭୟ ଓ ଆଶଙ୍କାର ବୁଢ଼ୀ ଅସୁରୁଣୀ ମାଡ଼ି ବସୁ ନ ଥିବ ଏବଂ ସବୁଠି ଖାଲି ଆଶାର ଶୁଭ୍ର କିରଣ ବିଚ୍ଛୁରିତ ହୋଇ ପଡୁଥିବ ଅବା ଭାରତବର୍ଷ ତା'ର ବିଶାଳକାୟ ଅବୟବ ତଥା ଶକ୍ତି ଓ ସାମର୍ଥ୍ୟକୁ ପୁଞ୍ଜି କରି ସମ୍ପୂର୍ଣ୍ଣ ବିଶ୍ୱ ବ୍ୟବସ୍ଥା ଯାହାକି ଖଣ୍ଡ ବିଖଣ୍ଡିତ ଚିନ୍ତାଧାରା ଓ ଅସୂୟାଭାବାପନ୍ନତାରେ ବଶୀଭୂତ; ତହିଁରେ ନିଜର ଆଧିପତ୍ୟ ବିସ୍ତାର କରିବ ।

ଏକ ବିଶ୍ୱ ମହାଶକ୍ତି ଭାବେ ଧରା ବୁକୁରେ ସଗର୍ବେ ଦଣ୍ଡାୟମାନ ହେବା ପାଇଁ ଭାରତର ସ୍ୱପ୍ନ ସେତିକିବେଳେ ହିଁ ଚରିତାର୍ଥ ହେବ, ଯେତେବେଳେ ଏହାର ନେତୃବର୍ଗ ଏପରି ଏକ ଭାରତବର୍ଷର ସର୍ଜନା କରିବେ ଯାହାକି ଭାଗିଦାରୀ ଲାଭକ୍ଷତି, ଭାଗିଦାରୀ ଦାୟିତ୍ୱବୋଧତା ଓ ଭାଗିଦାରୀ ମୂଲ୍ୟବୋଧ ଉପରେ ସମ୍ପୂର୍ଣ୍ଣ ରୂପେ ପର୍ଯ୍ୟବେଶିତ ଥିବ । ଏହି କଳାରେ ଯଦି ଭାରତବର୍ଷ ସଫଳକାମୀ ହୁଏ; ତେବେ ଭାରତର ବିଜ୍ଞାନ, ବୌଦ୍ଧିକ କଳା ଚାତୁର୍ଯ୍ୟ ଓ ସ୍ୱର୍ଣ୍ଣାଦିତ୍ୟ ଇତିହାସର ଗୌରବୋଜ୍ଜ୍ୱଳ ପୃଷ୍ଠା ମିଳିମିଶି ଭାରତବର୍ଷକୁ ଏକ ବିଶାଳକାୟ ଦୈତ୍ୟରେ ପରିଣତ କରିବାରେ ସମ୍ପୂର୍ଣ୍ଣ ରୂପେ ସହାୟକ ହେବେ । ବିଲ କ୍ଲିଣ୍ଟନ ଭାରତ ପ୍ରତି ତାଙ୍କର ଥିବା ଅଖଣ୍ଡ ବିଶ୍ୱାସକୁ ଦୋହରାଇ କୁହନ୍ତି ଯେ ଯଦି ଭାରତବର୍ଷ ନିଜ ଆଭ୍ୟନ୍ତରୀଣ ସମସ୍ୟାର ସମାଧାନ କରି ଅର୍ଥନୀତିର ସିଢ଼ି ପାହାଚ୍‌ରେ ଆଗକୁ ଆଗକୁ ଏମିତି ମାଡ଼ିଚାଲେ, ତେବେ ଭାରତବର୍ଷ ଏକବିଂଶ ଶତାବ୍ଦୀରେ ନିଶ୍ଚିତ ରୂପେ ଏକ ବିଶ୍ୱ ମହାଶକ୍ତି ଭାବେ ପ୍ରକଟିତ ହେବ; ଏହା ତ୍ରିବାର ସତ୍ୟ ।

ବିଲ କ୍ଲିଣ୍ଟନ ଭାରତ ସମ୍ମୁଖୀନ ହେଉଥିବା ନାନାଦି ସମସ୍ୟାର କାରଣ ଖୋଜିବାକୁ ଯାଇ କୁହନ୍ତି ଯେ ଯଦିଓ ଭାରତର ପୂଣ୍ୟମାଟି ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ ଏବଂ ଶିଖଧର୍ମର ଜନ୍ମସ୍ଥାନ ଭାବେ ବିଶ୍ୱବନ୍ଦିତ, ହେଲେ ଭାରତର ନିଜର ଜନ୍ମ ଧର୍ମ ବିଦ୍ୱେଶର ଯଜ୍ଞ କୁଣ୍ଡରୁ ହିଁ ହୋଇଛି । ଅହିଂସାର ପରମ ଦର୍ଶନ ଭାରତବର୍ଷ ବିଶ୍ୱବାସୀଙ୍କୁ ଶିକ୍ଷା ଦେଇଥିଲେ ହେଁ ଭାରତ-ପାକିସ୍ଥାନ ସୀମା ବିବାଦ ଓ ସୀମାପାର ସନ୍ତ୍ରାସବାଦ, ଏହି ଦୁଇ ପାରମାଣବିକ ଶକ୍ତିକୁ ମୁହାଁମୁହିଁ କରେଇ ଦେଉଛି । ବିଶ୍ୱର ୩୦ ପ୍ରତିଶତ ସଫ୍ଟୱେୟାର ଇଞ୍ଜିନିୟର ଭାରତୀୟ ହୋଇଥିଲେ ମଧ୍ୟ ଭାରତର ୨୫ ପ୍ରତିଶତ ଶିଶୁ ଭୋକିଲା ପେଟରେ ନିଦ ଯାଆନ୍ତି । ଏଡ୍‌ସ ପାଇଁ ଭାରତ ବିଶ୍ୱକୁ ଜୀବନରକ୍ଷାକାରୀ ଆଣ୍ଟି ରେଟ୍ରୋ-ଭାଇରାଲ୍ ଡ୍ରଗ୍ ପ୍ରଦାନ କରିବାରେ ଅଗ୍ରଣୀ ଭୂମିକା ନେଇଥିଲେ ମଧ୍ୟ ଭାରତ ନିଜେ ଦିନକୁ ଦିନ ଏଡ୍‌ସର ଭୟାବହତାର ଶୀକାର ହୋଇ ଚାଲିଛି ।

ଯଦି ଏକବିଂଶ ଶତାବ୍ଦୀ ଅସୁମାରୀ ସୁଖ, ଅନନ୍ତ ବୈଭବ ଓ ଅସାଧାରଣ ପ୍ରଗତିର ପରିଚାୟକ ଭାବେ ସ୍ମରଣୀୟ ହୋଇ ରହିବାକୁ ଚାହେଁ, ତେବେ ଭାରତବର୍ଷକୁ ଏକ ସ୍ୱପ୍ନର ରଣଭୂମୀ ଭାବେ ଉଦ୍‌ଭାସିତ ହେବାକୁ ପଡ଼ିବ । ଏ ଯୁଦ୍ଧ ଜିଣିବା ବିଶ୍ୱ ପାଇଁ କେବଳ ଏକ ଇଚ୍ଛା ନୁହେଁ ବରଂ ଏକ ଆବଶ୍ୟକତା । ତାଙ୍କର ଅତି ପ୍ରିୟ ବିଷୟବସ୍ତୁ 'ସ୍ୱାଧୀନ ବିଶ୍ୱ' ଉପରେ ମତବ୍ୟକ୍ତ କରି ବିଲ୍ କ୍ଲିଣ୍ଟନ କୁହନ୍ତି ଯେ ରାଷ୍ଟ୍ରର ବଡ଼ପଣିଆ ବିଭିନ୍ନ ରୂପରେଖ ମାଧ୍ୟମରେ ପ୍ରକାଶିତ ହେବା ଉଚିତ । ଯଥା : ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ବଳିଷ୍ଠ ଶକ୍ତି ଭାବେ କ୍ରମାଗତ ଦଣ୍ଡାୟମାନ ହେବାର ଦକ୍ଷତା, ବିଶ୍ୱର ନବ ନିର୍ମାଣରେ ସହଯୋଗୀମାନଙ୍କ ହାତ ଧରି ଆଗକୁ ବଢ଼ି ଚାଲିବାରେ ଦକ୍ଷତା; ବିଭାଜନ ଶକ୍ତି, ସନ୍ତ୍ରାସବାଦ, ସଂଗଠିତ ଅପରାଧ, ଗଣ ବିଧ୍ୱଂସର ମାରଣାସ୍ତ୍ର ଏବଂ ଜାତି, ଧର୍ମ, ବର୍ଣ୍ଣ ବୈଷମ୍ୟ ଓ ଆଦିବାସୀମାନଙ୍କ ପ୍ରତି ଅତ୍ୟନ୍ତ ଘୃଣା ଭାବ ଏବଂ ସର୍ବୋପରି ମୂଲ୍ୟବୋଧ ଭିତ୍ତିକ ସହଯୋଗ ଓ ସଦିଚ୍ଛାର ଅନ୍ତଃରାଷ୍ଟ୍ରୀୟ ସଂପର୍କ ପ୍ରତିଷ୍ଠାରେ ଦକ୍ଷତା ।

ରାଷ୍ଟ୍ରପତି କ୍ଲିଣ୍ଟନ କୁହନ୍ତି ଯେ ଭାରତର ଯାତ୍ରା ପଥରେ ଆଗକୁ ଆଗକୁ ବହୁ ଗରୁତ୍ୱପୂର୍ଣ୍ଣ ଚ୍ୟାଲେଞ୍ଜ ଆସି ଉଭା ହେବ ଏବଂ ତନ୍ମଧ୍ୟରୁ ସେ ମୁଖ୍ୟ ଚାରୋଟିର ଅବତାରଣା କରିଥିଲେ । ଯଥା : କାଶ୍ମୀର ସମସ୍ୟା, ପାରମାଣବିକ ଅସ୍ତ୍ରଶସ୍ତ୍ର, ଏଡ୍‌ସ ଏବଂ ସାଂପ୍ରଦାୟିକ ଦଙ୍ଗାର ମହା ଅଭିଶାପ । ବିଲ୍ କ୍ଲିଣ୍ଟନ ଆଶା କରନ୍ତି

ଯେ ଯଦି ଭାରତବର୍ଷ ଏହି ଚାରୋଟି କ୍ଷେତ୍ରରେ ବିପଦର ଆଶଙ୍କାକୁ ଊଣା କରିପାରେ, ଯଦି ଭାରତବର୍ଷ ଅର୍ଥନୈତିକ ଅଭିବୃଦ୍ଧିର ଘୋଡ଼ା ଦୌଡ଼ରେ ଦୁଇ ପାହୁଣ୍ଡ ଆଗରେ ରହିପାରେ, ଯଦି ଭାରତବର୍ଷ ଏହି ହାଇ-ଟେକ୍ ଯୁଗରେ ନିଜର ବୌଦ୍ଧିକ ବୁନିଆଦକୁ ବାଢ଼ି ଲଗେଇ ଦେଇପାରେ; ତେବେ ଭାରତବର୍ଷ ନିଶ୍ଚିତ ରୂପେ ଏକବିଂଶ ଶତାବ୍ଦୀର ସୁପର ହାଇୱେରେ ଏକ ବଳିଷ୍ଠ ସୁପର ପାୱାର ଭାବେ ସଗର୍ବେ ମୁଣ୍ଡ ଟେକି ଠିଆ ହୋଇ ପାରିବ ।

ପ୍ରଥମ ଥର ପାଇଁ ସର୍ବସାଧାରଣଙ୍କ ସାମ୍ନାରେ ବିଲ୍ କ୍ଲିଣ୍ଟନ ମାନିଲେ ଯେ 'କାଶ୍ମୀର ହିଁ ବିଶ୍ୱର ଏକ ଅତ୍ୟନ୍ତ ବିପଦଶଙ୍କୁଳ ସ୍ଥାନ' । ଏହା ବର୍ଣ୍ଣନା କରିବାରେ ସେ ଅତ୍ୟନ୍ତ ବେପରୁଆ ହୋଇଯାଇଥିଲେ । କିନ୍ତୁ ତାଙ୍କ ଅଭିବ୍ୟକ୍ତିର ଅନୁଶୀଳନ କରିବାକୁ ଯାଇ ସେ କୁହନ୍ତି ଯେ ବିଶ୍ୱର କୌଣସି ସ୍ଥାନରେ ଏପରି ଦୁଇ ପଡ଼ୋଶୀ ରାଷ୍ଟ୍ର ନାହାନ୍ତି, ଯେଉଁମାନେ କି ପାରମାଣବିକ ଶକ୍ତି ସମ୍ପନ୍ନ ରାଷ୍ଟ୍ର ଅଟନ୍ତି, ଯାହାଙ୍କ ସୁଦୀର୍ଘ କମନ୍ ବର୍ଡ଼ର ଅଛି, ବିଦ୍ୱେଶର ଲମ୍ବା ଇତିହାସର ଫର୍ଦ୍ଦ ଯେଉଁମାନେ ରଚନା କରିଛନ୍ତି, ଧାର୍ମିକ ଭାବନାକୁ ନେଇ ଯେଉଁଠି ଗଭୀର ଅସ୍ଥିରତା ସୃଷ୍ଟି ହୋଇଥାଏ, ତିନୋଟି ଯୁଦ୍ଧ ଏବଂ ଆଉ ଏକ ଯୁଦ୍ଧର ଦ୍ୱାର ଦେଶରେ ଦଣ୍ଡାୟମାନ ହୋଇଥିବା ରାଷ୍ଟ୍ର ଏବଂ ଯେଉଁଠି ଧାର୍ମିକ ଉଗ୍ରବାଦୀଙ୍କ ଦ୍ୱାରା ବିବାଦର ମଞ୍ଜି ପୋତାଯାଇ ଗଣଚେ଼ତନାର ବହ୍ନିରେ ଅଗ୍ନି ସଂଯୋଗ କରାଯାଇଥାଏ । ଏଭଳି ପରିସ୍ଥିତି ଓ ପରିବେଶ କେବଳ ଭାରତ ଓ ପାକିସ୍ତାନ କ୍ଷେତ୍ରରେ ହିଁ ମିଳିଥାଏ ଏବଂ କେବଳ ଏହି ଦୁଇ ଦେଶ ହିଁ ଏ ସମସ୍ତ ସମସ୍ୟାର ସମାଧାନ କରିପାରିବେ । ବାହାରର ଦେଶ ଏ ସମସ୍ୟାର ଅଗ୍ନିକୁଣ୍ଡରେ ହାତ ପୂରେଇ ପାରିବେ ନାହିଁ । ହାତ ପୂରେଇଲେ ହାତ ପୋଡ଼ିଯିବ । ବଳିଦାନ ବିନା ନୂତନ ସୂର୍ଯ୍ୟୋଦୟର ଆହ୍ୱାନ ଆଦୌ ସମ୍ଭବପର ନୁହେଁ ଏବଂ ରିସ୍କକୁ ମଧ ଅଣ୍ଟି ଭିତରକୁ ସାଉଁଟି ନେବାକୁ ପଡ଼ିବ । ତେବେ ଯାଇ ଉଭୟ ଦେଶ ମଧରେ ସମ୍ପର୍କର ସେତୁବନ୍ଧ ପ୍ରତିଷ୍ଠା ସମ୍ଭବପର ହୋଇ ପାରିବ ।

ବିଲ୍ କ୍ଲିଣ୍ଟନ କୁହନ୍ତି ଯେ କାଶ୍ମୀର ସମସ୍ୟା ଆଇରିସ୍ ସମସ୍ୟା ପରି ସମାଧାନ କରାଯାଇ ପାରିବ । ଆୟାରଲ୍ୟାଣ୍ଡର ଉତ୍ତରାଞ୍ଚଳ ବହୁଳ ପ୍ରୋଟେଷ୍ଟାଣ୍ଟ ଓ ସ୍ୱଳ୍ପ କ୍ୟାଥୋଲିକ୍ ସମ୍ପ୍ରଦାୟର ବାସସ୍ଥଳୀ ହୋଇଥିବାରୁ ତାହା ଆଇରିସ୍ ଗଣତନ୍ତ୍ର ସହ ଭୌଗୋଳିକ ଦୃଷ୍ଟିକୋଣରୁ ଏବଂ ଗ୍ରେଟ ବ୍ରିଟେନ ସହ ଆଇନ ଦୃଷ୍ଟିକୋଣରୁ ବାନ୍ଧି ହୋଇ ଯାଇଛି । କାଶ୍ମୀର ସମସ୍ୟା ସହ ଆଇରିସ୍ ସମସ୍ୟାର ତୁଳନାତ୍ମକ ଅଧ୍ୟୟନ

କରି ବିଲ୍ କ୍ଲିଣ୍ଟନ କୁହନ୍ତି ଯେ ଉଭୟ ପକ୍ଷ କେତେକ ମୌଳିକ ନୀତି ନିୟମକୁ ଆଧାର କରି ତିଷ୍ଠି ରହିଛନ୍ତି । ଯଥା : ସଂଖ୍ୟାଧିକଙ୍କ ଶାସନ ବ୍ୟବସ୍ଥା, 'ସଂଖ୍ୟା ଲଘୁ ସଂପ୍ରଦାୟର ଅଧିକାର, ନିର୍ଣ୍ଣୟ ପ୍ରକ୍ରିୟାରେ ଭାଗିଦାରୀ ତଥା ଅର୍ଥନୈତିକ ଲାଭାଂଶରେ ଭାଗିଦାରୀ ସହ ନିଜସ୍ୱ ସରକାର ପ୍ରତିଷ୍ଠା; ଯାହାକି ଉଭୟ ଆୟାରଲ୍ୟାଣ୍ଡ ଓ ଗ୍ରେଟବ୍ରିଟେନ ସହ ସ୍ୱତନ୍ତ୍ର ସମ୍ପର୍କ ସ୍ଥାପନା କରି ପାରିଲା । ଯଦି ସେମାନେ ନିଜ ଲଢ଼େଇ ନିଜେ ଲଢ଼ି ସମାଧାନର ସରଳ ସୂତ୍ରଟିଏ ଖୋଜି ପାଇ ପାରିଲେ, ତେବେ ଭାରତ କାହିଁକି ଏ ସମସ୍ୟାର ସମାଧାନ କରି ପାରିବ ନାହିଁ ?

ଭାରତ-ପାକିସ୍ତାନ ପାରମାଣବିକ ଅସ୍ତ୍ରଶସ୍ତ୍ର ମୁଦ୍ଦା ଉପରେ ନିଜସ୍ୱ ମତ ବ୍ୟକ୍ତ କରି ବିଲ୍ କ୍ଲିଣ୍ଟନ୍ କୁହନ୍ତି, କୌଣସି ପକ୍ଷର କୌଣସି ନିର୍ଣ୍ଣୟର ଫଳାଫଳ ସମଗ୍ର ବିଶ୍ୱକୁ ପ୍ରଭାବିତ କରିପାରେ ଏବଂ ସେ ସତର୍କ କରେଇ ଦେଇ କୁହନ୍ତି ଯେ, ହଠାତ୍ ଯଦି ଏପରି କୌଣସି ପଦକ୍ଷେପ ନିଆଯାଏ, ତେବେ ତାହା ସମଗ୍ର ବିଶ୍ୱର ସ୍ଥିତିକୁ ଦୋହଲାଇ ଦେବ । ପାକିସ୍ତାନ ପାଇଁ ଏହା ବିଶେଷ ରୂପେ ଜରୁରୀ, କାରଣ ଆଲ୍-କାଏଦାର ଜୋରଦାର ଗତିବିଧି ସଂଗଠିତ ହେଉଥିବା ଅଞ୍ଚଳର ଏହା ପଡ଼ୋଶୀ ରାଷ୍ଟ୍ର ଅଟେ । ବିଲ୍ କ୍ଲିଣ୍ଟନ ଚିନ୍ତା ପ୍ରକଟ କରି କୁହନ୍ତି ଯେ ପାକିସ୍ତାନରେ ସଂରକ୍ଷିତ ଥିବା ପାରମାଣବିକ ଅସ୍ତ୍ରଶସ୍ତ୍ର ଆଲ-କାଏଦା ସଂଗଠନ ଦ୍ୱାରା ବିନାଶ କାର୍ଯ୍ୟରେ ବ୍ୟବହୃତ୍ କରାଯାଇପାରେ, ଉତ୍ତର କୋରିଆକୁ ପାରମାଣବିକ ସଂହାର ଲୀଳାର ଭୟସୃଷ୍ଟି ପରିପ୍ରେକ୍ଷୀରେ ବିଲ୍ କ୍ଲିଣ୍ଟନ ପ୍ରଶ୍ନ କରନ୍ତି ଯେ, ଏକ ବିଂଶ ଶତାବ୍ଦୀରେ ଆମର ବଡ଼ ପଣିଆକୁ ଜାହିର କରିବାର ଏହା କ'ଣ ଏକମାତ୍ର ରାସ୍ତା ? ଅବା ଆମ ସମ୍ମୁଖରେ ସମାଧାନର ଅନ୍ୟ ରାସ୍ତା ମଧ୍ୟ ମୁକୁଳା ଅଛି ?

ଭାରତର ପୃଷ୍ଠଭୂମିରେ ଏଡ୍‌ସର ଭୟାବହତାକୁ ନେଇ ବିଲ୍ କ୍ଲିଣ୍ଟନ ମଧ୍ୟ ଗଭୀର ଚିନ୍ତା ପ୍ରକଟ କରି କୁହନ୍ତି ଯେ, ପ୍ରାୟ ୪ ନିୟୁତ ଭାରତୀୟ ଏବେ ଏଚ୍.ଆଇ.ଭି. ଏଡ୍‌ସର ଶିକାର ହୋଇଛନ୍ତି । ଦେଶର ବିଶାଳ ଜନସମୁଦ୍ର, ଅଗଣିତ ଲୋକସଂଖ୍ୟାରେ ଖୁନ୍ଦାଖୁନ୍ଦି ସହରାଞ୍ଚଳ, ଗରିବ ଜନସାଧାରଣଙ୍କ ଛାତି ଫଟାଫଟି ଭିଡ଼ ଓ ନାନାବିଧ ସାମାଜିକ ବାଧାବନ୍ଧନ ପରିପ୍ରେକ୍ଷୀରେ ଭାରତ ଏହି ବେମାରୀ ପାଇଁ ଏକ ପ୍ରକୃଷ୍ଟ ସ୍ଥଳୀ ଭାବେ ବିବେଚିତ ହେଉଛି । ଏକବିଂଶ ଶତାବ୍ଦୀର ପ୍ରାରମ୍ଭିକ ପର୍ଯ୍ୟାୟରେ ଭାରତର ଅର୍ଥନୈତିକ ଅଭିବୃଦ୍ଧି ଧାରା ଏହା ଦ୍ୱାରା ଗଭୀର ଭାବେ ପ୍ରଭାବିତ ହେବ । ତାଙ୍କର ମତାମତ ଥିଲା ସତର୍କତା ଉପରେ ବହୁଳ ଗୁରୁତ୍ୱ

ଆରୋପ, ଆବଶ୍ୟକୀୟ ଶିକ୍ଷା ଓ ଚିକିତ୍ସା କାର୍ଯ୍ୟକ୍ରମର ପ୍ରଚଳନ ଏବଂ ସର୍ବୋପରି ଏକ ସୁସ୍ଥ ପରବେଶ ଯେଉଁଠିକି ଏଚ୍.ଆଇ.ଭି. - ଏଡ୍ସ ଉପରେ ସମସ୍ତେ ଖୋଲାଖୋଲି ଭାବେ ବିଶଦ ଆଲୋଚନା କରିପାରୁଥିବେ, ସେପରି ଏକ ସୁସ୍ଥ ପରିବେଶର ସୃଷ୍ଟି ।

କ୍ଲିଣ୍ଟନଙ୍କ ଅତି କଡ଼ା ସମାଲୋଚନା ଓ ବିଷୋଦ୍‌ଗାର ସାଂପ୍ରଦାୟିକ ହିଂସାକାଣ୍ଡ ଉପରେ ଅଭିପ୍ରେତ ଥିଲା । ତାଙ୍କ ଅଭିଭାଷଣର ସାରମର୍ମକୁ ବିଶ୍ଳେଷଣ କରି ବିଲ୍ କ୍ଲିଣ୍ଟନ୍ କୁହନ୍ତି ଯେ, ଏହା ଅତ୍ୟନ୍ତ ଦୁଃଖର କଥା, ବିଶ୍ୱ ଆଜି ବି ସେପରି ରାଜନୀତିଜ୍ଞଙ୍କୁ ସମ୍ମାନୀତ କରୁଛି; ଯେଉଁମାନେ ଧର୍ମ ବିଦ୍ୱେଶ, ବର୍ଣ୍ଣ ବୈଷମ୍ୟ, ଜାତିଗତ ପାର୍ଥକ୍ୟ ତଥା ଆଦିବାସୀ-ଅଣ ଆଦିବାସୀ ଭାବନାକୁ ପ୍ରୋତ୍ସାହିତ କରୁଛନ୍ତି । ସାମ୍ୟବାଦ ଚିନ୍ତାଧାରା ଓ ସଦ୍‌ଭାବନା ଉପରେ ଅହରହ କୁଠାରଘାତ ହୋଇ ଚାଲିଛି । କ୍ଲିଣ୍ଟନ କୁହନ୍ତି ଯେ ଆମେରିକାର ରାଷ୍ଟ୍ରପତି ପଦ ତ୍ୟାଗ କରିବା ପରେ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଆନନ୍ଦ ମୁଖର ସମୟ ଥିଲା, ଯେତେବେଳେ ସେ ଗୁଜୁରାଟରେ ସଂଗଠିତ ହୋଇଥିବା ପ୍ରଳୟଙ୍କରୀ ଭୂକମ୍ପ ସମୟରେ ହିନ୍ଦୁ ଓ ମୁସଲମାନ ଭାଇମାନଙ୍କୁ କାନ୍ଧରେ କାନ୍ଧ ମିଳେଇ ଗୁଜୁରାଟର ପୁନଃନିର୍ମାଣ ପ୍ରକ୍ରିୟାରେ ଯୋଗଦାନ ଦେଉଥିବାର ଦେଖିଲେ । ପରନ୍ତୁ ଗୋଧ୍ରା ହିଂସାକାଣ୍ଡ ତାଙ୍କ ଅସ୍ତିତ୍ୱକୁ ଦୋହଲାଇ ଦେଇଥିଲା । ଯେଉଁଠି ହିନ୍ଦୁମାନଙ୍କୁ ଟ୍ରେନରେ ଜଳେଇ ଦିଆଗଲା ଏବଂ ସର୍ବୋପରି ସେ ଅତ୍ୟନ୍ତ ମ୍ରିୟମାଣ ହୋଇ ଭାଙ୍ଗି ପଡ଼ିଥିଲେ, ଯେତେବେଳେ ଗୋଧ୍ରାର ପରବର୍ତ୍ତି ହିଂସାକାଣ୍ଡରେ ବହୁ ମୁସଲମାନ ଭାଇମାନଙ୍କୁ ହତ୍ୟା କରାଗଲା । ଏକ ରିପୋର୍ଟକୁ ଭିତ୍ତିକରି କ୍ଲିଣ୍ଟନ କୁହନ୍ତି ଯେ ଭାରତବର୍ଷରେ ପ୍ରକାଶିତ ନୂଆ ଇତିହାସ ବହି କିପରି ହିନ୍ଦୁମାନଙ୍କର ଗୌରବ ଗାଥା ଓ ମୁସଲମାନଙ୍କର ନୃଶଂସ ବର୍ବରତା ଉପରେ ଟୀକା ଟୀପ୍ପଣୀ କରିଥିଲା । ଯେତେବେଳେ ସେ ଏକ ରିପୋର୍ଟ ପଢ଼ିଲେ ତାଙ୍କ ଶିରା ପ୍ରଶିରାରେ ସତେ ଯେପରି ବରଫ ପାଣିର ଏକ ଥଣ୍ଡା ସୁଅ ଦୌଡ଼ିବାରେ ଲାଗିଲା । ଏହି ଅଭିଭାଷଣ ମାଧ୍ୟମରେ ତାଙ୍କର ପ୍ରଶ୍ନ ଥିଲା - ଭାରତୀୟ ନାଗରିକମାନଙ୍କୁ ଏଭଳି ଭାବେ ଚିହ୍ନଟ କରି ଶ୍ରେଣୀ ବିଭାଜନ ମାଧ୍ୟମରେ ରାଷ୍ଟ୍ରୀୟ ସମାଜ ବ୍ୟବସ୍ଥାର ସର୍ଜନା କରାଗଲେ, ଏକବିଂଶ ଶତାବ୍ଦୀରେ ଭାରତବର୍ଷ ବିଶାଳକାୟ ଦୈତ୍ୟ ହୋଇ ବିଶ୍ୱ ପୃଷ୍ଠଭୂମିରେ ଠିଆ ହେବ କିପରି ?

କ୍ଲିଣ୍ଟନ ମାନନ୍ତି ଯେ ଘୃଣା, ବିଦ୍ୱେଶ, ଅହମିକା ଓ ପରଶ୍ରୀକାତରତା ଭଳି ଜଘନ୍ୟ ମହାରାକ୍ଷସମାନଙ୍କ କବଳରୁ ମୁକୁଳିବା ଏତେ ସହଜସାଧ୍ୟ ବ୍ୟାପାର ନୁହେଁ ଏବଂ ସେ ନିଜେ ମଧ୍ୟ ତାହା ଅଙ୍ଗେ ଅଙ୍ଗେ ଅନୁଭବ କରିଛନ୍ତି । ସେ ପୁଣି କୁହନ୍ତି ଯେ ଗାନ୍ଧିଜୀଙ୍କର ମହାନ୍ ଆଦର୍ଶର ବାର୍ତ୍ତାବହ ଭାବେ ମାର୍ଟିନ ଲୁଥର କିଙ୍ଗ ଆମେରିକାରେ ବର୍ଣ୍ଣବୈଷମ୍ୟର ଭୂତ ସହ ଲଢ଼େଇ କରି ସଫଳତା ପାଇପାରିଥିଲେ ମଧ୍ୟ ଭାରତ ମାଟିରେ ଧର୍ମଗତ ପାର୍ଥକ୍ୟର ମୂଳୋତ୍ପାଟନ ପାଇଁ ଏହି ଦର୍ଶନର ପରିପ୍ରୟୋଗ ଆଶାଜନକ ଭାବେ ଫଳପ୍ରଦ ହୋଇପାରି ନ ଥିଲା । ଅତ୍ୟନ୍ତ ଗର୍ବର ସହିତ କ୍ଲିଣ୍ଟନ ନିଜକୁ ଭାରତର ପରମ ବନ୍ଧୁ ଭାବେ ଘୋଷଣା କରି କୁହନ୍ତି ଯେ ମୁଁ ଆଶା କରୁଛି ମୋର ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ମୁଁ ଭାରତର ବନ୍ଧୁ ହୋଇ ରହିବି । ଭାରତୀୟମାନଙ୍କୁ ଆହ୍ୱାନ ଦେଇ ସେ କୁହନ୍ତି ଯେ, ଆପଣମାନେ କି ପ୍ରକାର ଦୈତ୍ୟ ହେବାକୁ ପସନ୍ଦ ମଣୁଛନ୍ତି, ତା'ର ଠିକ୍ ଠିକ୍ ନିର୍ଣ୍ଣୟ ନିଅନ୍ତୁ ଏବଂ ମୁଁ ଆଶା କରୁଛି ଏବଂ ପ୍ରାର୍ଥନା କରୁଛି ଯେ ଆପଣଙ୍କର ନିର୍ଣ୍ଣୟ ସଠିକ୍ ହେଉ ।

'କ୍ଲିଣ୍ଟନ ମନ୍ତ୍ର' ବା 'କ୍ଲିଣ୍ଟନ ମ୍ୟାଜିକ୍'ର ଏଇଠି ପୂର୍ଣ୍ଣଚ୍ଛେଦ ପଡ଼ି ନ ଥିଲା । ଏହାପରେ ତାଙ୍କ ଅଭିଭାଷଣର ମହିମାମୟ ଶ୍ରୋତାବୃନ୍ଦ ତାଙ୍କୁ କେତେକ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିଥିଲେ, ଯାହାର ଉତ୍ତର ସେ ତାଙ୍କର ମନୋଲୋଭା ବ୍ୟକ୍ତିତ୍ୱର ଛଟା ଓ ସୃଜନଶୀଳତାର ପରାଭବ ମାଧ୍ୟମରେ ପରିବେଷଣ କରିଥିଲେ । 'ଇଣ୍ଡିଆ ଟୁଡ଼େ'ର ଏଡ଼ିଟର-ଇନ-ଚିଫ୍ ଶ୍ରୀ ଅରୁଣ ପୁରୀଙ୍କ ପ୍ରଶ୍ନ - ''ଆମେରିକା କାହିଁକି ଏକତରଫା ନୀତି ନିୟମର ରାସ୍ତାକୁ ଆବୋରି ନେଉଛି ଏବଂ ଭାରତ ପରି ଦେଶମାନେ ଏହା ଫଳରେ ନିଜକୁ ବିପଦ ଶଙ୍କୁଳ ମଣିବେ ନା ନାହିଁ ?'' ପ୍ରଶ୍ନର ଉତ୍ତର ଦେଇ ବିଲ୍ କ୍ଲିଣ୍ଟନ କୁହନ୍ତି ଯେ ଏ ନେଇ ଭାରତର ଚିନ୍ତା ସମ୍ପୂର୍ଣ୍ଣ ନିରାଧାର ଅଟେ । ସେ ପୁନଶ୍ଚ କହନ୍ତି ଯେ ଭାରତ କୌଣସି ଦ୍ୱିଧା ନ କରି ଯେତେବେଳେ ଆମେରିକା କୌଣସି ଭୁଲ୍ କାମ କରୁଛି, ତାହା ଆମେରିକାକୁ ଚେତେଇଦେବା ଉଚିତ । ସେ କୁହନ୍ତି ଯେ ଏକ ରିଜୋଲ୍ୟୁସନ ମାଧ୍ୟମରେ ଇରାକରେ ସର୍ବେକ୍ଷଣ କରାଇବା ପାଇଁ ରାଷ୍ଟ୍ରପତି ଜର୍ଜ ବୁଶ ମିଳିତ ଜାତିସଂଘକୁ ଯାଇ ଠିକ୍ କରିଛନ୍ତି, ଯାହାକି ଏକ ଆନ୍ତର୍ଜାତିକ ସର୍ବସମ୍ମତ ମତ ମାଧ୍ୟମରେ କରାଯାଇ ଥାଆନ୍ତା । ଏସବୁ ସତ୍ତ୍ୱେ ମଧ୍ୟ ଆମେରିକା ଅତ୍ୟଧିକ ଏକତରଫା ଭାବେ ପରିସ୍ଥିତିକୁ ବିଚାର କରୁଛି ବୋଲି ମୁଁ ମାନୁଛି ଏବଂ ଏହା ଏକ ଅତ୍ୟନ୍ତ ଖରାପ କଥା ।

ତା'ପରେ ଶିଳ୍ପପତି ଆନନ୍ଦ ମହିନ୍ଦ୍ରଙ୍କ ପ୍ରଶ୍ନ ଥିଲା - ''ଆମେରିକା ସହ ଭାରତର ବନ୍ଧୁତ୍ୱର ରୂପ କିପରି ଏବଂ ଆମେରିକାକୁ ଭାରତର ଏକ ସହାଯୋଗୀ ରାଷ୍ଟ୍ର ଭାବେ ଆକର୍ଷଣୀୟ ବା ଅଣଆକର୍ଷଣୀୟ କରାଇବା ପାଇଁ ଆବଶ୍ୟକ ହେଉଥିବା ବିଭିନ୍ନ ମୌଳିକ ଉପାଦାନ ଗୁଡ଼ିକ କ'ଣ ? ଉତ୍ତରରେ ବିଲ୍ କ୍ଲିଣ୍ଟନ ଦୁଇଟି ନିର୍ଦ୍ଦିଷ୍ଟ ସମନ୍ୱୟତାର କ୍ଷେତ୍ର ଉପରେ ଆଲୋକପାତ କରି କୁହନ୍ତି ଯେ ଭାରତବର୍ଷରେ ଥିବା ହାଇ-ଟେକ୍ ସେଣ୍ଟର ଗୁଡ଼ିକର ଅସାଧାରଣ ସାଫଲ୍ୟ ଏବଂ ଆମେରିକାରେ ଥିବା ସେମାନଙ୍କର ସହଯୋଗୀମାନଙ୍କର କ୍ରମାଗତ ଅଭିବୃଦ୍ଧି ଗୋଟିଏ କ୍ଷେତ୍ର ବୋଲି କୁହାଯାଇପାରେ । ଅନ୍ୟ କ୍ଷେତ୍ରଟି ହେଲା ଆଗାମୀ ଦିନରେ ଭାରତ ଓ ଆମେରିକା ମଧ୍ୟରେ ବୃହତ୍ତର ରାଜନୈତିକ ସହଯୋଗ ଓ ସଦିଚ୍ଛାର ସେତୁବନ୍ଧ ପ୍ରତିଷ୍ଠା ।

ପରବର୍ତ୍ତୀ ପ୍ରଶ୍ନଟି ପାର୍ଲାମେଣ୍ଟ ସଦସ୍ୟ ଜୟ ପଣ୍ଡାଙ୍କର ଥିଲା । ପ୍ରଶ୍ନଟି ଥିଲା ଆମେରିକାର ପୂର୍ବତନ ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ ତାଙ୍କର ରାଷ୍ଟ୍ରପତିତ୍ୱ କାଳରେ ନେତୃତ୍ୱର ୧୬ କଳା ବିଷୟରେ କ'ଣ ଶିକ୍ଷା ଲାଭ କରିଛନ୍ତି ? କ୍ଲିଣ୍ଟନଙ୍କ ଉତ୍ତର ଥିଲା - ରାଷ୍ଟ୍ରପତି ପଦ ଯେ କୌଣସି ଚାକିରି ପରି ଏକ ଚାକିରି, ଯେପରିକି ଭାରତର ପ୍ରଧାନମନ୍ତ୍ରୀ ପଦ ମଧ୍ୟ ଏକ ଚାକିରି ଏବଂ ଆପଣଙ୍କୁ ନିର୍ଣ୍ଣୟ ନେବାକୁ ପଡ଼ିବ ଏ ଚାକିରିଟି କ'ଣ ? ଉପଯୁକ୍ତ ଶିକ୍ଷା ହେବ ସେତିକି ବେଳେ ଯେତେବେଳେ ରାଷ୍ଟ୍ରପାଇଁ କଠିନରୁ କଠିନତମ ନିର୍ଣ୍ଣୟ ନିଆଯାଇ ପାରୁଥିବ, ରାଷ୍ଟ୍ରର ଅତୀତକୁ ସଠିକ୍ ଅନୁଶୀଳନ କରାଯାଇ ପାରୁଥିବ, ରାଷ୍ଟ୍ରର ଭବିଷ୍ୟତକୁ ନେଇ ଦିବା ସ୍ୱପ୍ନ ଦେଖା ଯାଇ ପାରୁଥିବ ଏବଂ ଭବିଷ୍ୟତର ଚ୍ୟାଲେଞ୍ଜ ସହ ସିଧାସଳଖ ଆଖିରେ ଆଖି ମିଳେଇ ଆବଶ୍ୟକୀୟ ଷ୍ଟ୍ରାଟେଜୀର ପ୍ରବର୍ତ୍ତନ କରାଯାଇ ପାରୁଥିବ । ସେତେବେଳେ ଯାଇଁ ସମୟ ନୂଆ ମୋଡ଼ ନେବ । ତାଙ୍କ ପାଇଁ ଦ୍ୱିତୀୟ ଶିକ୍ଷାଟି ଥିଲା - ଯେ କୌଣସି ଘଟଣାକୁ ତନ୍ନତନ୍ନ କରି ବୁଝିବା ଏବଂ ବୁଝି ସାରିଲା ପରେ ଘଟଣାଟିକୁ ମୁଁ ଦେଖିନି, ଘଟଣାଟି ବିଷୟରେ ମୁଁ ବିନ୍ଦୁ ବିସର୍ଗ ବି ଜାଣିନି ବା ଘଟଣାଟି ମୁଁ ଅଙ୍ଗେ ଅନୁଭବ କରିନାହିଁ, ତେଣୁ ପ୍ରେସ ପାଖରେ ଏ ବିଷୟରେ କୌଣସି ମତେ ନାସ୍ତି ସୂଚନା ଦେଇ ଖସିଗଲେ ଗଲା । ସବୁଜାଣି କିଛି ନ ଜାଣିବାର ଅଭିନୟ କରିବା, ସବୁ କହି କିଛି କହି ନ ଥିବାର ଭଣ୍ଡାମି କରିବା ଏକ ମହତ୍ କଳାରେ ପରିଣତ ହୋଇଗଲାଣି ।

ଶେଷ ପ୍ରଶ୍ନଟି ପୁଣି ଅରୁଣ ପୁରୀଙ୍କ ଥିଲା । ପ୍ରଶ୍ନଟି ଥିଲା - ''ଆପଣ ଯଦି ଭାରତର ପ୍ରଧାନମନ୍ତ୍ରୀ ହୋଇଥାଆନ୍ତେ, ତା'ହେଲେ କେଉଁ ବିଷୟଟି ପ୍ରତି ଆପଣ ସର୍ବାଧିକ ପ୍ରାଧାନ୍ୟ ଦେଇଥାନ୍ତେ ?'' ଏହା ଏକ ଅନ୍ତହୀନ ପ୍ରଶ୍ନ ବୋଲି ସ୍ୱୀକାର କରି ବିଲ୍ କ୍ଲିଣ୍ଟନ କୁହନ୍ତି ଯେ ଅନ୍ତର୍ଦ୍ଦେଶୀୟ ବିକାଶର ଧାରାକୁ ତ୍ୱରାନ୍ୱିତ କରିବା ପାଇଁ ମୋର ପ୍ରାଥମିକ ଧ୍ୟେୟ ହେବ ଏକ ଉତ୍ତମ ଅର୍ଥନୈତିକ ପଲିସି ଫ୍ରେମଓ୍ୱାର୍କର ପ୍ରସ୍ତୁତି, ଯାହାର ସାହଚର୍ଯ୍ୟରେ ଅସାଧାରଣ ଅଭିବୃଦ୍ଧି, ଅଫୁରନ୍ତ ସୁଯୋଗ ଓ ସମୟ ଉପଯୋଗୀ ଶିକ୍ଷା ପ୍ରଦାନ କରି ଭାରତର ସର୍ବାଙ୍ଗୀନ ଅଭିବୃଦ୍ଧି ସାଧିତ କରାଯାଇ ପାରିବ । ବୈଦେଶିକ ନୀତି ନିୟମ ପରିପ୍ରେକ୍ଷୀରେ କ୍ଲିଣ୍ଟନ ଅନୁଭବ କରନ୍ତି ଯେ ପାକିସ୍ତାନ ସହ ଥିବା ଭାରତର ଅସୁବିଧାକୁ ଦୂର କରି ଏକ ସୁବିଧା ଜନକ ପରିସ୍ଥିତିର ସୃଷ୍ଟି କରିବା ତାଙ୍କ ପାଇଁ ପ୍ରାଥମିକ ଲକ୍ଷ୍ୟ ହେବ । ଯଦି ସମାଧାନର ଉଚିତ ସୂତ୍ର ଖୋଜି ନ ମିଳେ, କମ୍ ସେ କମ୍ ଏପରି ଏକ ବ୍ୟବସ୍ଥା ହେବା ଦରକାର ଯେଉଁଠି ଉଭୟ ଦେଶ ମଧ୍ୟରେ ଏକ ନ୍ୟୁନତମ ପାରସ୍ପରିକ ବୁଝାମଣା ରହିବା ଦରକାର, ଯେଉଁଠି ଆପଣ ନିଶ୍ଚିତ ଥିବେ କି ଦୁଇଦେଶ ମଧ୍ୟରେ କସ୍ମିନ କାଳେ ଅତ୍ୟନ୍ତ ବିପଦ୍‌ଜନକ ପରିସ୍ଥିତି କେବେ ବି ସୃଷ୍ଟି ହେବ ନାହିଁ । କ୍ଲିଣ୍ଟନ ପୁଣି କହନ୍ତି ଯେ ମୁଁ ଆଶା କରୁଛି ଭାରତ ଭୂଖଣ୍ଡ ଯାହାକି ଦିନେ 'ଆର୍ଯ୍ୟାବର୍ତ୍ତ' ଭାବେ ଗଗନ ପବନ ପ୍ରକମ୍ପିତ କରୁଥିଲା, ସେହି ଭାରତବର୍ଷକୁ ମୁଁ ଏପରି ଭାବେ ଗଢ଼ି ତୋଳିବାକୁ ଚାହେଁ ଯେଉଁଠି ଭାରତର ଗଭୀରତମ ଧାର୍ମିକ ଐତିହ୍ୟ ସହ କୌଣସି ଦ୍ୱନ୍ଦ୍ୱ ନ କରି ସବୁ ଧର୍ମ ସଂପ୍ରଦାୟର ଲୋକେ ମିଳିମିଶି ସୁଖଶାନ୍ତିରେ ଜୀବିକା ନିର୍ବାହ କରୁଥିବେ । ଏଇମିତି ଏକ ଭାରତବର୍ଷର ସ୍ୱପ୍ନ ଦେଖିବାକୁ ମୁଁ ଖୁବ୍ ଭଲ ପାଇବି ।

ଯୋଜନା - ଓଡ଼ିଆ
ଜୁଲାଇ, ୨୦୦୩



# ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ଭାରତବର୍ଷକୁ ଏକ ବିକଶିତ ରାଷ୍ଟ୍ରରେ ରୂପାନ୍ତରିତ କରିବ

**ଯେ**ତେବେଳେ ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭ ଦେଶ ଆଗରେ ଏକ ଜଟିଳ ପ୍ରଶ୍ନ ଉତ୍‌ଥାପନ କଲା - ''ଭାରତ ଏକ ବିଶାଳକାୟ ଦୈତ୍ୟ ନା ଏକ କ୍ଷୁଦ୍ର ବାମନ !'', ମହାମହିମ ରାଷ୍ଟ୍ରପତି ତଥା ମିଶାଇଲ ମ୍ୟାନ୍ ଡକ୍ଟର ଏ.ପି.ଜେ ଅବଦୁଲ କଲାମ ତା'ର ଉତ୍ତରରେ କୁହନ୍ତି ଯେ - ନିକଟ ଅତୀତରେ ମୁଁ ନାଗାଲ୍ୟାଣ୍ଡ ପରିଦର୍ଶନରେ ଯାଇଥିବା ବେଳେ ସେଠାରେ ଛାତ୍ରମାନଙ୍କୁ ଭେଟିବା ଅବସରରେ ମୋର ଗୋଟିଏ ଘଟଣା ମନେ ପଡ଼ି ଯାଉଛି, ଯାହାର ଉପସ୍ଥାପନା ଏଠାରେ ପ୍ରଣିଧାନ ଯୋଗ୍ୟ । ମତେ ଜଣେ ୫ମ ଶ୍ରେଣୀ ଛାତ୍ର ପ୍ରଶ୍ନ କଲା ଯେ ସେ ଏକ ନିରାପଦ, ଶାନ୍ତିପୂର୍ଣ୍ଣ, ସୁଖ ଓ ସମୃଦ୍ଧିମୟ ଭାରତବର୍ଷରେ ବଞ୍ଚିବାକୁ ଚାହୁଁଛି । ହେ ମହାମହିମ ରାଷ୍ଟ୍ରପତି ମହୋଦୟ ! ମତେ ଆପଣ ଏମିତି ଗୋଟିଏ ଭାରତବର୍ଷ ଟେକି ଦେଇପାରିବେ କି ? ମତେ ମଧ୍ୟ ଆପଣ କୁହନ୍ତୁ ଏମିତି ଗୋଟିଏ ଭାରତବର୍ଷ ପାଇବା ପାଇଁ ମତେ କ'ଣ ବା କରିବାକୁ ପଡ଼ିବ ? ଦେଶର ୧୭ଟି ରାଜ୍ୟର ସ୍କୁଲ ପିଲାମାନଙ୍କ ସହ ଭାବର ଆଦାନ ପ୍ରଦାନ କରିବା ସମୟରେ ଏପରି ଏକାଧିକ ପ୍ରଶ୍ନବାଣ ମତେ ଜର୍ଜରିତ କରିଦେଇ ଥିଲା, ଏତଦ୍ ବ୍ୟତୀତ ତିନୋଟି କେନ୍ଦ୍ରଶାସିତ ଅଞ୍ଚଳ ମଧ୍ୟ ମୁଁ ପରିଦର୍ଶନ କରିଛି ଏବଂ ସେଠାରେ ମଧ୍ୟ ପିଲାମାନଙ୍କର ସେହି ମାନସିକତା, ସେହି ଉତ୍ସୁକତା, ସେହି ଭାବାବେଗ, ସେହି ଜୀବନ ଦର୍ଶନ ଓ ସେହି ସ୍ୱପ୍ନ ସାଗର ।

ଡକ୍ଟର କଲାମ କୁହନ୍ତି ଯେ ବେଳେବେଳେ ମୁଁ ଅନୁଭବ କରେ ଯେ ବିଲିୟନ ଲୋକଙ୍କ ଏକ ଦେଶ ମିଲିୟନ ଲୋକଙ୍କ ଏକ ଦେଶଭଳି କାହିଁକି ବ୍ୟବହାର ଦେଖାଉଛି ? ଏହା କାହିଁକି ହେଉଛି ? ଏହାର ଗୂଢ଼ ରହସ୍ୟଟି କ'ଣ ? ମୁଁ ମନେ କରୁଛି ଭାରତବର୍ଷ ଭଳି ଏକ ଦେଶ ପୃଥିବୀରେ ବିରଳ, ଯାହାର ମହାନ ଗୌରବୋଜ୍ଜ୍ୱଳ ଐତିହ୍ୟ ଓ କାଳଜୟୀ ସଭ୍ୟତାର କୌଣସି ପଟାନ୍ତର ନାହିଁ । ଏହା

ସତ୍ୟ ଯେ ଭାରତୀୟମାନେ ପ୍ରାୟତଃ ସୁଖ ସ୍ୱାଚ୍ଛନ୍ଦ୍ୟ ଭରା ଶାନ୍ତିମୟ ଜୀବନ ଯାପନ କରିଥାନ୍ତି । ଇତିହାସ ସାକ୍ଷୀ ବହୁ ଘାତ ପ୍ରତିଘାତ ଓ ବହିଃ ଆକ୍ରମଣକୁ ପିଠେଇ ଦେଇ ସମ୍ରାଟ ଭରତଙ୍କ ଏ ଦେଶ ଭାରତବର୍ଷ ସଗର୍ବେ ଆଜି ବିଶ୍ୱ ପୃଷ୍ଠରେ ଦଣ୍ଡାୟମାନ । ଭାରତୀୟମାନଙ୍କର ଉର୍ବର ମସ୍ତିଷ୍କ କ୍ରମାନ୍ୱୟ ଭାବେ ଚାଲିଆସିଥିବା ଗୋଟିକ ପରେ ଗୋଟିଏ ବହିଃ ଆକ୍ରମଣକୁ ହଜମ କରିଦେଇ ନାନାବିଧ ସଭ୍ୟତାକୁ ନିଜ ଭିତରେ ଆଦରି ନେଇଛି । ଏବେ ବେଳ ଆସିଛି, ଆମର କୌଣସି ଧର୍ମ କିମ୍ବା ବ୍ୟକ୍ତିକେନ୍ଦ୍ରିକ ଫାନାଟିସିଜ୍ମକୁ ଆମ ଭିତରେ ପ୍ରଶ୍ରୟ ଦେବା ଉଚିତ ନୁହେଁ, ଯାହାକି ଆମ ଦେଶ ପ୍ରତି ବିପଦ ସୃଷ୍ଟି କରିବ । କାରଣ ରାଷ୍ଟ୍ର ସବୁବେଳେ ବ୍ୟକ୍ତି, ରାଜନୈତିକ ଦଳ କିମ୍ବା ଧର୍ମଠୁଁ ବହୁ ଉର୍ଦ୍ଧ୍ୱରେ ।

ଏପରିକି ଧନୀ ଓ ବିକଶିତ ରାଷ୍ଟ୍ରମାନେ ଅଜସ୍ର ସମ୍ପତ୍ତି ଏବଂ ସାମରିକ ଶକ୍ତିର ମାଲିକ ହୋଇ ମଧ୍ୟ ସେମାନଙ୍କର ପ୍ରଚ୍ଛାୟା ଶତ୍ରୁମାନଙ୍କର ଭୟ ଦ୍ୱାରା ଆକ୍ରାନ୍ତିତ ହୋଇ ରହିଥାଆନ୍ତି ଏବଂ ଏହି ଭୟର ପରାଭବ ମଧ୍ୟରେ ସେମାନେ ବଞ୍ଚି ରହି ଥାଆନ୍ତି । ପୃଥିବୀର ଗତିଶୀଳତା ଆମ ଆଗରେ ପ୍ରମାଣ କରି ଦେଉଛି ଯେ କେବଳ ଅସୁମାରୀ ଅର୍ଥନୈତିକ ବୈଭବ ଏବଂ ପ୍ରଚଣ୍ଡ ସାମରିକ ଶକ୍ତି କୌଣସି ରାଷ୍ଟ୍ରକୁ ଅଖଣ୍ଡ ଶାନ୍ତି ପ୍ରଦାନ କରିପାରିବ ନାହିଁ । ଏପରି ଏକ ପରିସ୍ଥିତିରେ ଏହା ଅତ୍ୟନ୍ତ ଜରୁରୀ ହୋଇ ପଡୁଛି କିପରି ଆମେ ଆମର ଧାର୍ମିକ ଶକ୍ତି ଗୁଡ଼ିକୁ ଆଧିଭୌତିକ ଶକ୍ତି ବା ଦିବ୍ୟ ଶକ୍ତିରେ ରୂପାନ୍ତରିତ କରି ପାରିବା । ଅର୍ଥନୈତିକ ସମୃଦ୍ଧି ଓ ସାମରିକ ଶକ୍ତି ସହିତ ଏହି ଦିବ୍ୟ ଶକ୍ତିର ଜାଗରଣ ହୋଇ ପାରିଲେ ତାହା ରାଷ୍ଟ୍ରକୁ ଅଖଣ୍ଡ ସୁଖ, ଶାନ୍ତି ଓ ସମୃଦ୍ଧି ପ୍ରଦାନ କରି ପାରିବ ।

ରାଷ୍ଟ୍ରପତି ମହୋଦୟ ସ୍ୱାଧୀନୋତ୍ତର ଭାରତବର୍ଷର ମୂଲ୍ୟାୟନ କରିବାକୁ ଯାଇ କୁହନ୍ତି ଯେ ୧୯୪୭ ମସିହାରେ ଆମେ ସ୍ୱାଧୀନତା ଲାଭ କଲୁ ଯାହାକୁ କି ମୁଁ ଭାରତବର୍ଷ ପାଇଁ ପ୍ରଥମ ଦୃଷ୍ଟିକୋଣ ବୋଲି କହିଥାଏ । ଏହି ଦୃଷ୍ଟିକୋଣ ରାଜନୀତି, ଦର୍ଶନ, ନ୍ୟାୟ ପାଳିକା, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଏବଂ ଶିଳ୍ପ କ୍ଷେତ୍ରରେ ବହୁ ରାଷ୍ଟ୍ରୀୟ ନେତୃତ୍ୱ ସୃଷ୍ଟିକଲା । ସାକ୍ଷରତା, କୃଷି ଉତ୍ପାଦନ, ଷ୍ଟ୍ରାଟେଜିକ୍ ଏରିଆ ଏବଂ କେତେକ କ୍ଷୁଦ୍ର ଓ ବୃହତ୍ ଶିଳ୍ପ ପରି ଜୀବନର ବହୁ କ୍ଷେତ୍ରରେ ଆଖିଦୃଶିଆ ପ୍ରଗତି ପରିଲକ୍ଷିତ ହୋଇଛି । ସ୍ୱାଧୀନତା ପ୍ରାପ୍ତିର ୫୯ ବର୍ଷ ବିତିଗଲା ପରେ ମଧ୍ୟ ଏବେ ବି ଭାରତବର୍ଷକୁ ବିଶ୍ୱର ଶହେଟି ବିକାଶଶୀଳ ରାଷ୍ଟ୍ର ମଧ୍ୟରୁ ଗୋଟିଏ ରାଷ୍ଟ୍ର

ବୋଲି ପରିଗଣିତ କରାଯାଉଛି, ଯାହାକି ଜି-୮ ରାଷ୍ଟ୍ର ସମୂହରୁ ଏକ ସମ୍ପୂର୍ଣ୍ଣ ଅଲଗା ଗୋଷ୍ଠୀ ଭାବେ ପରିଚିତ । ଆମ ଦେଶର ବହୁ ସମସ୍ୟା ରହିଛି । ପ୍ରାୟ ୨୬୦ ନିୟୁତ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ଅଛନ୍ତି, ଯେଉଁମାନଙ୍କୁ ଉତ୍ତମ ଜୀବନ ଯାପନର ମୁଖ୍ୟ ଧାରାରେ ଆମକୁ ସାମିଲ କରାଇବାକୁ ପଡ଼ିବ । ଶହେ ପ୍ରତିଶତ ସାକ୍ଷରତା, ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ, ଶିଳ୍ପ ଓ କୃଷି ଉତ୍ପାଦକତାରେ ମାତ୍ରାଧିକ ଅଭିବୃଦ୍ଧି ଏବଂ ମୂଲ୍ୟବୋଧଯୁକ୍ତ ଜୀବନଯାତ୍ରା ଶୈଳୀ ଆମକୁ ହାସଲ କରିବାକୁ ପଡ଼ିବ । ତେଣୁ ବିକଶିତ ଭାରତବର୍ଷର ସର୍ଜନା ପାଇଁ ଦ୍ୱିତୀୟ ଦୃଷ୍ଟିକୋଣର ଆବଶ୍ୟକତା ରହିଛି ଏବଂ ଏ ଆବଶ୍ୟକତା ରାଷ୍ଟ୍ର ପାଇଁ ଏକ ଯୁଗାନ୍ତକାରୀ ଆହ୍ୱାନ ଅଟେ ।

ସ୍ୱାଧୀନତା ଲାଭ ପରେ ଭାରତବର୍ଷ ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ ବିକାଶର ରାସ୍ତାରେ ଆଗକୁ ଆଗକୁ ମାଡ଼ି ଚାଲିଲା । ବିଶେଷ କରି ଗତ ଦୁଇ ଦଶନ୍ଧିରେ ସବୁଜ ବିପ୍ଳବ ଓ ପ୍ରଯୁକ୍ତି ବିଦ୍ୟାଭିତ୍ତିକ ଅଭିବୃଦ୍ଧି ଭାରତବର୍ଷକୁ ସୌଭାଗ୍ୟଶାଳୀ କରି ଗଢ଼ି ତୋଳିଲା, ଯାହାକି ଖାଦ୍ୟରେ ସ୍ୱାବଲମ୍ବନଶୀଳ କରାଇବା ସଙ୍ଗେ ସଙ୍ଗେ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ମଧ୍ୟ ସଫଳତା ଆଣି ଦେଲା । ଏକ ଅଭୂତପୂର୍ବ ତଥା ଅସାଧାରଣ ପରିବର୍ତ୍ତନର ସ୍ୱାଦ ଭାରତବର୍ଷ ସେତେବେଳେ ଚାଖିଲା, ଯେତେବେଳେ ବିଶ୍ୱ ପୃଷ୍ଠଭୂମିରେ ସୂଚନା ଯୁଗର ଆବିର୍ଭାବ ହେଲା ଏବଂ ସୂଚନା ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଭାରତ ନିଜର ଅହେତୁକ ପରାକାଷ୍ଠା ଓ ବଳିଷ୍ଠ ମୌଳିକ ଦକ୍ଷତା ପ୍ରତିପାଦିତ କଲା । ଆଜି ଭାରତବର୍ଷ ଜ୍ଞାନ ଯୁଗରେ ପଦାର୍ପଣ କରିଛି, ଯାହାକି ରାଷ୍ଟ୍ରକୁ ଏକ ବଳିଷ୍ଠ ଅର୍ଥନୈତିକ ମହାଶକ୍ତି ଭାବେ ଉଦ୍‌ଭାସିତ କରାଇବା ସଙ୍ଗେ ସଙ୍ଗେ ଏକ ବିକଶିତ ରାଷ୍ଟ୍ରଭାବେ ଗଢ଼ି ତୋଳିବା ପାଇଁ ସମସ୍ତ ସୁଯୋଗ ପ୍ରଦାନ କରିବ ।

ଏକବିଂଶ ଶତାବ୍ଦୀରେ ଏକ ଅଭିନବ ସମାଜ ବ୍ୟବସ୍ଥା ମୁଣ୍ଡଟେକି ଠିଆ ହେଉଛି, ଯେଉଁଠି ଅର୍ଥ ଓ ଶ୍ରମ ପରିବର୍ତ୍ତେ ଜ୍ଞାନ ହିଁ ଏକ ମୌଳିକ ଉତ୍ପାଦନ ବସ୍ତୁ ଭାବେ ବିବେଚିତ ହେବ । ଜନସାଧାରଣଙ୍କ ଜୀବନଯାପନ ଶୈଳୀ ସୂଚନା ପ୍ରଯୁକ୍ତି ବିଦ୍ୟା ଦ୍ୱାରା ବହୁଳ ଭାବେ ଲାଭବାନ ହେବ । ଏହା ଭବିଷ୍ୟବାଣୀ କରାଯାଉଛି ଯେ ମାନବ ସଭ୍ୟତା ଯେ କୌଣସି ଏକ ଗ୍ରହରେ ନିଜର ଆବାସସ୍ଥଳୀ ଗଢ଼ି ତୋଳିବ ଏବଂ ପୃଥିବୀରେ ଆବଶ୍ୟକ ହେଉଥିବା ବିଦ୍ୟୁତ୍ ଶକ୍ତିର ଚାହିଦା ମହାକାଶରୁ ସୌରଶକ୍ତିର ବିକିରଣ ଦ୍ୱାରା ମେଣ୍ଟି ପାରିବ । ମଣିଷର ଜୀବନଯାତ୍ରା ଶୈଳୀ

ଗବେଷଣାଲବ୍ଧ ଜ୍ଞାନ କୌଶଳର ଫଳାଫଳ ଉପରେ ଅଧିକରୁ ଅଧିକତର ନିର୍ଭରଶୀଳ ହେବ । ନାନୋ-ଟେକ୍ନୋଲୋଜି ମଣିଷର ବ୍ୟବହାରରେ ଦିନକୁ ଦିନ ଅଧିକରୁ ଅଧିକତର ଉପଲବ୍ଧ ହେବ । ବିଶେଷ କରି ବିଭିନ୍ନ ଗମନାଗମନ ବ୍ୟବସ୍ଥାର ନିୟନ୍ତ୍ରଣ ପ୍ରକ୍ରିୟା, ମେଡ଼ିକାଲ୍ ଟେକ୍ନୋଲୋଜିରେ ବ୍ୟବହୃତ ହେଉଥିବା ଯନ୍ତ୍ରପାତି ଓ ମହାକାଶ ବ୍ୟବସ୍ଥାରେ ଏହାର ପ୍ରାଧାନ୍ୟ ବହୁଳ ଭାବେ ଅନୁଭୂତ ହେବ ।

ପ୍ରାୟ ବହୁ ବିକଶିତ ରାଷ୍ଟ୍ରରେ ସୂଚ଼ନା ଓ ଯୋଗାଯୋଗ ପ୍ରଯୁକ୍ତି ବିଦ୍ୟା ସେକ୍ଟର ଗୁଡ଼ିକ ସେହି ଦେଶର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନକୁ ସିଧାସଳଖ ଭାବେ ୭ ରୁ ୮ ପ୍ରତିଶତ ଯୋଗଦାନ ଦେଇଥାନ୍ତି । ଏହା ଆଶା କରାଯାଉଛି ଯେ ୨୦୧୦ ମସିହା ସୁଦ୍ଧା ଏହି ରାଷ୍ଟ୍ର ଗୁଡ଼ିକରେ ସୂଚ଼ନା ଓ ଯୋଗାଯୋଗ ପ୍ରଯୁକ୍ତି ବିଦ୍ୟା ସେକ୍ଟର ଗୁଡ଼ିକ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନକୁ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବେ ୨୫ ପ୍ରତିଶତ ଯୋଗଦାନ ଦେବେ । ପ୍ରତ୍ୟକ୍ଷ ଯୋଗଦାନ କହିଲେ ହାର୍ଡ଼ୱେୟାର ଓ ସଫ୍ଟୱେୟାରର ବିକ୍ରୀବଟା ଓ ପରୋକ୍ଷ ଯୋଗଦାନ କହିଲେ ଇ-ଗଭର୍ଣ୍ଣାନ୍ସର ପ୍ରଚ଼ଳନ, ଉତ୍ପାଦକତାରେ ମାତ୍ରାଧିକ ଅଭିବୃଦ୍ଧି, ଶିଳ୍ପ ବିକାଶ ଏବଂ ଜନଜୀବନରେ ଅପରିସୀମ ଦକ୍ଷତା ଓ ଅସାଧାରଣ ସ୍ୱଚ୍ଛତାର ପ୍ରଦର୍ଶନକୁ ପ୍ରାୟ ବୁଝାଇଥାଏ । ଭାରତବର୍ଷରେ ସୂଚ଼ନା ଓ ଯୋଗାଯୋଗ ସେକ୍ଟର ଗୁଡ଼ିକର ଦେଶର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନକୁ ଯୋଗଦାନ ପ୍ରାୟ ୨ ପ୍ରତିଶତ ଅଟେ । ଏକ ବିକଶିତ ରାଷ୍ଟ୍ର ହେବାକୁ ହେଲେ ଆମକୁ ଏହି ପ୍ରତିଶତର ମାତ୍ରାରେ ଆଶାତୀତ ବୃଦ୍ଧି ଆଣିବାକୁ ପଡ଼ିବ ।

ସୂଚ଼ନା ସୁରକ୍ଷା, ବିଜ୍ଞାନ ଭିତ୍ତିକ ସଫ୍ଟୱେୟାରର ବିକାଶ, ଇ-ଗଭର୍ଣ୍ଣାନ୍ସ, ମନୋରଞ୍ଜନ, ଶିକ୍ଷା, ହାର୍ଡ଼ ୱେୟାର, କମ୍ପ୍ୟୁଟର ଚିପ୍‌ର ଡିଜାଇନ ଏବଂ ବେତାର ଆଦି କ୍ଷେତ୍ରରେ ଭାରତବର୍ଷର ମୌଳିକ ଦକ୍ଷତା ବୃଦ୍ଧି କରାଯିବାର ଆବଶ୍ୟକତା ରହିଛି । ଆମେ ଯଦି ଏଭଳି କୋର୍-କଂପିଟେନ୍ସି କ୍ଷେତ୍ରରେ ନିଜର ଦକ୍ଷତା ପ୍ରତିପାଦିତ କରି ପାରିବା, ତେବେ ଯାଇ ଆମେ ଭାରତୀୟ ବହୁ-ରାଷ୍ଟ୍ରୀୟ କମ୍ପାନୀ ସୃଷ୍ଟି କରି ପାରିବା ଏବଂ ୨୦୧୦ ମସିହା ସୁଦ୍ଧା ୧୫୦ ବିଲିୟନ ଡଲାର ରୋଜଗାର କରିବାର ଲକ୍ଷ୍ୟ ଧାର୍ଯ୍ୟ କରି ପାରିବା ।

ଆଉ ଗୋଟିଏ କ୍ଷେତ୍ର ଯେଉଁଥିରେ କି ଆମେ ଆମର କୋର- କମ୍ପିଟେନ୍ସି ବୃଦ୍ଧି କରି ପାରିବା, ତାହା ହେଲା ବାୟୋଟେକ୍ନୋଲୋଜି ବା ଜୈବ ପ୍ରଯୁକ୍ତି ବିଦ୍ୟା,

ଭାରତୀୟ ଜଙ୍ଗଲଜାତ ଔଷଧୀୟ ଜଡ଼ି ବୁଟି ବା ହର୍ବ୍ସ, ଜର୍ମପ୍ଲାଜମ୍ ଏବଂ ମାଇକ୍ରୋ-ଅର୍ଗାନିଜମ୍ । ଏ ସମସ୍ତ କ୍ଷେତ୍ରରେ ଭାରତର ପ୍ରାଧାନ୍ୟ ସର୍ବଜନାଦୃତ । ଶିଳ୍ପୋନ୍ନତ ରାଷ୍ଟ୍ରମାନେ ଏଭଳି ବାୟୋ-ରିସୋର୍ସ ବା ଜୈବ ସମ୍ପତ୍ତିକୁ କଞ୍ଚାମାଲ ହିସାବରେ ନିଜ ଦେଶକୁ ଆମଦାନୀ କରିଥାଆନ୍ତି ଏବଂ ତହିଁରୁ ମୂଲ୍ୟଯୁକ୍ତ ଦ୍ରବ୍ୟ ସୃଷ୍ଟି କରି ଭାରତ ସମେତ ବହୁ ବିକାଶଶୀଳ ରାଷ୍ଟ୍ରମାନଙ୍କୁ ଜୈବ ସାମଗ୍ରୀ ଭାବେ ରପ୍ତାନି କରିଥାଆନ୍ତି । ସେହି ଦେଶମାନେ ମଧ୍ୟ ଏହି ଦ୍ରବ୍ୟ ଗୁଡ଼ିକର ସମ୍ପୂର୍ଣ୍ଣ ସୁରକ୍ଷିତ ପ୍ୟାଟେଣ୍ଟ ରାଇଟ ନିଜ ହାତରେ ରଖିଥାନ୍ତି । ଏହି ଦେଶୀୟ ସମ୍ପତ୍ତିକୁ ରପ୍ତାନି କରିବା ଏବଂ ଅତି ଚଢ଼ା ଦରରେ ମୂଲ୍ୟଯୁକ୍ତ ଦ୍ରବ୍ୟଗୁଡ଼ିକୁ ଆମଦାନୀ କରିବା ପରିବର୍ତ୍ତେ ଭାରତବର୍ଷ ନିଜସ୍ୱ ଅନ୍ତର୍ଦ୍ଦେଶୀୟ ଜ୍ଞାନ କୌଶଳର ପ୍ରୟୋଗ କରି ନିଜ ମାଟିରେ ଏ ସବୁକୁ ମୂଲ୍ୟଯୁକ୍ତ ଦ୍ରବ୍ୟରେ ରୂପାନ୍ତରିତ କରାଇ ନିଜ ଦେଶର ଚାହିଦା ମେଣ୍ଟାଇବା ସଙ୍ଗେ ସଙ୍ଗେ ବିଦେଶକୁ ମଧ୍ୟ ରପ୍ତାନି କରାଇ ପାରିବ । ୬୧ ବିଲିୟନ ଡଲାର ବିଶ୍ୱ ହର୍ବାଲ ପ୍ରଡ଼କ୍ଟ ବଜାରରେ ଚୀନର ଭାଗ ୩ ବିଲିୟନ ଡଲାର ହୋଇଥିବା ବେଳେ ଭାରତର ଭାଗ ୧୦୦ ମିଲିୟନ ଡଲାରରୁ ବି କମ୍ । ଅତଏବ, ଏକ ବିରାଟ ସୁଯୋଗ ଭାରତର ଦ୍ୱାରଦେଶରେ ଆଜି ଦଣ୍ଡାୟମାନ ଓ ଏହି ସୁଯୋଗକୁ ଆମେ କିପରି ପାଛୋଟି ନେଇ ତା'ର ଉପଯୁକ୍ତ ଚର୍ଚ୍ଚା କରି ପାରୁଛେ, ତାହା ହିଁ ବଡ଼ କଥା । ଠିକ୍ ସେହିପରି ଫ୍ଲୋରି କଲ୍‌ଚର ଓ ଆକ୍ୱା କଲଚର ଭଳି କ୍ଷେତ୍ରରେ ଅସୁମାରୀ ସୁଯୋଗ ଓ ସମ୍ଭାବନା ଆଜି ଆମ ଦ୍ୱାରଦେଶରେ ଦଣ୍ଡାୟମାନ ରହି ଆମକୁ ଯୋଡ଼ ହସ୍ତରେ ଆବାହନ କରୁଛି ।

ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ୨୦୦୨ ମସିହା ଅଗଷ୍ଟ ୧୫ ତାରିଖ ଦିନ ଲାଲକିଲ୍ଲା ମଞ୍ଚ ଉପରୁ ଜାତି ଉଦ୍ଦେଶ୍ୟରେ ଦେଇଥିବା ଅଭିଭାଷଣ ପ୍ରଦାନ କରି ଘୋଷଣା କରିଥିଲେ ଯେ ୨୦୨୦ ମସିହା ସୁଦ୍ଧା ଭାରତ ଏକ ବିକଶିତ ରାଷ୍ଟ୍ରଭାବେ ଉଦ୍‌ଭାସିତ ହେବ । ଏବେ ଭାରତ ତା'ର ଦଶମ ପଞ୍ଚବାର୍ଷିକ ଯୋଜନାରେ ପଦାର୍ପଣ କରିଛି ଏବଂ ଏହି ଯୋଜନାର ମୁଖ୍ୟ ଆଭିମୁଖ୍ୟ ରଖାଯାଇଛି - ଭାରତର ସର୍ବଦିଗ ବ୍ୟାପ୍ତ ଅଭିବୃଦ୍ଧି । ଦଶମ ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟକାଳ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ, କାରଣ ବିକାଶଶୀଳ ଭାରତବର୍ଷକୁ ବିକଶିତ ଭାରତବର୍ଷରେ ରୂପାନ୍ତରିତ କରାଇବା ପାଇଁ ଏହି ସୁଦୀର୍ଘ ଯାତ୍ରାପଥର ଏହା ଭିତ୍ତି ପ୍ରସ୍ତର ସ୍ଥାପନ କରିବ ।

୨୦୨୦ ମସିହା ସୁଦ୍ଧା ଏକ ବିକଶିତ ଭାରତବର୍ଷର ସର୍ଜନା ପାଇଁ ପାଞ୍ଚୋଟି ମୁଖ୍ୟ ବିଭାଗକୁ ଚିହ୍ନଟ କରାଯାଇ ଏକ ସମନ୍ୱିତ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ପ୍ରଥମତଃ ବର୍ଷକୁ ୩୦୦ ମିଲିୟନ ଟନ ଖାଦ୍ୟ ଶସ୍ୟ ଓ କୃଷିଜାତ ଦ୍ରବ୍ୟର ଉତ୍ପାଦନ ଲକ୍ଷ୍ୟକୁ ପୂରଣ କରିବା ପ୍ରାଥମିକ ଧ୍ୟେୟ ହେବା ଉଚିତ । କୃଷି ଓ ଖାଦ୍ୟ ପ୍ରକ୍ରିୟାକରଣ ବ୍ୟତିରେକ କୃଷିର ଅନ୍ୟାନ୍ୟ କ୍ଷେତ୍ର ଓ ଆଗ୍ରୋ ଫୁଡ୍-ପ୍ରୋସେସିଂ କ୍ଷେତ୍ରରେ ମଧ୍ୟ ସ୍ୱାବଲମ୍ବନଶୀଳତା ଏକାନ୍ତ ଜରୁରୀ, ଯାହାକି ଖାଦ୍ୟ ସୁରକ୍ଷା ଓ ଅଭିବୃଦ୍ଧିରେ ସହାୟକ ହେବା ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ ଅର୍ଥନୈତିକ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବ । ଦ୍ୱିତୀୟତଃ ଶିକ୍ଷା ଓ ସ୍ୱାସ୍ଥ୍ୟରକ୍ଷା କ୍ଷେତ୍ରରେ ଅଗ୍ରଗତି ବହୁଳ ରୋଜଗାର ପନ୍ଥା ଉନ୍ମୁକ୍ତ କରିବ, ଯାହାକି ସାମାଜିକ ସୁରକ୍ଷା ଓ ଜନସଂଖ୍ୟା ନିୟନ୍ତ୍ରଣରେ ମଧ୍ୟ ସହାୟକ ହେବ । ତୃତୀୟତଃ ଭିତ୍ତିଭୂମିର ବିକାଶ ସଙ୍ଗେ ସଙ୍ଗେ ବିଶ୍ୱାସଯୋଗ୍ୟ ତଥା ଉତ୍ତମ ମାନଯୁକ୍ତ ବିଦ୍ୟୁତ୍ ଶକ୍ତି ଦେଶର କୋଣ ଅନୁକୋଣରେ ପହଞ୍ଚିବା ଦରକାର, ଯାହାକି ସମସ୍ତ କୋର-ସେକ୍ଟରଗୁଡ଼ିକ ପାଇଁ ଅତ୍ୟନ୍ତ ଉପଯୋଗୀ ଅଟେ । ଚତୁର୍ଥତଃ ସୂଚନା ଓ ଯୋଗାଯୋଗ ପ୍ରଯୁକ୍ତି ବିଦ୍ୟା ଯାହାକି ଆମର ଏକ କୋର-କଂପିଟେନ୍ସି କ୍ଷେତ୍ର ଭାବେ ପରିଗଣିତ ହୋଇଥାଏ, ତହିଁରେ ଅଭୂତପୂର୍ବ ବିକାଶ ଅଣାଯାଇ ଅତ୍ୟନ୍ତ ନିପଟ ମଫସଲ ଅଞ୍ଚଳରେ ଶିକ୍ଷା ଦୀକ୍ଷାର ଆଲୋକ ବର୍ତ୍ତିକା ପ୍ରଜ୍ୱଳିତ କରାଯିବା ଉଚିତ; ଯାହାକି ବେରୋଜଗାରୀ ସମସ୍ୟାର ସମାଧାନ କରିବା ସଙ୍ଗେ ସଙ୍ଗେ ରପ୍ତାନି ମାଧ୍ୟମରେ ଜାତୀୟ ସମ୍ପତ୍ତିର ମଧ୍ୟ ଅଭିବୃଦ୍ଧି କରି ପାରିବ । ପଞ୍ଚମତଃ କ୍ରିଟିକାଲ ଟେକ୍ନୋଲୋଜି ଓ ଷ୍ଟ୍ରାଟେଜିକ୍ ଇଣ୍ଡଷ୍ଟ୍ରି ଯଥା -ପରମାଣୁ ଶକ୍ତି, ମହାକାଶ ଗବେଷଣା ଏବଂ ଦେଶରକ୍ଷା ପ୍ରଯୁକ୍ତି ବିଦ୍ୟା ରାଷ୍ଟ୍ରକୁ କ୍ରମାଗତ ଅଭିବୃଦ୍ଧି ପଥରେ ନେଇ ଚାଲିବ ଯଦ୍ୱାରା ଭାରତବର୍ଷ ଏସବୁ କ୍ଷେତ୍ରରେ ମଧ୍ୟ ସ୍ୱାବଲମ୍ବନଶୀଳ ହୋଇ ପାରିବ । ଏହି ସମସ୍ତ ପାଞ୍ଚଟି କ୍ଷେତ୍ର ପରସ୍ପର ମଧ୍ୟରେ ସମ୍ପୂର୍ଣ୍ଣ ଭାବେ ଜଡ଼ିତ; ଯାହାକି ରାଷ୍ଟ୍ରକୁ ଖାଦ୍ୟ ଓ ଅର୍ଥନୈତିକ ସୁରକ୍ଷା ପ୍ରଦାନ କରିବ । ଗବେଷଣା ଓ ଉନ୍ନୟନ ପ୍ରତିଷ୍ଠାନ, ଶିକ୍ଷା କ୍ଷେତ୍ର, ଶିଳ୍ପ ସଂସ୍ଥା, ବ୍ୟବସାୟ ପ୍ରତିଷ୍ଠାନ, ସରକାରୀ ବିଭାଗ ଓ ଏଜେନ୍ସି ଏବଂ ସର୍ବୋପରି ଜନସାଧାରଣଙ୍କ ମଧ୍ୟରେ ଏକ ଉତ୍ତମ ଯୋଗସୂତ୍ର ସ୍ଥାପନା ଅତ୍ୟନ୍ତ ଜରୁରୀ । ଏହା ନ୍ୟାସନାଲ୍ ଭିଜନ ବା ରାଷ୍ଟ୍ରୀୟ ଦୃଷ୍ଟିକୋଣକୁ ଚରିତାର୍ଥ କରିବା ପାଇଁ ଅତ୍ୟନ୍ତ ଆବଶ୍ୟକ ।

ଭାରତବର୍ଷରେ ପ୍ରମୁଖ ନଦୀ ଗୁଡ଼ିକର ସଂଯୋଗ ବ୍ୟତିରେକ ଗ୍ରାମୀଣ ଇଲାକାରେ ସହରୀ ସୁବିଧା ସୁଯୋଗ ଯୋଗାଇ ଦେବା ଭଳି ଏକ ସ୍କିମ୍ ମାଧ୍ୟମରେ ଗ୍ରାମର ସର୍ବାଙ୍ଗୀନ ଉନ୍ନତି ହାସଲ କରାଯାଇ ପାରିବ । ପ୍ରାକୃତିକ ସମ୍ପଦ ଓ ମାନବ ସମ୍ପଦ ଉପରେ ରାଷ୍ଟ୍ରର ଶକ୍ତି ବହୁ ମାତ୍ରାରେ ନିର୍ଭର କରିଥାଏ, ଯାହାର ସଦୁପୋଯୋଗ ଏକାନ୍ତ ଅପରିହାର୍ଯ୍ୟ । ଏକ ବିଶାଳକାୟ ଯୁବଶକ୍ତି ଭାରତବର୍ଷର ଅସାଧାରଣ ବଳ, ଗର୍ବ ଓ ଗୌରବର ବିଷୟ । ଏକ ବିଲିୟନ ଜନସଂଖ୍ୟାରେ ୭୦୦ ନିୟୁତ ଯୁବକ ୩୫ ବର୍ଷ ବୟସରୁ କମ୍ ବୟସର ଅଟନ୍ତି । ଭାରତ ଆଜି ଯୁବ ନେତୃତ୍ୱର କାମନା କରୁଛି, ଯେଉଁମାନେ ବିକାଶଶୀଳ ଭାରତବର୍ଷକୁ ବିକଶିତ ଭାରତବର୍ଷରେ ରୂପାନ୍ତରିତ କରାଇବା ପ୍ରକ୍ରିୟାରେ ସଫଳ ଯୋଗଦାନ ଦେବେ ଏବଂ ଆଜିଠାରୁ ଆରମ୍ଭ କରି ଆଗାମୀ ୨୦ ବର୍ଷ ମଧ୍ୟରେ ଭାରତବର୍ଷରେ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାର ସ୍ଥାପନା କରିପାରିବେ । ଗୁଣବାନ ନେତା ଏକ ଚୁମ୍ବକ ପରି ଯେ କି ଉତ୍ତମ ବ୍ୟକ୍ତିମାନଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରି ଏକ ଟିମ୍ ଗଢ଼ି ପାରୁଥିବ ଏବଂ ଉଭୟ ସଫଳତା ଓ ବିଫଳତାକୁ ଏକ ନିକିତିରେ ତଉଲି ପାରୁଥବ । ସେ ମଧ୍ୟ କୌଣସି କାର୍ଯ୍ୟରେ ରିସ୍କ ନେବା ପାଇଁ ପଛଘୁଞ୍ଚା ଦେଉ ନ ଥିବ କି ଡରି ଯାଉ ନ ଥିବ । ରାଷ୍ଟ୍ରୀୟ ଦୃଷ୍ଟିକୋଣର ସ୍ରଷ୍ଟାମାନେ ଯୁବ ମସ୍ତିଷ୍କକୁ ପ୍ରଜ୍ୱଳିତ କରାଇବା ପାଇଁ ଯଥେଷ୍ଟ ଖୋରାକ ଯୋଗାଇ ଥାଆନ୍ତି ।

ଏପରି ଏକ କ୍ରିଏଟିଭ୍ ଲିଡ଼ର ବା ସର୍ଜନାତ୍ମକ ନେତୃତ୍ୱ କେଉଁ ସବୁ ଗୁଣର ଅଧିକାରୀ ହେବା ନିତାନ୍ତ ଦରକାର, ତା'ର ପର୍ଯ୍ୟାଲୋଚନା କରାଯାଉ । ସେ ତା'ର ଚିରାଚରିତ ଭୂମିକାରେ ପରିବର୍ତ୍ତନର ଛାପ ଛାଡ଼ି ଯିବାରେ ସକ୍ଷମ ହେଉଥିବା ଦରକାର; ଯେପରିକି ସେ କମାଣ୍ଡରରୁ କୋଚ୍, ମ୍ୟାନେଜରରୁ ମେଣ୍ଟର, ଡାଇରେକ୍ଟରରୁ ଡେଲିଗେଟର ତଥା ଆତ୍ମସମ୍ମାନ ଦାବୀ କରୁଥିବା ବ୍ୟକ୍ତି ବିଶେଷ ହେବା ଠାରୁ ସମ୍ମାନ ବଜାୟ ରଖି ପାରୁଥିବା ବ୍ୟକ୍ତି ବିଶେଷ ହେବା ପର୍ଯ୍ୟନ୍ତ ସବୁ କଳାରେ ଧୁରନ୍ଧର ହୋଇ ପାରୁଥିବ । ଯେଉଁ ଦେଶରେ ଏହି ସର୍ଜନାତ୍ମକ ନେତୃତ୍ୱର ଅନୁପାତ ଯେତେ ବେଶୀ ସେ ଦେଶର ରାଷ୍ଟ୍ରୀୟ ଦୃଷ୍ଟିକୋଣ ସେତେ ବେଶୀ ସଫଳତାର ମିଠା ସ୍ୱାଦ ଚାଖିବ । ବିକଶିତ ଭାରତବର୍ଷ ଏପରି ଏକ ସର୍ଜନାତ୍ମକ ନେତୃତ୍ୱକୁ ଆବାହନ କରୁଛି ।

ଏକ ସର୍ଜନାତ୍ମକ ନେତୃତ୍ୱର ଦୃଷ୍ଟିକୋଣ ଏବଂ ତା'ର ଚରିତ୍ରର ସଜ୍ଞା ନିର୍ଦ୍ଧାରଣ ହୋଇସାରିଲା ପରେ ଏବେ ପ୍ରଶ୍ନ ଉଠୁଛି, ସେ ଦେଶର ଜନତା ଜନାର୍ଦ୍ଦନଙ୍କ ହାତରେ କ'ଣ ସବୁ ବିକାଶୋନ୍ମୁଖୀ କାର୍ଯ୍ୟକ୍ରମ ରହିବା ଦରକାର । ଦେଶର ଛାତ୍ର ସମାଜ ନିଜ ନିଜର ସ୍କୁଲ ଓ ଗାଁ ଗଣ୍ଡା ଥିବା ଅଞ୍ଚଳରେ ନିରକ୍ଷରତାର ଦୂରୀକରଣ ପାଇଁ ସଦାସର୍ବଦା ପ୍ରୟାସ ଜାରୀ ରଖିବା ଉଚ଼ିତ । ଗୋଟିଏ ଜଳନ୍ତା ମହମବତୀ ହିଁ ଆଉ ଗୋଟିଏ ମହମବତୀରେ ଅଗ୍ନି ସଂଯୋଗ କରିପାରେ । ଶିକ୍ଷକ ଓ ଅଭିଭାବକମାନେ ଛାତ୍ର ସମାଜକୁ ତାଙ୍କର ଏହି ମହତ୍ କାମରେ ସହଯୋଗ କରିପାରିବେ । ସରକାର ଏବଂ ଅନୁସନ୍ଧାନ ଓ ବିକାଶ ପ୍ରୟୋଗଶାଳା ଗୁଡ଼ିକ କ୍ଷୁଦ୍ର ଶିଳ୍ପ ଗୁଡ଼ିକୁ ଆଧୁନିକ ଜ୍ଞାନ କୌଶଳ ପ୍ରଦାନ କଲେ ସେମାନଙ୍କର ବୈଷୟିକ ଉନ୍ନତି ସାଧିତ ହୋଇ ପାରିବ ଏବଂ ସେମାନେ ବଜାରରେ ପ୍ରତିଯୋଗିତାମୂଳକ ପଦକ୍ଷେପ ଗ୍ରହଣ କରି ଯଥେଷ୍ଟ ଲାଭବାନ ହୋଇ ପାରିବେ । ବଡ଼ ବଡ଼ ଶିଳ୍ପାନୁଷ୍ଠାନ ଗୁଡ଼ିକ ସେମାନଙ୍କର ଉତ୍ପାଦକତା ଓ ଗୁଣବତ୍ତାରେ ଅଭିବୃଦ୍ଧି ଆଣିବା ଉଚିତ, ଯଦ୍ୱାରା ମାର୍କେଟ ସେୟାରରେ ଅଭିବୃଦ୍ଧି ହେବା ସଙ୍ଗେ ସଙ୍ଗେ ଅର୍ଥନୈତିକ ଅଭିବୃଦ୍ଧି ଓ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ ମଧ୍ୟ ଅଭିବୃଦ୍ଧି ପରିଲକ୍ଷିତ ହେବ । ସେହି କମ୍ପାନୀ ଗୁଡ଼ିକ ବିଶ୍ୱ ନେତୃତ୍ୱ ନେବା ସଙ୍ଗେ ସଙ୍ଗେ ବହୁ ରାଷ୍ଟ୍ରୀୟ କମ୍ପାନୀ ହେବା ପାଇଁ ମଧ୍ୟ ଲକ୍ଷ୍ୟ ରଖି ପାରିବେ । ଦେଶର କୃଷକ ସମାଜ କୃଷି କ୍ଷେତ୍ରରେ ନୂତନ ବିଜ୍ଞାନ ଓ ବୈଷୟିକ ଜ୍ଞାନ କୌଶଳର ପରିପ୍ରୟୋଗ କରି ସେମାନଙ୍କର ଉତ୍ପାଦକତାରେ ଅଭିବୃଦ୍ଧି ଆଣିବା ଉଚ଼ିତ । ବିଶେଷ କରି ଶୁଷ୍କ ଜମିରେ କୃଷି କର୍ମ କରିବାରେ ସେମାନେ ଗୁରୁତ୍ୱର ସହ ମନୋନିବେଶ କରିବା ଉଚ଼ିତ ।

ସୂଚ଼ନା ପ୍ରଯୁକ୍ତିବିଦ୍ୟାବିଦ୍ ଓ ଜ୍ଞାନକର୍ମୀମାନଙ୍କର ଏକ ପ୍ରଚ଼ଣ୍ଡ ଦାୟିତ୍ୱବୋଧତାର ବେଳ ଏବେ ଆସିଯାଇଛି । ବିଶେଷ କରି ଗ୍ରାମୀଣ ଅଞ୍ଚଳରେ ଟେଲି-ମେଡ଼ିସିନ୍, ଟେଲି-ଏଜୁକେଶନ ଓ ଇ-ଗଭର୍ଣ୍ଣାନ୍ସ କ୍ଷେତ୍ରରେ ସେମାନେ ବହୁତ କିଛି ଅବଦାନ ଦେଇ ପାରିବେ । ଗ୍ରାମୀଣ ଇଲାକାରେ ସହରୀ ସୁବିଧା ସୁଯୋଗ ଦେବା ଭଳି ଏକ ସ୍କିମ୍ ଯାହାକୁ କି ଇଂରାଜୀରେ 'ପ୍ୟୁରା' ବୋଲି କୁହାଯାଉଛି, ତାହା ନିଶ୍ଚିତ ରୂପେ ବ୍ୟବସାୟୀକ ରୂପରେଖ ଭିତ୍ତିକ ହେବା ଉଚ଼ିତ ଏବଂ ତତ୍ ସଙ୍ଗେ ସଙ୍ଗେ ଅର୍ଥନୈତିକ ଦୃଷ୍ଟିକୋଣରୁ ମଧ୍ୟ ଲାଭଦାୟକ ହେବା ବାଞ୍ଛନୀୟ । ଏହା ସରକାରୀ ସହଯୋଗରେ ଛୋଟ ଛୋଟ ଶିଳ୍ପୋଦ୍ୟୋଗୀ ଏବଂ ଶିଳ୍ପାନୁରାଗୀ

ବ୍ୟକ୍ତିମାନଙ୍କ ଦ୍ୱାରା ପରିଚାଳିତ ହେବା ଉଚିତ, ଯେହେତୁ ଏହା ଶିକ୍ଷା, ସ୍ୱାସ୍ଥ୍ୟରକ୍ଷା, ବିଦ୍ୟୁତ୍ ଶକ୍ତି ଉତ୍ପାଦନ, ପରିବହନ ଓ ପରିଚାଳନା ସହ ଓତଃପ୍ରୋତ ଭାବେ ଜଡ଼ିତ । ଏହି ରାଷ୍ଟ୍ରୀୟ ଦୃଷ୍ଟିକୋଣର ସମୟସୀମା ମଧ୍ୟରେ ସରକାର ଶୀଘ୍ରାତିଶୀଘ୍ର ନାନାବିଧ ନିର୍ଣ୍ଣୟ ନେବା ସଙ୍ଗେ ସଙ୍ଗେ ପ୍ରଶାସନକୁ ସ୍ୱଚ୍ଛ ଓ ନିର୍ମଳ କରି ଗଢ଼ି ତୋଳିବା ଦରକାର । ରାଷ୍ଟ୍ରୀୟ ପ୍ରଗତି ପ୍ରକ୍ରିୟାରେ ମିଡ଼ିଆ ସମଭାଗୀ ହେବା ସଙ୍ଗେ ସଙ୍ଗେ ଯୁକ୍ତ ଭାବାପନ୍ନ ସମାଲୋଚନା ହେବା ଆବଶ୍ୟକ । ଆମର ସଙ୍ଗୀତଜ୍ଞ, କବି, ଚିତ୍ରଶିଳ୍ପୀ ଓ କଳାକାରମାନେ ଅଖଣ୍ଡ ଭାରତର ସ୍ୱର୍ଣ୍ଣାଦିତ୍ୟ ଐତିହ୍ୟକୁ ନେଇ ପ୍ରଚଣ୍ଡ ଗର୍ବ କରିବା ସଙ୍ଗେ ସଙ୍ଗେ ବିକଶିତ ଭାରତବର୍ଷର ସଙ୍ଗୀତ ଗାନ କରିବା ଉଚିତ, ଯାହାକି ଆଗଙ୍ଗା କୁମାରୀକା ଭାରତ ଭୂଖଣ୍ଡକୁ ପ୍ରକମ୍ପିତ କରିବ ଓ ଭାରତର ନଦନଦୀ, ସାଗର ବନାନୀ, ଭୂମି ଓ ଭୂମାକୁ ଏକାକାର କରି ସ୍ୱପ୍ନର ସାତରଙ୍ଗ ଛଟାରେ ଦୋଳାୟିତ କରିବ ।

ଏପରି ଏକ ସୌର୍ଯ୍ୟଦୀପ୍ତ ବାତାବରଣ ମଧ୍ୟରେ ଭାରତର ଅସୁମାରୀ ସ୍ୱପ୍ନ, ନଭଃଚୁମ୍ବୀ ଆକାଂକ୍ଷା ଓ ଅନନ୍ତ ଅଭିଳାଷ ଚରିତାର୍ଥ ହୋଇ ପାରିବ, ଯାହାକି ବିକଶିତ ଭାରତବର୍ଷର ନବନିର୍ମାଣରେ ସଫଳ ଯୋଗଦାନ ଦେଇପାରିବ । ମୁଁ ସବୁବେଳେ କହିଛି ରାଷ୍ଟ୍ର ଏହାର ନେତୃବୃନ୍ଦଙ୍କ ଠାରୁ ସବୁବେଳେ ବଡ଼ । ଯେତେବେଳେ ରାଷ୍ଟ୍ର ସମସ୍ତଙ୍କଠୁଁ ବଡ଼ ହୋଇଯାଏ ଆପଣ ଦେଖିବେ ଶିଳ୍ପ କ୍ଷେତ୍ରରେ ହେଉ ବା ରାଜନୀତି କ୍ଷେତ୍ରରେ ହେଉ ବା ବିଜ୍ଞାନ କ୍ଷେତ୍ରରେ ହେଉ ମହାନ ଦୁର୍ବାର ନେତୃତ୍ୱର ଆବିର୍ଭାବ ହେବ ଏବଂ ସେ ନେତୃତ୍ୱ, ସୁଜଳା ସୁଫଳା ଶସ୍ୟଶ୍ୟାମଳା ସ୍ୱର୍ଣ୍ଣପ୍ରସୂ ଭାରତବର୍ଷକୁ ମହୀୟାନ କରି ଗଢ଼ି ତୋଳିବ ଏବଂ ସେଦିନ ଏ ଦେଶ, ଏ ମାଟିର ଗୌରବକୁ ସାରା ବିଶ୍ୱ ଯୋଡ଼ ହସ୍ତରେ ପ୍ରଣାମ କରିବ ।

ସମାଜ
ତା- ୨୧.୪.୨୦୦୩



# ଭବିଷ୍ୟତର ଅର୍ଥନୀତି ଓ ଅର୍ଥନୀତିର ଭବିଷ୍ୟତ ସୁଦୂରପ୍ରସାରୀ

**ଫେ**ବୃୟାରୀ ୨୮ ରୁ ମାର୍ଚ୍ଚ ୨ ତାରିଖ ମଧ୍ୟରେ ନୂଆଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା ଦ୍ୱିତୀୟ 'ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭ'କୁ ଅତି ବିଶିଷ୍ଟ ଅତିଥି ଭାବେ ନିମନ୍ତ୍ରିତ ହୋଇଥିବା ବିଶ୍ୱ ପ୍ରସିଦ୍ଧ ଭବିଷ୍ୟତ ପ୍ରବକ୍ତା ତଥା ସର୍ବଜନାଦୃତ ପୁସ୍ତକ 'ଫ୍ୟୁଚର ସକ୍' ଓ 'ଥାର୍ଡ଼ ୱେଭ'ର ସ୍ୱନାମଧନ୍ୟ ଲେଖକ ଆଲ୍‌ଭିନ ଟଫଲର କୁହନ୍ତି ଯେ ଆଜିର ବିଶ୍ୱ ରଣାଙ୍ଗନରେ ଯୁଦ୍ଧ ଓ ଶାନ୍ତିକୁ ନେଇ ଯେଉଁ ତର୍କ ବିତର୍କ ଓ ବାଦାନୁବାଦ ମୁଣ୍ଡ ଟେକି ଠିଆ ହୋଇଛି, ତହିଁରେ ଆମେ ବିଶ୍ୱ ସମୁଦାୟର ସମୂଳେ ଧ୍ୱଂସ ପାଇଁ ନାନାବିଧ ମାରାଣାସ୍ତ୍ର କଥା ଶୁଣୁଛେ । ଆମେ କିନ୍ତୁ ଏ ନେଇ ବହୁତ କମ୍ କଥା ଶୁଣୁଛେ । ପରନ୍ତୁ ଏପରି ଦୁର୍ଦ୍ଧର୍ଷ ମାରଣାସ୍ତ୍ରଠାରୁ ଆଉ ଗୋଟାଏ ଅସ୍ତ୍ର ଅଛି, ଯାହା ପ୍ରଚଣ୍ଡ ଶକ୍ତିଶାଳୀ ଏବଂ ଅର୍ଥନୀତି ଓ ଇତିହାସରେ ଯାହାର ନୂତନ ଭୂମିକା ସର୍ବଜନ ସମ୍ମତ ତାହାହେଲା - 'ଜ୍ଞାନାସ୍ତ୍ର' । ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭ ଆଲୋଚନା ପାଇଁ ଯେଉଁ ଭିତ୍ତି ପ୍ରବନ୍ଧକୁ ଚୟନ କରିଥିଲା ତାହାଥିଲା -''ଭାରତ ଏକ ବିଶାଳକାୟ ଦୈତ୍ୟ ନା ଏକ କ୍ଷୁଦ୍ର ବାମନ'' । ଏହି ଅଧିବେଶନରେ ଆଲ୍‌ଭିନ ଟଫଲର ଭବିଷ୍ୟତର ଅର୍ଥନୀତି ଓ ଅର୍ଥନୀତିର ଭବିଷ୍ୟତକୁ ନେଇ ଏକ ପୁଙ୍ଖାନୁପୁଙ୍ଖ ଅଭିବ୍ୟକ୍ତି ଉପସ୍ଥାପନ କରି ପ୍ରଜ୍ଞାବାନ ଶ୍ରୋତାମଣ୍ଡଳୀଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ ।

ଆଲ୍‌ଭିନ ଟଫଲର କୁହନ୍ତି ଯେ ଭବିଷ୍ୟତର ଅର୍ଥନୀତି ଓ ଅର୍ଥନୀତିର ଭବିଷ୍ୟତ ମଧ୍ୟରେ ଥିବା ପାର୍ଥକ୍ୟକୁ ଆମେ ସଠିକ୍ ଭାବେ ହୃଦୟଙ୍ଗମ କରିବା ଉଚିତ । ଯେତେବେଳେ ଲୋକେ ଅର୍ଥନୀତିର ଭବିଷ୍ୟତ କଥା କୁହନ୍ତି, ସେତେବେଳେ ସେମାନେ ସାଂପ୍ରତିକ ଅର୍ଥନୀତିର ସ୍ଥିତିକୁ ମନ ଭିତରେ ବସା ବାନ୍ଧି ରଖି ଦିଅନ୍ତି । ଯେତେବେଳେ ଆମେ ଭବିଷ୍ୟତର ଅର୍ଥନୀତି କଥା କହୁ, ଏହା ଅର୍ଥନୈତିକ ପ୍ରକ୍ରିୟାର ଚଳମାନ ଧାରା ଅପେକ୍ଷା ପରିବର୍ତ୍ତନ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରିଥାଏ । ଅର୍ଥନୀତିରେ ଏହି ନୂତନ ରୂପରେଖ ଯାହାକି ସାମାଜିକ,

ସାମରିକ ଓ ଅନ୍ୟାନ୍ୟ ପରିବର୍ତ୍ତନ ସହ ସହଯୋଗୀ ଭାବେ ବନ୍ଧା ବିଶ୍ୱ ଅର୍ଥନୈତିକ ରଣାଙ୍ଗନରେ ଏକ ବିରାଟ ପ୍ରଭାବ ପକାଇବାରେ ସଫଳକାମୀ ହେଲାଣି । ସୋଭିଏତ୍ ୟୁନିଅନର ପତନ ଜ୍ଞାନାଶ୍ରୟୀ ଅର୍ଥନୀତିର ଅଭ୍ୟୁତ୍ଥାନରେ ଯଥେଷ୍ଟ ସହାୟକ ହେଲା । ସୋଭିଏତବାସୀଙ୍କର ଏହି ସୁଯୋଗରୁ ଉପଯୁକ୍ତ ଫାଇଦା ଉଠାଇବାରେ ବିଫଳକାମୀ ହେବା ଏହି ପ୍ରକ୍ରିୟାକୁ ଆହୁରି ତ୍ୱରାନ୍ୱିତ କଲା ।

ୟୁରୋପରେ ବେକାରୀ ସମସ୍ୟାର ହାରରେ ମାତ୍ରାଧିକ ଅଭିବୃଦ୍ଧି ଏବଂ ଯୁକ୍ତରାଷ୍ଟ୍ର ଆମେରିକା ପ୍ରତି ୟୁରୋପର କ୍ରମବର୍ଦ୍ଧିଷ୍ଣୁ ଅସୂୟା ଭାବ ଜ୍ଞାନାଶ୍ରୟୀ ଅର୍ଥନୀତିର ଫଳ ବୋଲି ବିବେଚନା କରାଯାଉଛି । ଜାପାନର ଅସମ୍ଭବ ଅଭିବୃଦ୍ଧି ଏବଂ ପରବର୍ତ୍ତୀ ସମୟରେ ଅଭିବୃଦ୍ଧିରେ ବୃଦ୍ଧାବସ୍ଥା ପାଇଁ ମଧ୍ୟ ଜ୍ଞାନାଶ୍ରୟୀ ଅର୍ଥନୀତି ଦାୟୀ ବୋଲି କୁହାଯାଉଛି । ନିଃସନ୍ଦେହରେ ଚୀନର ଅଭୂତପୂର୍ବ ଅଭିବୃଦ୍ଧିରେ ଜ୍ଞାନାଶ୍ରୟୀ ଅର୍ଥନୀତିର ଅବଦାନ ଯେ ଅନନ୍ୟ ସାଧାରଣ, ଏଥିରେ ଦ୍ୱିମତ ହେବାର ମଧ୍ୟ କୌଣସି ଅବକାଶ ନାହିଁ । ଜ୍ଞାନାଶ୍ରୟୀ ଅର୍ଥନୀତି ମଧ୍ୟ ଭାରତର କାୟାକଳ୍ପ ବଦଳେଇ ଦେବାରେ ନିଜର ଅସାଧାରଣ ଯୋଗଦାନ ଅତ୍ୟନ୍ତ ବିସ୍ମୟକର ଭାବେ ଦେଇ ଚାଲିଛି ଏବଂ ଏହା ଆମେ ଦିନ ପରେ ଦିନ ମଧ୍ୟ ନିଜ ଆଖିରେ ଦେଖି ଚାଲିଛୁ ।

ଭବିଷ୍ୟତର ଅର୍ଥନୀତିକୁ ବୁଝିବାକୁ ହେଲେ କେତେକ ସର୍ଟହ୍ୟାଣ୍ଡର ବ୍ୟବହାର ଆମ ପାଇଁ ଉପଯୋଗୀ ହେବ ବୋଲି ମନେହୁଏ । ମୋର ସ୍ତ୍ରୀ ହିଦି ଏବଂ ମୁଁ ଏହାର ବ୍ୟବହାର ବେଳେବେଳେ କରିଥାଉ । ଆପଣମାନଙ୍କ ମଧ୍ୟରୁ ଅନେକ ଏହା ସହିତ ମଧ୍ୟ ସୁପରିଚିତ । ଆମେ ୧୦ ହଜାର ବର୍ଷ ତଳେ ଆରମ୍ଭ କରାଯାଇଥିବା କୃଷି କର୍ମର ସର୍ବଦିଗ ବ୍ୟାପ୍ତ ପ୍ରସାର କଥା କହୁଛୁ, ଯାହାକୁ କି ଏକ ବଡ଼ ଧରଣର ପ୍ରଥମ ସାମାଜିକ ପରିବର୍ତ୍ତନ ବୋଲି କୁହାଯାଇପାରେ ଅବା ଏହାକୁ ଇତିହାସର ପ୍ରଥମ ଢେଉର ଆଖ୍ୟା ଦେଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ।

ଆମେ ଶିଳ୍ପ ବିପ୍ଳବ ଏବଂ ଏହା ସହିତ ଜଡ଼ିତ ସାଂସ୍କୃତିକ, ଅର୍ଥନୈତିକ, ରାଜନୈତିକ, ପ୍ରଯୁକ୍ତିବିଦ୍ୟା ଏବଂ ସାମରିକ କ୍ଷେତ୍ରରେ ହୋଇଥିବା ପରିବର୍ତ୍ତନ କଥା କହିଥାଉ । ଏହାକୁ ଇତିହାସର ସ୍ୱର୍ଣ୍ଣାଦିତ୍ୟ ପୃଷ୍ଠାରେ ସାମାଜିକ ପରିବର୍ତ୍ତନର ଦ୍ୱିତୀୟ ଢେଉ ବୋଲି ଆମେ ଅଭିହିତ କରି ପାରିବା । ଆମେ ଯେଉଁ ସମୟରେ ଏବେ ବଞ୍ଚି ରହିଛୁ ଏବଂ ଯେଉଁ ସମୟ ସହ ଆଖିରେ ଆଖି ମିଳେଇ ଦିନ ବିତେଇ ଚାଲିଛୁ, ତାକୁ ଆମେ ତୃତୀୟ ମହାବିଶାଳକାୟ ଐତିହାସିକ ପଟ୍ଟପରିବର୍ତ୍ତନର

ସମୟ ବୋଲି କହିପାରିବା । ଅତି କମ୍‌ରେ ଶିଳ୍ପ ବିପ୍ଳବର ବିଶାଳତା ଓ ରୂପାନ୍ତରୀକରଣ ପ୍ରକ୍ରିୟା ସହ ଏବର ସମୟକୁ ଉଣା ଅଧିକେ ତୁଳନା କରାଯାଇପାରେ । ପାର୍ଥକ୍ୟ ହୁଏତ ଏତିକି ଯେ ଏବର ସମୟ ଅଧିକ ବିଶ୍ୱକୈନ୍ଦ୍ରିକ ଏବଂ ପ୍ରଗତିର ଧାରା ଅତ୍ୟନ୍ତ ଦ୍ରୁତତର ।

ଆଜିର ଥାର୍ଡ଼ ୱେଭ ରିଭୋଲ୍ୟୁସନ ବା ବୈପ୍ଳବିକ ପରବର୍ତ୍ତନର ତୃତୀୟ ଢେଉ ଯାହା ଆମ ଦେହରେ ଆସି ଅହରହ ପିଟି ହେଉଛି, ତାହା କେବଳ ଅଫୁରନ୍ତ ଐଶ୍ୱର୍ଯ୍ୟ ସୃଷ୍ଟି ପାଇଁ ଉଦ୍ଦିଷ୍ଟ; ଯାହାକି ସମ୍ପୂର୍ଣ୍ଣ ରୂପେ ଆମର କଳ୍ପନାକୁ କରାୟତ୍ତ କରିବା ସଙ୍ଗେ ସଙ୍ଗେ ଆମର ଅସ୍ଥି ମଜ୍ଜାଗତ ମଧ୍ୟ ହୋଇଯାଇଛି । ପୃଥିବୀ ଗ୍ରହରେ ୩୦୦ ବିଲିୟନ କମ୍ପ୍ୟୁଟର ଚିପ୍ ଥିବା ସଙ୍ଗେ ସଙ୍ଗେ ପ୍ରତିବର୍ଷ ଏହି ସଂଖ୍ୟାରେ ୭୦ ବିଲିୟନ ଅଧିକ ଯୋଗହୋଇ ଚାଲିଛି । ଜାପାନୀମାନେ ଏପରି ଏକ କମ୍ପ୍ୟୁଟର ତିଆରି କରିଛନ୍ତି, ଯେଉଁଥିରେ ଶକ୍ତିର ପ୍ରକ୍ରିୟାକରଣ କରିବା ପାଇଁ ବ୍ୟବହାର ହେଉଥିବା ଉପାୟ ବିଶ୍ୱର ସାତୋଟି କ୍ଷିପ୍ରତମ ପ୍ରତିଦ୍ୱନ୍ଦୀ କମ୍ପ୍ୟୁଟରର ଏକତ୍ରୀକରଣ ଦ୍ୱାରା ମଧ୍ୟ ସମ୍ଭବ ହେଉନାହିଁ । ଏହି କମ୍ପ୍ୟୁଟର ପ୍ରତି ସେକେଣ୍ଡରେ ୪୦ ହଜାର ବିଲିୟନ ଗାଣିତିକ କ୍ରିୟା କରିବାରେ ସମ୍ପୂର୍ଣ୍ଣ ସକ୍ଷମ ।

ଆମେ ଏବେ ୩୦୦ ମିଲିମିଟର ୱେଫର ଚିପ୍, ବାୟୋଚିପ୍‌ସ, ମାଇକ୍ରୋ ଇଲେକ୍‌ଟ୍ରୋମେକାନିକାଲ ସିଷ୍ଟମ ଏବଂ ନାନୋ ସ୍କେଲରେ ଚିପ୍‌ର ପ୍ରସ୍ତୁତି ଯାହାକି ଏକ ମିଟରର ଏକ ବିଲିୟନ ଭାଗରୁ ଏକ ଭାଗ ସେ ସବୁର ପ୍ରସ୍ତୁତି ପାଇଁ ଆଗେଇ ଚାଲିଛୁ । ଆଜି ସମଗ୍ର ପୃଥିବୀ ଗ୍ରହରେ ପ୍ରାୟ ଏକ ବିଲିୟନ ପର୍ସନାଲ କମ୍ପ୍ୟୁଟର ବା ପି.ସି. କାର୍ଯ୍ୟ କରୁଛି । ଅର୍ଥାତ୍ ପ୍ରତି ୬ ବା ୭ ଜଣରେ ଗୋଟିଏ ପି.ସି. ରହିଛି । ଜୁଲାଇ ୨୦୦୨ ରେ ଗାର୍ଟନର ଗ୍ରୁପ ହିସାବ କରି ଦେଖିଥିଲା ଯେ ୨୦୦୮ ମସିହା ସୁଦ୍ଧା ବିଶ୍ୱରେ ଆଉ ଏକ ବିଲିୟନ ପର୍ସନାଲ କମ୍ପ୍ୟୁଟର ବିକ୍ରୀ ହେବ । ପ୍ରତିବର୍ଷ ଅଧିକରୁ ଅଧିକ ପର୍ସନାଲ କମ୍ପ୍ୟୁଟର ବିକ୍ରୀ ହେଉଛି ଯାହାକି ଜାପାନର ମୋଟ ଜନସଂଖ୍ୟାଠାରୁ ବି ଅଧିକ । ଏକ ବିଲିୟନର ଅର୍ଦ୍ଧାଂଶ ଲୋକଙ୍କ ପାଖରେ ଏବେ ଇଣ୍ଟରନେଟ ପହଞ୍ଚିଗଲାଣି । ବିଶ୍ୱର ଇନଫରମେସନ ଟେକ୍ନୋଲୋଜି ବଜାର ଏକ ବିଲିୟନରୁ ବି ଟପି ଗଲାଣି । ସାତ ଲକ୍ଷ ପଚାଶ ହଜାର କମ୍ପାନୀ ଏହାର ସେବାରେ ଦିନରାତି ଲାଗିଛନ୍ତି । ଯାହା ମନେ ହେଉଛି, ଏହି ସଂଖ୍ୟା ହୁଏତ ପୁରୁଣା ହୋଇଗଲାଣି । ପରିସଂଖ୍ୟାୟକମାନେ ଏହି ଦ୍ରୁତ ପରିବର୍ତ୍ତନ ସହ ପାଦରେ ପାଦ ମିଳେଇ ଚାଲି ପାରିବେ ନାହିଁ ।

ବୈପ୍ଳବିକ ପରିବର୍ତ୍ତନର ତୃତୀୟ ଢେଉ ଜଗତୀକରଣ ପ୍ରକ୍ରିୟାକୁ ଆଗକୁ ଆଗକୁ ଠେଲି ନେବାରେ ସହାୟକ ହେବା ସଙ୍ଗେ ସଙ୍ଗେ ଜଗତୀକରଣ ବିରୁଦ୍ଧରେ ସ୍ୱର ଉତ୍ତୋଳନରେ ମଧ୍ୟ ପ୍ରଭାବ ପକାଇଲା । ପ୍ରକାରାନ୍ତରେ ଯେଉଁ ଲୋକମାନେ ଜଗତୀକରଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ସେମାନେ ଇଣ୍ଟରନେଟକୁ ଏକ ଆୟୁଧ ଭାବେ ବ୍ୟବହାର କଲେ ।

ଏହି ପୃଥିବୀ ଗ୍ରହରେ ଏକ ନୂତନତ୍ୱର ଧାରା ଆବିର୍ଭାବ ହେବାକୁ ଯାଉଛି ଏବଂ ଏହି ନୂତନତ୍ୱର ଧାରା ବୈପ୍ଳବିକ ପରିବର୍ତ୍ତନର ଦ୍ୱିତୀୟ ଢେଉ ଛାଡ଼ି ଯାଇଥିବା ନାନାବିଧ କଳ୍ପନାଜଳ୍ପନା ସହ ପ୍ରାୟ ଖାପ ଖାଉନାହିଁ । ଅର୍ଥନୀତିର ଏହି ତୃତୀୟ ଢେଉ ବିଶ୍ୱର ମୁଖ୍ୟ ଅନୁଷ୍ଠାନ ତଥା ଶିଳ୍ପ ଯୁଗର କ୍ଷମତା ବିନ୍ୟାସକୁ ମଧ୍ୟ ଛାନିଆ କରି ଦେଉଛି । ପାରମ୍ପରିକ ଶିଳ୍ପ ସମୃଦ୍ଧ ରାଷ୍ଟ୍ର ଫ୍ରାନ୍ସ ଓ ଜର୍ମାନୀରେ ଏପରି ବହୁ ଅନୁଷ୍ଠାନ ଏବେ ବି ନିଜର ପ୍ରାଧାନ୍ୟ ବିସ୍ତାର କରି ଅଛନ୍ତି ।

ଏହି ନୂତନ ଐଶ୍ୱର୍ଯ୍ୟ ସୃଷ୍ଟି ବ୍ୟବସ୍ଥା ଉବିଷ୍ୟତର ଅଜଣା ଦୁନିଆକୁ ଲମ୍ଫ ପ୍ରଦାନ କରିବା ପାଇଁ ଏକ ପ୍ରମୁଖ ଅସ୍ତ୍ରଭାବେ ପରିଗଣିତ ହେବ, ପରନ୍ତୁ ଏହା ଅନ୍ତର୍ଦ୍ୱନ୍ଦ୍ୱ ଓ ସାମାଜିକ ମତଭେଦରୁ ମଧ୍ୟ ବଞ୍ଚିତ ହେବ ନାହିଁ । ଏହି ରୂପାନ୍ତରୀକରଣ ଅବଶ୍ୟ ନୂତନ ଅର୍ଥନୀତିର ଏକ ଅଲୌକିକ ବ୍ୟାପାର ନୁହେଁ । ଆମେ ଯଦି ଟିକେ ବିଗତ ଦିନର ସ୍ମୃତିଚାରଣ କରିବା, ତେବେ ଦେଖିବା ଯେ ଏହାର ଆରମ୍ଭ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ତଳେ ହୋଇଥିଲା । ଏହା ପଚାଶ ଦଶକର ମଧ୍ୟ ଭାଗରେ ଆରମ୍ଭ ହୋଇଥିଲା, ଯେତେବେଳେ କି ପ୍ରଥମ ମେନ୍ ଫ୍ରେମ୍ କମ୍ପ୍ୟୁଟରେ ବ୍ୟବସାୟ ରାଇଜରେ ପଦାର୍ପଣ କଲା; ଯେତେବେଳେ କି ସ୍ପୁଟନିକ୍ ମହାକାଶ ଯୁଗର ଶୁଭାରମ୍ଭ କଲା ଏବଂ ଯେତେବେଳେ ଜନ୍ମନିୟନ୍ତ୍ରଣ ବଟିକା ଏବଂ ବହୁ ଉଚ୍ଚମାନଯୁକ୍ତ ପ୍ରଯୁକ୍ତିବିଦ୍ୟା ୧୯୫୫ରୁ ୧୯୬୦ ମସିହା ମଧ୍ୟରେ ଆମେରିକାରେ ହଇଚଇ ସୃଷ୍ଟିକଲା । ନାନାବିଧ ସାମାଜିକ ପରିବର୍ତ୍ତନର ଢେଉ ଓ ଉତ୍‌ଥାନ ପତନ ମଧ୍ୟ ଏହା ସହିତ ଆସିଲା, ଷାଠିଏ ଦଶକରେ ବେସାମରିକ ଅଧିକାର ଆନ୍ଦୋଳନ, ନାରୀ ସ୍ୱାଧୀନତା ଆନ୍ଦୋଳନ ଏବଂ ପ୍ରସନ୍ନଚିତ୍ତ ଅଧିକାର ଆନ୍ଦୋଳନ ଆମେରିକାକୁ ପ୍ରଚଣ୍ଡ ଧକ୍କା ଦେଇଥିଲା । ପରନ୍ତୁ ସାଂପ୍ରତିକ ଡିଜିଟାଲ ବିପ୍ଳବର ରୂପରେଖ କିନ୍ତୁ ଅଲଗା ଧରଣର ।

ଗଣିତ ଜ୍ୟୋତିଷୀମାନେ ଡାର୍କ ମ୍ୟାଟର୍ସ ବା କୃଷ୍ଣ ବସ୍ତୁର ସନ୍ଧାନରେ ବ୍ରତୀ ଅଛନ୍ତି । ବୈଜ୍ଞାନିକମାନେ ଆଣ୍ଟି ମ୍ୟାଟର୍ସ ବା ବିପରୀତ ବସ୍ତୁକୁ ନେଇ ଗବେଷଣା

କରି ଚାଲିଛନ୍ତି ଏବଂ ପ୍ରଥମ ଥର ପାଇଁ ଅତି ନିକଟ ଅତୀତରେ ଆଣ୍ଟି ହାଇଡ୍ରୋଜେନର ସୃଷ୍ଟି ମଧ୍ୟ କରିଛନ୍ତି । ଉତ୍ତାପ ଓ ବିଦ୍ୟୁତ୍‌ର ସୁପରିବାହୀ ପଲିମର, ପ୍ଲାଷ୍ଟିକ୍, ଏନର୍ଜି, ଔଷଧପତ୍ର, କ୍ଲୋନିଂ, ଥର୍ମୋ-ଇଲେକ୍‌ଟ୍ରିକାଲ କେମିଷ୍ଟ୍ରି, ଅପଟିକ୍ସ, ମେମୋରି ରିସର୍ଚ୍ଚ ଆଦିରେ ଆମେ ଯୁଗାନ୍ତକାରୀ ଗବେଷଣା କରି ଗବେଷଣାଲବ୍ଧ ମିଠା ଫଳର ସ୍ୱାଦ ମଧ୍ୟ ଚାଖିଲୁଣି । ଆମେରିକାର ଫୁଡ୍ ଓ ଡ୍ରଗସ୍ ଆଡ୍‌ମିନିଷ୍ଟ୍ରେସନ ବିଭାଗ ବାୟୋଟେକ୍ନୋଲୋଜି ଶିଳ୍ପ ସଂସ୍ଥା ଦ୍ୱାରା ପ୍ରସ୍ତୁତ କରାଯାଇଥିବା ୧୦୦ରୁ ଉର୍ଦ୍ଧ୍ୱ ଡ୍ରଗ ଓ ଟୀକାର ବ୍ୟବହାର ପାଇଁ ମଞ୍ଜୁରୀ ପ୍ରଦାନ କରିଛି । ଆହୁରି ୩୫୦ଟି ଡ୍ରଗ ଓ ଟୀକା କ୍ଲିନିକାଲ ପରୀକ୍ଷା ନିରୀକ୍ଷାର ଶେଷ ପର୍ଯ୍ୟାୟରେ ଅଛି । ଅତ୍ୟାଧୁନିକ ଅଣୁବିକ୍ଷଣ ଯନ୍ତ୍ର ବ୍ୟବସ୍ଥା ଓ ତହିଁରେ ବସ୍ତୁର ପ୍ରତିଛବିର ଅଙ୍କନ ଆମକୁ ସ୍ୱାସ୍ଥ୍ୟରକ୍ଷା, ସୁଷମ ଖାଦ୍ୟ ଓ ନିୟୁଟ୍ରିସନ ବିଷୟରେ ଯଥେଷ୍ଟ ଅବଗତ କରାଇଲା । ଆମିନୋଏସିଡ୍‌ର ମଲିକ୍ୟୁଲାର ଷ୍ଟ୍ରକ୍‌ଚ୍‌ର ବିଷୟରେ ଆମେ ଧୀରେ ଧୀରେ ପର୍ଯ୍ୟାୟକ୍ରମେ ବହୁତ କଥା ଜାଣିଲେ ।

ବାୟୋଡ଼ିଜିଟାଲ କନ୍‌ଭରଜେନ୍ସର ଶୁଭାରମ୍ଭକୁ ଆମେ ଏବେ ଆଖି ପୁରେଇ ଦେଖୁଛେ । ଷ୍ଟେମ ସେଲ୍ ରିସର୍ଚ୍ଚ ଓ କ୍ଲୋନିଂକୁ ନେଇ ହେଉଥିବା ଅସାଧାରଣ ଗବେଷଣାର ଆମେ ସବୁ ସାକ୍ଷୀ । ଏ ନେଇ ବହୁବିଧ ନୈତିକ ମୁଦ୍ଦା ଆମ ସାମନାରେ ଆସି ଉଭା ହେଉଛି । ପ୍ରଥମ ପର୍ଯ୍ୟାୟରେ ବାୟୋଲୋଜି କ୍ଷେତ୍ରକୁ ସୂଚନା ପ୍ରଯୁକ୍ତି ବିଦ୍ୟା ପ୍ରଭାବିତ କଲା । ପରବର୍ତ୍ତୀ ପର୍ଯ୍ୟାୟରେ ସୂଚନା ପ୍ରଯୁକ୍ତିବିଦ୍ୟା କ୍ଷେତ୍ରକୁ ବାୟୋଲୋଜି ପ୍ରଭାବିତ କରିବ । ବାୟୋଲୋଜି ଓ ସୂଚନା ପ୍ରଯୁକ୍ତିବିଦ୍ୟା ଉଭୟ ମାନବ ଇତିହାସରେ ସ୍ମରଣୀୟ ମୋଡ଼ ଭାବେ ପରିଗଣିତ ହେବେ ।

ଏପରି ଯୁକ୍ତି ଉପସ୍ଥାପନ କରାଯାଉଛି ଯେ ପ୍ରଯୁକ୍ତି ବିଦ୍ୟା ଭିତ୍ତିକ ଅଗ୍ରଗତି କେବଳ ଧନୀ ଶ୍ରେଣୀର ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ଏବଂ ଦରିଦ୍ର ଜନସାଧାରଣଙ୍କ ପାଇଁ ଏହାର ଆଦୌ କୌଣସି ମାନେ ନାହିଁ । ଏପରିକି ଆମେ ପ୍ରାୟ ଶୁଣିଥାଉ ଯେ ପ୍ରଯୁକ୍ତି ବିଦ୍ୟାଭିତ୍ତିକ ଅଗ୍ରଗତି ଦରିଦ୍ର ଜନସାଧାରଣଙ୍କ ଜୀବନକୁ ଆହୁରି ଦୁର୍ବିସହ କରିଦେଇଥାଏ । ଭାରତବର୍ଷ କେବେ ବି ଏକ ଅର୍ଥନୈତିକ ମହାଶକ୍ତି ଭାବେ ଉଦ୍‌ଭାସିତ ହୋଇ ପାରିବ ନାହିଁ, ଯେ ପର୍ଯ୍ୟନ୍ତ ଏପରି ଚିନ୍ତାଧାରାକୁ ଆମେ ରାସ୍ତାକଡ଼ର ଡଷ୍ଟବିନ୍ ଭିତରକୁ ଫିଙ୍ଗି ନ ଦେଇଛେ । ଏପରି ଏକ ମାରାତ୍ମକ ଚିନ୍ତାଧାରା ଗୋଟାଏ ଜାତିର ନବନିର୍ମାଣରେ ସହାୟକ ହେବ ବା କିପରି ବୋଲି ଆଲ୍‌ଭିନ ଟଫଲର ଓଲଟା ପ୍ରଶ୍ନ କରିଛନ୍ତି ।

ଶିଳ୍ପ ବିପ୍ଳବର ଅୟଂଆରମ୍ଭ ପର୍ଯ୍ୟାୟରେ ଏପରିକି ବହୁ ଅତି ମେଧାବୀ ଅର୍ଥନୀତିଜ୍ଞମାନେ ଠିକ୍ ସେହି ଭୁଲ୍‌ଟି କରି ବସିଥିଲେ । ସେମାନେ ଧରିନେଲେ ଯେ ସେମାନଙ୍କ ସମୟରେ ଆବିର୍ଭୂତ ହୋଇଥିବା ନୂତନ ପ୍ରଯୁକ୍ତି ବିଦ୍ୟା ଉଦାହରଣ ସ୍ୱରୂପ ଷ୍ଟିମ୍ ଇଞ୍ଜିନ୍‌ର ଆବିଷ୍କାର ଫାଷ୍ଟ ୱେଭ ଏଗ୍ରିକଲଚରାଲ ଇକୋନୋମିକ୍ସ ସହ କୌଣସି ସମ୍ପର୍କ ନାହିଁ । ଖୁବ୍ ଶୀଘ୍ର ନୂତନ ପ୍ରଯୁକ୍ତି ବିଦ୍ୟା କୃଷିକର୍ମ, ଚାରା ରୋପଣ, ଶସ୍ୟ ଅମଳ ଓ କୃଷିଜାତ ସାମଗ୍ରୀଗୁଡ଼ିକର ପ୍ରକ୍ରିୟାକରଣ ଆଦି କ୍ଷେତ୍ରରେ ପରିପ୍ରୟୋଗ ହେଲା । ତା'ପରେ ଧୀରେ ଧୀରେ ନୂତନ ପ୍ରଯୁକ୍ତି ବିଦ୍ୟା ଟ୍ରାକ୍ଟରଠୁଁ ଆରମ୍ଭ କରି ସାର ପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରରେ ନିଜର ଡେଣା ମେଲେଇଲା, ଯଦ୍ୱାରା କୃଷକ ବନ୍ଧୁମାନେ ଖାଦ୍ୟ ଶସ୍ୟର ଉତ୍ପାଦନରେ ଯଥେଷ୍ଟ ଲାଭବାନ ହେଲେ ।

ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଯେତେବେଳେ ପ୍ରଗତିର ୨ୟ ଢେଉ ବା ସେକେଣ୍ଡ ୱେଭ ଅଫ୍ ଡେଭଲପମେଣ୍ଟ ପୃଥିବୀର ବିଭିନ୍ନ ଅଞ୍ଚଳରେ ପ୍ରବାହିତ ହେବାକୁ ଲାଗିଲା, ଏହା ବିଶ୍ୱର ସାମଗ୍ରୀକ ଧନ ସମ୍ପତ୍ତିର ବଣ୍ଟନ ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନ ଆଣିଲା । ୧୮୦୦ ମସିହା ପର୍ଯ୍ୟନ୍ତ ଧନୀ ରାଷ୍ଟ୍ରମାନେ ଗରିବ ରାଷ୍ଟ୍ରମାନଙ୍କ ଠାରୁ ହାରହାରି ତିନିଗୁଣା ଅଧିକ ଧନୀ ଥିଲେ । ଯେତେବେଳେ ୟୁରୋପ ଓ ପରେ ଆମେରିକା ଆଦି ଶିଳ୍ପୋନ୍ନତ ରାଷ୍ଟ୍ରମାନେ ମୁଣ୍ଡ ଟେକି ଠିଆ ହେଲେ, ସେତେବେଳେ ପ୍ରଗତିର ସମସ୍ତ ଜୟମାଲ୍ୟ ତାଙ୍କ ବକ୍ଷଦେଶ ମଣ୍ଡନ କଲା । ପାଶ୍ଚାତ୍ୟ ରାଷ୍ଟ୍ରରେ ପ୍ରତ୍ୟେକ ୩୫ ରୁ ୪୦ ବର୍ଷ ବ୍ୟବଧାନରେ ସର୍ବସାଧାରଣ ରୋଜଗାର ଦ୍ୱିଗୁଣିତ ହେବାକୁ ଲାଗିଲା ଅର୍ଥାତ୍ ପ୍ରାୟ ପ୍ରତି ପିଢ଼ିରେ ପ୍ରତି ପରିବାରର ରୋଜଗାର ଦ୍ୱିଗୁଣିତ ହେଲା ।

ସଂକ୍ଷେପରେ କହିବାକୁ ଗଲେ ପ୍ରଗତିର ଦ୍ୱିତୀୟ ଢେଉ ଯେଉଁ ରାଷ୍ଟ୍ରମାନଙ୍କରେ ବହିବାକୁ ଲାଗିଲା, ସେହି ରାଷ୍ଟ୍ରମାନେ ଅନ୍ୟ ରାଷ୍ଟ୍ରମାନଙ୍କୁ ପଛରେ ପକେଇ ଦେଇ ଆଗକୁ ଆଗକୁ ମାଡ଼ି ଚାଲିଲେ । ସେହି ରାଷ୍ଟ୍ରମାନେ ବାମନ ବହୁଳ ବିଶ୍ୱ ବ୍ୟବସ୍ଥାରେ ବିଶାଳକାୟ ଦୈତ୍ୟ ହେବାର ଅମୃତମୟ ସୁଯୋଗ ଲାଭକଲେ । ଦୁଇ ଶତାବ୍ଦୀ ଧରି ଶକ୍ତିର ମୌଳିକ ବିଭାଜନ ପୂର୍ବ ଏବଂ ପଶ୍ଚିମ, ଉତ୍ତର ଏବଂ ଦକ୍ଷିଣ କିମ୍ବା ବୃହତ୍‌କାୟ ରାଷ୍ଟ୍ର ଏବଂ କ୍ଷୁଦ୍ର ରାଷ୍ଟ୍ର ମଧ୍ୟରେ ସୀମିତ ନ ଥିଲା । ପ୍ରଗତିର ଦ୍ୱିତୀୟ ଢେଉର ସଂସ୍ପର୍ଶରେ ଆସିଥିବା ଶିଳ୍ପୋନ୍ନତ ରାଷ୍ଟ୍ରମାନେ ଶୀର୍ଷ ସ୍ଥାନରେ ଆସୀନ ହେଲେ ଏବଂ ପ୍ରଗତିର ପ୍ରଥମ ଢେଉର ସଂସ୍ପର୍ଶରେ ଆସିଥିବା କୃଷିଭିତ୍ତିକ ରାଷ୍ଟ୍ରମାନେ ତଳ ସୋପାନରେ ଚକା ଆସନଟିଏ ପକେଇ ସେମିତି ବସି ରହିଲେ ।

ହେଲେ, ଏବେ ତିନି ସ୍ତର ବିଶିଷ୍ଟ ଏକ ଶକ୍ତି ବିନ୍ୟାସ ଦୁନିଆ ଆଗରେ ଆସି ଉଭା ହେବା ପାଇଁ ଟାକି ବସିଛି । ପ୍ରଗତିର ପ୍ରଥମ ଢେଉ ଦେହରେ ପିଟି ହୋଇଥିବା ବହୁ କୃଷିଭିତ୍ତିକ ଅର୍ଥନୀତି ସମୃଦ୍ଧ ରାଷ୍ଟମାନେ ଏବେ ବି ବିଶ୍ୱ ପୃଷ୍ଠଭୂମିରେ ନିମ୍ନ ସୋପାନରେ ଅଧିଷ୍ଠିତ । ପ୍ରଗତିର ଦ୍ୱିତୀୟ ଢେଉର ଧକ୍କା ଯେଉଁ ରାଷ୍ଟ୍ରମାନେ ଖାଇଛନ୍ତି ଏବଂ ଯେଉଁଠି ଶ୍ରମ ଅତ୍ୟନ୍ତ ଶସ୍ତା ଓ ମାନୁଫ୍ୟାକ୍ଚରିଙ୍ଗ ସେକ୍ଟରଗୁଡ଼ିକ ବହୁଳ ଭାବେ ପ୍ରସାରିତ; ସେମାନେ ବିଶ୍ୱପୃଷ୍ଠଭୂମିରେ ମଧ୍ୟମ ସୋପାନରେ ଅଧିଷ୍ଠିତ । ପ୍ରଗତିର ତୃତୀୟ ଢେଉର ଉତ୍ତାଳ ତରଙ୍ଗମାଳାକୁ ଯେଉଁ ଏକକ ବିକଶିତ ରାଷ୍ଟ୍ର ସାଦରେ ଅଭ୍ୟର୍ଥନା ଜଣାଇ ନିଜ ଘରକୁ ପାଛୋଟି ନେଲା, ସେ ରାଷ୍ଟ୍ର ଆଜି ବିଶ୍ୱରେ ଏକ ନମ୍ବର ସ୍ଥାନ ଅଧିକାର କରିଛି । ଆଜି ପର୍ଯ୍ୟନ୍ତ ଆମେ ଯେଉଁ ଘରକୁ ଏକ ଦୁଇ ମହଲା ଘର ବୋଲି ବିବେଚ଼ନା କରୁଥିଲୁ, ସେହି ଘରେ ଆଉ ଏକ ମହଲା ଯୋଡ଼ା ହେଲା ପରେ ତାହା ଏକ ତିନିମହଲା ବିଶିଷ୍ଟ ଘରରେ ପରିଣତ ହୋଇଗଲା । ଏହି ତ୍ରିତଳ ପ୍ରାସାଦର କେଉଁ ମହଲାରେ ଭାରତବର୍ଷ ଅଧିଷ୍ଠିତ ହେବ - ତାହାହିଁ ଏକ ମୁଖ୍ୟ ପ୍ରଶ୍ନ, ଯେଉଁ ପ୍ରଶ୍ନର ଏବେ ଭାରତବର୍ଷ ଆମନା ସାମନି କରୁଛି ।

ବିଶ୍ୱ ସ୍ତରରେ ଦେଖା ଦେଇଥିବା ଏହି ତ୍ରିତଳ ବ୍ୟବସ୍ଥା ଭାରତବର୍ଷ ଉପରେ ତା'ର ପ୍ରଭାବ କିପରି ବିସ୍ତାର କରୁଛି, ତା' ଉପରେ ବହୁତ କିଛି ନିର୍ଭର କରିବ । ଭାରତର ଆଭ୍ୟନ୍ତରୀଣ ବ୍ୟବସ୍ଥାରେ ଏପରି ତ୍ରିତଳ ବିଶିଷ୍ଟ ଗଠନ ଶୈଳୀ ପରିଦୃଷ୍ଟ ହେଲାଣି । ଭାରତବର୍ଷରେ ୭୦୦ ରୁ ୮୦୦ ମିଲିୟନ କୃଷିଜୀବୀ ଅବା ଗ୍ରାମୀଣ ଜନସାଧାରଣ ବସବାସ କରିଥାନ୍ତି । ପୁଣି ୨୦୦ ରୁ ୩୦୦ ମିଲିୟନ ଲୋକ ସହରମାନଙ୍କରେ ଥିବା ବିଭିନ୍ନ ଶିଳ୍ପ ସଂସ୍ଥାମାନଙ୍କରେ କାମ କରିଥାନ୍ତି । ଭାରତବର୍ଷରେ କେତେକ ଅତ୍ୟନ୍ତ ଅତ୍ୟାଧୁନିକ ଥାର୍ଡ଼ ୱେଭ ସେକ୍ଟରମାନଙ୍କରେ ଲୋକସଂଖ୍ୟା ଦ୍ରୁତ ଗତିରେ ବଢ଼ି ଚାଲିଛି, ଯଦିଓ ଏହି ସଂଖ୍ୟା ଏବେ ତୁଳନାତ୍ମକ ଭାବେ ଅତ୍ୟନ୍ତ କ୍ଷୁଦ୍ର ।

ଯଦି ଭାରତବର୍ଷକୁ ପ୍ରଗତିର ଫାଷ୍ଟ ୱେଭ, ସେକେଣ୍ଡ ୱେଭ ଓ ଥାର୍ଡ଼ ୱେଭ - ଏପରି ତିନୋଟି ସେକ୍ଟରରେ ବିଭାଜନ କରାଯାଏ, ତେବେ ଭାରତବର୍ଷକୁ ସେପରି ଷ୍ଟ୍ରାଟେଜି ଦେଇ ମଧ୍ୟ ଗତି କରିବାକୁ ପଡ଼ିବ । ପ୍ରଥମତଃ ପ୍ରଗତିର ଫାଷ୍ଟ ୱେଭ ବିଷୟରେ ଟିକେ ଆଲୋଚ଼ନା କରାଯାଉ । ଯଦିଓ ଜରୁରୀକାଳୀନ ସ୍ୱଳ୍ପମିଆଦି

କାର୍ଯ୍ୟକ୍ରମ ଭାରତ ଅବା ଚୀନ, ବ୍ରାଜିଲ ଓ ମେକ୍ସିକୋର ସାଂପ୍ରତିକ ପିଢ଼ିର କୃଷକ ବନ୍ଧୁମାନଙ୍କୁ ସହାୟକ ହେବ, ହେଲେ ଦାରିଦ୍ର୍ୟର ନିର୍ମମ କଷାଘାତ ଓ ବିଭତ୍ସ ତାଡ଼ନାରୁ ମୁକ୍ତି ପାଇବା ପାଇଁ ହେଲେ ସାଧାରଣ କୃଷି ବ୍ୟବସ୍ଥା ବଦଳରେ ଅତ୍ୟଧିକ ଉତ୍ପାଦନ ଭିତ୍ତିକ କୃଷି ବ୍ୟବସ୍ଥାର ପ୍ରଚଳନ ନିତାନ୍ତ ଆବଶ୍ୟକ । ଏହା ବାଦ ଯେ କୌଣସି ଚିନ୍ତାଧାରା କେବଳ ଏକ ମରିଚୀକା କହିଲେ ଅତ୍ୟୁକ୍ତି ହେବ ନାହିଁ । ଫାଷ୍ଟ ୱେଭ ଏଗ୍ରିକଲ୍‌ଚ଼ର ବା ପ୍ରଗତିର ପ୍ରଥମ ଢେଉ ପିଠିରେ ବସି ଯେଉଁ କୃଷି କର୍ମ ସଂପାଦିତ ହୋଇଥାଏ, ତାହା ଏବେ ବି ଯାନ୍ତ୍ରିକ ଶକ୍ତିବିହୀନ ଅଟେ ଏବଂ ମାନବ ଓ ପଶୁ ସମ୍ପଦର ଶାରିରୀକ ଶକ୍ତି ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଅଟେ, ଫଳ ସ୍ୱରୂପ ଉତ୍ପାଦକତା ସେପରି ଆକର୍ଷଣୀୟ ହୋଇପାରି ନ ଥାଏ । ସ୍ୱଳ୍ପ ବଳକା ପରିମାଣକୁ ଆଧାର କରି କେବଳ ବଞ୍ଚି ରହିବା ପାଇଁ ସର୍ବନିମ୍ନ ଆବଶ୍ୟକତାକୁ ମେଣ୍ଟେଇ ରଖିବା ଏହା ଦ୍ୱାରା ମାତ୍ର ସମ୍ଭବପର ହୋଇଥାଏ । ସେକେଣ୍ଡ ୱେଭ ଏଗ୍ରିକଲଚ଼ର ବା ପ୍ରଗତିର ଦ୍ୱିତୀୟ ଢେଉ ପିଠିରେ ବସିରହି ଯେଉଁ କୃଷିକର୍ମ ସଂପାଦିତ ହୋଇଥାଏ, ଯାହା କ୍ଷୁଦ୍ର ତଥା ପାରିବାରିକ ଯାନ୍ତ୍ରିକ କୃଷିଫାର୍ମ ଓ କୃଷିଭିତ୍ତିକ ବ୍ୟବସାୟ ମାଧ୍ୟମରେ ହିଁ ସଂଗଠିତ ହୋଇଥାଏ । ଏଗୁଡ଼ିକୁ ସହରରେ କଳ କାରଖାନା ମାଧ୍ୟମରେ ବହୁଳ ଭାବେ ଉତ୍ପାଦିତ ହେଉଥିବା ସାମଗ୍ରୀଗୁଡ଼ିକର ଗ୍ରାମୀଣ ପ୍ରତିରୂପ ଭାବେ ଆଖ୍ୟାୟିତ କରାଯାଇପାରେ, ଯାହାକୁ କି ପ୍ରଗତିର ଦ୍ୱିତୀୟ ଢେଉଭାବେ ପରିଗଣିତ କରାଯାଇପାରେ ।

ଥାର୍ଡ଼ ୱେଭ ଏଗ୍ରିକଲଚ଼ର ବା ପ୍ରଗତିର ତୃତୀୟ ଢେଉ ପିଠିରେ ବସି ରହି କୃଷିକର୍ମ ସମ୍ପାଦିତ କରିବାର ପ୍ରକ୍ରିୟା ପ୍ରାୟ ନାହିଁ କହିଲେ ଚଳେ । ଏହା ତୁଳାର ଉତ୍ପାଦନ ପାଇଁ ଜେନେଟିକ୍ସ ବା ଆନୁବଂଶିକ ପ୍ରଯୁକ୍ତିବିଦ୍ୟାର ପରିପ୍ରୟୋଗ, ସ୍ୟାଟେଲାଇଟ, କମ୍ପ୍ୟୁଟର ଓ ଅନ୍ୟାନ୍ୟ ଅତ୍ୟାଧୁନିକ ପ୍ରଯୁକ୍ତି ବିଦ୍ୟାର ପରିପ୍ରୟୋଗ ମାଧ୍ୟମରେ ଏକର ପିଛା ନ୍ୟୁନତମ ଶକ୍ତି ବ୍ୟୟ କରି ଉତ୍ପାଦକତାରେ ଅଭୂତପୂର୍ବ ଅଭିବୃଦ୍ଧି ଆଣିବାରେ ଅତ୍ୟନ୍ତ ସହାୟକ ହୋଇଥାଏ । ଏହା ହିଁ ହେଉଛି ଜ୍ଞାନାଶ୍ରୟୀ ଅର୍ଥନୀତିର କୃଷିଭିତ୍ତିକ ରୂପରେଖ । ଏପରି ଏକ ଦିନ ଆସିବ, ଯେଉଁ ଦିନ ଥାର୍ଡ଼ ୱେଭ ହାଇପର ଏଗ୍ରିକଲଚ଼ର ଖାଦ୍ୟ, ଶକ୍ତି, ପ୍ଲାସଟିକ, ଫାର୍ମାସିଉଟିକାଲ୍ସ ଏବଂ ଏକାଧିକ ଉଚ୍ଚମୂଲ୍ୟଯୁକ୍ତ ଦ୍ରବ୍ୟ ଗୁଡ଼ିକର ଉତ୍ପାଦନ କରିବ । ଏହା ମନେ କରନ୍ତୁ ଯେ ଆଗାମୀକାଲିର ଗ୍ରାମୀଣ ପିଲାମାନଙ୍କ ପାଇଁ ଏକ ପରିବର୍ତ୍ତିତ ବିଶ୍ୱ ଅପେକ୍ଷା କରି ରହିଛି ।

ନିଶ୍ଚିତ ରୂପେ ଭାରତ ସମେତ ବିଶ୍ୱର କୌଣସି ରାଷ୍ଟ୍ର ଏପରି ଏକ ବିଶ୍ୱର ଆଗମନକୁ ଅପେକ୍ଷା କରି ବସି ରହିବ ନାହିଁ । ପ୍ରଗତିର ପ୍ରଥମ ଢେଉର ସମ୍ମୁଖୀନ ହେଉଥିବା ଜନସଂଖ୍ୟା ସହିତ ସମ୍ପର୍କର ସେତୁବନ୍ଧ ପ୍ରତିଷ୍ଠା କରିବାକୁ ହେଲେ ଉତ୍ତମ ପଦକ୍ଷେପ ମାଧ୍ୟମରେ ତାହା କେବଳ ସମ୍ଭବ ହୋଇ ପାରିବ । ପ୍ରଗତିର ଦ୍ୱିତୀୟ ଢେଉ ପିଠିରେ ଉପବିଷ୍ଟ ରହି ସମୟର ସୁଅକୁ ସମ୍ମୁଖୀନ ହେବାକୁ ହେଲେ ମାନୁଫ୍ୟାକଚ଼ରିଙ୍ଗ ସେକ୍ଟର ଗୁଡ଼ିକ ପାଇଁ ନିର୍ଦ୍ଦିଷ୍ଟ ଷ୍ଟ୍ରାଟେଜିର ଆବଶ୍ୟକତା ପଡ଼ିବ । ଏହାର ସାରମର୍ମଟି ହେଲା କ୍ରମାଗତ ଭାବେ ଆବିଷ୍କାର ଓ ଉଦ୍ଭାବନ ପଥର ଯାତ୍ରୀ ହୋଇ ପ୍ରତିଯୋଗିତାମୂଳକ ମୂଲ୍ୟରେ ହ୍ରାସ ଘଟାଇ ଉଚ୍ଚରୁ ଉଚ୍ଚତର ମୂଲ୍ୟଯୁକ୍ତ ପଦାର୍ଥ ଗୁଡ଼ିକର ପ୍ରସ୍ତୁତି କରିବା ।

ଉତ୍ପାଦିତ ବସ୍ତୁଗୁଡ଼ିକରେ କ୍ରମାଗତ ଭାବେ ମୂଲ୍ୟ ଯୋଗ କରିବାକୁ ହେଲେ ଗୋଟିଏ ରାସ୍ତା ହେଲା ସେହି ବସ୍ତୁ ଗୁଡ଼ିକରେ ଜ୍ଞାନର ପରିମାଣକୁ ଅଧିକରୁ ଅଧିକ ବୃଦ୍ଧି କରିବାକୁ ପଡ଼ିବ । ଉଦାହରଣ ସ୍ୱରୂପ ଚୀନର ଶସ୍ତା ଯୋତା ବଜାରରେ ତୀବ୍ରତର ପ୍ରତିଯୋଗିତା ଯୋଗୁଁ ଦକ୍ଷିଣ କୋରିଆର ଯୋତା କମ୍ପାନୀମାନେ ନିଜର ପରାଜୟକୁ ସ୍ୱୀକାର କରି ଓହରି ଆସିବାକୁ ବାଧ୍ୟ ହୋଇଥିଲେ । ପରନ୍ତୁ ଏକ କମ୍ପାନୀ 'ଡିଜିଟାଲ ସୁଜ୍' ଏହି ପ୍ରତିଯୋଗିତାର ବଜାରରେ ଅନବରତ ସଂଗ୍ରାମ କରି ଚାଲିଛି । 'ଫାର ଇଷ୍ଟ ଇକୋନୋମିକ୍ ରିଭ୍ୟୁ' ପ୍ରକାଶ କରିଛି ଯେ ଏହି ଡିଜିଟାଲ ସୁଜ୍ କମ୍ପାନୀ ଯୋତା ସିଲେଇ ମେସିନର ଅହରହ ଘୋର ଘର୍ଘର ରବ ମାଧ୍ୟମରେ ଯୋତା ସିଲେଇ କରି ଏକାଧିକ କମ୍ପ୍ୟୁଟର ମାଧ୍ୟମରେ ଫ୍ଲାଟ ସ୍କ୍ରିନ ମନିଟର ବ୍ୟବହାର କରି ପ୍ରତ୍ୟେକ ଗ୍ରାହକଙ୍କର ପାଦର ନକ୍ସା ଅଙ୍କନ କରିଥାଏ, ଯାହାକି ଯୋତା ଦୋକାନରେ ନିୟୋଜିତ ଥିବା ଜଣେ ସହାୟକ ତାଙ୍କ କମ୍ପ୍ୟୁଟରରୁ ସିଧାସଳଖ କମ୍ପାନୀକୁ ପଠାଇ ଥାଆନ୍ତି । ଗ୍ରାହକମାନେ ମଧ୍ୟ ବ୍ୟକ୍ତିଗତ ଭାବେ ନିଜ ନିଜ ପାଦର ମାପ ଅନୁଯାୟୀ ତିନିଦିନ ମଧ୍ୟରେ ଯୋତା ନିଶ୍ଚିତ ରୂପେ ପାଇଥାଆନ୍ତି ।

ଭାରତବର୍ଷର ସର୍ବଦିଗ ବ୍ୟାପ୍ତ ପ୍ରଗତିର ଥାର୍ଡ୍ ୱେଭ ସେକ୍ଟର ଅଦ୍ଭୁତ ସଫଳ କାହାଣୀ ବୟାନ କରିଥାଏ । ଏହା 'ଆଉଟ ସୋର୍ସ ପ୍ରୋଗ୍ରାମିଂ' ଓ 'ଡାଟା ସେଣ୍ଟର ସର୍ଭିସେସ' ଉପରେ ପ୍ରାୟତଃ କେନ୍ଦ୍ରୀଭୂତ ଥିଲା । କାର୍ଯ୍ୟକଳାପର ନାନାବିଧ ଧାରା ଓ ତତ୍ ଜନିତ ସେବା ପ୍ରଦାନ ଆହୁରି ଦ୍ରୁତତର ଓ ସୁଦୂର ପରାଭବ ସମ୍ପନ୍ନ ହେବା

ଉଚିତ । ଆଜି ପର୍ଯ୍ୟନ୍ତ ଭାରତକୁ ମିଳିଥିବା ସଫଳତା ଶସ୍ତା ଦରରେ ଭାରତରେ ଉପଲବ୍ଧ ହେଉଥିବା ଶ୍ରମ ପାଇ ହିଁ ସମ୍ଭବ ହୋଇ ପାରିଛି ଏବଂ ଏହା ନିଶ୍ଚିତ ରୂପେ ଏକ ଅସ୍ଥାୟୀ ବ୍ୟବସ୍ଥା ଅଟେ । ଶ୍ରମ ଯେତେବେଳେ ଶସ୍ତା ଦରରେ ବଜାରରେ ମିଳିଥାଏ, ସେତେବେଳେ ଏହା ମୋଟ ଉପରେ ତିନୋଟି ବିପଦର ସମ୍ମୁଖୀନ ହୋଇଥାଏ । ପ୍ରଥମତଃ ଯେ କୌଣସି ବ୍ୟକ୍ତି ବା ସଂସ୍ଥା ଯେ କୌଣସି ସ୍ଥାନରୁ ହଠାତ୍ ଆବିର୍ଭୂତ ହୋଇ ଆପଣଙ୍କୁ ଶସ୍ତା ଦରରେ ଶ୍ରମିକ ଯୋଗେଇ ଦେବାର ପ୍ରସ୍ତାବ ଦେଇପାରେ । ଦ୍ୱିତୀୟତଃ ଶସ୍ତା ଦରରେ ଉପଲବ୍ଧ ହେଉଥିବା ଶ୍ରମ ଶକ୍ତି ସୁରକ୍ଷିତ ନୀତି ନିୟମକୁ ପ୍ରାୟତଃ ଆକର୍ଷିତ କରିଥାଏ । ଭାରତକୁ ଆସୁଥିବା ବିଭିନ୍ନ ହାଇଟେକ ଚାକିରି ବ୍ୟବସ୍ଥାକୁ କିପରି ପ୍ରତିରୋଧ କରିଦେଇ ହେବ, ଏ ନେଇ ଆମେରିକା ଏବେ ନାନାଦି ପଲିସି ଉପରେ ପର୍ଯ୍ୟାଲୋଚନା କରୁଛି । ତୃତୀୟତଃ ବୈଷୟିକ ପ୍ରଗତି ସହ ତାଳ ଦେଇ ପ୍ରତିଯୋଗିତାମୂଳକ ବଜାରରେ ଶସ୍ତା ଶ୍ରମର ଉପଲବ୍ଧି ଆପେ ଆପେ ତା'ର ଗୁରୁତ୍ୱ ହରେଇ ବସିପାରେ ।

ଏ ସମସ୍ତ ଆଶଙ୍କାର ପରିପେକ୍ଷୀରେ ସୂଚନା ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଭାରତର ଅଭୂତପୂର୍ବ ଅଗ୍ରଗତି କ୍ଷଣ ଭଙ୍ଗୁର ବୋଲି ପ୍ରତୀୟମାନ ହୋଇଥାଏ । ଏହା ଆହୁରି ପ୍ରଗତିଶୀଳ ହାଇ-ଟେକ ଯୁକ୍ତ ଅତ୍ୟାଧୁନିକ ବିଶେଷତ୍ୱ ବହନ କରୁଥିବା ସେକ୍ଟର ଗୁଡ଼ିକରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ସୂଚନା ପ୍ରଯୁକ୍ତି ବିଦ୍ୟା ଓ ବାୟୋଲୋଜିର ଫ୍ୟୁଜନ ପାଇଁ ମଧ୍ୟ ନିଜକୁ ପ୍ରସ୍ତୁତ କରି ରଖିବା ଉଚିତ । ଏହା ହିଁ ହେବ ବାୟୋଟେକ୍ନୋଲୋଜି, ଯାହାକୁ ଆମେ 'ଥାର୍ଡ଼ ଫେଜ୍ ଅଫ୍ ରିଭୋଲ୍ୟୁସନ'' ବା ପ୍ରଗତିର ମହାବିପ୍ଳବର ତୃତୀୟ ଅଧ୍ୟାୟ ବୋଲି ଅଭିହିତ କରିପାରିବା । ଏହାପରେ ଯେଉଁ ଅଧ୍ୟାୟ ପ୍ରଗତିର ବଡ଼ ଦାଣ୍ଡରେ ନିଜର ରୂପଲାବଣ୍ୟର ପସରାକୁ ମେଲେଇ ଦେବ, ତା' ହେବ ମହାକାଶକୁ ମହାଯାତ୍ରାର ମହାପର୍ବ, ଯାହାକୁ କି ଆଲ୍‌ଭିନ ଟଫଲର ମାନବ ସଭ୍ୟତାର ମହାଭାଗ୍ୟର ମହା ଉନ୍ମୋଚନ ପର୍ଯ୍ୟାୟ ବୋଲି ପ୍ରାୟତଃ ଯୁକ୍ତି ଛଳରେ କହିଥାନ୍ତି ।

**ସମାଜ**

**ତା- ୧୯.୫.୨୦୦୩**



# ଭାରତ - ଶ୍ରୀଲଙ୍କା ନୂତନ ଅର୍ଥନୈତିକ ସମ୍ପର୍କ ପ୍ରଣିଧାନଯୋଗ୍ୟ

ଫେବୃୟାରୀ ୨୮ ରୁ ମାର୍ଚ୍ଚ ୨ ତାରିଖ ମଧ୍ୟରେ ନୂଆଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା ଦ୍ୱିତୀୟ ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭରେ ବିଶେଷ ନିମନ୍ତ୍ରିତ ବକ୍ତା ଭାବେ ଯୋଗଦାନ କରି ଶ୍ରୀଲଙ୍କାର ପ୍ରଧାନମନ୍ତ୍ରୀ ଶ୍ରୀ ରାନିଲ ବିକ୍ରମ ସିଂହ କୁହନ୍ତି ଯେ ଇତିହାସକୁ ବଦଳେଇବା ପାଇଁ ଆଜି ଆମ ହାତରେ ଏକ ଅପୂର୍ବ ସୁଯୋଗ ଆସିଛି, କାଲି ହୁଏତ ଆମେ ଏହା ହରେଇ ବସିବା । କନ୍‌କ୍ଲେଭର ଶୀରୋନାମା - ''ଭାରତ ଏକ ବିଶାଳକାୟ ଦୈତ୍ୟ ନା ଏକ କ୍ଷୁଦ୍ର ବାମନ'' ବିଷୟରେ ମତାମତ ପରିବେଷଣ କରିବାକୁ ଯାଇ ରାନିଲ ବିକ୍ରମ ସିଂହ କୁହନ୍ତି ଯେ ଐତିହାସିକ ବନ୍ଧନର ପୁନଃସଂଯୋଗ ମାଧ୍ୟମରେ ଦକ୍ଷିଣ ଏସିଆ ଏକ ଅର୍ଥନୈତିକ ଶକ୍ତି କେନ୍ଦ୍ର ଭାବେ ଉଦ୍‌ଭାସିତ ହେବ । ସେଥିପାଇଁ ଚିରାଚ଼ରିତ ଅର୍ଥନୈତିକ ବ୍ୟବସ୍ଥାର ବାହାରକୁ ଥରେ ଝୁଙ୍କି ଦେଖିବାକୁ ଅଭ୍ୟାସ କଲେ, ତାହା ନିଶ୍ଚୟ ଗତରେ ପଡ଼ିଯିବ ।

ରାନିଲ ବିକ୍ରମସିଂହ ଇତିହାସର ମଧୁମୟ ପୃଷ୍ଠା ଉନ୍‌ମୋଚ଼ନ କରି କୁହନ୍ତି ଯେ ୧୪୯୨ ମସିହାରେ ଜଣେ ଇଟାଲୀୟ ନାବିକ କ୍ରିଷ୍ଟୋଫର କଲମ୍ବସ ପୃଥିବୀର ପୂର୍ବ ଭାଗରେ ପହଞ୍ଚିବା ପାଇଁ ସ୍ୱଳ୍ପ ବ୍ୟୟସାପେକ୍ଷ ସାମୁଦ୍ରିକ ରାସ୍ତାର ସନ୍ଧାନରେ ବ୍ରତୀ ହୋଇ ପର୍ତ୍ତୁଗାଲ ଉପକୂଳ ଛାଡ଼ି ପଶ୍ଚିମ ଦିଗକୁ ଜାହାଜର ମଙ୍ଗକୁ ମୁହାଁଇଲେ । ଏସିଆ ମହାଦେଶର ବିଶାଳକାୟ ଦୈତ୍ୟ 'ଇଣ୍ଡିଜ୍' ସହ ୟୁରୋପର ବାଣିଜ୍ୟ କାରବାର ବୃଦ୍ଧି କରାଇବା ପାଇଁ ତାଙ୍କର ଏହି ସାମୁଦ୍ରିକ ଅଭିଯାନ ମୁଖ୍ୟତଃ ଅଭିପ୍ରେତ ଥିଲା । ପରନ୍ତୁ ଯେତେବେଳେ କଲମ୍ବସ ଅଚ଼ାନକ ଭାବେ ଉତ୍ତର ଆମେରିକାରେ ପହଞ୍ଚିଗଲେ, ତାହା ଧରା ବୁକୁରେ ଆଉ ଏକ ଅର୍ଥନୈତିକ ମହାଦୈତ୍ୟକୁ ଜନ୍ମଦାନ ଦେଲା ।

ସପ୍ତଦଶ ଶତାବ୍ଦୀରେ ଆମେରିକୀୟ କଲୋନି ଗୁଡ଼ିକ ମୁଖ୍ୟତ ଗ୍ରାମୀଣ, ଅଣବିକଶିତ ଏବଂ ସେମାନଙ୍କର ପଡ଼ୋଶୀ ରାଷ୍ଟ୍ର ବାର୍ବାଡ଼ସ ଏବଂ କ୍ୟୁବାଠାରୁ ଅନେକାଂଶରେ ଦରିଦ୍ର ଥିଲେ । ସେହି ଏକା ସମୟରେ ମୋଗଲ ସାମ୍ରାଜ୍ୟ ଏବଂ ବହୁ ଭାରତୀୟ Princely State ଅର୍ଥନୈତିକ ଦୃଷ୍ଟିକୋଣରୁ ଅଧିକ ବିକଶିତ ଏବଂ ଅପେକ୍ଷାକୃତ ଧନୀ ଥିଲେ । ଏପରିକି ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ ଯେତେବେଳେ ଆମେରିକୀୟ କଲୋନି ଗୁଡ଼ିକ ବ୍ରିଟେନରୁ ସେମାନଙ୍କର ସ୍ୱାଧିନତା ଲାଭ କଲେ, ସେତେବେଳେ ଏହି ନୂତନ ରାଷ୍ଟ୍ରଟି ଏକ ରୁଗ୍ଣ ଅର୍ଥନୈତିକ ଭବିଷ୍ୟତର ସାମନାସାମନି ହେବ ବୋଲି ଧରି ନିଆଯାଇଥିଲା । ଏପରିକି ଲାଟିନ ଆମେରିକାଠାରୁ ମଧ ଏହା ଆହୁରି ଦରିଦ୍ର ଭବିଷ୍ୟତର ଅଧିକାରୀ ହେବ ବୋଲି କୁହାଯାଉଥିଲା । ନୂଆକରି ସୃଷ୍ଟି ହୋଇଥିବା ୟୁନାଇଟେଡ଼ ଷ୍ଟେଟ୍‌ସ ଅଫ ଆମେରିକାଠାରୁ ସେତେବେଳେ ବେଙ୍ଗଲ ଅପେକ୍ଷାକୃତ ଅଧିକ ଧନୀ ଥିଲା ।

ବିଷୟବସ୍ତୁର ନିର୍ଯ୍ୟାସକୁ ପୁଙ୍ଖାନୁପୁଙ୍ଖଭାବେ ବିଶ୍ଳେଷଣ କରିବାକୁ ଯାଇ ରାନିଲ ବିକ୍ରମ ସିଂହ କୁହନ୍ତି ଯେ ଭାରତର ଏକ ଅତି ଘନିଷ୍ଠ ପଡ଼ୋଶୀ ରାଷ୍ଟ୍ର ଭାବେ ଅର୍ଥନୈତିକ ସଂସ୍କାର ବ୍ୟବସ୍ଥା ପ୍ରତି ଭାରତର ଥିବା କ୍ରମାଗତ ଅଙ୍ଗୀକାରବଦ୍ଧତାକୁ ପରିଦର୍ଶନ କରି ଆମେ ଶ୍ରୀଲଙ୍କାରେ ଅତ୍ୟନ୍ତ ଉତ୍ସାହାନ୍ୱୀତ ହୋଇ ପଡୁଛୁ । ଏହି ଅର୍ଥନୈତିକ ସଂସ୍କାର ବ୍ୟବସ୍ଥା ପଥରେ ଭାରତବର୍ଷ ପରିଚାଳିତ ହେଉଥିବାରୁ ଦେଶର ଅଭିବୃଦ୍ଧି ହାରରେ ଆଶାଜନକ ଉନ୍ନତି ପରିଲକ୍ଷିତ ହେଉଛି, ଯଦ୍ୱାରା ତୃତୀୟ ବିଶ୍ୱକୁ ଯେ ଏହା ପଛରେ ପକେଇ ଦେଇ ଆଗକୁ ଆଗକୁ ମାଡ଼ି ନ ଯିବ- ଏ ସମ୍ଭାବନାକୁ ଅବା କିଏ ଏଡ଼େଇ ଦେଇପାରିବ ? ଶ୍ରୀଲଙ୍କାରେ ମଧ ଆମେ ଆମ ଜନସାଧାରଣଙ୍କ ପାଇଁ ପୂର୍ଣ୍ଣମାତ୍ରାରେ ଉତ୍ପାଦନକ୍ଷମ ରୋଜଗାର ବ୍ୟବସ୍ଥାର ସୃଷ୍ଟି କରିବାକୁ ଚାହୁଁଛୁ, ଯାହାକି ଆମ ପାଇଁ ଏକ ଚ୍ୟାଲେଞ୍ଜ ।

ରାନିଲ ବିକ୍ରମ ସିଂହ ଶାନ୍ତି ପୂର୍ଣ୍ଣ ସହାବସ୍ଥାନ, ଅର୍ଥନୈତିକ ସଂସ୍କାର, ରାଜନୈତିକ ସଦିଚ୍ଛା ଓ ମାନବୀୟ ମୂଲ୍ୟବୋଧର ଅଖଣ୍ଡ ଜୟଯାତ୍ରାକୁ ସ୍ୱାଗତ ଜଣାଇ କୁହନ୍ତି ଯେ ଭାରତର ଭବିଷ୍ୟତକୁ ପର୍ଯ୍ୟବେକ୍ଷଣ କଲେ ଜଣାଯିବ ଯେ ୨୦୧୦ ମସିହା ସୁଦ୍ଧା ଦେଶର ୨୨ ପ୍ରତିଶତ ଜନସଂଖ୍ୟା ୧୫ ରୁ ୫୯ ବର୍ଷ

ବୟସର ହେବେ । ଜନସଂଖ୍ୟାର ଧାରାରେ ଏହି ପରିବର୍ତ୍ତନ ଯୋଗୁଁ ଆଗାମୀ ୧୦ ବର୍ଷ ମଧ୍ୟରେ ଦେଶର ୱାର୍କ ଫୋର୍ସରେ ୨.୨ ପ୍ରତିଶତ ହାରରେ ବୃଦ୍ଧି ଘଟିବ ବୋଲି ସମ୍ଭାବନା କରାଯାଉଛି । ୧୯୯୫ ରୁ ୨୦୦୧ ମସିହା ମଧ୍ୟରେ ଯଦିଓ ଭାରତୀୟ ଅର୍ଥନୀତି ୨୪ ନିୟୁତ ଚାକିରି ସୃଷ୍ଟି କଲା, ପରନ୍ତୁ ଚାକିରି ସଂଖ୍ୟା ଚାକିରି ଖୋଜୁଥିବା ଲୋକଙ୍କ ସଂଖ୍ୟା ସହ ତାଳ ମିଳେଇ ଚାଲି ପାରୁ ନ ଥିଲା ଓ ଉଭୟଙ୍କ ସଂଖ୍ୟାରେ ବହୁ ତାରତମ୍ୟ ପରିଲକ୍ଷିତ ହେଉଥିଲା । ଆମେ ଶ୍ରୀଲଙ୍କାରେ ଲକ୍ଷ୍ୟ କରୁଛୁ ଯେ କ୍ରମାଗତ ଭାବେ ଦୀର୍ଘଦିନ ଧରି ଯଦି ଜଣେ ଶିକ୍ଷିତ ଯୁବକ ଚାକିରି ପଛରେ ଦୌଡ଼ି ଦୌଡ଼ି ହତାସ ହୋଇଯାଏ, ତେବେ ତା' ଉପରେ ଗଭୀର ପ୍ରତିକୂଳ ପ୍ରଭାବ ପରିଲକ୍ଷିତ ହୋଇଥାଏ । ଯଦି ଏହି ଯୁବକମାନେ ତାଙ୍କ ଜୀବନର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ନ ପାରିଲେ ବା ଲକ୍ଷ୍ୟ ସ୍ଥଳର ବହୁ ଦୂରରେ ଜୀବନର ଚଲାପଥରେ ତମ୍ବୁଟିଏ ପକେଇ ଯେନତେନ ପ୍ରକାରେ ବଞ୍ଚି ରହିବାକୁ ବାଧ୍ୟ ହେଲେ, ତେବେ ସେମାନେ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ପ୍ରତି ଏକ ମସ୍ତବଡ଼ ବୋଝ ବା ଅଭିଶାପ ବୋଲି ସାବ୍ୟସ୍ତ ହେବେ । ଶ୍ରୀଲଙ୍କାରେ ଆମେ ଆମ ଅଭିଜ୍ଞତାରୁ ଶିଖିଛୁ ଯେ ଏପରି ସମସ୍ୟା ଅଶାନ୍ତିର ବାତାବରଣ ସୃଷ୍ଟି କରିବାରେ ଯଥେଷ୍ଟ ସହାୟକ ହୋଇଥାଏ । ଫଳତଃ ସାମାଜିକ ଅସ୍ଥିରତା, ବିଶୃଙ୍ଖଳା ଓ ହତାଶାର ପରିବେଶ ଆମ ଜନଜୀବନକୁ ଗ୍ରାସ କରି ଦେଇଥାଏ । ତାହା ମଧ୍ୟ ଜଘନ୍ୟ ହିଂସାକାଣ୍ଡର ସୂତ୍ରପାତ କରିବା ସଙ୍ଗେ ସଙ୍ଗେ ସମାଜରେ ଗୋଷ୍ଠୀଗତ ଅସାମଞ୍ଜସ୍ୟତାର ବୀଜ ମଧ୍ୟ ପ୍ରତିରୋପଣ କରିଥାଏ । ଏପରି ବର୍ବରୋଚିତ ଘଟଣା ଯୋଗୁଁ ଆଜି ଆମକୁ ଆମ ରାଷ୍ଟ୍ରର ପୁନଃ ନିର୍ମାଣ କରିବାକୁ ପଡୁଛି । ଏହା ଆମ ଦେଶରେ ଦୀର୍ଘ ୨୦ ବର୍ଷ ଧରି ଲାଗି ରହିଥିବା ଯୁଦ୍ଧ ପାଇଁ କେବଳ ନୁହେଁ ବରଂ ଯେତେ ଯେତେ ସରକାର ଆସିଲେ ଓ ଗଲେ ସେମାନେ କେହି ଜଣେ ହେଲେ ବି ବେକାର ସମସ୍ୟାର ସମ୍ପୂର୍ଣ୍ଣ ଓ ସର୍ବକାଳୀନ ସମାଧାନ କରି ପାରିଲେ ନାହିଁ କି ଆମ ଆଦର୍ଶବାନ ଯୁବକଙ୍କ ଆଶା ଆକାଂକ୍ଷାକୁ ମଧ୍ୟ ଫଳବତୀ କରିପାରିଲେ ନାହିଁ ।

ପରିସ୍ଥିତିର କାୟାକଳ୍ପକୁ ଗଭୀର ଭାବେ ବିଶ୍ଳେଷଣ କରି ରାନିଲ୍ ବିକ୍ରମ ସିଂହ କୁହନ୍ତି ଯେ ଦିନକୁ ଦିନ ଅଧିକରୁ ଅଧିକତର ଭାବେ ଆମେ ଶ୍ରୀଲଙ୍କା ଓ

ଦକ୍ଷିଣ ଭାରତକୁ ନେଇ ଗଠିତ ଏକ ସମନ୍ୱିତ ଉପ ଆଞ୍ଚଳିକ ଅର୍ଥନୈତିକ ଶକ୍ତିର ଆବିର୍ଭାବକୁ ପରିଦର୍ଶନ କରିବା ପାଇଁ ଅତ୍ୟନ୍ତ ଉତ୍କଣ୍ଠାର ସହ ଅପେକ୍ଷା କରି ରହିଛୁ, ଯାହାକି ଦକ୍ଷିଣ ଏସିଆର ଅଭିବୃଦ୍ଧିରେ ସଫଳ ଯୋଗଦାନ ଦେଇପାରିବ । ଏହି ଅଞ୍ଚଳ ଏକ ସମ-ବାଣିଜ୍ୟିକ ଓ ସାଂସ୍କୃତିକ ଭୂଖଣ୍ଡ ଭାବେ ଦୀର୍ଘ ୩୦୦ ବର୍ଷରୁ ଉର୍ଦ୍ଧ୍ୱ କାଳ ଧରି ରହି ଆସିଛି । ୫୦ ବର୍ଷ ତଳେ ନୂଆ କରି ସ୍ୱାଧୀନତା ଲାଭ କରିଥିବା ଭାରତ ଓ ଶ୍ରୀଲଙ୍କା ବାଣିଜ୍ୟିକ କାରବାର ଉପରେ ପ୍ରତିବନ୍ଧକ ଓ ନିୟନ୍ତ୍ରଣ ଜାରୀ କଲେ । ବହୁ ଆକାଂକ୍ଷିତ ସ୍ୱାଧୀନତା ଓ ସମାଜବାଦର ସ୍ୱାଦ ପାଟିରେ ବାଜୁ ବାଜୁ ଆମେ ପରସ୍ପର ମଧ୍ୟରେ ଏହି ପ୍ରତିବନ୍ଧକ ସୃଷ୍ଟି କଲୁ, ଯଦ୍ୱାରା ଏହି ବାଣିଜ୍ୟିକ ଅଞ୍ଚଳରେ ଆମ ଆଖି ଆଗରେ ଏକ ଲମ୍ବା ବାଡ଼ିଟିଏ ପଡ଼ିଗଲା । ଆଜି ଉଭୟ ଭାରତ ଓ ଶ୍ରୀଲଙ୍କା ବହୁ ଫଳପ୍ରଦ ଓ ଆକର୍ଷଣୀୟ କାର୍ଯ୍ୟକ୍ରମ ମାଧ୍ୟମରେ ଏହି ପ୍ରତିବନ୍ଧକକୁ ଡେଇଁ ପ୍ରଗତିର ଯାତ୍ରାପଥରେ ଆଗକୁ ଆଗକୁ ମାଡ଼ି ଚାଲିଛନ୍ତି । ଏହା ଫଳରେ ଉଭୟ ଦେଶର ନାଗରିକମାନେ ଏହି ମହିମାମୟ ବନ୍ଧୁତ୍ୱର ସେତୁବନ୍ଧ ଉପରେ ଦଣ୍ଡାୟମାନ ହୋଇ ଏହି ମିଳିତ ଅର୍ଥନୈତିକ ଭୂଖଣ୍ଡର ଅମୂଲ୍ୟ ସମ୍ପଦରୁ ଯଥେଷ୍ଟ ଲାଭବାନ ହୋଇ ପାରିବେ ।

ସମ୍ପର୍କର ସୂତା ଖିଅକୁ ଯୋଡ଼ିବାକୁ ଯାଇଁ ରାନିଲ୍ ବିକ୍ରମସିଂହ କୁହନ୍ତି ଯେ ଭାରତ ଓ ଶ୍ରୀଲଙ୍କା ମଧ୍ୟରେ ଏବେ ଏକ ଫ୍ରି ଟ୍ରେଡ଼ ଆଗ୍ରିମେଣ୍ଟ ବା ମୁକ୍ତ ବାଣିଜ୍ୟିକ ରାଜିନାମା ବଳବତ୍ତର ଅଛି ଏବଂ ଏକାଧିକ ସାମଗ୍ରୀରେ ଆମଦାନୀ ଶୁଳ୍କରେ ମଧ୍ୟ ହ୍ରାସ କରାଯାଉଅଛି । ଗତବର୍ଷ ପ୍ରଧାନମନ୍ତ୍ରୀ ବାଜପେୟୀ ଓ ମୁଁ ଏହି ମୁକ୍ତ ବାଣିଜ୍ୟିକ ରାଜିନାମାର ସମୟସୀମା ଓ ଏହାର କାର୍ଯ୍ୟକ୍ରମକୁ ଅଧିକ ପ୍ରସାରିତ ଓ ଗଭୀରତମ କରିବାକୁ ରାଜି ହୋଇଥିଲୁ । ଆମ ଉଭୟ ଦେଶ ସଂପ୍ରତି ଏକ ଅର୍ଥନୈତିକ ସହଯୋଗ ରାଜିନାମା କରିବା ପାଇଁ ଆଲୋଚନା କରୁଛନ୍ତି, ଯାହାକି ମୁକ୍ତ ବାଣିଜ୍ୟିକ ପରିସରଭୁକ୍ତ ସାମଗ୍ରୀ ଗୁଡ଼ିକର ପରିସରକୁ ପରିବ୍ୟାପ୍ତ କରିବ । ଏହା ମଧ୍ୟ ସେବା କ୍ଷେତ୍ରରେ ବାଣିଜ୍ୟିକ କାରବାରରେ କୋହଳ ନୀତି ପୋଷଣ କରିବ ଏବଂ ପୁଞ୍ଜି ଲଗାଣ କ୍ଷେତ୍ରରେ ଥିବା ପ୍ରତିବନ୍ଧକକୁ ହ୍ରାସ କରିବ । ଭାରତ ଓ ଶ୍ରୀଲଙ୍କା ମଧ୍ୟରେ ସମ୍ପର୍କର ସେତୁବନ୍ଧ ପ୍ରତିଷ୍ଠା ମାଧ୍ୟମରେ ହିଁ ଉଭୟ ଦେଶ ମଧ୍ୟରେ ବନ୍ଧୁତ୍ୱର ପୁନଃ ଜାଗରଣ ସମ୍ଭବପର ହୋଇ ପାରିବ ।

ଏହା ସେତିକି ବେଳେ ସମ୍ଭବପର ହେବ, ଯେତେବେଳେ ରାମେଶ୍ୱରମ ଓ ତାଲାଇମାନ୍ନାର ମଧ୍ୟରେ ଯୋଜନାବଦ୍ଧ ଭାବେ ଏକ ସ୍ଥଳ ପୋଲର ନିର୍ମାଣ ହାତକୁ ନିଆଯାଇ ପାରିବ ।

ଦକ୍ଷିଣ ଭାରତ ଓ ଶ୍ରୀଲଙ୍କା ଉପ-ଆଞ୍ଚଳିକ କେନ୍ଦ୍ର ଦକ୍ଷିଣ ଏସିଆର ଅର୍ଥନୈତିକ ଅଭିବୃଦ୍ଧିରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିବ । ଭାରତର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ କ୍ରମାଗତ ଭାବେ ୮ ପ୍ରତିଶତ ହାରରେ ଅଭିବୃଦ୍ଧି ହାସଲ କରି ଚାଲିଲେ ପୂର୍ବ ଓ ଦକ୍ଷିଣ ପୂର୍ବ ଏସିଆର ଇକୋନୋମିକ ସେଣ୍ଟର ଅଫ୍ ଗ୍ରାଭିଟି ବା ଅର୍ଥନୈତିକ ମାଧ୍ୟାକର୍ଷଣ କେନ୍ଦ୍ର ନିଶ୍ଚିତ ରୂପେ ପଶ୍ଚିମମୁଖୀ ଢଳିବ ।

ଆଜି ଆମ ହାତ ପାହାନ୍ତାରେ ଏକ ପ୍ରକୃତ ସୁଯୋଗ ଧରାଦେଇଛି, ଯାହାର ସଦୁପଯୋଗ କରି ଆମେ ଆମ ଉଭୟ ଦେଶର ଅର୍ଥନୈତିକ ବ୍ୟବସ୍ଥାରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣି ପାରିବା । ଏହାଦ୍ୱାରା ଉଭୟ ଦେଶର ଜନସାଧାରଣଙ୍କ ଜୀବନଯାତ୍ରା ପ୍ରଣାଳୀ ଓ ସୁଖ ସ୍ୱାଚ୍ଛନ୍ଦ୍ୟରେ ଉନ୍ନତି ସମ୍ଭବପର ହୋଇପାରିବ, କିଏ ଜାଣେ କାଲି ହୁଏତ ଏ ସୁଯୋଗ ଆମର ହାତ ଛଡ଼ା ହୋଇଯାଇପାରେ ।

ତାଙ୍କ ସାମଗ୍ରୀକ ଅଭିବ୍ୟକ୍ତିର ବିଶ୍ଳେଷଣାତ୍ମକ ଉପସଂହାର ପରିବେଷଣ କରିବାକୁ ଯାଇ ରାନିଲ ବିକ୍ରମସିଂହ କୁହନ୍ତି ଯେ ମୁଁ ମୋ ଭାଷଣର ପରିଚୟ ଇଟାଲୀୟ ନାବିକ କଲମ୍ବସକୁ ନେଇ ଆରମ୍ଭ କରିଥିଲି, ଉପସଂହାର ମଧ୍ୟ ଅନ୍ୟ ଏକ ଇଟାଲୀୟ ନାବିକ ମାର୍କୋପୋଲୋଙ୍କୁ ନେଇ କରିବାକୁ ଚାହୁଁଛି ଯେ କି ତାଙ୍କର ସାଗର ଯାତ୍ରାରେ ଗତିପଥକୁ ପୂର୍ବ ଦିଗକୁ ମୁହାଁଇଥିଲେ । କଲମ୍ବସଙ୍କ ଆମେରିକା ଆବିଷ୍କାରର ୧୦୦ ବର୍ଷ ପୂର୍ବରୁ ମାର୍କୋପୋଲୋ ୟୁରୋପ ମହାଦେଶକୁ ଏସିଆ ମହାଦେଶର ଅସୁମାରୀ ବୈଭବ ଓ ଅପର୍ଯ୍ୟାପ୍ତ ମାଧୁର୍ଯ୍ୟ ପ୍ରତି ଗଭୀର ଭାବେ ଆକର୍ଷିତ କରାଇପାରିଥିଲେ ଏବଂ ତତ୍ ସଙ୍ଗେ ସଙ୍ଗେ ସହଜସାଧ ସାମୁଦ୍ରିକ ଯାତ୍ରାପଥର ପ୍ରକୃଷ୍ଟ ଦିଗ ନିର୍ଣ୍ଣୟ ମଧ୍ୟ କରାଇ ପାରିଥିଲେ । ସେ ୧୩୭୫ ମସିହାର 'କାଟାଲାନ୍ ୱାର୍ଲଡ଼ ମ୍ୟାପ୍'ର ପ୍ରସ୍ତୁତି ପାଇଁ ଆବଶ୍ୟକୀୟ ତଥ୍ୟାବଳୀ ପ୍ରଦାନ କରିଥିଲେ, ଯାହାକି ପରବର୍ତ୍ତୀ ସମୟରେ

କଲମ୍ବସଙ୍କ ଦ୍ୱାରା ପଠିତ ଓ ବ୍ୟବହୃତ ହୋଇଥିଲା । ୟୁରୋପକୁ ଫେରିବା ବାଟରେ ମାର୍କୋପୋଲୋ ସମୁଦ୍ର ପଥରେ ଯାତ୍ରା କରିଥିଲେ ଏବଂ ଏହା ବିଶ୍ୱାସ କରାଯାଏ ଯେ ସେ ଆମ ଅଞ୍ଚଳ ଦେଇ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ ଭାରତର ଉପକୂଳବର୍ତ୍ତୀ ଅଞ୍ଚଳ ଓ ପାଲ୍କ ଷ୍ଟ୍ରେଟ୍‌ସ ବା ପାକ୍ ପ୍ରଣାଳୀ (ଯାହା ଆମ ଦୁଇ ଦେଶ ଭାରତ ଓ ଶ୍ରୀଲଙ୍କାକୁ ଅଲଗା କରୁଛି) ବାଟ ଦେଇ ଫେରିଥିଲେ ।

ମାର୍କୋପୋଲୋଙ୍କ ଐତିହାସିକ ସାମୁଦ୍ରିକ ଯାତ୍ରାପଥ ଆଜିର ଏସିଆ ମହାଦେଶର ଚାରୋଟି ଅର୍ଥନୈତିକ ଭୂଖଣ୍ଡ ଯଥା - ପଶ୍ଚିମ ଏସିଆ, ଦକ୍ଷିଣ-ପୂର୍ବ ଏସିଆ, ପୂର୍ବ ଏସିଆ ଏବଂ ଆମ ଅଞ୍ଚଳ ଦକ୍ଷିଣ ଏସିଆକୁ ସ୍ପଷ୍ଟରୂପେ ସୂଚେଇ ଦେଉଛି । ଏହି ଭୂଖଣ୍ଡଗୁଡ଼ିକ ମାର୍କୋପୋଲୋଙ୍କ ସମୟରେ ବିଶ୍ୱର ଅନ୍ୟତମ ଅର୍ଥନୈତିକ ମହାଶକ୍ତି ଭାବେ ପ୍ରତିଭାତ ହୋଇଥିଲେ । କାଳକ୍ରମେ ସେହି ଭୂଖଣ୍ଡ ଗୁଡ଼ିକ ପୁଣି ମୁଣ୍ଡ ଟେକି ଏକବିଂଶ ଶତାବ୍ଦୀର ଅନ୍ୟତମ ଅର୍ଥନୈତିକ ମହାଶକ୍ତିରୂପେ ଉଦ୍‌ଭାସିତ ହୋଇ ନିଜ ନିଜର ପୁରାତନ ଆସ୍ଥାନ ଅଳଂକୃତ କରିବା ପାଇଁ ବୀର ଦର୍ପରେ ଆଗେଇ ଆସିଲେଣି । ତାଙ୍କର ଏ ଯାତ୍ରା ଯେ ନିଶ୍ଚିତ ରୂପେ ଶୁଭଙ୍କର ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଯୋଜନା - ଓଡ଼ିଆ
**ନଭେମ୍ବର, ୨୦୦୩**



# ଭାରତ - ଉଜ୍ଜ୍ୱଳ ଭବିଷ୍ୟତ ସମ୍ପନ୍ନ ଏକ ସଂକଳ୍ପବଦ୍ଧ ରାଷ୍ଟ୍ର

'ଗୋଲ୍ଡମ୍ୟାନ ସ୍ୟାକ୍ସ' ପ୍ରତିଷ୍ଠାନର ଏସିଆ ମହାଦେଶ ପାଇଁ ନିଯୁକ୍ତ ଉପାଧ୍ୟକ୍ଷ ତଥା ବିଶ୍ୱପ୍ରସିଦ୍ଧ ଅର୍ଥନୀତିଜ୍ଞ କେନେଥ କୋର୍ଟିସ ଫେବୃୟାରୀ ୨୮ରୁ ମାର୍ଚ୍ଚ ୨ ତାରିଖ ମଧ୍ୟରେ ନୂଆଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା ଦ୍ୱିତୀୟ ଇଣ୍ଡିଆ ଟୁଡ଼େ କନ୍‌କ୍ଲେଭରେ ଏକ ଅତି ବିଶିଷ୍ଟ ନିମନ୍ତ୍ରିତ ବକ୍ତାଭାବେ ଯୋଗ ଦେଇ ନିଜର ସାରଗର୍ଭକ ଓଜସ୍ୱିନୀ ଅଭିଭାଷଣ ପ୍ରଦାନ କରି ଉପସ୍ଥିତ ସୁଧୀବୃନ୍ଦଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ । ''ଭାରତ ଏକ ବିଶାଳକାୟ ଦୈତ୍ୟ ନା ଏକ କ୍ଷୁଦ୍ର ବାମନ'' ଶୀର୍ଷକ ଏହି କନ୍‌କ୍ଲେଭ ରାଷ୍ଟ୍ରର ନାଡ଼ି ନକ୍ଷତ୍ରକୁ କାଟିକୁଟି ଖିନ୍‌ଭିନ୍ କରି ଗଭୀର ଭାବେ ବିଶ୍ଳେଷଣ କରିବାରେ ସମ୍ପୂର୍ଣ୍ଣରୂପେ ସକ୍ଷମ ହୋଇପାରିଥିଲା । ଏହି ଐତିହାସିକ ଅଧିବେଶନରେ ନିଜର ସୌର୍ଯ୍ୟଦୀପ୍ତ ବ୍ୟକ୍ତିତ୍ୱ ଓ ପ୍ରବଳ ପରାକାଷ୍ଠାର ସଫଳ ପ୍ରଦର୍ଶନ କରି କେନେଥ କୋର୍ଟିସ କୁହନ୍ତି ଯେ ମତେ ଲୋକେ ସବୁବେଳେ ପ୍ରାୟ ପଚାରିଥାନ୍ତି କି ମୁଁ କାହିଁକି ଜଣେ ଅର୍ଥନୀତିଜ୍ଞ ହେଲି ? ଉତ୍ତରରେ ମୁଁ କହିଥାଏ ଯେ ଜୀବନରେ ମୁଁ ଯେହେତୁ ଜଣେ ପ୍ରଚଣ୍ଡ ବ୍ୟକ୍ତିତ୍ୱଧାରୀ ପରମ ମହାନୁଭବ ପୁରୁଷ ପୁଙ୍ଗବଟିଏ ବା ଭାରି କୁହାଳିଆ ବକ୍ତାଟିଏ ହୋଇ ପାରିଲି ନାହିଁ, ତେଣୁ ଜଣେ ଅର୍ଥନୀତିଜ୍ଞଟିଏ ହୋଇଗଲି । ନଚେତ୍ ଆର୍ଥର ଆଣ୍ଡରସନଙ୍କ ପାଇଁ କାମ କରି କରି ମୋ ଜୀବନଟା ବିତି ଯାଇଥାଆନ୍ତା । ମୁଁ ଏବେ ଜଣେ ଅର୍ଥନୀତିଜ୍ଞ ହେବା ବନ୍ଦ କରି ଦେଇଛି କାରଣ ମୁଁ ଦେଖିଲି ଯେ ଅର୍ଥନୀତିଜ୍ଞମାନେ ପ୍ରାୟ ସବୁବେଳେ ମିଛକଥା କହିଥାଆନ୍ତି ଏବଂ ଜନ ମାନସରେ ମିଛୁଆ ବ୍ୟକ୍ତିର ପରିଚୟ ନେଇ ବଞ୍ଚି ରହିଥାଆନ୍ତି । ବିଶେଷ କରି ଯେତେବେଳେ ଆଜିର ଅଧିବେଶନ ଭଳି ଏକ ଜଟିଳ ବିଷୟବସ୍ତୁକୁ ନେଇ ଆଲୋଚନା କରାଯାଉଛି, ସେତେବେଳେ ଅର୍ଥନୀତିଜ୍ଞମାନେ ପ୍ରାୟ ମିଛ କଥା ବଖାଣିଥାଆନ୍ତି । ମିଛ କଥା ବଖାଣି ହବା ଅର୍ଥନୀତିଜ୍ଞମାନଙ୍କ ଏକ ପେଷା ହୋଇଗଲାଣି ଏବଂ ଦି'ପଦ ମିଛ କଥା ନ କହିଲେ ତାଙ୍କ ପେଟରେ ଘିଅ ହଜମ ହୁଏ ନାହିଁ ।

ଅଭିଭାଷଣ ପ୍ରସଙ୍ଗରେ ଏକ ଅତି ସୁନ୍ଦର ଗଳ୍ପର ଅବତାରଣା କରି କେନେଥ କୋର୍ଟିସ କୁହନ୍ତି ଯେ - ଥରେ ଜଣେ ମେଷ ପାଳକ ଏକ ଅତ୍ୟୁଚ୍ଚ ପର୍ବତମାଳାର ବିସ୍ତୀର୍ଣ୍ଣ ଉପତ୍ୟକାରେ ଏକ ବିଶାଳ ମେଷ ପଲଙ୍କୁ ଘାସ ଚରାଉଥିଲା । ହାତରେ ଛୋଟ ପାଞ୍ଚଣଟିଏ ଧରି ମୋହନ ବଂଶୀ ବଜେଇ ସେ ଏକ କୁଦ ଉପରେ ବସିରହି ସଙ୍ଗୀତର ଅପୂର୍ବ ରାଗିଣୀ ଛାଡ଼ିଦେଇଥାଏ । ସେତିକିବେଳେ ସେହି ବାଟ ଦେଇ ଜଣେ ଆଗନ୍ତୁକ ଭଦ୍ରବ୍ୟକ୍ତି ଚାଲିଯାଉ ଥାଆନ୍ତି । ସେ ସଂଖ୍ୟାତୀତ ମେଷ ଶାବକମାନଙ୍କ ଏକ ବିରାଟ ପଟୁଆର ଦେଖି ଆନନ୍ଦରେ ଗଦ୍‌ଗଦ୍ ହୋଇଗଲେ ଓ ସେଥିରୁ ଗୋଟିଏ ମେଷ ଶାବକ ନିଜର ଗେହ୍ଲା ଝିଅ ପାଇଁ ନେବାକୁ ମନ ବଳେଇଲେ । ଏହା ଭାବି ଭାବି ସେ ମେଷ ପାଳକ ପାଖରେ ଯାଇ ପହଞ୍ଚିଲେ ଏବଂ କହିଲେ ଦେଖ ଭାଇ, ମୁଁ ଯଦି କଳନା କରି କହିଦିଏ ତୁମ ମେଷ ପଲରେ ଠିକ୍ କେତୋଟି ମେଷ ଅଛନ୍ତି, ତା'ହେଲେ ତୁମେ ସେଥିରୁ ଗୋଟିଏ ମେଷ ମତେ ଦେବକି ? ମୁଁ ତାକୁ ମୋ ଝିଅକୁ ଉପହାର ଦେବାକୁ ଚାହୁଁଛି । ମେଷ ପାଳକ ଦଣ୍ଡେ ଭାବିଲା- ଏ ଭଦ୍ରଲୋକ କ'ଣ ସତରେ ଗୋଟି ଗୋଟି ନ ଗଣି କହି ପାରିବ ମୋ ମେଷ ପଲରେ କେତେ ମେଷ ଅଛନ୍ତି ! ଏହା ନିଶ୍ଚିତ ରୂପେ ଏକ ଅସମ୍ଭବ ଘଟଣା । ତେଣୁ ସେ ଉତ୍ତର ଠିକ୍ ରୂପେ ଦେଇ ପାରିବେ ନାହିଁ କି ମୋ ମେଷ ପଲରୁ ବି ଗୋଟେ ନେବାର ପ୍ରଶ୍ନ ମଧ୍ୟ ଉଠୁନାହିଁ । ମନରେ ଏହା ଦୃଢ଼ ନିଶ୍ଚିତ କରି ମେଷ ପାଳକ ଆଗନ୍ତୁକଙ୍କ ସର୍ତ୍ତରେ 'ହଁ' ଭରିଲା । ଆଗନ୍ତୁକ ଭଦ୍ରବ୍ୟକ୍ତି ଜଣକ ଉପତ୍ୟକାରେ ଶହ ଶହ ସଂଖ୍ୟାରେ ଚରୁଥିବା ମେଷମାନଙ୍କ ଆଡ଼କୁ ଟିକେ ଭଲକରି ଚାହିଁଲେ, କ'ଣ ସବୁ ହିସାବ ପତ୍ର ଓ ଗଣନା ବି କଲେ ଏବଂ କେଇ ମିନିଟ ପରେ କହି ଉଠିଲେ- ଦେଖ ଭାଇ ! ତୁମ ମେଷ ପଲରେ ଠିକ୍ ୭୩୯ ଟି ମେଷ ଅଛନ୍ତି । ସତକୁ ସତ ମେଷ ପଲରେ ହିଁ ୭୩୯ ଟି ମେଷ ଥାଆନ୍ତି । ମେଷ ପାଳକ ଜଣକ ଆଗନ୍ତୁକଙ୍କ ମୁହଁରୁ ସଠିକ୍ ଉତ୍ତର ଶୁଣି ସ୍ତମ୍ଭୀଭୂତ ହୋଇଗଲା । ସତେ ଯେପରି ତା' ମୁଣ୍ଡରେ ବଜ୍ର ପଡ଼ିଲା । ସର୍ତ୍ତ ଅନୁଯାୟୀ ଆଗନ୍ତୁକ ଭଦ୍ରବ୍ୟକ୍ତି ଜଣକ ଯେତେବେଳେ ସେହି ମେଷ ପଲରୁ ଗୋଟିକକୁ ଉଠେଇ ନେଇ ଅତି ସ୍ନେହରେ କୋଡ଼ରେ ଜାକିଜୁକି ଆଗକୁ ଆଗକୁ ପାଦ ବଢ଼େଇଲେ ମେଷ ପାଳକ ଜଣକ ରାଗିଯାଇ କହିଲା - ହେ ଭାଇ ଟିକେ ରୁହ ରୁହ ! ମୁଁ ଯଦି କହିଦିଏ ତୁମ ବୃତ୍ତି ବା ପେଷା କ'ଣ, ତା'ହେଲେ ତୁମେ କ'ଣ ନେଇଯାଉଥିବା ପଶୁଟିକୁ ମତେ ଫେରେଇ ଦେବ ? ଆଗନ୍ତୁକ ଭଦ୍ରବ୍ୟକ୍ତି ଜଣକ ବିଚାର କଲେ ଏ ମେଷ ପାଳକଟି ସହ ଆଜି ମୋର ପ୍ରଥମ କରି ସାକ୍ଷାତ୍ । ଆମେ ଦୁଇଜଣ ପରସ୍ପରକୁ ପ୍ରଥମ ଥର ପାଇଁ ଆଜି

ହିଁ ଭେଟୁଛୁ । ଆଗରୁ ଚିହ୍ନା ନାହିଁ କି ଜଣା ନାହିଁ । ସେ ଅବା କିପରି ଜାଣିବ ମୋ ବୃତ୍ତି ବା ପେଷା କ'ଣ ! ସେ ଉତ୍ତର ଠିକ୍ ଦେଇ ପାରିବ ନାହିଁ କି ମୋର ମଧ୍ୟ ଏ ପଶୁଟିକୁ ଫେରସ୍ତ ଦବାର ପ୍ରଶ୍ନ ଉଠୁନାହିଁ । ଏହାଭାବି ଆଗନ୍ତୁକ ଜଣକ ଶେଷରେ ମେଷ ପାଳକ କଥାରେ ସମ୍ମତ ହେଲେ । ମେଷ ପାଳକ କହିଲା - ହେ ମହାଭାଗ ! ମୁଁ ବାଜି ଲଗେଇ କହି ପାରିବି କି ଆପଣ ନିଶ୍ଚିତ ଜଣେ 'ଅର୍ଥନୀତିଜ୍ଞ' । ଆଗନ୍ତୁକ ଜଣକ ସତକୁ ସତ ଜଣେ 'ଅର୍ଥନୀତିଜ୍ଞ' ହିଁ ଥିଲେ । ମେଷ ପାଳକ କଥା ଶୁଣି ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ତାକୁ ପଚାରିଲେ - ହେ ଭାଇ, ତୁମେ କିପରି ଜାଣିଲ କି ମୁଁ ଜଣେ 'ଅର୍ଥନୀତିଜ୍ଞ' ବୋଲି ? ମେଷ ପାଳକ କହିଲା - ଦେଖନ୍ତୁ ଆଜ୍ଞା, ଏହା ଏକ ଅତ୍ୟନ୍ତ ସହଜ କଥା । ଆପଣ ସ୍ନେହ ଶ୍ରଦ୍ଧାରେ କାଖେଇ କୋଳେଇ ନେଇଯାଉଥିବା ପଶୁଟିକୁ ଟିକେ ଭଲ କରି ଦେଖିଲେ ତ ? ସେ କ'ଣ ମେଷ ଶାବକଟିଏ ? ସେ ପରା ମୋର ଅତିପ୍ରିୟ ପୋଷା କୁକୁର ଛୁଆଟି ! ମେଷ ପଲଙ୍କ ସାଙ୍ଗରେ ମିଳିମିଶି ସବୁଦିନେ ସେ ଏମିତି ଚରିବୁଲି ଆସେ ଓ ସଞ୍ଜ ହେଲେ ମୋ ସାଙ୍ଗରେ ଘରକୁ ଫେରିଯାଏ । ସର୍ତ୍ତ ଅନୁଯାୟୀ ଅର୍ଥନୀତିଜ୍ଞ ଜଣକ କାନମୁଣ୍ଡ ଆଉଁଷି କୁକୁର ଛୁଆଟିକୁ ମେଷ ପାଳକକୁ ଫେରସ୍ତ ଦେଇ ଉପତ୍ୟକା ଡେଇଁ ନିଜ ବାଟରେ ଆଗକୁ ଆଗକୁ ପାଦ ବଢ଼େଇଲେ ।

ଗଳ୍ପଟିର ସାରମର୍ମକୁ ଆଧାର କରି କେନେଥ କୋର୍ଟିସ କୁହନ୍ତି ଯେ ଅର୍ଥନୀତିଜ୍ଞମାନେ ଯାହା ସବୁ କହିଥାନ୍ତି, ତାହା ପ୍ରାୟ ଅଧିକାଂଶ ସମୟରେ ମିଥ୍ୟା ବୋଲି ପ୍ରମାଣିତ ହୋଇଥାଏ । ପରନ୍ତୁ ତାହା ଗଣତନ୍ତ୍ରର ଅଂଶ ବିଶେଷ ବୋଲି ଧରିନିଆଯାଉଛି । ଆମ କାର୍ଯ୍ୟକ୍ରମରେ ଆମେ ଭୁଲ୍ ବୋଲି ପ୍ରମାଣିତ ହୋଇପାରୁ । ଭୁଲ୍ ନିର୍ଣ୍ଣୟକୁ ଫେରସ୍ତ ଅଣାଯାଇ କାର୍ଯ୍ୟକ୍ରମଭୁକ୍ତ କରାଯିବା ଗଣତନ୍ତ୍ର ପାଇଁ ଏକ ସହାୟକ ପନ୍ଥା ଅଟେ । ଦୀର୍ଘ ମିଆଦି ସୂତ୍ରରେ ନିଆଯାଉଥିବା ରାଜନୈତିକ ନିର୍ଣ୍ଣୟ ଯହିଁରେ ବହୁ ସର୍ବସାଧାରଣ ଜଡ଼ିତ ଥାଆନ୍ତି, ତାହା ନିଶ୍ଚିତ ରୂପେ ଠିକ୍ ହୋଇଥାଏ ଏବଂ ଏଥିରେ ଭୁଲ୍‌ର ସମ୍ଭାବନା ପ୍ରାୟ କମ୍ ଥାଏ । ଅପର ପକ୍ଷରେ ଯେଉଁ ରାଜନୈତିକ ନିର୍ଣ୍ଣୟ ନିଜସ୍ୱ ସ୍ୱାର୍ଥକୈନ୍ଦ୍ରିକ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀ ବା ସଂଘ ଦ୍ୱାରା ପରିଚାଳିତ ହୋଇଥାଏ, ତାହା ଯଦିଓ ସମାଜର ଏକ ବୃହତ୍ ଅଂଶ ପାଇଁ ଉଦ୍ଦିଷ୍ଟ ଥାଏ, ପରନ୍ତୁ ସଠିକ୍ ନିର୍ଣ୍ଣୟ ନେବାରେ ତାହା ଅସଫଳ ରହିଥାଏ ।

ଗୋଟିଏ ଦୃଷ୍ଟିକୋଣରୁ ବିଚାର କଲେ ଏହା ମନେ ହୁଏ ଯେ ସାଂପ୍ରତିକ ସୂଚନା କୈନ୍ଦ୍ରିକ ସମାଜ ବ୍ୟବସ୍ଥା ନିର୍ଣ୍ଣୟ ପ୍ରକ୍ରିୟାର ଗଣତନ୍ତ୍ରକରଣ ଆଡ଼କୁ ଦ୍ରୁତ ଗତିରେ

ଧାବମାନ ହେଉଛି । କିନ୍ତୁ ଯେଉଁ ଗତିରେ ସୂଚନା କୈନ୍ଦ୍ରିକ ସମାଜ ବ୍ୟବସ୍ଥା ଆମ ଅର୍ଥନୀତି ଭିତରକୁ ମୁଣ୍ଡ ଗଳେଇ ପ୍ରବେଶ କରୁଛି, ତାହା ସମାଜ ବ୍ୟବସ୍ଥାରେ ଅସମ୍ଭବ ସ୍ତର ବିନ୍ୟାସ ସୃଷ୍ଟି କରିବ । ଅର୍ଥନୈତିକ କ୍ଷେତ୍ର ହେଉ ବା ରାଜନୈତିକ କ୍ଷେତ୍ର ହେଉ ତାହା ଅତ୍ୟନ୍ତ କଷ୍ଟସାଧ ପ୍ରକ୍ରିୟା ହେବା ସଙ୍ଗେ ସଙ୍ଗେ ଦୋଦୁଲ୍ୟମାନ ଅବସ୍ଥା ଦେଇ ମଧ ଗତି କରିବ । ପରନ୍ତୁ ନିଶ୍ଚିତ ରୂପେ କୌଣସି ଅର୍ଥନୀତି ଅସମ୍ଭବ ଭାବେ ସୂଚନା ଦିଗରେ ମଧ ଧାବମାନ ହେଉନାହିଁ ।

ଏ ପରିପ୍ରେକ୍ଷୀରେ ପୃଥିବୀର ଏକ ବିଶାଳ ରାଷ୍ଟ୍ର ଏସୀୟ ବ୍ୟାଘ୍ର ଚୀନର ଉଦାହରଣକୁ ବିଚାରକୁ ନିଆଯାଉ । ଚୀନ ଏବେ ଏକ ବିଶାଳ ଅର୍ଥନୈତିକ ପରିବର୍ତ୍ତନ ମଧ ଦେଇ ଗତି କରି ଚାଲିଛି । ଏହାର ମୁଖ୍ୟ କାରଣ ହେଉଛି ଚୀନ ତଥାକଥିତ ପାରମ୍ପରିକ ବ୍ୟବସ୍ଥାର ପିଞ୍ଜୁରୀରୁ ନିଜକୁ ମୁକୁଳାଇ ପୃଥିବୀର ପ୍ରାୟ ସବୁ ରାଷ୍ଟ୍ରଠାରୁ ନିଜପାଇଁ ଏକ ଅଲଗା ଓ ସ୍ୱତନ୍ତ୍ର ରାସ୍ତା ବାଛି ନେଇଛି ଓ ଦାମ୍ଭିକତାର ସହ ସେହି ରାସ୍ତାରେ ଏକ ଅଗ୍ରଣୀ ଯାତ୍ରୀ ଭାବେ ଆଗକୁ ଆଗକୁ ବୀର ଦର୍ପରେ ମାଡ଼ି ଚାଲିଛି । ଚୀନ ଅସାଧାରଣ ଅର୍ଥନୈତିକ ପ୍ରଗତିର ମିଠା ସ୍ୱାଦ ଚାଖିଲାଣି । ଚୀନରେ ପ୍ରଚଳିତ ଥିବା ସାଂପ୍ରତିକ ବ୍ୟବସ୍ଥାରୁ କ'ଣ ଏମିତି ମହୁ ଝରୁଛି ଯେ ଚୀନର ପ୍ରଗତି ପୃଥିବୀର ସବୁ ରାଷ୍ଟ୍ରଙ୍କୁ ଅସମ୍ଭବ ଭାବେ ଚକିତ ଓ ସ୍ତମ୍ଭିତ କରି ଦେଉଛି । ଏପରି ଏକ ମଡ଼େଲ ବ୍ୟବସ୍ଥାର ଅନୁସରଣ କରିବା ପାଇଁ ଆମେ ସମସ୍ତେ କ'ଣ ଚିନ୍ତା କରିବା ଉଚିତ ନୁହେଁ କି ? ଅବା ଚୀନ ତା'ର ନିଜର ରାଜନୈତିକ ପଟ୍ଟ ପରିବର୍ତ୍ତନ ପାଇଁ ପୃଥିବୀର ଅନ୍ୟ କୌଣସି ରାଷ୍ଟ୍ରର ମଡ଼େଲକୁ ଅନୁସରଣ କରିବାର ଆବଶ୍ୟକତା ଅଛି କି ଏବଂ ସେହି ପଟ୍ଟ ପରିବର୍ତ୍ତନ ଲଗାତାର ଅଭିବୃଦ୍ଧି ହାସଲ କରିବା ପାଇଁ ଏକ ସର୍ତ୍ତଭାବେ କାମ କରିବ କି ?

ଏତେ କଥା କହି ଦୁଧରୁ ଘିଅ ମାରି ସାରିଲା ପରେ ବି କେନେଥ କୋର୍ଟିସ କୁହନ୍ତି ଯେ କଥାଟା ବଡ଼ ସରଳ । ମୁଁ ଭାବୁଛି ଯେ ଅର୍ଥନୈତିକ ଅଭିବୃଦ୍ଧି ପ୍ରାୟ ଚାରୋଟି କିମ୍ବା ପାଞ୍ଚୋଟି ମୌଳିକ ଚିନ୍ତାଧାରା ଚାରିକଡ଼େ ଘୁରିବୁଲୁଛି । ରାଷ୍ଟ୍ରର ଅର୍ଥନୈତିକ ଅଭିବୃଦ୍ଧି ପ୍ରକ୍ରିୟାରେ ନିଜର ଅବଦାନ ଦେବା ପାଇଁ ତଥା ସାମାଜିକ ସଂକଳ୍ପକୁ ଫଳବତୀ କରିବା ପାଇଁ ସର୍ବସାଧାରଣ ଜନତା ଲେଖାପଢ଼ା ଜାଣିବା ନିତାନ୍ତ ଦରକାର । ମୁଁ ପ୍ରଚଣ୍ଡ ଯୁକ୍ତି ସହ ନିଜର ମତାମତ ଉପସ୍ଥାପନା କରି କହିବାକୁ ଚାହେଁ ଯେ ରାଷ୍ଟ୍ରର ସର୍ବଦିଗ ବ୍ୟାପ୍ତ ଅଭିବୃଦ୍ଧି ଓ ଅର୍ଥନୈତିକ ପରାକାଷ୍ଠାକୁ ବିଶ୍ୱ ପୃଷ୍ଠଭୂମିରେ ସାବ୍ୟସ୍ତ

କରିବା ପାଇଁ ନାରୀ ସମାଜକୁ ବୀର ଦର୍ପରେ ଆଗଭର ହେବାକୁ ପଡ଼ିବ । ପୁରୁଷଙ୍କ ସହ କାନ୍ଧରେ କାନ୍ଧ ମିଳେଇ ଅର୍ଥନୈତିକ ରଣାଙ୍ଗନରେ ତାଙ୍କୁ ବିଜୟିନୀର ସ୍ୱର୍ଣ୍ଣ ମୁକୁଟ ପିନ୍ଧିବାକୁ ପଡ଼ିବ । ପୂର୍ଣ୍ଣ ଅର୍ଥନୈତିକ ସ୍ୱାଧୀନତା ସେତିକି ବେଳେ ହିଁ ଆମ ହାତ ମୁଠାକୁ ଆସିବ, ଯେତେବେଳେ ଆମେ ଗର୍ବର ସହ କହିପାରିବା ଯେ ନାରୀ-ନାରାୟଣୀ ଏହି ସ୍ୱାଧୀନତା ସଂଗ୍ରାମର ଅଗ୍ରଗାମୀ ସାରଥୀ ଥିଲେ । ଆମେ ଯଦି ସତରେ ଏହି ସର୍ତ୍ତ ଗୁଡ଼ିକୁ ଲକ୍ଷ୍ୟ କରିବା, ତେବେ ନିଶ୍ଚିତ ରୂପେ ଚୀନ ଏହା ପୂରଣ କରି ପାରିଛି ବୋଲି ଆମେ ହୃଦୟଙ୍ଗମ କରି ପାରିବା ।

ମନୋଲିଥିକ ପାର୍ଟିମାନେ ଯଦି ପ୍ରଗତିଶୀଳ ଅଭିବୃଦ୍ଧି ପକ୍ରିୟାକୁ ଚଳେଇ ରଖିବାକୁ ଚାହାନ୍ତି, ତେବେ ଏଭଳି ଏକ ପରିବେଶରେ ସେମାନେ ତିଷ୍ଠି ରହି ପାରିବେ ନାହିଁ ଅବା ଦୀର୍ଘଦୀନ ଧରି ଏଭଳି ଏକ ପରିବେଶ ତାଙ୍କୁ ସୁହାଇବ ନାହିଁ । ଯେଉଁ ସମାଜ ବ୍ୟବସ୍ଥା ଦିନ ପରେ ଦିନ ଦ୍ରୁତ ଗତିରେ ସୂଚନା ସମୃଦ୍ଧ ହୋଇ ଚାଲିଛି ସେଭଳି ଏକ ସମାଜ ବ୍ୟବସ୍ଥାରେ ଅତ୍ୟନ୍ତ ନିୟନ୍ତ୍ରଣାଧୀନ ଅମଲାତାନ୍ତ୍ରିକ ନିର୍ଣ୍ଣୟ ପ୍ରକ୍ରିୟା ତିଷ୍ଠି ରହି ପାରିବ ନାହିଁ । ତେଣୁ ମୁଁ ପ୍ରଚ଼ଣ୍ଡ ଯୁକ୍ତି ଉପସ୍ଥାପନା କରି କହିବାକୁ ଚାହେଁ ଯେ ଚୀନ ପାଇଁ ଏହା ନିତାନ୍ତ ଆବଶ୍ୟକ ଯେ ସେ ତା'ର ରାଜନୈତିକ ବ୍ୟବସ୍ଥାକୁ ପୁଣି ଛାଞ୍ଚରେ ପକେଇ ଉତାରୁ, ରାଜନୈତିକ ବ୍ୟବସ୍ଥାର ଗଠନ ଶୈଳୀରେ ପରିବର୍ତ୍ତନ ଆଣୁ ଏବଂ ରାଜନୈତିକ ବ୍ୟବସ୍ଥାରେ ଆବଶ୍ୟକୀୟ ସଂସ୍କାର ମଧ୍ୟ କରୁ । ଭାରତର ରାଜନୈତିକ ବ୍ୟବସ୍ଥାରେ ସଂସ୍କାର ସମ୍ବନ୍ଧୀୟ ପ୍ରଶ୍ନ ଉପରେ ମୁଁ ବିଶ୍ୱାସ କରେ ଯେ ଏହାର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । ଏହା ଦ୍ୱାରା ରାଷ୍ଟ୍ରୀୟ ଅଭିବୃଦ୍ଧି ଓ ଅର୍ଥନୈତିକ ସ୍ୱଚ୍ଛଳତାରେ କ୍ଷିପ୍ରତା ଆସିବ, ଯଦ୍ୱାରା ଜନସାଧାରଣଙ୍କ ପାଖରେ ଥିବା ଅସାଧାରଣ ପୁଞ୍ଜିକୁ ସେମାନେ ଠିକଣା ଢଙ୍ଗରେ ବିନିଯୋଗ କରି ପାରିବେ । ଯଦି ଭାରତ ଏହା ହାସଲ କରିପାରେ ତେବେ ଦୀର୍ଘମିଆଦି ଅଭିବୃଦ୍ଧି ପଥରେ ଭାରତ ଏକ ଅଗ୍ରଣୀ ଯାତ୍ରୀଭାବେ ବିଶ୍ୱବନ୍ଦିତ ହେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ପ୍ରାୟ ୧୦୦ ବର୍ଷ ତଳେ ଜଣେ ପ୍ରଚ଼ଣ୍ଡ ଦୂରଦୃଷ୍ଟି ସମ୍ପନ୍ନ କେହି ଜ୍ଞାନୀ ପୁରୁଷ ହୁଏତ କହିଥିଲେ କି ଆଗାମୀ ୧୦୦ ବର୍ଷ ମଧ୍ୟରେ ଆମେରିକା ପ୍ରବଳ ପରାକ୍ରମଶାଳୀ ଅର୍ଥନୈତିକ ମହାଶକ୍ତି ଭାବେ ବିଶ୍ୱ ବୁକୁରେ ଦଣ୍ଡାୟମାନ ହେବ । ସେ ଭଦ୍ରଲୋକଙ୍କ ଭବିଷ୍ୟବାଣୀ ଆଜି ଅଖଣ୍ଡ ସତ୍ୟ ବୋଲି ପ୍ରମାଣିତ ହୋଇଛି । ନୁହେଁ କି ? ମୁଁ ଦୃଢ଼ତାର ସହ କହିବାକୁ ଚାହେଁ ଯେ ଏକବିଂଶ ଶତାବ୍ଦୀର ଅତ୍ୟନ୍ତ ପ୍ରଭାବଶାଳୀ ଅର୍ଥନୈତିକ

ଘଟଣା ହେବ ଭାରତ ଓ ଚୀନର ଅସାଧାରଣ ଅଭିବୃଦ୍ଧି ଏବଂ ଏହା ସହିତ ଅନ୍ୟ ଏସୀୟ ରାଷ୍ଟ୍ରମାନଙ୍କର ସର୍ବାଙ୍ଗୀନ ବିକାଶ ଓ ଅଭ୍ୟୁଦୟ ମଧ୍ୟ । ତା'ହେଲେ ଆପଣ ଚିନ୍ତା କରନ୍ତୁ ତ, ଏ ସାରଗର୍ଭକ, ଚେତନାଦ୍ୟୋତକ ଅଭିବ୍ୟକ୍ତିର ଅନ୍ତର୍ନିହିତ ଅର୍ଥ କ'ଣ ? ଅର୍ଥଟି ହେଲା - 'ଏକବିଂଶ ଶତାବ୍ଦୀ ଭାରତର ଶତାବ୍ଦୀ ହେବ, ଏକବିଂଶ ଶତାବ୍ଦୀ ଚୀନର ଶତାବ୍ଦୀ ହେବ ଏବଂ ସର୍ବୋପରି ଏକବିଂଶ ଶତାବ୍ଦୀ ଏସୀୟମାନଙ୍କ ଶତାବ୍ଦୀ ହେବ ।' ଏହା ବିଶ୍ୱ ଅର୍ଥନୀତିର ଭାରସାମ୍ୟତାରେ ମୌଳିକ ପରିବର୍ତ୍ତନ ଆଣିବ, ଯାହାକି ନିଶ୍ଚିତ ରୂପେ ରାଜନୈତିକ ଶକ୍ତିର ମେରୁଦଣ୍ଡକୁ ମଧ୍ୟ ଦୋହଲାଇ ଦେବ । ବିଶ୍ୱର ଅର୍ଦ୍ଧେକ ଜନସଂଖ୍ୟା ଅଭିବୃଦ୍ଧି ଓ ସମୃଦ୍ଧିର ଏକ ନୂତନ ଜଗତରେ ପଦାର୍ପଣ କରିବେ ।

ବିଶ୍ୱବକ୍ଷରେ ଭାରତ ଓ ଚୀନ ଏକ ଯୁଗ୍ମ ଶକ୍ତିଭାବେ ପ୍ରତିଭାତ ହୋଇ ଅନ୍ତରାଷ୍ଟ୍ରୀୟ ବିତ୍ତିୟ ଓ ଅର୍ଥନୈତିକ ପ୍ରତିଷ୍ଠାନ ଗୁଡ଼ିକୁ ଦୂରରୁ ନିୟନ୍ତ୍ରିତ କରିବେ । ଏହି ଦୁଇ ରାଷ୍ଟ୍ର ବିଶ୍ୱ ମହାଶକ୍ତି ଭାବେ ସଗର୍ବେ ଉଭା ହୋଇ 'ମହାଶକ୍ତି' ଶବ୍ଦର ଆକ୍ଷରିକ ଅର୍ଥକୁ ଅକ୍ଷରେ ଅକ୍ଷରେ ପାଳନ କରିବେ ଏବଂ ବିଶ୍ୱ ରାଜନୈତିକ ରଙ୍ଗମଞ୍ଚକୁ ମଧ୍ୟ ନୂତନ ବୈଭବରେ ସୁସଜ୍ଜିତ କରିବେ । ଗୋଟିଏ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ଆମର ଗୋଟିଏ ହାତରେ ସୁଯୋଗ ଓ ଆର ହାତଟିରେ ଚ୍ୟାଲେଞ୍ଜ ବନ୍ଧା ହୋଇ ରହିଛି । ରାଷ୍ଟ୍ର ନିର୍ମାଣ କକ୍ଷେ ଆମେ ଏହି ଦୁଇ ଅମୋଘ ଅସ୍ତ୍ରକୁ ନିରାପଦ ଭାବେ କିପରି ପ୍ରୟୋଗ କରି ପାରୁଛେ ତାହାହିଁ ବଡ଼ କଥା । ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ର ଡିମା ଡିମା ଆଖିରେ ଆମ ଆଡ଼କୁ ତରାଟିକି ଚାହିଁ ବସିଛନ୍ତି । ପରନ୍ତୁ ପ୍ରଗତିର ସଂଜ୍ଞା ନିର୍ଣ୍ଣୟ ତଥା ଭବିଷ୍ୟତ କାର୍ଯ୍ୟକ୍ରମର 'ରୋଡ଼ମ୍ୟାପ୍' ତିଆରି କରିବା ଆପଣଙ୍କ ହାତରେ । ଆପଣା ହାତ ଜଗନ୍ନାଥକୁ ପ୍ରଗତିର ନବକଳେବର ନିର୍ମାଣରେ ସୁବିନିଯୋଗ କରନ୍ତୁ । ସଫଳତା ନିଶ୍ଚୟ ଆପଣଙ୍କ ହାତମୁଠାକୁ ଚାଲିଆସିବ ।

ଯୋଜନା - ଓଡ଼ିଆ
ଅକ୍ଟୋବର-୨୦୦୩



# ଭାରତ - ଅଭିବୃଦ୍ଧି ପଥରେ ଏକ ଅଗ୍ରଣୀ ଯାତ୍ରୀ

ସୂଚନା ପ୍ରଯୁକ୍ତି ବିଦ୍ୟାର ମହାନଗରୀ ବାଙ୍ଗାଲୋରଠାରେ ଗତ ମଇ ମାସ ୨୩ ତାରିଖ ଦିନ ପ୍ରେସ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଣ୍ଡିଆ ଦ୍ୱାରା ଆୟୋଜିତ 'ମିଡ଼ିଆ, ସୂଚ଼ନା ପ୍ରଯୁକ୍ତି ବିଦ୍ୟା ଓ ତୃଣମୂଳ ଅଭିବୃଦ୍ଧି' ଶୀର୍ଷକ କନ୍‌ଫରେନ୍ସରେ ସୂଚ଼ନା ପ୍ରଯୁକ୍ତି ବିଦ୍ୟାର ମହାମହିମ ସମ୍ରାଟ ତଥା ରାଷ୍ଟ୍ରର ମହାଧନାଢ଼୍ୟ ବ୍ୟକ୍ତି ଅଜିମ୍ ପ୍ରେମ୍‌ଜୀ ନିଜର ଅଭିଭାଷଣ ପ୍ରଦାନ କରି କୁହନ୍ତି ଯେ ରାଷ୍ଟ୍ରର ନବଜନ୍ମ, ନବଚ଼େତନାର ଉନ୍ମେଷ ଓ ନବ ଉନ୍ମାଦନାର ଜାଗରଣରେ ମିଡ଼ିଆ ଏବଂ ସୂଚ଼ନା ପ୍ରଯୁକ୍ତି ବିଦ୍ୟା ତୃଣମୂଳ ଅଭିବୃଦ୍ଧିରେ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିଥାନ୍ତି । ଗତ ୫ ଦଶକ ମଧ୍ୟରେ ଆମେ ଅସାଧାରଣ ପ୍ରଗତି ହାସଲ କରି ପାରିଛେ । ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି)ରେ ଆମେ ବିଶ୍ୱର ପାଞ୍ଚୋଟି ପ୍ରମୁଖ ରାଷ୍ଟ୍ର ମଧ୍ୟରେ ଅନ୍ୟତମ । ଆମେ ଆମର ଦାରିଦ୍ର୍ୟର ସୀମାରେଖାକୁ ହ୍ରାସ କରାଇ ପାରିଛୁ ଏବଂ ବହୁ ଶିଳ୍ପ କ୍ଷେତ୍ରରେ ଆମେ ଆତ୍ମନିର୍ଭରଶୀଳ ମଧ୍ୟ ହୋଇ ପାରିଛୁ । ସୂଚ଼ନା ପ୍ରଯୁକ୍ତି ବିଦ୍ୟା ଭଳି କେତେକ ଶିଳ୍ପ କ୍ଷେତ୍ରରେ ଭାରତ ଆଜି ତା'ର କର୍ମ ନୈପୁଣ୍ୟତା ପାଇଁ ବିଶ୍ୱର କୋଣ ଅନୁକୋଣରେ ଅତ୍ୟନ୍ତ ସୁପରିଚିତ ହୋଇ ପାରିଛି । ଯଦିଓ ଦିନ ପରେ ଦିନ ଆମେ ନାନାବିଧ ଚ୍ୟାଲେଞ୍ଜର ସମ୍ମୁଖୀନ ହେଉଛେ, ହେଲେ ଭାରତର ଅସୀମ ବଳ ବୈଭବକୁ ଆମକୁ ଯଥେଷ୍ଟ ଗୁରୁତ୍ୱର ସହ ବିଶ୍ୱବାସୀଙ୍କ ଆଗରେ ପ୍ରତିପାଦିତ କରିବାକୁ ପଡ଼ିବ ।

ଭାରତୀୟ ଅର୍ଥନୀତି ସମ୍ମୁଖୀନ ହେଉଥିବା ସବୁଠାରୁ ବଡ଼ ଚ୍ୟାଲେଞ୍ଜଟି ହେଲା ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ ଅଭିବୃଦ୍ଧି ଘଟାଇ କିପରି ବାର୍ଷିକ ୮ ପ୍ରତିଶତରେ ପହଞ୍ଚାଯାଇ ପାରିବ । ଏହା ହେଉଛି ଏକମାତ୍ର ରାସ୍ତା ଯେଉଁ ରାସ୍ତାର ଅନୁସରଣ କରି ବେକାର ସମସ୍ୟା, ଦାରିଦ୍ର୍ୟ ଓ ସାମାଜିକ ବିଦ୍ୱେଷ ପରି ମୌଳିକ ସମସ୍ୟାର ସମାଧାନ କରାଯାଇ ପାରିବ । ଅଜିମ ପ୍ରେମଜୀ କହୁନ୍ତି ଯେ ଏହି

ମୌଳିକ ପରିବର୍ତ୍ତନ ପ୍ରଗତିର ସାତ ଦିଗରେ ଧାବିତ ହେଉଥିବା ସାତୋଟି ମୁଖ୍ୟ ଭେକ୍ଟରଙ୍କ ଦ୍ୱାରା ପରିଚାଳିତ ହେବେ । ତନ୍ମଧ୍ୟରୁ ଆମେ ଦୁଇଟି ଭେକ୍ଟର ଯଥା ଦୂରସଞ୍ଚାର ଓ ରାସ୍ତାଘାଟ ଆଦିର ଉନ୍ନତିରେ ଉତ୍ତମ ଅଭିବୃଦ୍ଧି ହାସଲ କରି ପାରିଛୁ । ୨୦୦୩-୨୦୦୪ ମସିହା କେନ୍ଦ୍ର ବଜେଟରେ ରାସ୍ତାଘାଟ ଆଦିର ଉନ୍ନତି ପାଇଁ ୪୦ ହଜାର କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି । ଅଜିମ ପ୍ରେମଜୀ ଅନୁଭବ କରନ୍ତି ଯେ ତାଙ୍କ ଦୃଷ୍ଟିକୋଣରେ ପ୍ରାଥମିକ ଶିକ୍ଷା ସର୍ବପ୍ରଥମ ଏବଂ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ମୌଳିକ ଭେକ୍ଟର ଅଟେ । ଅର୍ଥର ଗଠନ ଶୈଳୀକୁ ନେଇ ୟୁରୋପ ଓ ଭାରତ ମଧ୍ୟରେ ଥିବା ପାର୍ଥକ୍ୟ ଏହାକୁ ଠିକ୍ ରୂପେ ଉପସ୍ଥାପନ କରିଥାଏ । ପଶ୍ଚିମ ୟୁରୋପରେ ଜାତୀୟ ସମ୍ପତ୍ତିର ୭୫ ଶତାଂଶ ଏହାର ମାନବ ସମ୍ବଳ, ୨୩ ଶତାଂଶ ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ ଏବଂ ଦୁଇ ଶତାଂଶ ପ୍ରାକୃତିକ ସମ୍ପତ୍ତିକୁ ବୁଝାଇଥାଏ ।

ପରନ୍ତୁ ବିକାଶଶୀଳ ରାଷ୍ଟ୍ରମାନଙ୍କର ଚିତ୍ର ଏହି ଚିତ୍ରଠାରୁ ସମ୍ପୂର୍ଣ୍ଣ ରୂପେ ଭିନ୍ନ । ଉଦାହରଣ ସ୍ୱରୂପ ଭାରତବର୍ଷକୁ ବିଚାରକୁ ନିଆଯାଉ । ଭାରତବର୍ଷରେ ଉପରୋକ୍ତ ଅନୁପାତ ୫୦,୨୬ ଏବଂ ୨୪ ପ୍ରତିଶତ ବୋଲି ପରିଗଣିତ ହୋଇଥାଏ । ବିଂଶ ଶତାବ୍ଦୀରେ ଯେଉଁ ଅର୍ଥନୀତି ସଗର୍ବେ ମୁଣ୍ଡଟେକି ଠିଆ ହୋଇଛି ଏବଂ ସମୃଦ୍ଧିର ବେଳାଭୂମିରେ ନିଜର ହସ୍ତାକ୍ଷର ଛାଡ଼ି ଯିବାରେ ସକ୍ଷମ ହୋଇଛି, ତାହା ସମ୍ଭବ ହୋଇ ପାରିଛି କେବଳ ମାତ୍ର ମାନବ ସମ୍ବଳ ଭିତରେ ଥିବା ଅନ୍ତର୍ନିହିତ ଜ୍ଞାନ ଓ ଜିଜ୍ଞାସାର ପରିସ୍ଫୁଟନ ମାଧ୍ୟମରେ । ଭାରତବର୍ଷରେ ୬ ରୁ ୧୪ ବର୍ଷ ବୟସ ମଧ୍ୟରେ ଥିବା ୬୦ ମିଲିୟନ ପିଲା ଏବେ ବି ସ୍କୁଲ ବାରଣ୍ଡା ମାଡ଼ନ୍ତି ନାହିଁ । ସମୟ ସହ ବନ୍ଧୁ ବାନ୍ଧି ସୁଯୋଗକୁ ହାତ ବଢ଼େଇ କିପରି ଅଣ୍ଟିରେ ପୁରେଇ ନବାକୁ ହୁଏ ତାହା ଶିକ୍ଷା ହିଁ ପ୍ରଦାନ କରିଥାଏ ।

ଦ୍ୱିତୀୟ ଭେକ୍ଟରଟି ହେଲା ମୌଳିକ ସ୍ୱାସ୍ଥ୍ୟରକ୍ଷା । ଶୈଶବରେ ଆମର ଶିଶୁ ମୃତ୍ୟୁହାର ପ୍ରତି ହଜାରେ ଲୋକ ସଂଖ୍ୟା ପିଛା ୭୦ ଜଣ, ପରନ୍ତୁ ବିକଶିତ ରାଷ୍ଟ୍ରମାନଙ୍କରେ ପ୍ରତି ହଜାରେ ଲୋକସଂଖ୍ୟା ପିଛା ତାହା ମାତ୍ର ୧୦ ଜଣ । ରାଷ୍ଟ୍ରର ଅର୍ଥନୈତିକ ସୁଯୋଗରେ ଅଂଶ ଗ୍ରହଣ କରିବା ପାଇଁ ନିରକ୍ଷରତା ଆମ ଯାତ୍ରା ପଥରେ ପ୍ରତିବନ୍ଧକ ସାଜୁଛି । ଅଗଣିତ କୋଟି କୋଟି ଜନତା ଏହି ମହାନ୍ ସୁଯୋଗରୁ ବଞ୍ଚିତ ହେଉଛନ୍ତି । ସରକାରଙ୍କ ଦ୍ୱାରା ଶୁଭାରମ୍ଭ କରାଯାଇଥିବା କମ୍ୟୁନିଟି ଭିତ୍ତିକ ସ୍ୱାସ୍ଥ୍ୟ ବୀମା ପରିଯୋଜନା ଅର୍ଥନୈତିକ ଦୁର୍ବଳ ଶ୍ରେଣୀର

ଲୋକମାନଙ୍କୁ ଉପଯୁକ୍ତ ସ୍ୱାସ୍ଥ୍ୟସେବା ଯୋଗାଇ ଦେଇ ସେମାନଙ୍କୁ ସଶକ୍ତିକରଣ କରିପାରିବ ।

ପ୍ରାଥମିକ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ଜନସାଧାରଣଙ୍କର ମୌଳିକ ଆବଶ୍ୟକତା ପ୍ରତି ଦୃଷ୍ଟି ଦେଉଥିଲାବେଳେ ଅର୍ଥନୈତିକ ସୁଯୋଗର ଅବୟବକୁ ସଂପ୍ରସାରିତ କରିବା ପାଇଁ ଆମକୁ ଆଗକୁ ଆହୁରି ଦୁଇ ପାହୁଣ୍ଡ ଦୌଡ଼ି ଯିବାକୁ ପଡ଼ିବ ଓ ନାନାବିଧ ବଳିଷ୍ଠ ପଦକ୍ଷେପ ମାଧ୍ୟମରେ ଅର୍ଥନୀତିର ରଙ୍ଗ ମହଲକୁ ଇନ୍ଦ୍ରଧନୁର ସପ୍ତରଙ୍ଗୀ ଛଟାରେ ଚିତ୍ରିତ କରିବାକୁ ପଡ଼ିବ ।

ତୃତୀୟ ଭେକ୍ଟରଟି ହେଲା ଶକ୍ତିକ୍ଷେତ୍ର । ଶକ୍ତି କ୍ଷେତ୍ରଟି ଅର୍ଥନୀତିର ସର୍ବବୃହତ ସମ୍ପତ୍ତି ବୋଲି ପ୍ରାୟ ପରିଗଣିତ ହୋଇଥାଏ । ଆମକୁ ବିଦ୍ୟୁତ୍ ଶକ୍ତିର ଚୋରୀ ଓ ବିଦ୍ୟୁତ୍ ସରବରାହ ଜନିତ ଲିକ୍‌କୁ ରୋକିବାକୁ ପଡ଼ିବ ଏବଂ ତତ୍ ସଙ୍ଗେ ସଙ୍ଗେ ବିଦ୍ୟୁତ୍ ଉତ୍ପାଦନ, ବିଦ୍ୟୁତ୍ ଯୋଗାଣ ଓ ବିଦ୍ୟୁତ୍ ସରବରାହର ଦକ୍ଷତାରେ ମଧ୍ୟ ଅଭିବୃଦ୍ଧି ଆଣିବାକୁ ପଡ଼ିବ । ୧୯୫୦ ଦଶକରେ ଉଭୟ ଚୀନ ଓ ଭାରତର ବିଦ୍ୟୁତ୍ ଶକ୍ତି ଉତ୍ପାଦନର ସଂସ୍ଥାପିତ କ୍ଷମତା ପ୍ରାୟ ସମାନ ଥିଲା । ଆଜି ଚୀନ ପାଖରେ ଭାରତ ଅପେକ୍ଷା ୩ ଗୁଣ ଅଧିକ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ସଂସ୍ଥାପିତ କ୍ଷମତା ଅଛି । ପୁନଶ୍ଚ ଚୀନ ପ୍ରତିବର୍ଷ ୧୫ ହଜାର ମେଗାୱାଟର ବିଦ୍ୟୁତ୍ ଶକ୍ତି ଉତ୍ପାଦନ କ୍ଷମତା ଯୋଗ କରି ଚାଲିଥିଲା ବେଳେ ଭାରତବର୍ଷ ବର୍ଷକୁ ପ୍ରାୟ ଅତି କଷ୍ଟରେ ୨୫୦୦ ମେଗାୱାଟ ବିଦ୍ୟୁତ୍ ଶକ୍ତି ଯୋଗ କରୁଛି । ପୁନଶ୍ଚ ଆମର ଯୋଗାଣ ଓ ସରବରାହ ଜନିତ କ୍ଷୟ ପ୍ରାୟ ୨୨ ପ୍ରତିଶତ ହୋଇଥିଲା ବେଳେ ବିକଶିତ ଦେଶମାନଙ୍କରେ ଏହା ମାତ୍ର ୭-୮ ପ୍ରତିଶତ ଅଟେ । ଏହା ଆପଣ ଭୁଲି ଯାଆନ୍ତୁ ନାହିଁ ଯେ ବିଦ୍ୟୁତ୍ ଶକ୍ତି ହିଁ ଯେ କୌଣସି ଶିଳ୍ପର ଲାଇଫ ଲାଇନ ବା ଜୀବନ ରେଖା ଅଟେ । ଶିଳ୍ପ ଜଗତର ଅଭିବୃଦ୍ଧିରେ ଏହା ଏକ ମୌଳିକ ଦରକାରୀ ବସ୍ତୁ ଭାବେ ପରିଗଣିତ ହୋଇଥାଏ ।

ଅଭିବୃଦ୍ଧିର ୪ର୍ଥ ଭେକ୍ଟରଟି ହେଲା ଜଳ । ଦେଶସାରା ଏବେ ଜଳର ଘୋର ଅଭାବ ପରିଲକ୍ଷିତ ହେଉଛି । ଦେଶରେ ଥିବା ଚାଷ ଉପଯୋଗୀ ଜମିର ୪୦ ପ୍ରତିଶତରୁ ବି କମ୍ ଜମି ପ୍ରକୃତରେ ଜଳସେଚନର ସୁବିଧା ପାଇପାରୁଛି । ଏଣେ ଭୂଗର୍ଭର ଜଳ ସ୍ତର ୫ ପ୍ରତିଶତ ହାରରେ ବର୍ଷକୁ ବର୍ଷ ନିମ୍ନମୁଖୀ ହୋଇ ଚାଲିଛି । କୃଷି, ଶିଳ୍ପ ଅବା ସହରାଞ୍ଚଳ ଭିତ୍ତିଭୂମିର ଅଭିବୃଦ୍ଧିରେ ଜଳର ଆବଶ୍ୟକତା ଅନନ୍ୟ

ସାଧାରଣ । ଜଳର ଦୁର୍ଲଭତା ରାଷ୍ଟ୍ରୀୟ ଅଭିବୃଦ୍ଧିର ସଡ଼କରେ ଭାରତ ପାଇଁ ପ୍ରତିବନ୍ଧକ ସୃଷ୍ଟି କରିବ । ଆପଣ କୃଷି, ଶିଳ୍ପ ଅବା ସହରାଞ୍ଚଳର ଭିତ୍ତିଭୂମି କଥା କୁହନ୍ତୁ, ସବୁଠି ଜଳର ଅଭାବ ଆମକୁ ଭୁତ ପରି ମାଡ଼ି ବସିଛି । ନଦ-ନଦୀ ମଧ୍ୟରେ ସଂଯୋଗ ସ୍ଥାପନ କରି ଜଳର ଉତ୍ତମ ପରିଚାଳନା ପାଇଁ ନିଆଯାଉଥିବା ନାନାବିଧ କାର୍ଯ୍ୟକ୍ରମ ଉପରେ ଠିକ୍ ରୂପେ ଭରଷା କରାଯାଇ ପାରୁନାହିଁ ।

ଅଭିବୃଦ୍ଧିର ୫ମ ଭେକ୍ଟରଟି ହେଲା ଟ୍ରାନ୍ସପୋର୍ଟ ବା ପରିବହନ । ବିଦ୍ୟୁତ୍ ଶକ୍ତି ଓ ଜଳକୁ ଛାଡ଼ିଦେଲେ ଆମେ ଆମର ପରିବହନର ଆବଶ୍ୟକତା ଆଡ଼େ ଟିକେ ନଜର ପକେଇବା ଉଚିତ । ରାସ୍ତାଘାଟର ଉଦାହରଣକୁ ବିଚାରକୁ ନିଆଯାଉ । ଏକ ପରିବ୍ରାଜକ ଦିନେ ଅଜିମ ପ୍ରେମଜୀଙ୍କୁ କହୁଥିଲେ - 'ଇଣ୍ଟରନେଟ୍ ମାଧ୍ୟମରେ ଯଦିଓ ସେ ଓ୍ୱିପ୍ରୋ କର୍ପୋରେସନର ଟିକିନିଖି ବିବରଣ ବିଶ୍ୱର ଯେ କୌଣସି ପ୍ରାନ୍ତରୁ ପାଇ ପାରିଲେ, ହେଲେ ଭାରତର ସହର ମଧ୍ୟ ଦେଇ ଯାଇଥିବା ରାସ୍ତାଦେଇ ସେ ତାହା ପାଇ ପାରିଲେ ନାହିଁ ।' ଆମ ଦେଶ ମଧ୍ୟରେ ବିଛେଇ ହୋଇ ପଡ଼ିଥିବା ରାସ୍ତାଗୁଡ଼ିକର ମୋଟ ଦୈର୍ଘ୍ୟ ଏକ ଲକ୍ଷ କୋଡ଼ିଏ ହଜାର କିଲୋମିଟର । ଏହି ରାସ୍ତାର ୫୦ ଭାଗରୁ ବି ଅଧିକ ଅଂଶ ପକ୍କା ହୋଇନାହିଁ । ରାସ୍ତା ନିର୍ମାଣ ସଂକ୍ରାନ୍ତୀୟ ଦେଶର ସମସ୍ତ ପରିଯୋଜନା ରାସ୍ତାର ଲମ୍ବ ବୃଦ୍ଧି କରିବାରେ ନିବେଶିତ ନ ହୋଇ ରାସ୍ତାର ସ୍ତର ବୃଦ୍ଧି କରିବାରେ ବିନିଯୋଗ ହେଉଛି । ଦେଶରେ ଏବେ ଅତି କମ୍‌ରେ ୨୫ ହଜାର କିଲୋମିଟର ରାସ୍ତା ଯୋଗ କରିବାର ଆବଶ୍ୟକତା ରହିଛି ।

ଅଭିବୃଦ୍ଧିର ୬ଷ୍ଠ ଭେକ୍ଟରଟି ହେଲା ଆନ୍ତର୍ଜାତିକ ପ୍ରବେଶ ଦ୍ୱାର ଗୁଡ଼ିକର ବହୁମୁଖୀ ଉନ୍ନୟନ । ଆମ ବନ୍ଦର ଗୁଡ଼ିକ ଆଡ଼କୁ ଚାଲନ୍ତୁ ଟିକେ ଆଖି ଫେରେଇ ଚାହିଁବା । ଦିନ ପରେ ଦିନ ଦେଶର ଆମଦାନୀ ଓ ରପ୍ତାନି କାରବାର ବଢ଼ିଲେ ବନ୍ଦର ଜନିତ ସମସ୍ୟା ଗୁଡ଼ିକ ମଧ୍ୟ ତହୁଁ ତହୁଁ ବଢ଼ି ବଢ଼ି ଚାଲିବ, ଯଦ୍ୱାରା ବନ୍ଦର ଗୁଡ଼ିକର ଯେ ଶ୍ୱାସରୁଦ୍ଧ ହୋଇ ନଯିବ ସେକଥା କିଏ କହିବ । ଦେଶରେ ଏବେ ୧୧ଟି ବଡ଼ ବଡ଼ ପ୍ରମୁଖ ବନ୍ଦର ଓ ୧୩୯ ଟି ଛୋଟ ଛୋଟ ବନ୍ଦର କାର୍ଯ୍ୟ କରୁଛନ୍ତି । ୧୯୯୬-୯୭ରେ ଏହି ବନ୍ଦର ଗୁଡ଼ିକ ଦେଇ ମୋଟ ସାମଗ୍ରୀ ପରିବହନର ପରିମାଣ ୨୨୫ ମିଲିୟନ ଟନ ଥିଲା ବେଳେ ୨୦୦୫-୨୦୦୬ ମସିହା ବେଳକୁ ୬୫୦ ମିଲିୟନ ଟନ ହେବାର ଅଟକଳ କରାଯାଇଛି । ଗୋଟିଏ ଜାହାଜ ପିଛା ଯେତିକି ମାଲ୍ ପରିବହନ ହେବା କଥା ଆନ୍ତର୍ଜାତିକ ସ୍ତର ତୁଳନାରେ

ଆମେ ସେଥିରେ ଯଥେଷ୍ଟ ପଛରେ ଅଛେ । ଆନ୍ତର୍ଜାତିକ ସ୍ତରରେ ଭାରତବର୍ଷକୁ ଏକ ସୁନ୍ଦରତମ ଗନ୍ତବ୍ୟସ୍ଥଳ ଭାବେ ଉଦ୍‌ଭାସିତ ହେବାକୁ ହେଲେ ଆମେ ଆମର ବନ୍ଦର ଗୁଡ଼ିକୁ ଯଥେଷ୍ଟ ଶକ୍ତିଶାଳୀ କରି ଗଢ଼ିତୋଳିବା ନିତାନ୍ତ ଆବଶ୍ୟକ । ପ୍ରକୃତି ମାତାର କରୁଣାରୁ ଭାରତର ଭୌଗୋଳିକ ଅବସ୍ଥିତି ଏପରି ଯେ ଦେଶର ତିନିପଟରେ ସମୁଦ୍ର ଘେରି ରହିଥିବା ବେଳେ ତନ୍ମଧ୍ୟରୁ ଦୁଇ ପଟରେ ଥିବା ଦ୍ୱୀପମାନଙ୍କର ସୌନ୍ଦର୍ଯ୍ୟମୟ ଅବସ୍ଥିତି ଭାରତବର୍ଷକୁ ଏକ ଅନନ୍ୟ ରାଷ୍ଟ୍ରଭାବେ ବିଶ୍ୱ ବୁକୁରେ ଦଣ୍ଡାୟମାନ କରାଇଛି ।

ଶେଷରେ ଆମ ଆମର ଜମିଜମା ସଂକ୍ରାନ୍ତୀୟ ନିୟମ କାନୁନ୍, ଟିକସ ବ୍ୟବସ୍ଥା ଓ ସୂଚନା ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନ କରିବା ନିହାତି ଦରକାର । ହିସାବ କରି ଦେଖାଯାଇଛି ଯେ ଦେଶର ୯୦ ପ୍ରତିଶତ ଜମିଜମା କ୍ଷେତ୍ରରେ ମାଲିକାନା ସ୍ୱତ୍ୱକୁ ନେଇ ଆଇନଗତ ଗଣ୍ଡଗୋଳ ରହିଛି । ଜମିଜମା ରେଜିଷ୍ଟ୍ରେସନ କଲାବେଳେ ଆବଶ୍ୟକ ହେଉଥିବା ଷ୍ଟାମ୍ପଡ୍ୟୁଟି ଜମିର ମୋଟ ବିକ୍ରୀମୂଲ୍ୟର ୮-୧୫ ପ୍ରତିଶତ ହୋଇଥାଏ ଯାହାକି ଜମିଜମାର ବିକ୍ରୀରେ ଏକ ମୁଖ୍ୟ ପ୍ରତିବନ୍ଧକ ଭାବେ ଉଭା ହୋଇଥାଏ । ଅପର ପକ୍ଷରେ ଜମିଜମାର ଟିକସ ହାର କମ୍ ହୋଇଥିବାରୁ ଏଥିରୁ ମିଳୁଥିବା ଅର୍ଥ ସରକାରୀ ତହବିଲ ପାଇଁ ମଧ୍ୟ ଯଥେଷ୍ଟ ନୁହେଁ । ଏ ସମସ୍ତ ଘଟଣା ମିଳିମିଶି ଭାରତବର୍ଷରେ ଜମିଜମାର ମୂଲ୍ୟକୁ ହାରହାରି ଆୟ ତୁଳନାରେ ଏସୀୟ ରାଷ୍ଟ୍ରମାନଙ୍କ ମଧ୍ୟରେ ସର୍ବାଧିକ ବୋଲି ସାବ୍ୟସ୍ତ କରୁଛି । ସର୍ବୋପରି ସ୍ୱଳ୍ପ ଟିକସ ଆଦାୟ ସହରାଞ୍ଚଳର ଭିତ୍ତିଭୂମିର ରକ୍ଷଣା ବେକ୍ଷଣରେ ନାନାବିଧ ବାଧା ସୃଷ୍ଟି କରୁଛି । ଜମିଜମା କ୍ଷେତ୍ରରେ ସଂସ୍କାର ପ୍ରକ୍ରିୟା ପ୍ରକୃତରେ ଗୃହ ନିର୍ମାଣ ଓ ବ୍ୟବସାୟ କ୍ଷେତ୍ରରେ ଅଭୂତପୂର୍ବ ପ୍ରଗତି ଆଣି ପାରିବ । କୃଷି କ୍ଷେତ୍ରକୁ ଛାଡ଼ିଦେଲେ ଏହି ଦୁଇଟି ସେକ୍ଟର ଅର୍ଥନୀତିର ଦୁହାଁଳିଆ ଗାଈ ସଦୃଶ କାର୍ଯ୍ୟ କରିଥାନ୍ତି ଏବଂ ବିଶାଳ ରୋଜଗାର ବଜାର ମଧ୍ୟ ଉନ୍ମୁକ୍ତ କରିଥାନ୍ତି । ପରନ୍ତୁ ଏ ବର୍ଷର କେନ୍ଦ୍ର ବଜେଟ ଜମିଜମା ସଂସ୍କାର ଉପରେ ସମ୍ପୂର୍ଣ୍ଣ ନିରବତା ଅବଲମ୍ବନ କରିଛି ।

ଅଜିମ ପ୍ରେମଜୀ କୁହନ୍ତି ଯେ ଏ ସମସ୍ତ ସାତୋଟି ଭେକ୍ଟରକୁ ଛାଡ଼ିଦେଲେ ସୂଚନା ପ୍ରଯୁକ୍ତି ବିଦ୍ୟା ଏବଂ ମିଡ଼ିଆ ରାଷ୍ଟ୍ରକୁ ଅଭିବୃଦ୍ଧିର ସଡ଼କରେ ଦୌଡ଼େଇ ନେଇ ଆଗଙ୍ଗା କୁମାରୀକା କିପରି ଏକ ମୌଳିକ ପରିବର୍ତ୍ତନର ସୁଅ ଛୁଟେଇ ଦେଇ ପାରିବ ସେ ବିଷୟରେ ଚାଲନ୍ତୁ ଟିକେ ପର୍ଯ୍ୟାଲୋଚନା କରିବା । ସୂଚନା

ପ୍ରଯୁକ୍ତିବିଦ୍ୟା ସହ ଜଡ଼ିତ ଶିଳ୍ପ ଗୁଡ଼ିକ ବୈଦେଶିକ ମୁଦ୍ରା ଅର୍ଜନର ଏକ ପ୍ରମୁଖ ଆୟୁଧ ଅଟନ୍ତି ଏବଂ ବିଶ୍ୱ ପୃଷ୍ଠ ଭୂମିରେ ଭାରତର ଉପସ୍ଥିତିକୁ ସେମାନେ ମୁକ୍ତ କଣ୍ଠରେ ନିର୍ଘୋଷିତ କରିଥାନ୍ତି । ରାଷ୍ଟ୍ରର ବିଜୟ ଯାତ୍ରାରେ ଏହି ଆଇ.ଟି ଶିଳ୍ପ ସଂସ୍ଥାଗୁଡ଼ିକ ଏକ ପ୍ରମୁଖ ଭୂମିକା ସଂପାଦନ କରିଥାନ୍ତି । ବିଭନ୍ନ ସରକାରୀ ସଂସ୍ଥା ଏବଂ ଯେ କୌଣସି ଏକ ପ୍ରତିଷ୍ଠାନର ସବୁ ସ୍ତରରେ ବିନା ମୂଲ୍ୟରେ ଏବଂ ଯଥାଶୀଘ୍ର ତଥ୍ୟାବଳୀର ଉପଲବ୍ଧ ହୋଇ ପାରୁଥିବାରୁ ସୂଚନା ପ୍ରଯୁକ୍ତି ବିଦ୍ୟା ଏକ ପ୍ରବଳ ପରାକ୍ରମୀ ଅସ୍ତ୍ର ଭାବେ ଆମ ହାତରେ ଆଜି ଧରାଦେଇଛି । ଜନତାଜନାର୍ଦ୍ଦନ ଓ ଅମଲାତନ୍ତ୍ର ସୂଚନା କୁଣ୍ଡରେ ଅବଗାହନ କରି ନିଜ ନିଜକୁ ସୂଚନା ଯୁଗର ଏକ ବୀର ସୈନିକଭାବେ ପ୍ରମାଣିତ କରୁଛନ୍ତି । ନିଷ୍ପତ୍ତି ଗ୍ରହଣକାରୀ ସର୍ବମୟ କର୍ତ୍ତାଙ୍କ ହାତରେ ସର୍ବଶେଷ ସୂଚନାମାନ ଯଥାଶିଘ୍ର ଉପଲବ୍ଧ ହୋଇପାରୁଥିବାରୁ ସୂଚନା ପ୍ରଯୁକ୍ତି ବିଦ୍ୟା ଏକ ପ୍ରବଳ ପରାକ୍ରମୀ ଅସ୍ତ୍ରଭାବେ ଉଦ୍‌ଭାସିତ ହୋଇ ପାରିଛି ଏବଂ ପରିବର୍ତ୍ତନକୁ କାଖେଇ କୋଳେଇ ନେଇ ପ୍ରଗତିର ସଡ଼କରେ ଦ୍ରୁତ ଧାବମାନ ମଧ ହୋଇପାରୁଛି ।

ରାଷ୍ଟ୍ରର ଆବାଳ-ବୃଦ୍ଧ-ବନିତାଙ୍କୁ ପରିବର୍ତ୍ତନର ମିଠା ସ୍ୱାଦ ଚଖେଇବା ପାଇଁ ମିଡ଼ିଆର ଭୂମିକା ଯେ ଅନନ୍ୟ ସାଧାରଣ, ଏଥିରେ ଦ୍ୱିମତ ହେବାର କୌଣସି ଅବକାଶ ନାହିଁ । ରାଷ୍ଟ୍ରୀୟ ପରିବର୍ତ୍ତନର ରୁଦ୍ରାଭିଷେକ ଉତ୍ସବ ମିଡ଼ିଆ ହାତରେ ହିଁ ସଂପାଦିତ ହୋଇଥାଏ । ରାଷ୍ଟ୍ରୀୟ ପ୍ରଗତିର ମହାଦୌଡ଼ରେ ସୂଚ଼ନା ପ୍ରଯୁକ୍ତି ବିଦ୍ୟା ଅପେକ୍ଷା ମିଡ଼ିଆର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଦିନକୁ ଦିନ ଆମେ ଯେତେବେଳେ ସଫଳତା ପାଉଛୁ ତାହା ଆମକୁ ଏକ ଅତ୍ୟନ୍ତ ଗୁଣଗ୍ରାହୀ, ଅଧିକ ଆତ୍ମନିର୍ଭରଶୀଳ ସମ୍ପନ୍ନ ସମ୍ମାନାସ୍ପଦ ରାଷ୍ଟ୍ର ଭାବେ ବିଶ୍ୱବୁକୁରେ ପରିଚ଼ିତ କରାଉଛି । ଆମ ଦେଶରେ ଏକ ଅତି ବଳିଷ୍ଠ ଓ ମୁକ୍ତ ମିଡ଼ିଆ କାମ କରୁଛି । ମିଡ଼ିଆ ହାତରେ ଅଫୁରନ୍ତ ସୁଯୋଗର ଚାବିକାଠି ରହିଛି, ଯାହାର ଉପଯୁକ୍ତ ବ୍ୟବହାର କରି ଏହା ରାଷ୍ଟ୍ରୀୟ ଗୌରବର ନବତଳ ପ୍ରାସାଦ ନିର୍ମାଣ କରି ପାରିବ ଏବଂ ମିଳିତ ଆତ୍ମବିଶ୍ୱାସର ବୀଜକୁ ଅଙ୍କୁରୋଦ୍‌ଗମ ହେବାରେ ଯଥେଷ୍ଟ ସହାୟକ ହୋଇପାରିବ । ଆମେ ଆମ ଅତୀତର ଗୌରବମୟ ଗାଥାକୁ ଖାଲି ବଖାଣି ବସିଲେ ତ ହବନି, ଆଖି ଖୋଲି ସୁଦୂର ଭବିଷ୍ୟତକୁ ତୀକ୍ଷ୍ଣ ଦୃଷ୍ଟିରେ ଅବଲୋକନ କରିବାକୁ ପଡ଼ିବ । ସୌନ୍ଦର୍ଯ୍ୟମୟ ଭବିଷ୍ୟତର ଶିଳାନ୍ୟାସ କରିବା ପାଇଁ ଆଗାମୀ ପିଢ଼ି ହାତକୁ ଆମକୁ ଏକ ସର୍ବଗୁଣସମ୍ପନ୍ନ ଭାରତବର୍ଷ ଟେକି ଦବାକୁ ପଡ଼ିବ । ରାଷ୍ଟ୍ରୀୟ ଭବିଷ୍ୟତର ଏକ

ମାଷ୍ଟର ପ୍ଲାନ ବା ନକ୍ସା ତିଆରି କରି ଯୁବ ପିଢ଼ିଙ୍କ ହାତକୁ ତାହା ବଢ଼େଇ ଦବାକୁ ପଡ଼ିବ । ପ୍ରକୃତରେ ପରିବର୍ତ୍ତନ ଆସିବ ସେତିକିବେଳେ ଯେତେବେଳେ ଦେଶର କୋଟି କୋଟି ମଣିଷ ନିଜ ମଧ୍ୟରେ ଆତ୍ମବିଶ୍ୱାସକୁ ପ୍ରବଳଭାବେ ଦୃଢ଼ୀଭୂତ କରି ପାରିବେ । ଆମେ ଆମର ଭୁଲ୍ ଭଟକା ବା ଦୋଷ ଦୁର୍ବଳତାକୁ ଆଖିବୁଜି ଘୋଡ଼େଇ ପକେଇଲେ ହବନି । ଠିକ୍ ସେହିପରି ଆମ ମନ ଭିତରେ ବସାବାନ୍ଧି ରହିଥିବା ବିଯୁକ୍ତ ମନୋବୃତ୍ତିକୁ ଜାବୁଡ଼ି ଧରି ବାଟ ଚାଲିଲେ ତାହା ଅଭିବୃଦ୍ଧିର ସଡ଼କରେ ବାଧା ହିଁ ବାଧା ସୃଷ୍ଟି କରିବ ।

ପିଲାଦିନର ମଜା ଗପଟିଏ ମନେ ପକେଇ ଅଜୀମ ପ୍ରେମଜୀ କୁହନ୍ତି ଯେ - ଥରେ ଦଳେ ବେଙ୍ଗ ଗୋଟିଏ ଅଗନା ଅଗନି ବନସ୍ତ ଭିତର ଦେଇ ଯାଉଥିଲେ । ବନସ୍ତରେ ଯାଉଁ ଯାଉଁ ସେଥିରୁ ଦୁଇଟି ବେଙ୍ଗ ଗୋଟିଏ ଗହିରିଆ ଖାଲ ଭିତରେ ଗଳି ପଡ଼ିଲେ । ସାଙ୍ଗରେ ଆଉ ଯେତେ ବେଙ୍ଗ ଥିଲେ ସମସ୍ତେ ସେ ଖାଲ ଚାରିକଡ଼େ ଘେରିଗଲେ । ବେଙ୍ଗଗୁଡ଼ାକ ଖାଲର ଗଭୀର୍ଗତା ଠଉରାଇ ଖାଲ ଭିତରେ ପଡ଼ିଯାଇଥିବା ବେଙ୍ଗ ଦୁଇଟିଙ୍କୁ କହିଲେ ଦେଖ ଏ ଖାଲଟିର ଗଭୀରତା ଖୁବ୍ ବେଶୀ, ତେଣୁ ତୁମର ଏଥିରୁ ମୁକୁଳିବା ସମ୍ପୂର୍ଣ୍ଣ ରୂପେ ଅସମ୍ଭବ । ତେଣୁ ତୁମ ପାଇଁ ବଞ୍ଚିବା ମରିବା ପ୍ରାୟ ସମାନ କଥା । ତେଣୁ ତୁମେ ଦୁହେଁ ଆମ କଥା ମାନ ଏବଂ ଧରିନିଅ କି ତୁମେ ମରିଗଲଣି ବୋଲି । ବେଙ୍ଗ ଦୁଇଟି ସେମାନଙ୍କର ମତାମତକୁ ଗୁରୁତ୍ୱ ନ ଦେଇ ନିଜ ପାରୁ ପଣେ ସେ ଖାଲ ଭିତରୁ ଉପରକୁ ଡେଇଁ ଚାଲି ଆସିବାକୁ ତୁହାକୁ ତୁହା କୁଦା ମାରି ଚାଲିଲେ । ନିଜ ଚେଷ୍ଟାରୁ ଆଦୌ ବିରତ ହେଲେ ନାହିଁ । ଏହା ଦେଖି ଖାଲ ଚାରିକଡ଼େ ଘେରି ରହିଥିବା ବେଙ୍ଗଦଳ ଖାଲ ଭିତରେ ପଡ଼ିଥିବା ବେଙ୍ଗ ଦୁଇଟିକୁ ତାଙ୍କ ଅକାରଣ ଚେଷ୍ଟାରୁ ନିବୃତ ହେବାପାଇଁ ବାରମ୍ବାର ବାରଣ କରି ଚାଲିଥାନ୍ତି ଏବଂ ସବୁବେଳେ ତାଙ୍କୁ ମନେ ପକେଇ ଦେଉଥାନ୍ତି ଯେ ତୁମ ଦୁଇଜଣଙ୍କ ବଞ୍ଚିବା ମରିବା ପ୍ରାୟ ସମାନ ଓ ତୁମେ ନିଶ୍ଚିତ ରୂପେ ଧରିନିଅକି ତୁମେ ଦୁହେଁ ମରିଗଲଣି ବୋଲି । ବେଙ୍ଗ ଦଳର ଏ ପ୍ରକାର ପୁନଃ ପୁନଃ ବାରଣ ଶୁଣି ଶୁଣି ଖାଲ ଭିତରେ ପଡ଼ିଥିବା ଦୁଇଟି ବେଙ୍ଗରୁ ଗୋଟିଏ ବେଙ୍ଗ ସେମାନଙ୍କ ବାରଣ ଦ୍ୱାରା ପ୍ରଭାବିତ ହୋଇ ନିଜ ଚେଷ୍ଟାରୁ ନିବୃତ ହୋଇଗଲା ଏବଂ ସତକୁ ସତ ସେ କ୍ଳାନ୍ତ ଶ୍ଳାନ୍ତ ହୋଇ ଥକି ପଡ଼ିଲା ଏବଂ ମରଣ ପଥର ଯାତ୍ରୀ ହେଲା । ପରନ୍ତୁ ଅନ୍ୟ ବେଙ୍ଗଟି ଖାଲ ଭିତରୁ ଉପରକୁ ଡେଇଁ ଚାଲି ଆସିବା ପାଇଁ

ତା'ର ସମସ୍ତ ଶକ୍ତି ବିନିଯୋଗ ପୂର୍ବକ ପ୍ରଗାଢ଼ ଉଦ୍ୟମ ଜାରୀ ରଖିଲା । ଏହା ଦେଖି ଖାଲ ଚାରିକଡ଼େ ଘେରିଥିବା ବେଙ୍ଗଦଳ ତାକୁ ପୁନଶ୍ଚ ନିରୁତ୍ସାହିତ କରିବାକୁ ଲାଗିଲେ ଏବଂ ସଦା ସର୍ବଦା ତାକୁ ମନେ ପକେଇ ଦେଲେ ଯେ ତୁ ଏ ଖାଲ ଭିତରୁ ମୁକୁଳିବା ଆଶା ସମ୍ପୂର୍ଣ୍ଣ ରୂପେ ଛାଡ଼ିଦେ ଏବଂ ଧରି ନେ କି ତୁ ମରିଗଲୁଣି ବୋଲି । ଏକଥା ଶୁଣି ଖାଲ ଭିତରେ ପଡ଼ିଥିବା ସେହି ଏକୁଟିଆ ବେଙ୍ଗଟି ତା'ର ଚେଷ୍ଟାକୁ ଆହୁରି ବଳବତ୍ତର କଲା ଏବଂ ସତକୁ ସତ ଗୋଟିଏ ଖେପାରେ ଖାଲ ଭିତରୁ ଉପରକୁ ଡେଇଁ ଚାଲି ଆସିଲା । ଯେତେବେଳେ ସେ ଉପରକୁ ଉଠି ଚାଲି ଆସିଲା, ବେଙ୍ଗଦଳ ତାକୁ ଛିଗୁଲେଇ କରି ପଚାରିଲେ- ତୁ କାହିଁକି ଏତେ ଫୁଲେଇ ହୋଇ ଫକ୍ ଫକ୍ ଡେଉଁଥିଲୁ ? ତୁ କ'ଣ ଆମ କଥା ଶୁଣି ପାରୁ ନ ଥିଲୁ କି ? ବେଙ୍ଗଟି କହିଲା- ମୁଁ ପରା କାଲାଟାଏ । ଏକା ସାଙ୍ଗରେ ତୁମ୍ଭମାନଙ୍କ ମୁଣ୍ଡ ଟୁଙ୍ଗୁରା ଦେଖି ମୁଁ ଭାବିଲି ଯେ ତୁମ୍ଭେମାନେ ମତେ ମୂଳରୁ ସଦାସର୍ବଦା ଉତ୍ସାହିତ କରିଚାଲିଛ କିପରି ମୁଁ ଖାଲ ଭିତରୁ ଶୀଘ୍ର ଉପରକୁ ଉଠିଆସେ । ମୁଁ ଖାଲ ଭିତରୁ ଉପରକୁ ଉଠି ଆସିଲି ବୋଲି ତୁମ୍ଭେମାନେ କ'ଣ ଖୁସି ନୁହଁ କି ?

ଏହି ସୁନ୍ଦର ଗପଟିର ଅବତାରଣା କରିସାରି ଅଜିମ ପ୍ରେମଜୀ କହୁନ୍ତି ଯେ ଯଦି ଗୋଟିଏ ରାଷ୍ଟ୍ରଭାବେ ଭାରତବର୍ଷକୁ ପ୍ରଗତିର ରତ୍ନ ସିଂହାସନରେ ଅଭିଷିକ୍ତ ହେବାକୁ ପଡ଼ିବ, ତେବେ ଆମକୁ ନିଜ ଭିତରେ ଅଖଣ୍ଡ ଆତ୍ମ ବିଶ୍ୱାସର ବୀଜ ପ୍ରତିରୋପଣ କରିବାକୁ ପଡ଼ିବ ଯଦ୍ୱାରା ନିଜ ଆତ୍ମ ପ୍ରତ୍ୟୟ ମାଧ୍ୟମରେ ପରିବର୍ତ୍ତନଶୀଳ ସମୟକୁ ରାଷ୍ଟ୍ର ନିର୍ମାଣକଳ୍ପେ ସଠିକ୍ ଦିଗଦର୍ଶନ ଦିଆଯାଇ ପାରିବ । କଥାରେ ଅଛି- ସଫଳତା ସବୁବେଳେ କେବଳ ଜଣେ ପ୍ରବଳ ପରାକ୍ରମଶାଳୀ ବ୍ୟକ୍ତିର ବେକରେ ଫୁଲମାଳ ହୋଇ ଝୁଲି ପଡ଼େନା, ବରଂ ଏହା ସେହି ବ୍ୟକ୍ତିର ବକ୍ଷଦେଶ ମଣ୍ଡନ କରିଥାଏ; ଯିଏ ସ୍ୱପ୍ନ ଦେଖିବାକୁ ସତ୍‌ସାହସ କରିଥାଏ ଏବଂ ଯିଏ ଭାବିପାରେ କି ମୁଁ ଯେ କୌଣସି କାମ ନିଶ୍ଚିତ ରୂପେ ସଫଳ ଭାବେ ସମ୍ପାଦନ କରିପାରିବି ।

ସମାଜ

ତା- ୭.୭.୨୦୦୩



# ଜ୍ଞାନ ସହସ୍ରାବ୍ଦରେ ନୂତନ ଅର୍ଥନୀତିର ସ୍ୱରୂପ

୧୯୮୧ ମସିହାରେ ଯେତେବେଳେ ଛଅ ଜଣ ମଧ୍ୟବିତ୍ତ ପରିବାରର ସଦସ୍ୟ ନିଜ ନିଜର ଚାକିରି ଛାଡ଼ି ପୁନେର ଏକ ଆପାର୍ଟମେଣ୍ଟରେ ବସି ସଫ୍ଟୱେୟାର କୋଡ୍ ଲେଖିବା ଆରମ୍ଭ କଲେ, ସେତେବେଳେ କିଏ ଅବା କଳ୍ପନା କରିଥିଲା ଯେ ସେମାନେ ଏକ ପାୱାର ହାଉସ ଇଣ୍ଡଷ୍ଟ୍ରିର ନିର୍ମାଣର ଶିଳାନ୍ୟାସ କରୁଛନ୍ତି; ଯାହାକି ଦିନେ ଭାରତୀୟ ରପ୍ତାନି ବାଣିଜ୍ୟର ଏକ ସମ୍ପୂର୍ଣ୍ଣ ନୂତନ ନାମକରଣ କରିବ । ସେହି ପ୍ରୟାସର ଫଳ ସ୍ୱରୂପ ଆଜି ଭାରତବର୍ଷ ବିଶ୍ୱ ସୂଚନା ପ୍ରଯୁକ୍ତି ବିଦ୍ୟା ପ୍ଲାଟଫର୍ମରେ ଉପଯୁକ୍ତ ଆସନରେ ଅଧିଷ୍ଠିତ ହୋଇ ପାରିଛି । ଭାରତବର୍ଷକୁ ବହୁଳ ଭାବେ ହାତୀମାନେ ବସବାସ କରୁଥିବା ଏକ ପଛୁଆ ରାଷ୍ଟ୍ରର ମାନ୍ୟତାରୁ ମୁକୁଳାଇ ଦକ୍ଷ ଇଞ୍ଜିନିୟରମାନଙ୍କ ଏକ ଉତ୍କୃଷ୍ଟତମ ରାଷ୍ଟ୍ର ବୋଲି ସାବ୍ୟସ୍ତ କରାଯାଇ ପାରିଛି ।

ସେଦିନର ସେହି ବଳିଷ୍ଠ ପଦକ୍ଷେପ ଆଜି ଇନଫୋସିସ୍ ଟେକ୍ନୋଲୋଜିର ଆଖ୍ୟା ବହନ କରିଛି, ଯାହାକି ବିଶ୍ୱ ଜ୍ଞାନ ସାମ୍ରାଜ୍ୟର ରାଜପଥରେ ଭାରତର ଜୟଯାତ୍ରାକୁ ପଦେ ପଦେ ନିର୍ଘୋଷିତ କରୁଛି ଏବଂ ଜ୍ଞାନର ମଶାଲ ଧରି ସୂଚନା ବଡ଼ ଦାଣ୍ଡରେ ବୀର ଦର୍ପରେ ଅଗ୍ରସର ହେଉଛି । ଭାରତବର୍ଷରେ ସୂଚନା ପ୍ରଯୁକ୍ତି ବିଦ୍ୟା ଶିଳ୍ପର ଅୟମାରମ୍ଭ ପାଇଁ ଟାଟା କନ୍‌ସଲ୍‌ଟ୍ୟାନ୍ସି ସର୍ଭିସେସ୍ ସମସ୍ତ ଗୌରବର ହକଦାର ପରନ୍ତୁ ପ୍ରକୃତରେ ଏହି ଶିଳ୍ପକୁ ଏକ ବିଶ୍ୱସ୍ତରୀୟ ଶିଳ୍ପରେ ରୂପାନ୍ତରିତ କରିବାର ଗୌରବ ନିଶ୍ଚିତ ରୂପେ ଇନ୍‌ଫୋସିସ୍ ଲାଭ କରିବ । କେବଳ ମାତ୍ର ଦୁଇଟି ଦଶକ ମଧ୍ୟରେ ଏବଂ ସରକାରଙ୍କର କୌଣସି ଛତ୍ରଛାୟା ଲାଭ ନ କରି ଏହି ଶିଳ୍ପ ଭାରତର ରପ୍ତାନି ପରିମାଣର ୧୬ ଭାଗର ଅଧିକାରୀ ହୋଇପାରିଛି ଏବଂ ଏହି ଶିଳ୍ପରେ ଏବେ ୫ଲକ୍ଷ ଲୋକ ନିୟୋଜିତ ଅଛନ୍ତି । ନ୍ୟାସନାଲ୍ ଆସୋସିଏସନ ଅଫ୍ ସଫ୍ଟୱେୟାର ଯାଣ୍ଡ ସର୍ଭିସ କମ୍ପାନୀଜ୍ (ନ୍ୟାସକମ୍) ମତ ପ୍ରକାଶ କରିଛି ଯେ ୨୦୦୮ ମସିହା ସୁଦ୍ଧା ଭାରତୀୟ ସଫ୍ଟୱେୟାର ଶିଳ୍ପ ୭୭ ବିଲିୟନ ଡଲାର ରାଜସ୍ୱ

ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଦେଶର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡି.ପି)କୁ ୭ ପ୍ରତିଶତ ଅବଦାନ କରିବ । ଏହି ବ୍ୟବସାୟର ରୂପରେଖ ଏପରି ଯେ ପ୍ରଥମ ଥର ପାଇଁ ଏହା ଦେଶରେ ଏକ ସ୍ୱତନ୍ତ୍ର ଶିଳ୍ପୋଦ୍ୟୋଗୀ ଶ୍ରେଣୀ ଗଢ଼ି ତୋଳିବାରେ ଯଥେଷ୍ଟ ସହାୟକ ହେଲା । ଈଶ୍ୱର ପ୍ରଦତ୍ତ ମସ୍ତିଷ୍କର ଜ୍ଞାନ ପୁଞ୍ଜିକୁ ଆଧାର କରି ଶ୍ରୀ ଶିବ ନାଦର ଯେ କି ତାଙ୍କ କମ୍ପାନୀ ହିନ୍ଦୁସ୍ଥାନ କମ୍ପ୍ୟୁଟର ଲିମିଟେଡ଼ (ଏଚ୍.ସି.ଏଲ) କୁ ତାଙ୍କ ଘରର ଏକ ଗ୍ୟାରେଜରୁ ଆରମ୍ଭ କରିଥିଲେ ଏବଂ ଅଜୀମ୍ ପ୍ରେମ୍‌ଜୀ ଯେ କି ତାଙ୍କ ପାରିବାରିକ ରୋଷେଇ ତେଲର ବ୍ୟବସାୟକୁ ଭିତ୍ତିକରି ନିଜ ଜୀବନର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ, ଆଜି ଏ ଶିଳ୍ପର ଅଦ୍ୱିତୀୟ ସମ୍ରାଟ ଭାବେ ଅଧିଷ୍ଠିତ । ସେମାନେ ନିଜ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ମହାନ ଧନାଢ଼୍ୟ ବ୍ୟକ୍ତିଭାବେ ଦେଶ ଓ ଦଶରେ ପରିଗଣିତ ହେଲେ । ଲକ୍ଷ୍ମୀ ଓ ସରସ୍ୱତୀଙ୍କ ଅପୂର୍ବ ମିଳନ ସେମାନଙ୍କ ଜୀବନରେ ସଙ୍ଗଠିତ ହେଲା ।

ସଫ୍ଟୱେୟାର ଶିଳ୍ପ ୨୦୦୮ ମସିହାର ଠିକ୍ ପୂର୍ବ ଓ ପରବର୍ତ୍ତୀ ସମୟରେ ଅସାଧାରଣ ସଫଳତା ଲାଭ କରିଥିଲା । ପରନ୍ତୁ ଯେତେବେଳେ ଆମେରିକାରେ ଏହି ଟେକ୍ନୋଲୋଜି ବବ୍ଲ ବା ପ୍ରଯୁକ୍ତି ବିଦ୍ୟାର ପାଣି ଫୋଟକା 'ଠୋ' କରି ଫାଟିଗଲା, ସେତେବେଳେ ଏହି ଶିଳ୍ପକୁ ଏକ ବିରାଟ ଧକ୍କା ଲାଗିଲା ଏବଂ ଅଭିବୃଦ୍ଧିର ଚଲାପଥରେ ପ୍ରତିବନ୍ଧକ ସୃଷ୍ଟି ହେଲା । ତା'ପରେ ମୁଦ୍ରାସ୍ଫିତିର ସମୟ ଚାଲି ଆସିଲା ଯାହାକି ଗରାଖ ଈଶ୍ୱର ମାନଙ୍କୁ ସଫ୍ଟୱେୟାରର ମୂଲ୍ୟ ନେଇ ଅଧିକରୁ ଅଧିକ ସଚେ୍ତନ କରାଇଲା । 'ଫୋରେଷ୍ଟର ରିସର୍ଚ୍ଚ' ପ୍ରତିଷ୍ଠାନ ହିସାବ କରି ଦେଖିଛି ଯେ ୨୦୧୫ ମସିହା ସୁଦ୍ଧା ପ୍ରାୟ ୩.୩ ମିଲିୟନ ଆମେରିକାର ଚାକିରି ଆମେରିକା ବାହାରକୁ ଚାଲିଯିବ । ପରନ୍ତୁ ନିୟୁଜର୍ସି ରାଜ୍ୟ ସରକାରୀ କଣ୍ଟ୍ରାକ୍ଟ ଗୁଡ଼ିକୁ ଦେଶ ବାହାରକୁ ଚାଲି ନ ଯିବା ପାଇଁ 'ବ୍ୟାନ୍ ଅର୍ଡ଼ର' କରିବା ଫଳରେ ପରିସ୍ଥିତି ଟିକେ ଅଲଗା ମୋଡ଼ ନେଲା ।

ଅପର ପକ୍ଷରେ ନୂତନ ପ୍ରତିଦ୍ୱନ୍ଦୀମାନେ ମଧ୍ୟ ମୁଣ୍ଡଟେକି ଠିଆ ହେଉଛନ୍ତି । ଏଣେ ଚୀନ ଦିନରାତି ଏକାକାର କରି ନିଜର ସଫ୍ଟୱେୟାର ଦକ୍ଷତାକୁ ବୃଦ୍ଧି କରିବାରେ ଲାଗି ପଡ଼ିଛି । ବେଶୀ ଲାଭ ନ ରଖି କମ୍ପାନୀମାନେ ଭ୍ୟାଲୁ ଚେନ୍‌ରେ ଧୀରେ ଧୀରେ ଉପରକୁ ଉଠିବା ପାଇଁ ପ୍ରୟାସ କରୁଛନ୍ତି । ବଡ଼ି ସପିଂରୁ ସଫ୍ଟୱେୟାର ସର୍ଭିସେସ୍ ଏବଂ କଷ୍ଟୋମାଇଜଡ଼୍ ସଲ୍ୟୁସନରୁ ଆଇ.ଟି ଏନେବୁଲ୍‌ଡ଼ ସର୍ଭିସେସ୍

ପର୍ଯ୍ୟନ୍ତ ଆମର ଟେକ୍ନୋଲୋଜି ଟାଇଟାନ୍‌ମାନେ ସଦାସର୍ବଦା ସତର୍କ ଅଛନ୍ତି ନୂତନ ସୁଯୋଗ ଯେପରି ହାତଛଡ଼ା ନ ହୁଏ ଏବଂ ନିସନ୍ଦେହରେ ଆମର ଏହି ଟାଇଟାନ୍‌ମାନେ ଏହି ଜ୍ଞାନ କ୍ରୀଡ଼ାରେ ଅତ୍ୟନ୍ତ ପଟୁ, ଦକ୍ଷ ଓ ଧୁରନ୍ଧର ଅଟନ୍ତି ।' ସ୍ୱୀକାରୋକ୍ତି ବା ଧର୍ମଗତ ମାଧ୍ୟମରେ ନିଜର ଅନ୍ତର୍ନିହିତ ଭାବନାରେ ପରିପ୍ରକାଶ କରି ଇନ୍‌ଫୋ-ଟେକ୍ ଜାର (Info-Tech Zar) ଅଜୀମ ପ୍ରେମଜୀ କୁହନ୍ତି ଯେ ନୂତନ ଅର୍ଥନୀତିରେ କ'ଣ ବା 'ନୂତନତ୍ୱ' ଅଛି କିମ୍ବା ପୁରାତନ ଅର୍ଥନୀତିରେ କ'ଣ ବା 'ପୁରାତନତ୍ୱ' ଅଛି, ତାହା ସେ ସମ୍ପୂର୍ଣ୍ଣ ରୂପେ ବୁଝି ପାରିନାହାନ୍ତି । ପୁରାତନ ଅର୍ଥନୀତି ଓ ନୂତନ ଅର୍ଥନୀତି ମଧ୍ୟରେ ଥିବା ସାମଞ୍ଜସ୍ୟ ଓ ପାର୍ଥକ୍ୟର ଏକ ତୁଳନାତ୍ମକ ଅଧ୍ୟୟନ କରିବା ଆଜି ଏକ ଫ୍ୟାସନ୍ ହୋଇଯାଇଛି । ସେ ପୁନଶ୍ଚ କୁହନ୍ତି ଯେ ପୁରାତନ ଅର୍ଥନୀତି ଓ ନୂତନ ଅର୍ଥନୀତି ସମ୍ପୂର୍ଣ୍ଣ ରୂପେ ଦୁଇଟି ଅଲଗା ଓ ସ୍ୱତନ୍ତ୍ର ବିଷୟ ବସ୍ତୁ ନୁହନ୍ତି ବରଂ ଏକ ପରିପ୍ରକାଶିତ ଅର୍ଥନୀତିର ବଳୟରେ ସେମାନେ କେବଳ ମାତ୍ର ଦୁଇଟି ବିନ୍ଦୁକୁ ପ୍ରତିନିଧିତ୍ୱ କରିଥାନ୍ତି । ପ୍ରାୟ ସମସ୍ତେ ଏବେ ଏକମତରେ ଉପନୀତ ହେଲେଣି ଯେ ଗତ ୧୫ ବର୍ଷ ମଧ୍ୟରେ ମୌଳିକ ଦୃଷ୍ଟିକୋଣରୁ ବିଶ୍ୱ ନାନାବିଧ ପରିବର୍ତ୍ତନର ଖଟା ମିଠା ସ୍ୱାଦ ଚାଖିଲାଣି, ଯଦିଓ ସେହି ପରିବର୍ତ୍ତନକୁ ସେମାନେ ନୂତନ ଅର୍ଥନୀତିର ସଂଜ୍ଞା ପ୍ରଦାନ କରନ୍ତୁ ବା ନା କରନ୍ତୁ । ନୂତନ ଅର୍ଥନୀତି ଗୁଣାତ୍ମକ ଓ ସଂଖ୍ୟାତ୍ମକ ଦୃଷ୍ଟିକୋଣରୁ ପରିବର୍ତ୍ତନର ଏକ ସେଟ୍ କହିଲେ ଚଳେ ଯାହାକି ଅର୍ଥନୀତିର ଗଠନ ଶୈଳୀ, କାର୍ଯ୍ୟକାରିତା ଏବଂ ନୀତି ନିୟମରେ ପରିବର୍ତ୍ତନ ଆଣି ପାରିଛି । ନୂତନ ଅର୍ଥନୀତି ସମ୍ପୂର୍ଣ୍ଣ ରୂପେ ଜ୍ଞାନ ଓ ଚିନ୍ତାଧାରା ଭିତ୍ତିକ ଅର୍ଥନୀତି ଅଟେ, ଯେଉଁଠିକି ନୂଆ ନୂଆ ଚାକିରି ସୃଷ୍ଟିର ଚାକିକାଠି ଏବଂ ଉଚ୍ଚମାନର ଜୀବନ ଧାରଣର ମନ୍ତ୍ର ସୃଜନାତ୍ମକ ଚିନ୍ତାଧାରା ଏବଂ ପ୍ରଯୁକ୍ତି ବିଦ୍ୟା ଉପରେ ସମ୍ପୂର୍ଣ୍ଣରୂପେ ନିର୍ଭରଶୀଳ କହିଲେ ଅତ୍ୟୁକ୍ତି ହେବନାହିଁ ଯାହାକି ସେବା କ୍ଷେତ୍ର ଓ ଉତ୍ପାଦିତ ସାମଗ୍ରୀ ଗୁଡ଼ିକ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ନୂତନ ଅର୍ଥନୀତି ହେଉଛି ସେହି ଅର୍ଥନୀତି ଯେଉଁଠିକି ରିକ୍ସ, ଅନିଶ୍ଚିତତା ଓ ଅହରହ ପରିବର୍ତ୍ତନ ବ୍ୟତିକ୍ରମ ନ ହୋଇ ବରଂ ଏକ ନିୟମ ଭଳି ବ୍ୟବହାର ଦେଖାଇ ଥାଆନ୍ତି ।

ଏଭଳି ସମସ୍ତ ପ୍ରଯୁକ୍ତି ବିଦ୍ୟା ଭିତ୍ତିକ ପ୍ରଚଣ୍ଡ ଅଭିବୃଦ୍ଧି ସତ୍ତ୍ୱେ ମଧ୍ୟ ସମଗ୍ର ବିଶ୍ୱର ବ୍ୟବସାୟ ବଜାର ଉଣା ଅଧିକେ ଶିକ୍ଷା ଲାଭ କଲା ଯେ ଆର୍ଥିକ ଦୃଷ୍ଟିକୋଣରୁ ସୁଲଭ ମୂଲ୍ୟରେ ଉପଲବ୍ଧ ହେଉଥିବା ସାମଗ୍ରୀ ଗୁଡ଼ିକର ଚାହିଦା ଓ ଯୋଗାଣକୁ

ନେଇ ମୌଳିକ ଆର୍ଥିକ ନୀତି ନିୟମରେ କୌଣସି ପରିବର୍ତ୍ତନ ହେବ ନାହିଁ । ଯେଭଳି ମାଧ୍ୟାକର୍ଷଣ ଶକ୍ତିର ନିୟମ ଓ ଚାହିଦା ଓ ଯୋଗାଣର ମୌଳିକ ନିୟମ କାଳକାଳରୁ ରହି ଆସିଛି ଠିକ୍ ସେହିପରି ଅର୍ଥନୀତିରେ ଏଭଳି ସାଇକ୍ଲିକାଲ୍ ଉତ୍‌ଥାନ ପତନ ରହିବ ହିଁ ରହିବ । ପ୍ରେମଜୀ କୁହନ୍ତି ଯେ - ମୁଁ ଯେତେବେଳେ ଆଖି ଖୋଲି ସୁଦୂର ଭବିଷ୍ୟତକୁ ତରାଟି କରି ଚାହେଁ ସେତେବେଳେ ମୁଁ କେତେକ ନିଶ୍ଚିତ ପରିବର୍ତ୍ତନକୁ ଦେଖିପାରେ ତଥା ଏହି ପରିବର୍ତ୍ତନକୁ ଟାଣି ଟାଣି ନେଉଥିବା ଶକ୍ତିକୁ ମଧ୍ୟ ହୃଦୟଙ୍ଗମ କରିପାରେ । ଏଗୁଡ଼ିକୁ ନିୟୁ ଇକୋନୋମିକ୍ ଡ୍ରାଇଭର ବା ଅର୍ଥନୀତିର ନୂତନ ଚାଳକ ବୋଲି ବିବେଚନା କରାଯାଇପାରେ ।

ପରିବର୍ତ୍ତନଶୀଳ ସମୟର ଦୂର ଦିଗ୍‌ବଳୟରେ ଅର୍ଥନୀତିର ତିନି ପ୍ରକାରର ଚାଳକ ପ୍ରାୟ ପରିଦୃଷ୍ଟ ହୋଇଥାଆନ୍ତି ଏବଂ ପ୍ରେମଜୀ ଅନୁଭବ କରନ୍ତି ଯେ ଏହି ଚାଳକମାନେ ଭବିଷ୍ୟତର ଅର୍ଥନୀତି ଓ ବ୍ୟବସାୟକୁ ସମ୍ପୂର୍ଣ୍ଣ ରୂପେ ନିଜର ନିୟନ୍ତ୍ରଣରେ ରଖିବାକୁ ସକ୍ଷମ ହେବେ । ଅର୍ଥନୀତିର ପ୍ରଥମ ଚାଳକକୁ ସ୍ୱଳ୍ପ ମିଆଦି (ସର୍ଟ ଟର୍ମ) ଚାଳକର ଆଖ୍ୟା ଦିଆଯାଇପାରେ । ଏଗୁଡ଼ିକ ମୁଖ୍ୟତଃ ବିଭିନ୍ନ ବଜାରରେ ଥିବା ଚଢ଼ା ଉଠା ଦରରୁ ଲାଭ ଉଠାଇ ଷ୍ଟକ୍‌ର ବିକାକିଣା ଜନିତ ବିଭିନ୍ନ ସୁବିଧା ସୁଯୋଗକୁ ବୁଝାଇଥାଏ ଯାହାକି ଦେଶ ଦେଶ ବା ଅଞ୍ଚଳ ଅଞ୍ଚଳ ମଧ୍ୟରେ ଥିବା ଅର୍ଥନୈତିକ ସମ୍ପର୍କ ମଧ୍ୟରେ ଚଳ ପ୍ରଚଳ କରିଥାଏ । ଭାରତୀୟ ସଫ୍ଟୱେୟାର ଶିଳ୍ପର ଅଭିବୃଦ୍ଧି ଜନିତ ଅଭିଜ୍ଞତାକୁ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇପାରେ ।

ଆମେରିକା ଓ ଭାରତର ସଫ୍ଟୱେୟାର ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଥିବା ଶ୍ରମ ମୂଲ୍ୟରେ ପାର୍ଥକ୍ୟ ଏକ ବିରାଟ ସୁଯୋଗର ଦ୍ୱାର ଉନ୍ମୁକ୍ତ କରିଥିଲା, ଯାହା ଉପରେ ଭାରତୀୟ ସଫ୍ଟୱେୟାର ଶିଳ୍ପର ପ୍ରାଥମିକ ଆଧାର ଶିଳା ସ୍ଥାପନା କରାଯାଇଥିଲା । ବି.ପି. ଓ ଶିଳ୍ପରେ ଠିକ୍ ସେହିପରି ଏକ ସୁଯୋଗ ଆଜି ଆସି ଆମ ହାତ ପାହାନ୍ତାରେ ପହଞ୍ଚିଛି । ଶ୍ରମ ମୂଲ୍ୟରେ ପାର୍ଥକ୍ୟ ଆର୍ବିଟ୍ରେଜ ସୁଯୋଗର କେବଳ ଗୋଟିଏ ମାତ୍ର ଉଦାହରଣ ବୋଲି ଦର୍ଶାଯାଇପାରେ । ଆଜିର ଏହି ସଂଯୋଜିତ ବିଶ୍ୱ ପୃଷ୍ଠଭୂମିରେ ରାଷ୍ଟ୍ରୀୟ ଅର୍ଥନୀତିର ସୀମା ସରହଦ ଟପି ଆମକୁ ଅନ୍ୟାନ୍ୟ ରାଷ୍ଟ୍ର ମାନଙ୍କ ସହ ଅର୍ଥନୈତିକ, ଶିଳ୍ପ ବିକାଶ ଓ ପରିସୀମାର ବନ୍ଧନକୁ ସୁଦୃଢ଼ କରିବାକୁ ପଡ଼ିବ ଯଦ୍ୱାରା ଦରଦାମ ଓ ମୂଲ୍ୟରେ ଥିବା ନାନା ରକମର ପାର୍ଥକ୍ୟ ମଧ୍ୟରେ ଉଚିତ ସମନ୍ୱୟତା ବଜାଇ ରଖାଯାଇ ପାରିବ । ରାଷ୍ଟ୍ରୀୟ

ପରିସୀମା ଭିତରେ ମଧ୍ୟ ଦରଦାମ ଓ ମୂଲ୍ୟରେ ଥିବା ପାର୍ଥକ୍ୟ ପରିଦୃଷ୍ଟ ହୋଇଥାଏ । ଯଥା-ପୁଞ୍ଜିରେ ଅଭିବୃଦ୍ଧି ପାଇଁ ଆବଶ୍ୟକ ପଡୁଥିବା ଉଦ୍‌ବୃତ୍ତ ଅର୍ଥରାଶି, ବିଭିନ୍ନ ଟିକସ ବ୍ୟବସ୍ଥା ଏବଂ ବିଧି ବିଧାନ ଜନିତ କ୍ରିୟା କଳାପ ଇତ୍ୟାଦି । ସ୍ୱଳ୍ପମିଆଦି ଚାଳକମାନଙ୍କ ଠାରୁ ହଠାତ୍ ବ୍ୟବସାୟୀକ ସୁବିଧା ସୁଯୋଗ ହାତ ପାହାନ୍ତାକୁ ଆସିଥାଏ । ଶିଳ୍ପୋଦ୍ୟୋଗୀ ଓ ମ୍ୟାନେଜରମାନେ ଯେଉଁମାନେ କି ଏଭଳି ଉତ୍ତମ ସୁଯୋଗର ସଦୁପୋଯୋଗ କରିଥାନ୍ତି, ସେମାନେ ପ୍ରାୟ ସଫଳତାର ମିଠା ସ୍ୱାଦ ଚାଖିଥାନ୍ତି ।

ମଧ୍ୟମ ମିଆଦି ପରିଯୋଜନା ପରିପ୍ରେକ୍ଷୀରେ ଏକ ଭୌଗୋଳିକ ଓ ରାଜନୈତିକ ଦୃଶ୍ୟପଟ ମଧ୍ୟରେ ପ୍ରଯୁକ୍ତି ବିଦ୍ୟା ଜନିତ ସମ୍ଭାବନା ଓ ପରିବର୍ତ୍ତନ ପ୍ରମୁଖ ଅର୍ଥନୈତିକ ଚାଳକ ଭାବେ ବିବେଚ୍ଚିତ ହୋଇଥାଏ । ଷ୍ଟ୍ରାଟେଜିକ୍ ପ୍ଲାନିଂ ପାଇଁ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ । ସ୍ୱଳ୍ପ ମିଆଦି ଚାଳକମାନଙ୍କ ପରି ଲାଭପ୍ରଦ ହେବା ପାଇଁ ଏହା ତତ୍‌କ୍ଷଣାତ୍ ସୁଯୋଗକୁ ହାତ ପାହାନ୍ତାକୁ ଆଣି ଦେଇ ନ ଥାଏ ଏବଂ ଯଥେଷ୍ଟ କିଛି ଶ୍ରମଦାନ ଓ ଝାଳବୁହାର ଆବଶ୍ୟକତା ପଡ଼ିଥାଏ । ଲମ୍ବାଦୌଡ଼ର ଅବଶେଷରେ ଆପଣ ଦେଖିବେ ଯେ ଆପଣ ଯାହାକିଛି ବି ହରେଇ ଯାହାକିଛି ବି ପାଇଛନ୍ତି ତାହା ଯଥାର୍ଥ ଅଟେ । ପ୍ରକୃତରେ ସମସ୍ତ ଲିପ୍‌ଫ୍ରଗ୍ ବା ଲମ୍ଫାଡିଆଁ ଅର୍ଥନୈତିକ ଲାଭ ଏହି ଚାଳକମାନଙ୍କ ଠାରୁ ହିଁ ଆସିଥାଏ । ପ୍ରତ୍ୟେକ ବିଶାଳକାୟ ବିଶ୍ୱସ୍ତରୀୟ କମ୍ପାନୀ ଏହି ଅର୍ଥନୈତିକ ଲାଭକୁ ପୁଞ୍ଜି କରି ଗଢ଼ା ଯାଇଥିଲା । ଆପଣ ଯଦି ସେଗୁଡ଼ିକୁ ଠିକ୍ ଠିକ୍ ବୁଝି ପାରିବେ, ତେବେ ଏହି ଜ୍ଞାନ ଖେଳର ନୀତି ନିୟମକୁ ମଧ୍ୟ ସଠିକ୍ ବୁଝିପାରିବେ ।

ପ୍ରଯୁକ୍ତିବିଦ୍ୟା ଓ ରାଜନୈତିକ ଶକ୍ତି ଗୁଡ଼ିକ ଅତ୍ୟନ୍ତ ଗୁରତ୍ୱପୂର୍ଣ୍ଣ ଅର୍ଥନୈତିକ ଚାଳକ ଅଟନ୍ତି । ସେମାନେ ପରିବର୍ତ୍ତନର ଧାରାକୁ କେବଳ ସ୍ଥିରୀକୃତ କରନ୍ତି ନାହିଁ ବରଂ ଭବିଷ୍ୟତ ଘଟଣା ପ୍ରବାହର ଦିଗ ଓ ଗତିକୁ ମଧ୍ୟ ଉପଯୁକ୍ତ ମୋଡ଼ ଦେବାରେ ସକ୍ଷମ ହୋଇଥାଆନ୍ତି ।

ଶେଷ ସେଟ୍‌ଟି ଦୀର୍ଘସୂତ୍ରୀ ଚାଳକମାନଙ୍କୁ ନେଇ ଯାହାର ପ୍ରଭାବ ଦୈନନ୍ଦିନ ବ୍ୟବସାୟରେ ହୁଏତ ଅନୁଭୁତ ହୋଇ ନ ପାରେ, ପରନ୍ତୁ ମଣିଷ ଜୀବନର ପ୍ରତ୍ୟେକ ଗତି ପ୍ରଗତି ସହ ଏହା ଓତପ୍ରୋତ ଭାବେ ଜଡ଼ିତ । ସମାଜର ସହଯୋଗୀ କାର୍ଯ୍ୟକଳାପ ଏହା ଆଶା କରିଥାଏ । ଏହି ଚାଳକମାନେ ଜଗତୀକରଣର ରୂପରେଖ

ସଦୃଶ ଥିବା ଦୀର୍ଘସ୍ଥାୟୀ ପରିବେଶର ବନ୍ଧୁ ସଦୃଶ ବ୍ୟବହାର ଦେଖାଇ ଥାଆନ୍ତି । ଉଦାହରଣ ସ୍ୱରୂପ ବିକଶିତ ରାଷ୍ଟ୍ରମାନଙ୍କରେ ଜନସଂଖ୍ୟା ବୃଦ୍ଧିର ସାଂପ୍ରତିକ ଧାରାକୁ ବିଚାରକୁ ନିଆଯାଉ । ମାନବ ସଭ୍ୟତାର ସମ୍ପୂର୍ଣ୍ଣ ଇତିହାସରେ ଆମେ ଏ ପର୍ଯ୍ୟନ୍ତ ଏପରି ଏକ ବିଶ୍ୱର ସାମନାସାମନି ହୋଇନାହୁଁ ଯେଉଁଠିକି ବୃଦ୍ଧ ଲୋକମାନଙ୍କର ସଂଖ୍ୟା ଯୁବକମାନଙ୍କ ସଂଖ୍ୟା ଠାରୁ ଅଧିକ ।

ଶେଷରେ ପ୍ରେମଜୀ କୁହନ୍ତି ଯେ ମୁଁ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିପାରୁଛି ଯେ ଭବିଷ୍ୟତ ଆମ ଆଗରେ ବହୁ ଆଶ୍ଚର୍ଯ୍ୟ ଜନକ ଘଟଣା ପ୍ରବାହ ଆଣି ପରିବେଷଣ କରିବ । ଏହା ଆମ ଉପରେ ସମ୍ପୂର୍ଣ୍ଣରୂପେ ନିର୍ଭର କରୁଛି ଯେ ଆମେ ଆମର ମୁକ୍ତ ଇଚ୍ଛା ଓ ପ୍ରବଳତମ ଜିଜ୍ଞାସାର ବ୍ୟବହାର କରି ଏକ ନବୀନତମ ଭବିଷ୍ୟତର ସ୍ୱପ୍ନ ଦେଖିବା ସଙ୍ଗେ ସଙ୍ଗେ ଏହି ସ୍ୱପ୍ନକୁ କିପରି ଫଳବତୀ କରିପାରିବା ସେଥିପାଇଁ ଯତ୍ପରୋନାସ୍ତି ଚେଷ୍ଟିତ ହେବା ଉଚିତ । ମାନବ ସଭ୍ୟତାର ଇତିହାସରେ ଏହା ହିଁ ପ୍ରଗତିର ସର୍ବଶ୍ରେଷ୍ଠ ଚାଳକ ଭାବେ ପରିଗଣିତ ହେବ । ଅର୍ଥନୀତିର ଯେଉଁ ସ୍ତରରେ ବି ଆମେ ରହୁ ନା କାହିଁକି, ଇତିହାସର ସ୍ୱର୍ଣ୍ଣାଦିତ୍ୟ ପୃଷ୍ଠାରେ ବର୍ଷ, ମାସ, ଦିନ, କାଳ, ଦଣ୍ଡର ପରିଧି ଡେଇଁ ଏହା କାଳ କାଳକୁ ଏକ ସଫଳ ଚାଳକ ଭାବେ ଦୃଶ୍ୟମାନ ହେବ ।

ଭାରତବର୍ଷ ପାଇଁ ଜ୍ଞାନାଶ୍ରୟୀ ଅର୍ଥନୀତିର ଏହି ନୂତନ ଚାଳକ ମାନେ ଆଜି ଏକ ଅପୂର୍ବ ସୁଯୋଗ, ସମ୍ଭାବନା, ସଫଳତା ଓ ଅଭିବୃଦ୍ଧିର ସିଂହଦ୍ୱାର ଉନ୍ମୋଚନ କରିଛନ୍ତି । ଏହି ଅପୂର୍ବ ସୁଯୋଗକୁ ଅଣ୍ଟିରେ ସାଉଁଟି ଆଣିବା ବା ନ ଆଣିବା ତାହା ଆମ ଉପରେ ସମ୍ପୂର୍ଣ୍ଣରୂପେ ନିର୍ଭର କରୁଛି । ଯଦି ଏହା ଆମେ ସାଉଁଟି ଆଣି ପାରିବା ତେବେ ଭାରତବର୍ଷ ଏକ ଅର୍ଥନୈତିକ ମହାଶକ୍ତିର ସମ୍ମାନାସ୍ପଦ ସଦସ୍ୟ ହୋଇ ବିଶ୍ୱ ପୃଷ୍ଠଭୂମିରେ ନିଜକୁ ଏକ ବିଶାଳକାୟ ଦୈତ୍ୟ ଭାବେ ସାବ୍ୟସ୍ତ କରି ପାରିବ, ନଚେତ୍ ଏକ କ୍ଷୁଦ୍ର ବାମନ ହୋଇ ସମୟର କଷାଘାତରେ ଲହୁ ଲୁହାଣ ହୋଇ ବଞ୍ଚିରହିବାକୁ ବାଧ ହେବ । ଏଥିକୁ ବିଚାର ଓ କର୍ମ ଯୋଜନା ଆପଣଙ୍କ ହାତରେ ।

ସମାଜ

ତା- ୯.୬.୨୦୦୩



# ରାଷ୍ଟ୍ରୀୟ ନବନିର୍ମାଣର ମହାଯଜ୍ଞରେ ପ୍ରବାସୀ ଭାରତୀୟମାନେ ପୂର୍ଣ୍ଣାହୁତି ଦେବେ

**ଜା**ନୁୟାରୀ ୯ ରୁ ୧୧ ତାରିଖ ମଧ୍ୟରେ ନୂଆଦିଲ୍ଲୀରେ ଅନୁଷ୍ଠିତ ହୋଇଯାଇଥିବା ପ୍ରବାସୀ ଭାରତୀୟ ସମ୍ମିଳନୀ ଆମକୁ 'ପାରାବୁଲ ଅଫ୍ ଦି ପ୍ରୋଡ଼ିଗାଲ ସନ୍' ବା ଅପବ୍ୟୟୀ ପୁତ୍ରର ଅନନ୍ୟ ଜୀବନଗାଥା ସମ୍ବନ୍ଧୀୟ ପିଲାଦିନର ଅତି ଶିକ୍ଷଣୀୟ ବାଇବେଲର ମଜା ଗପଟିକୁ ମନେ ପକେଇ ଦେଇଥାଏ । ନୂଆଦିଲ୍ଲୀ ଓ କେରଳର କୋଚ଼ିଠାରେ ପାଳନ କରାଯାଇଥିବା ପ୍ରବାସୀ ଭାରତୀୟ ଦିବସ ଓ ବିଶ୍ୱ ପୁଞ୍ଜି ଲଗାଣ ସମ୍ମିଳନୀରେ ଆମର ଏହି ଅମୀତବ୍ୟୟୀ ପୁଅମାନଙ୍କୁ ଅତ୍ୟନ୍ତ ଉଚ୍ଚ ସ୍ତରରେ ଅତ୍ୟନ୍ତ ମନୋମୁଗ୍ଧକର ତଥା ଆକର୍ଷଣୀୟ ଆଦର ଅଭ୍ୟର୍ଥନା ପ୍ରଦାନ କରାଯାଇଥିଲା । ପ୍ରକୃତରେ ସେଇମାନେ ହିଁ ସମସ୍ତ ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲେ । ପ୍ରଧାନମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ସମସ୍ତ ମାନ୍ୟଗଣ୍ୟ ବ୍ୟକ୍ତିବିଶେଷମାନେ ପ୍ରବାସୀ ଭାରତୀୟମାନଙ୍କୁ ହୃଦୟଭରା ଆଶ୍ୱାସନା ପ୍ରଦାନକରି କହିଲେ ଯେ ସେମାନେ ଆଉ ଭାରତର ଅଲୋଡ଼ା ଅଖୋଜା ପୁଅ ହୋଇ ନାହାନ୍ତି, ବରଂ ନୂତନ ସଂସ୍କାର ପଥେ ଯାତ୍ରୀ ହୋଇଥିବା ନବଭାରତବର୍ଷର ନବନିର୍ମାଣରେ ସେମାନେ ଜଣେ ଜଣେ ଅକ୍ଷୟ ପୁଞ୍ଜି ତଥା ଅନିର୍ବାଣ ଦୀପଶିଖା ।

ଦିଲ୍ଲୀ ଅଧିବେଶନରେ ପ୍ରବାସୀ ଭାରତୀୟ ଓ ଭାରତୀୟ ବଂଶୋଦ୍ଭବମାନଙ୍କୁ ବହୁ ଆକାଂକ୍ଷିତ ଦ୍ୱୈତ ନାଗରିକତ୍ୱ ପ୍ରଦାନ କରାଯିବାକୁ ପୂର୍ଣ୍ଣ ଆଶ୍ୱାସନା ପ୍ରଦାନ କରାଯାଇଥିଲା, ଯଦିଓ କେବଳ ଭିସା ପ୍ରଣାଳୀର ସରଳୀକରଣ ବ୍ୟତିରେକ ଏହାର ଅର୍ଥକୁ ନେଇ କେତେକ ମତ ପାର୍ଥକ୍ୟ ଥିଲା । ଦ୍ୱୈତ ନାଗରିକତ୍ୱ ଲାଭ କରିଥିବା ବ୍ୟକ୍ତି ଜଣକ ବିଦେଶରେ ବିଭିନ୍ନ ଦୂତାବାସମାନଙ୍କ ବାରଣ୍ଡାରେ ଭିସା ପାଇବା ପାଇଁ ଆଉ ଘୂରି ବୁଲିବାର କୌଣସି ଆବଶ୍ୟକତା ରହିବ ନାହିଁ । ଭାରତୀୟ ଶିଳ୍ପ ମହାସଂଘ ଆନୁକୂଲ୍ୟରେ ଆୟୋଜିତ ହୋଇଥିବା ଏହି ଅଧିବେଶନରେ ବହୁ ଭାରତୀୟ ଶିଳ୍ପୋଦ୍ୟୋଗୀ ପ୍ରବାସୀ ଭାରତୀୟମାନଙ୍କ

ସହିତ ବ୍ୟବସାୟ ବାଣିଜ୍ୟ ସଂକ୍ରାନ୍ତରେ ବହୁ ବିଶଦ ଆଲୋଚନା କରିଥିଲେ, ଯାହାକି ଅତ୍ୟନ୍ତ ଫଳପ୍ରଦ ହୋଇଥିଲା ଏବଂ ଏହା ପରସ୍ପରର ଅଭିଜ୍ଞତା ବଣ୍ଟନ କରିବାରେ ମଧ୍ୟ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଭାରତୀୟ ବ୍ୟବସାୟୀଗୋଷ୍ଠୀ ପ୍ରବାସୀ ଭାରତୀୟମାନଙ୍କୁ ନିର୍ଭରବାଣୀ ପ୍ରଦାନ କରି କହିଥିଲେ ଯେ ଭାରତବର୍ଷରେ ପୁଞ୍ଜି ଲଗାଣ କରି ଶିଳ୍ପ ପ୍ରତିଷ୍ଠା କରିବା କ୍ଷେତ୍ରରେ ସେମାନେ ନିଜକୁ ଏକୁଟିଆ ମନେକରିବା ଉଚିତ ନୁହେଁ ଏବଂ ଏହି ବାଧା ଦୌଡ଼ରେ ସେମାନଙ୍କ ସହ ଭାରତୀୟ ବ୍ୟବସାୟୀ ଗୋଷ୍ଠୀ ମଧ୍ୟ ସାମିଲ ଅଛନ୍ତି । ଏହା ସେମାନେ ଭୁଲିଯିବା ଉଚିତ ନୁହେଁ ।

ଦିଲ୍ଲୀ ଅଧିବେଶନରେ କେତେକ ସ୍ୱନାମଧନ୍ୟ ପ୍ରବାସୀ ଭାରତୀୟ ତାଙ୍କର ଅଭିଭାଷଣରେ ଭାରତର ପ୍ରମୁଖ ନେତୃବୃନ୍ଦମାନଙ୍କୁ ରାଷ୍ଟ୍ରୀୟ ଶାସନ କାଳରେ ପାରଙ୍ଗମତା ଓ ସ୍ୱଚ୍ଛତାର ଅଭିବୃଦ୍ଧି ଉପରେ ସେମାନଙ୍କର ତୀକ୍ଷ୍ଣ ଦୃଷ୍ଟିକୋଣ ନିକ୍ଷେପ କରିଥିଲେ, ଯାହାକି ଅତ୍ୟନ୍ତ ଆନନ୍ଦ ସହକାରେ ଗ୍ରହଣୀୟ ହୋଇଥିଲା । କେରଳରେ ଅନୁଷ୍ଠିତ ହୋଇଥିବା ବିଶ୍ୱପୁଞ୍ଜିଲଗାଣ ସମ୍ମିଳନୀରେ ହୋଇଥିବା ବିଶଦ ଆଲୋଚ଼ନା ଅତ୍ୟନ୍ତ ଫଳପ୍ରଦ ଚିନ୍ତାଧାରାର ନବ ଉନ୍ମେଷ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଯୁକ୍ତ ଭାବଧାରାର ସଫଳ ବିନିମୟରେ ସହାୟକ ହୋଇଥିଲା । ଅଗଣିତ ପ୍ରବାସୀ ଭାରତୀୟ ସମ୍ମିଳନୀରେ ସେହି ଏକା ଧରଣର ମତାମତ ଓ ଚିନ୍ତାଧାରାର ମେନୁ ବା ବ୍ୟଞ୍ଜନ ପରିବେଷଣ କରାଯାଉଥିଲେ ମଧ୍ୟ ଭାରତ ଡେରିରେ ହେଲେ ବି ତା'ର ଗୁରୁତ୍ୱ ଯେ ଉପଲବ୍ଧି କରିବା ଆରମ୍ଭ କରିଛି, ତାହା ନିଶ୍ଚିତ ରୂପେ ସ୍ୱାଗତଯୋଗ୍ୟ ପଦକ୍ଷେପ ।

ଗୋଟିଏ ଦୃଷ୍ଟିକୋଣରୁ ଦେଖିଲେ ପ୍ରବାସୀ ଭାରତୀୟମାନେ ଭାରତବର୍ଷର ଅମୂଲ୍ୟ ବୌଦ୍ଧିକ ସମ୍ପତ୍ତି ଓ ଉଦ୍ୟୋଗବନ୍ଧୁ ଅଟନ୍ତି । ସେମାନେ ଯେଉଁ ରାଷ୍ଟ୍ରର ବି ବାସିନ୍ଦା ହୋଇଛନ୍ତି ସେ ରାଷ୍ଟ୍ରରେ ଉତ୍ତମ ଫଳ ପ୍ରଦର୍ଶନ କରିଛନ୍ତି । ଭାରତରେ ଥିଲେ ସେମାନେ ହୁଏତ ଏତେଟା ସଫଳକାମୀ ହୋଇପାରି ନଥାନ୍ତେ । ପ୍ରାୟ ୨୦ ନିୟୁତ ପ୍ରବାସୀ ଭାରତୀୟ ପୃଥିବୀର ବିଭିନ୍ନ ଦେଶରେ ନିଜର ଆସ୍ଥାନ ଜମେଇ ବସି ରହିଛନ୍ତି । ସେମାନେ ସେମାନଙ୍କର ବୃତ୍ତି ଓ ବ୍ୟବସାୟରେ ଏତେ ପରିମାଣରେ ସଫଳକାମୀ ହୋଇଛନ୍ତି ଯେ ତାଙ୍କ ପାଖରେ ଥିବା ସମୁଦାୟ ସମ୍ପତ୍ତିର ମୂଲ୍ୟ ଭାରତବର୍ଷର ବାର୍ଷିକ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନର ପରିମାଣ ୫୦୦ ବିଲିୟନ ଡଲାରର ପ୍ରାୟ ଏକ ତୃତୀୟାଂଶ ହେବ । ଆମେରିକାରେ ଥିବା ୧.୮ ମିଲିୟନ

ବଳିଷ୍ଠ ଭାରତୀୟ ଗୋଷ୍ଠୀ ଆମେରିକାର ଧନାଢ଼୍ୟ ବର୍ହି ଆଗତ ସଂପ୍ରଦାୟ ଭାବେ ସୁପରିଚିତ ।

ପୁନଶ୍ଚ ସିଲିକନ ଭ୍ୟାଲିର ମୋଟ ଜନସଂଖ୍ୟାର ୪୦ ପ୍ରତିଶତ କେବଳ ପ୍ରବାସୀ ଭାରତୀୟ ଅଟନ୍ତି । ବିଦେଶ ଭୂଇଁରେ ବସାବାନ୍ଧି ରହିଥିବା ପ୍ରବାସୀ ଭାରତୀୟଟି ସେହି ଦେଶରେ ତା'ର ଅନନ୍ୟ ପ୍ରତିଭା, ଔଦ୍ୟୋଗିକ କର୍ମକୁଶଳତା, ବୌଦ୍ଧିକ ଚରିତ୍ର ଓ ଅତୁଳନୀୟ ବିଦ୍‌ବତ୍ତାର ଉତ୍‌କୃଷ୍ଟତମ ପ୍ରଦର୍ଶନ କରି ନିଜ ପାଇଁ ଏକ ସ୍ୱତନ୍ତ୍ର ଆସନ ଅଧିକାର କରି ପାରୁଛି -ଏହା କମ୍ ବଡ଼ କଥା ନୁହେଁ । ତାହା ତା' ପାଇଁ ଯେତିକି ଗୌରବର କଥା ତା'ଠୁଁ ଅଧିକ ସେ ଯେଉଁ ଦେଶର ମାଟିରେ ପୋଷାପୁଅ ହୋଇଗଲା, ଯେଉଁ ଦେଶର ପାଣି ପବନକୁ ଆପଣେଇ ନେଲା ସେ ମାଟି ମଧ ତା' ପାଇଁ ସେତିକି ଗର୍ବିତ ହେଉଛି । ପ୍ରବାସୀ ଭାରତୟମାନେ ଆମେରିକାରେ ହେଉଥିବା ନିର୍ବାଚ଼ନୀ ପ୍ରକ୍ରିୟାରେ ଆର୍ଥିକ ସାହାଯ୍ୟ ପ୍ରଦାନଠୁଁ ଆରମ୍ଭ କରି ଏହା ମାଧ୍ୟମରେ ନିଜର ରାଜନୈତିକ ପ୍ରଭାବର ବିସ୍ତାର କରି ଆମେରିକୀୟ ଜନ ଜୀବନକୁ ତଦ୍ୱାରା ଆଚ୍ଛାଦିତ କରି ରଖିବାରେ ମଧ ସଫଳକାମୀ ହେଉଛନ୍ତି । ବ୍ରିଟେନ୍‌ରେ ପ୍ରବାସୀ ଭାରତୀୟମାନେ ଦିନକୁ ଦିନ କିଭଳି ନିଜର ଆଧିପତ୍ୟତା ବିସ୍ତାର କରି ଚାଲିଛନ୍ତି, ସେଠାରେ ଥିବା ପ୍ରବୀଣ ପ୍ରବାସୀ ଭାରତୀୟ ରାଜନୀତିଜ୍ଞଙ୍କ ସଂଖ୍ୟା ତାହା ସ୍ପଷ୍ଟ ରୂପେ ପ୍ରମାଣ କରି ଦେଉଛି ।

ଦିଲ୍ଲୀରେ ଅନୁଷ୍ଠିତ ହୋଇଯାଇଥିବା ପ୍ରବାସୀ ଭାରତୀୟ ସମ୍ମିଳନୀ ଏହାଠୁଁ ବଳି ଆଉ ଭଲ ସମୟରେ ହୋଇପାରି ନଥା'ନ୍ତା । ଭାରତବର୍ଷ ନୂତନ ପିଢ଼ିର ସଂସ୍କାର ବ୍ୟବସ୍ଥାର ପ୍ରାରମ୍ଭ ପର୍ଯ୍ୟାୟରେ ଏବେ ପାଦ ଥାପିଛି, ଯାହାକି ଆର୍ଥିକ ବ୍ୟାପାରରେ ବହୁବିଧ ନିୟମ ବର୍ହିଭୂତ ଓ କୋହଳ ବ୍ୟବସ୍ଥା ମଧ ଦେଇ ଗତି କରିବାର ପ୍ରଚଣ୍ଡ ଆଶ୍ୱାସନା ଦେଉଛି । ବୈଦେଶିକ ମୁଦ୍ରା ଜନିତ ନାନାଦି ପ୍ରତିବନ୍ଧକ ଦୂରୀକରଣ ପାଇଁ କୋହଳ ବ୍ୟବସ୍ଥାର ପ୍ରଣୟନ କରାଯାଇ ଥିବାରୁ ପ୍ରବାସୀ ଭାରତୀୟଙ୍କ ଜୀବନଚ଼ର୍ଯ୍ୟା ଅତ୍ୟନ୍ତ ସହଜସାଧ ହୋଇ ଯାଇଛି । ବ୍ରିଟେନ ଓ ଆମେରିକାରେ ବୈଦେଶିକ ମୁଦ୍ରାର ମାଗଣା ବିନିମୟ ପ୍ରକ୍ରିୟାରେ ପ୍ରବାସୀ ଭାରତୀୟମାନେ ଅଭ୍ୟସ୍ତ ହୋଇଯାଇ ଥିବାରୁ ସାଂପ୍ରତିକ ଭାରତୀୟ ବ୍ୟବସ୍ଥା ତାଙ୍କୁ ଅତ୍ୟନ୍ତ ସହଜସାଧ ଓ ବୋଧଗମ୍ୟ ଲାଗୁଛି । ଭାରତ ସରକାର ବଳିଷ୍ଠ ପଦକ୍ଷେପ ମାଧ୍ୟମରେ ପୁଞ୍ଜିର ମୁକ୍ତ ଗମନାଗମନ ପଥରେ ଥିବା ନାନାଦି ପ୍ରତିବନ୍ଧକକୁ ହଟେଇ ଦେଇ ପ୍ରବାସୀ ଭାରତୀୟମାନଙ୍କୁ ସ୍ୱାଗତ ସମ୍ଭାଷଣ ପୂର୍ବକ

ଭାରତମାଟିରେ ପର୍ଯ୍ୟାପ୍ତ ପୁଞ୍ଜି ଲଗାଣ ପାଇଁ ମୁକ୍ତ କଣ୍ଠରେ ଆହ୍ବାନ କରିବା ରାଷ୍ଟ୍ରପାଇଁ ଏକ ଅତ୍ୟନ୍ତ ଶୁଭ ଲକ୍ଷଣ ଅଟେ । ଭାରତର ପାଣି ପବନରେ ଏଠୁଟିରୁ ଏଠୁଟିଏ ହୋଇଥିବା ଭାରତ ମାଟିର ପୁଅ ବିଦେଶ ଭୂଇଁରେ ଅର୍ଜନ କରିଥିବା ପୁଞ୍ଜିକୁ ତା'ର ଦେଶମାତୃକାର ସେବାରେ ବିନିଯୋଗ କରିବ, ଏହାଠୁଁ ବଳି ବଡ଼ କଥା ଆଉ ବା କ'ଣ ଅଛି ? ସରକାରଙ୍କ ତରଫରୁ ସେମାନଙ୍କୁ ନିର୍ଭର ପ୍ରତିଶ୍ରୁତି ଦିଆଯାଉଛି ଯେ ସେମାନେ ଭାରତବର୍ଷକୁ ତାଙ୍କର ବୈଦେଶିକ ମୁଦ୍ରା ଖାଲି ଆଣିବେ ନାହିଁ ବରଂ ଭାରତବର୍ଷରୁ ବୈଦେଶିକ ମୁଦ୍ରା ନେଇ ତାଙ୍କ ପାଳିତ ରାଷ୍ଟ୍ରକୁ ମଧ୍ୟ ଯାଇ ପାରିବେ । ପୁଞ୍ଜିର ଏହି ମୁକ୍ତ ଗମନାଗମନ ପ୍ରକ୍ରିୟା ସିଙ୍ଗାପୁର କ୍ଷେତ୍ରରେ ଅତ୍ୟନ୍ତ ମିଠା ଫଳ ପ୍ରଦାନ କରିଥିଲା ଯେଉଁ ରାଷ୍ଟ୍ରକି ମୂଳରୁ ପୁଞ୍ଜିର ସ୍ୱାଧୀନ ଯାତାୟତ ଉପରେ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିଥିଲା । ଏହି ଦର୍ଶନକୁ ରାଷ୍ଟ୍ରର ସର୍ବଗୁଣ ସମ୍ପନ୍ନ ବିକାଶ ପଥର ମାର୍ଗ ଦର୍ଶକ ରୂପେ ଗ୍ରହଣ କରି ସିଙ୍ଗାପୁର ଆଜି ପ୍ରଗତି ପଥର ଅଗ୍ରଣୀ ଯାତ୍ରୀ ହୋଇପାରିଛି ।

ପ୍ରବାସୀ ଭାରତୀୟମାନଙ୍କ ସମ୍ମିଳନୀରେ ଭାରତର ଅତି ବିଶିଷ୍ଟ ବ୍ୟକ୍ତି ବିଶେଷମାନେ ପ୍ରାୟ ପ୍ରବାସୀ ଭାରତୀୟମାନଙ୍କୁ ଭେଟିଥାନ୍ତି ଓ ସେଠାରେ ସେମାନଙ୍କ ସଫଳ କାହାଣୀ ଶୁଣିବା ସଙ୍ଗେ ସଙ୍ଗେ ଭାରତ ପ୍ରତି ଥିବା ସେମାନଙ୍କର ଗ୍ଲାନି ଓ ବିଦ୍ୱେଷର କିଛିଟା ଝଲକ ମଧ୍ୟ ପାଇଥାନ୍ତି ଯାହାକି ଆଦୌ ନୂଆ କଥା ନୁହେଁ । ଗତ ଦୁଇ ତିନି ଦଶକ ହେଲା ଯେତେବେଳେ ଭାରତର ଅର୍ଥମନ୍ତ୍ରୀମାନେ ବିଦେଶ ଭ୍ରମଣରେ ଯାଇଥାନ୍ତି, ସେତେବେଳେ ସେମାନେ ପ୍ରାୟ ସେଠିକାର ପ୍ରବାସୀ ଭାରତୀୟମାନଙ୍କୁ ଡାକି ତାଙ୍କୁ ଅଭିବାଦନ ଜଣାଇଥାନ୍ତି । ଏହା ଏକ ପ୍ରଥାରେ ପ୍ରାୟ ପଡ଼ିଯାଇଛି । ସାଧାରଣତଃ ଅର୍ଥମନ୍ତ୍ରୀଙ୍କର ବିଦେଶ ମାଟିରେ ପ୍ରବାସୀ ଭାରତୀୟମାନଙ୍କୁ ଭେଟିବା ନିର୍ଦ୍ଦିଷ୍ଟ ଭାବେ ସେପରି କୌଣସି ସ୍ଥିରିକୃତ କାର୍ଯ୍ୟକ୍ରମ ଅନୁଯାୟୀ ହୋଇ ନ ଥାଏ । ଏହି ଭେଟ-ଘାଟ ପ୍ରାୟ କମନ ଓ୍ୱେଲ୍ଥ କନ୍‌ଫରଏନ୍ସ, ଇଣ୍ଟରନ୍ୟାସ୍‌ନାଲ୍ ବ୍ୟାଙ୍କ ଫର ରିକନ୍‌ଷ୍ଟ୍ରକସନ୍ ଅବା ଇଣ୍ଟରନ୍ୟାସ୍‌ନାଲ୍ ମନେଟାରୀ ଫଣ୍ଡ (ଆଇ.ଏମ୍.ଏଫ) ର ବାର୍ଷିକ ଅଧିବେଶନର ଆଳରେ ସମ୍ଭବପର ହୋଇପାରିଥାଏ । ବର୍ଷୀୟାନ ଚିନ୍ତାନାୟକ ଟି. କ୍ରିଷ୍ଣାମାଚାରୀଙ୍କ ଦ୍ୱାରା ଲଣ୍ଡନ, ନ୍ୟୁୟର୍କ ଓ ଟୋକିଓ ଆଦି ସହରରେ ସ୍ଥାପନା କରାଯାଇଥିବା ଇଣ୍ଡିଆନ୍ ଇନ୍‌ଭେଷ୍ଟମେଣ୍ଟ ସେଣ୍ଟର ପ୍ରବାସୀ ଭାରତୀୟମାନଙ୍କୁ ଭାରତବର୍ଷରେ ପୁଞ୍ଜି ବିନିଯୋଗ ପାଇଁ ସରଳ ସୁବିଧା ରାସ୍ତାଟିଏ ଖୋଲି ଦେଇଛି ।

ଭାରତୀୟ ରିଜର୍ଭ ବ୍ୟାଙ୍କର ପ୍ରାକ୍ତନ ଗଭର୍ଣ୍ଣର ଏସ୍.ଭେଙ୍କିଟାରମଣନ୍ ସ୍ମୃତିଚାରଣ କରି କୁହନ୍ତି ଯେ ୧୯୯୧-୯୨ ମସିହାରେ ଥାଇଲ୍ୟାଣ୍ଡର ରାଜଧାନୀ ବ୍ୟାଙ୍କକରେ ଅବସ୍ଥାପିତ ଭାରତର ରାଷ୍ଟ୍ରଦୂତଙ୍କ ବାସଭବନରେ ପ୍ରବାସୀ ଭାରତୀୟମାନଙ୍କର ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେହି ସମୟ ବେଳକୁ ଭାରତବର୍ଷ ମୁକ୍ତ ଅର୍ଥନୀତିର ସଡ଼କରେ ବାଟୋଇଟିଏ ହୋଇ ଚଳପ୍ରଚଳ କରିବାକୁ ପ୍ରାୟ ପାଦ ଥାପିଥାଏ । ଅଧିବେଶନରେ ଯୋଗଦେଇ ଥିବା ପ୍ରବାସୀ ଭାରତୀୟମାନେ ସେ ସମୟର ଅର୍ଥମନ୍ତ୍ରୀ ଡଃ ମନମୋହନ ସିଂହଙ୍କୁ କହୁଥାନ୍ତି ଯେ ଥାଇଲ୍ୟାଣ୍ଡରେ ବ୍ୟବସାୟ ଆରମ୍ଭ କରିବା କେଡ଼େ ସହଜସାଧ ତଥା ଆର୍ଥିକ ଦେଣ ନେଣ ବ୍ୟବସ୍ଥା ତଥା ପୁଞ୍ଜିର ଉପଲବ୍ଧତା ମଧ୍ୟ ତହୁଁବଳି ଆକର୍ଷଣୀୟ । ଆଲୋଚନା, ଯୁକ୍ତିତର୍କ ତଥା ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ପ୍ରତି ଥିବା ସେମାନଙ୍କର ଅଙ୍ଗୀକାରବଦ୍ଧତା ମନମୋହନ ସିଂହଙ୍କ ଉର୍ବର ମସ୍ତିଷ୍କକୁ ପ୍ରଚଣ୍ଡ ଭାବେ ପ୍ରଭାବିତ କରିଥିଲା । ଯଦିଓ ଅର୍ଥନୈତିକ ଜାତୀୟ ରାଜପଥରେ ଖୁବ୍ ଆଗକୁ ଖୁବ୍ ଶୀଘ୍ର ଚାଲିଯିବାର ଫଳ ପାଇଁ ଥାଇଲ୍ୟାଣ୍ଡକୁ ଯଥେଷ୍ଟ ମୂଲ୍ୟ ଦେବାକୁ ପଡୁଛି ।

ଠିକ ସେହିବର୍ଷ ସିଙ୍ଗାପୁରରେ ଅନୁଷ୍ଠିତ ହୋଇଥିବା ପ୍ରବାସୀ ଭାରତୀୟମାନଙ୍କ ସମ୍ମିଳନୀ ଏକ ଐତିହାସିକ ସମ୍ମିଳନୀ ବୋଲି ବିବେଚିତ ହୋଇଥାଏ । ମୁଖ୍ୟତଃ ଭାରତୀୟ ଷ୍ଟେଟ ବ୍ୟାଙ୍କର ବଣ୍ଡ ପାଇଁ ସହଯୋଗ କାମନା କରିବା ଏହି ସମ୍ମିଳନୀର ମୁଖ୍ୟ ଲକ୍ଷ୍ୟ ଥିଲା । ଭାରତବର୍ଷରେ ବିଦେଶୀ ପୁଞ୍ଜି ଲଗାଣ କ୍ଷେତ୍ରରେ ଅସମ୍ଭବ ଡେରି ହେଉଥିବାରୁ ସମ୍ମିଳନୀରେ ଡଃ ମନମୋହନ ସିଂହଙ୍କୁ କଟୁ ସମାଲୋଚନା କରାଯାଇଥିଲା । ଯାହାର ଉତ୍ତରରେ ସ୍ପଷ୍ଟ ଶବ୍ଦରେ ଡଃ ସିଂହ ଘୋଷଣା କରିଥିଲେ ଯେ ଏଣିକି ଯେ କୌଣସି ବିଦେଶୀ ପୁଞ୍ଜିଲଗାଣ ପ୍ରସ୍ତାବ ସ୍ୱୟଂକ୍ରିୟ ଭାବେ ମଞ୍ଜୁରୀ ହୋଇଯିବ, ଯଦି ଏହା ସ୍ୱଳ୍ପ ସମୟ ମଧ୍ୟରେ ଭାରତୀୟ ରିଜର୍ଭ ବ୍ୟାଙ୍କରୁ କୌଣସି ନେଗେଟିଭ ମତାମତ ନ ପାଇଲା ।

ପ୍ରବାସୀ ଭାରତୀୟମାନଙ୍କ ଅଭିଯୋଗ ପ୍ରକୃତରେ ଯୁକ୍ତିଯୁକ୍ତ ବୋଲି ମନେ ହୋଇଥାଏ । ସେମାନଙ୍କୁ ରାଷ୍ଟ୍ର ଓ ରାଷ୍ଟ୍ରର ମହାମାନ୍ୟ ମନ୍ତ୍ରୀ ଓ ଅତିବିଶିଷ୍ଟ ବ୍ୟକ୍ତିବିଶେଷମାନେ ପ୍ରସାରିତ ହସ୍ତରେ ଅଭିନନ୍ଦନ କରି ପାଛୋଟି ଆଣି ପରେ ତଳ ସ୍ତରର ଅମଲାତନ୍ତ୍ରୀଙ୍କ ପାଖରେ ଛାଡ଼ି ଦେଉଥିବାରୁ ପ୍ରକୃତ ବିଦେଶୀ ପୁଞ୍ଜି ଲଗାଣ କାର୍ଯ୍ୟକ୍ରମରେ ବ୍ୟାଘାତ ସୃଷ୍ଟି ହୋଇଥାଏ ଓ ଏଥିରେ ମାତ୍ରାଧିକ ବିଳମ୍ବ ମଧ୍ୟ

ଘଟିଥାଏ । 'ପୁଞ୍ଜିଲଗାଣଧର୍ମୀ ଦିଗଦର୍ଶନ ବ୍ୟୁରୋ' ବ୍ୟବସ୍ଥା ଯାହାକି କେତେକ ରାଜ୍ୟରେ ପ୍ରଚଳନ ଅଛି, ତା' ମାଧ୍ୟମରେ ପ୍ରବାସୀ ଭାରତୀୟମାନଙ୍କ ପୁଞ୍ଜିକୁ ଆମେ ଧରି ରଖି ପାରିବା । ଆମେ ମଧ୍ୟ ଚୀନର ଅଭିଜ୍ଞତାରୁ ଶିକ୍ଷା ଲାଭ କରିବା ଉଚିତ ଏବଂ ବିଦେଶୀ ପୁଞ୍ଜି ଲଗାଣ ବ୍ୟବସ୍ଥାର ମଞ୍ଜୁରୀକୁ ଦିଲ୍ଲୀର ସରହଦ ଡେଇଁ ବିଭିନ୍ନ ରାଜ୍ୟମାନଙ୍କରେ ହିଁ ମେଣ୍ଟେଇବା ଉଚିତ ।

ପ୍ରବାସୀ ଭାରତୀୟ ସମ୍ମିଳନୀର ଗୋଟିଏ ଦିଗ ଆମ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ, ଯାହାକୁ କି ଆମେ ଆଦୌ ଗୁରୁତ୍ୱ ଦେଉନାହୁଁ । ଏହି ସମ୍ମିଳନୀରୁ ଆମେ ଆଦୌ ଶିକ୍ଷା ଲାଭ କରୁନାହୁଁ ଯେ କିପରି ଆମ ଗାଁ ମାଟିର ପୁଅ ଆମ ପିଲାଦିନର ଧୂଳିଘର ସାଂଗ ବିଦେଶ ମାଟିକୁ ଆପଣାର ମଣି ନିଜ ସିଙ୍ଘରେ ମାଟି ତାଡ଼ି ଧନ-ଜନ-ଗୋପ-ଲକ୍ଷ୍ମୀରେ ସମୃଦ୍ଧ ହୋଇପାରିଲା, ଅଥଚ ଆମେ ଏଇଠି ଅଗାଡ଼ି ହୋଇ ପଡ଼ି ରହି ଖାଲି ଚକ୍ଷୁ କୁଟୁଛୁ । ସେମାନଙ୍କର ସଫଳତାର କାରଣ କ'ଣ ? ତାହା ଜାଣିବାକୁ ଆମର ନ୍ୟୁନତମ ଆଗ୍ରହ କି ଉତ୍‌କଣ୍ଠା ବି ନାହିଁ । ସେମାନଙ୍କର ସଫଳତାରୁ ଶିକ୍ଷା ଲାଭ କରିବା ପାଇଁ ଆମେ କୌଣସି ଲଜ୍ୟାବୋଧ କରିବା ଉଚିତ ନୁହେଁ । ସେମାନେ କେବଳ ଜୀବନର ଆହ୍ୱାନ ପ୍ରତି ଏକ ନୂତନ ଦୃଷ୍ଟିକୋଣ ପୋଷଣ କରି ନଥାନ୍ତି, ବରଂ ସେମାନଙ୍କର ମହାନ ଅଭିଜ୍ଞତା ଆମକୁ ଶିକ୍ଷାଦେବ କିପରି ଆମେ ଆମର ପରିବେଶକୁ ବୌଦ୍ଧିକତାର ସ୍ପର୍ଶ ଦେଇ ଔଦ୍ୟୋଗିକତାର ଭାବାପନ୍ନତାରେ ଉଦ୍‌ବୁଦ୍ଧ କରି ପାରିବା ।

ଆମେ ଏହା ଭୁଲିଯିବା ଉଚିତ ନୁହେଁ ଯେ ଭାରତର ଅର୍ଥନୀତିକୁ ସୁଦୃଢ଼ କରିବାରେ ପ୍ରବାସୀ ଭାରତୀୟମାନଙ୍କର ଅବଦାନ ଅନନ୍ୟ ସାଧାରଣ । କେବଳ ସେମାନେ କରିଥିବା ପ୍ରାରମ୍ଭିକ ପୁଞ୍ଜି ଲଗାଣ ପାଇଁ ଏହା ସମ୍ଭବପର ହୋଇପାରିଛି ତାହା ନୁହେଁ, ବରଂ କ୍ରମାଗତ ଭାବେ ସେମାନେ କରିଚାଲିଥିବା ଆର୍ଥିକ ବିନିଯୋଗ ଆମର ଗଚ୍ଛିତ ପୁଞ୍ଜିରାଶିର ଉତ୍ତରୋତ୍ତର ଅଭିବୃଦ୍ଧିରେ ଯଥେଷ୍ଟ ସହାୟକ ହୋଇପାରିଛି । ପ୍ରବାସୀ ଭାରତୀୟମାନେ ବ୍ୟବସାୟ ପରିଚାଳନା କଳାରେ ଅତ୍ୟନ୍ତ ଧୁରନ୍ଧର ଏବଂ ଏକ ସଫଳ ବ୍ୟବସାୟ ସାମ୍ରାଜ୍ୟର ପରିକଳ୍ପନା ଓ ସଂସ୍ଥାପନ ପାଇଁ ସେମାନେ ସବୁବେଳେ ଯୋଗ୍ୟ ସାବ୍ୟସ୍ତ ହୋଇଛନ୍ତି । ତେଣୁ ବିଭିନ୍ନ ଦେଶରେ ଥିବା ପ୍ରବାସୀ ଭାରତୀୟମାନେ ସେହି ଦେଶମାନଙ୍କରୁ ଅର୍ଜନ କରିଥିବା ବ୍ୟବସାୟୀକ କଳା କୌଶଳ ମାଧ୍ୟମରେ ଏ କ୍ଷେତ୍ରରେ ଭାରତବର୍ଷରେ ଥିବା ଅଭାବ ବା ଶୂନ୍ୟ ସ୍ଥାନକୁ ଅଙ୍ଗେ ଅଙ୍ଗେ ଅନୁଭବ କରିପାରିବାରେ ଯଥେଷ୍ଟ ସମର୍ଥ ହୋଇପାରୁଛନ୍ତି ।

ଏହା ପ୍ରାୟ ବାରମ୍ବାର ଅତ୍ୟନ୍ତ ଗୁରୁତ୍ୱସହ କୁହାଯାଇଥାଏ ଯେ ଭାରତରେ କରାଯାଉଥିବା ମୋଟ ବିଦେଶୀ ପୁଞ୍ଜିଲଗାଣର କେବଳ ମାତ୍ର ୧୦ ପ୍ରତିଶତ ପ୍ରବାସୀ ଭାରତୀୟମାନଙ୍କ ଦ୍ୱାରା ବିନିଯୋଗ ହୋଇଥାଏ । ଅପର ପକ୍ଷରେ ତୁଳନାତ୍ମକ ଭାବେ ବିଚାର କଲେ ପ୍ରବାସୀ ଚୀନୀୟ ନାଗରିକମାନେ ଚୀନରେ ମୋଟ ବିଦେଶୀ ପୁଞ୍ଜି ଲଗାଣର ୫୦ ପ୍ରତିଶତ ଭରଣା କରିଥାନ୍ତି । ଗୂଢ଼ ଅଧ୍ୟୟନ କଲେ ଏହାର କାରଣ ସ୍ପଷ୍ଟଭାବେ ପ୍ରତୀୟମାନ ହୋଇଥାଏ ଏହି ଯେ ପ୍ରବାସୀ ଚୀନୀୟ ନାଗରିକମାନେ ବିଦେଶରେ ପ୍ରାୟ ବିଭିନ୍ନ ବ୍ୟବସାୟ ଆଦି କରିଥାନ୍ତି, ଅଥଚ୍ ପ୍ରବାସୀ ଭାରତୀୟମାନେ ପ୍ରାୟ ବୃତ୍ତିଗତ ଧନ୍ଦା ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭରଶୀଳ ଥାଆନ୍ତି । କୁଶଳୀ କର୍ମୀ ଓ ଟେକ୍ନିସିଆନ ଆଦି ପଶ୍ଚିମ ଏସୀୟ ରାଷ୍ଟ୍ରମାନଙ୍କରେ ନିଜର ପାରିବାର ପଣିଆକୁ ଜାହିର କରିବାକୁ ଅଧିକ ପସନ୍ଦ ମଣିଥାନ୍ତି । ଆପଣ ଯାହାକିଛି ଏକ୍ସପ୍ଲାନେସନ ଦିଅନ୍ତୁ ନା କାହିଁକି ପ୍ରବାସୀ ଭାରତୀୟମାନେ ଭାରତବର୍ଷରେ ପୁଞ୍ଜିଲଗାଣ କରିବା ପାଇଁ କାହିଁକି ଏତେ ପଞ୍ଚୁଘୁଞ୍ଚା ଦେଉଛନ୍ତି ସେ ବିଷୟରେ ଆମକୁ ଆହୁରି ଅଧିକ ପୁଙ୍ଖାନୁପୁଙ୍ଖ ତର୍ଜମା ଓ ବିଶ୍ଳେଷଣ କରିବାକୁ ପଡ଼ିବ । ଭାରତମାଟିର ପୁଅ ହୋଇ ଭାରତବର୍ଷରେ ପୁଞ୍ଜି ଲଗାଣ କରିବା ପାଇଁ ସେମାନେ ଏତେ ବିତସ୍ପୃହ ଓ ଚିଡ଼ଚିଡ଼ା ହୋଇ ଯାଉଛନ୍ତି କାହିଁକି ? ଆମକୁ ଧୈର୍ଯ୍ୟର ସହ ଏହାର ଉତ୍ତର ଖୋଜି ବାହାର କରିବାକୁ ପଡ଼ିବ । ଯାହା ମନେ ହେଉଛି, ଆମକୁ ଇଣ୍ଡିଆ ଇନ୍‌ଭେଷ୍ଟମେଣ୍ଟ ସେଣ୍ଟରକୁ ପୁଣି ଶକ୍ତିମାନ କରି ଗଢ଼ି ତୋଳିବାକୁ ପଡ଼ିବ ଯାହାକି ଏକ ଆବଶ୍ୟକୀୟ ଭୂମିକା ସମ୍ପାଦିତ କରିପାରିବ ।

ସମୟ ଏବେ ଆସିଯାଇଛି ଆମ ଭିତରେ ବସାବାନ୍ଧି ରହିଥିବା ବିଯୁକ୍ତ ମନୋବୃତ୍ତି 'ଆମେ ସବୁକିଛି ଜାଣିଛୁ'ର ବୃଥା ଅହମିକାକୁ ମନରୁ ଉତାରି ସମ୍ପୂର୍ଣ୍ଣ ରୂପେ ଦୂରକୁ ଫିଙ୍ଗି ଦେବାକୁ ପଡ଼ିବ । ରାଷ୍ଟ୍ରୀୟ ନବନିର୍ମାଣ ପ୍ରକ୍ରିୟାରେ ପ୍ରବାସୀ ଭାରତୀୟମାନଙ୍କ ଯୋଗଦାନକୁ ଆମେ ଆଦୌ 'ନାଁ' କରିବା ନାହିଁ । ଆପଣ ଏହା ଆଦୌ ଭୁଲିଯାଆନ୍ତୁ ନାହିଁ ଯେ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ ମଧ ଜଣେ ପ୍ରବାସୀ ଭାରତୀୟ ଥିଲେ ଯେ କି ଦକ୍ଷିଣ ଆଫ୍ରିକା ଛାଡ଼ି ଭାରତବର୍ଷକୁ ଆସି ଏଠାରେ କୋଟି କୋଟି ଆବାଳ ବୃଦ୍ଧ ବନିତାଙ୍କୁ ଏକତ୍ରିତ କରି ସେମାନଙ୍କୁ ଗୋଟିଏ ମଞ୍ଚରେ ଠିଆ କରାଇ ଭାରତର ସ୍ୱାଧୀନତା ସଂଗ୍ରାମକୁ ଫଳପ୍ରସୂ କରାଇ ପାରିଥିଲେ । ଠିକ୍ ସେହିପରି ହୋ-ଚି-ମିନ୍ ମଧ ଜଣେ ପ୍ରବାସୀ ଭିଏତ୍‌ନାମୀୟ ହୋଇ ଅର୍ଥନୀତିର ଦଉଡ଼ି ଚଢ଼ା ବିଦ୍ୟା ପ୍ୟାରିସ୍‌ରେ ଶିଖିଥିଲେ । ପ୍ରବାସୀ

ଭାରତୀୟମାନେ ବିଦେଶର ପାଣି ପବନରେ ବଞ୍ଚି ରହି ଯେ କୌଣସି କାର୍ଯ୍ୟ କିପରି ଏକ ଅଲଗା ଢଙ୍ଗରେ ସମ୍ପାଦିତ କରାଯାଇ ପାରିବ, ତାହା ନିଜ ଅଭିଜ୍ଞତାରୁ ହିଁ ଶିକ୍ଷା ଲାଭ କରିଥାନ୍ତି । ସେମାନେ ସ୍ୱପ୍ନ ଦେଖିବାକୁ ସତ୍ ସାହସ କରିଥାନ୍ତି । ଏହା ସେମାନେ ନ କରିବେ ବା କାହିଁକି ? ଚାଲନ୍ତୁ ଏହି ଉନ୍ନତ ଚିନ୍ତାଧାରାର ପୁଞ୍ଜିକୁ ଆଧାର କରି ଆମେ ଭାରତବର୍ଷର ନବନିର୍ମାଣ ଯଜ୍ଞକୁ ସମ୍ପାଦିତ କରିବା ।

ପ୍ରବାସୀ ଭାରତୀୟମାନେ ସେମାନଙ୍କର ନୂଆ ଦେଶରେ ମନ ମୂନ ଚଇତନ ଲଗାଇ କିଭଳି ସଫଳତାକୁ ସମ୍ପୂର୍ଣ୍ଣରୂପେ କରାୟତ୍ତ କରିପାରିଲେ, ସେଥିରୁ ଆମକୁ ଉଚିତ ଶିକ୍ଷା ଲାଭ କରିବାକୁ ପଡ଼ିବ । ଯେତେଦୂର ସମ୍ଭବ ଆମକୁ ସେଭଳି ପରିସ୍ଥିତି ଓ ପରିବେଶର ସଂସ୍କୃତି ଭାରତ ମାଟିରେ ପୁନଃ ସୃଷ୍ଟି କରିବାକୁ ପଡ଼ିବ । ଯଦି ପ୍ରବାସୀ ଭାରତୀୟ ଦିବସ ଏବଂ ବିଶ୍ୱ ପୁଞ୍ଜିଲଗାଣ ସମାବେଶ ଭାରତୀୟ ଶାସକ ଶ୍ରେଣୀକୁ ଉଦ୍‌ବୁଦ୍ଧ କରି ଦେଶର ସର୍ବାଙ୍ଗୀନ ଅଭିବୃଦ୍ଧି ପାଇଁ ଆବଶ୍ୟକ ଥିବା ଅପରିହାର୍ଯ୍ୟ ପରିବର୍ତ୍ତନର ସ୍ୱାଦ ସେମାନଙ୍କୁ ଚଖାଇ ପାରିବେ, ତେବେ ଏଭଳି ସମ୍ମିଳନୀ ଅନୁଷ୍ଠିତ ହେବାରେ ବ୍ୟୟ ହେଉଥିବା ସମୟ, ଅର୍ଥ ଓ ପ୍ରଚେଷ୍ଟା ପ୍ରକୃତରେ ଫଳବତୀ ହେଲା ବୋଲି ଆମେ ଜାଣିବା । ଅନ୍ୟଥା ଏ ସବୁର ଅପଚୟ ହେଲା ବୋଲି ଧରିନେବା ଶ୍ରେୟସ୍କର ହେବ । ଭାରତବର୍ଷର ସର୍ବଦିଗବ୍ୟାପୀ ଅଭ୍ୟୁତ୍ଥାନ ଓ ମହାପୁନର୍ଜାଗରଣ ପାଇଁ ଏଭଳି ସମ୍ମିଳନୀ ଯଥେଷ୍ଟ ଖୋରାକର ଭଣ୍ଡାର ବୋଲି ପରିଗଣିତ ହେବା ଉଚିତ । ଏନ.ଆର.ଆଇ କନ୍‌ଫରେନ୍ସ ଗୁଡ଼ିକ ରୁଟିନ ବନ୍ଧା ଚିରାଚରିତ ସାମାଜିକ ମେଳାର ରୂପ ନ ନେଉ ଯେଉଁଠାରେ କି ଲୋକମାନେ କେବଳ ଭିଡ଼ ଲଗେଇଥାନ୍ତି ମେଳାର ଆସ୍ୱାଦନ ଚାଖିବା ପାଇଁ । ବରଂ ଏହି ଅଧିବେଶନ ଗୁଡ଼ିକ ନୂତନ ଚିନ୍ତାଧାରାର ବାର୍ତ୍ତାବହ ରୂପେ ପରିଗଣିତ ହେବା ଉଚିତ, ଯାହାକି ଭାରତବର୍ଷର ପୁନର୍ଜନ୍ମର ଇତିହାସ ରଚନା କରିପାରିବ । ଏଣୁ ଆମେ ଆଶା କରିବା ଉଚିତ ହେବ ନୂଆ କରି ଘରକୁ ବାହୁଡ଼ି ଆସିଥିବା ପ୍ରବାସୀ ଭାରତୀୟଙ୍କ ସାହଚର୍ଯ୍ୟରେ ଦିଲ୍ଲୀ, ତ୍ରିଭାନ୍ଦ୍ରମ, କୋଲକାତା, ଚେନ୍ନାଇ ଏବଂ ହାଇଦ୍ରାବାଦର ଅଳନ୍ଦି ଦେଇ ପରିବର୍ତ୍ତନ ଝଡ଼ ଆଗଙ୍ଗା କୁମାରୀକା ବୋହି ଆସୁ, ଯଦ୍ୱାରା ସେମାନଙ୍କର କର କମଳରେ ରାଷ୍ଟ୍ର ନିର୍ମାଣର ମହାଯଜ୍ଞ ସୁଚାରୁରୂପେ ସମ୍ପାଦିତ ହେବା ସଙ୍ଗେ ସଙ୍ଗେ ପୂର୍ଣ୍ଣାହୁତିର ମହାପର୍ବ ମଧ୍ୟ ମହନୀୟତାର ଐତିହ୍ୟ ବହନ କରିବ ।

ସମାଜ

ତା- ୧୫.୩.୨୦୦୩



# ଅର୍ଥନୀତିର ରଙ୍ଗତୂଳୀରେ ଭାରତବର୍ଷର ସୌନ୍ଦର୍ଯ୍ୟମୟ ଭବିଷ୍ୟତକୁ ଚିତ୍ରିତ କରାଯାଇ ପାରିବ

**ଶୀ**ତରତୁ ଆମର ଅଶାନ୍ତି ଓ ଅସନ୍ତୋଷ ଅଭିବ୍ୟକ୍ତିର ପ୍ରକୃଷ୍ଟ ସମୟ ବୋଲି ପ୍ରାୟ ପରିଗଣିତ ହୋଇଥାଏ । ପ୍ରତିବର୍ଷ ଶୀତରତୁରେ ପଛକୁ ପଛ ଅନୁଷ୍ଠିତ ହେଉଥିବା ଏକାଧିକ କନଫରେନ୍ସରେ ବିଶ୍ୱ ପୃଷ୍ଠଭୂମିରେ ଭାରତବର୍ଷ କେଉଁଠି ଦଣ୍ଡାୟମାନ ହୋଇଛି, ଭାରତବର୍ଷ ଅର୍ଥନୀତି କ୍ଷେତ୍ରରେ କିପରି ଫଳ ପ୍ରଦର୍ଶନ କରୁଛି ଓ ଭାରତବର୍ଷର ଭବିଷ୍ୟତ କ'ଣ ? ଏ ନେଇ ଆମେ ବହୁ ଚିନ୍ତିତ ହୋଇପଡୁ । ଏହି ସବୁ ଚିନ୍ତା ଗତ ନଭେମ୍ବର ମାସରେ ଅନୁଷ୍ଠିତ ହୋଇଥିବା ବିଶ୍ୱ ଅର୍ଥନୈତିକ ଫୋରମ ଓ ଭାରତୀୟ ଶିଳ୍ପ ମହାସଂଘର ଯୁଗ୍ମ ସଭାରେ ପ୍ରକଟିତ ହୋଇଥିଲା । ଏହି ମହାସଭାର ଏକ ବିଶେଷ ତାତ୍ପର୍ଯ୍ୟ ଥିଲା ଯେ କଥା କଥାରେ ଆମେ ଚୀନ ସହ ନିଜର ତୁଳନା କରି ବସୁଥିଲୁ ଓ ଏହି ଦୁର୍ବଳତାର ପ୍ରଚ୍ଛାୟା ନିଃସନ୍ଦେହରେ ଆମକୁ ଏହି ଶୀତରତୁରେ ଆଗାମୀ ଅଧିବେଶନମାନଙ୍କରେ ମଧ୍ୟ ଗୋଟାପଣ ଗ୍ରାସ କରି ରଖିବ ।

ଉଦ୍‌ଘାଟନୀ ପ୍ଲେନାରୀ ଅଧିବେଶନରେ ସର୍ବସମ୍ମତ ମତରେ ପହଞ୍ଚିବା କଷ୍ଟସାଧ୍ୟ ବ୍ୟାପାର ଥିଲା । ପରନ୍ତୁ ଗଣତାନ୍ତ୍ରିକ ନୀତିନିୟମ ପ୍ରତି ସମ୍ମାନ ପ୍ରଦର୍ଶନ କରି ସର୍ବସମ୍ମତ ମତାମତରେ ପହଞ୍ଚିବା ଅତ୍ୟନ୍ତ ଜରୁରୀ ଓ ଆବଶ୍ୟକ ଅଟେ । ଜଣେ ଅର୍ଥନୀତିଜ୍ଞ ଏହି ଅଧିବେଶନରେ ମତବ୍ୟକ୍ତ କରି କୁହନ୍ତି ଯେ - ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି ଯେ ଭାରତବର୍ଷ ଅର୍ଥନୈତିକ ସମସ୍ୟାର ଚକ୍ରବ୍ୟୂହରେ ପଡ଼ି ସନ୍ତୁଳି ହେଉ, ଯଦ୍ୱାରା ଭାରତବର୍ଷ ନୂତନ ଉଦ୍ଭାବନଧର୍ମୀ ମାନସିକତାକୁ ପୁଂଜି କରି ଭବିଷ୍ୟତର ସମ୍ମୁଖୀନ ହୋଇପାରିବ । ଭାରତବର୍ଷକୁ ସଭ୍ୟତାର ଶଗଡ଼ ଗୁଳାରେ ଆଗେଇ ଯିବାକୁ ହେଲେ ସମସ୍ୟାର ଇନ୍ଦ୍ରଜାଲ ଭିତରେ ଦେଶକୁ

ଛନ୍ଦି ହୋଇପଡ଼ିବାକୁ ହେବ । ସମସ୍ୟା ହିଁ ବାଟ କଢ଼େଇବ ଆଗାମୀକାଲିର ନବୀନ ସୂର୍ଯ୍ୟୋଦୟ ଆଡ଼କୁ । ନିଶ୍ଚିତ ରୂପେ ଆଉ ଗୋଟିଏ ଉପାୟ ହେଲା ସମସ୍ୟା ଆମକୁ ମାଡ଼ି ବସିବା ପୂର୍ବରୁ ଆମେ ସଂଘବଦ୍ଧ ଭାବେ ପ୍ରଗତିର ଦୁର୍ବାର ପଥରେ ଆଗକୁ ଆଗକୁ ମାଡ଼ି ଚାଲିବା । ବଳିଷ୍ଠ ନେତୃତ୍ୱର ଯୁଗପତ୍ ଆବଶ୍ୟକତା ମଧ୍ୟ ଏହି ଅଧିବେଶନର ଏକ ପ୍ରମୁଖ ଆହ୍ୱାନ ଥିଲା । ସଫଳ ନେତୃତ୍ୱର ବଡ଼ପଣିଆ ହେଲା, ଆଶା ଆକାଂକ୍ଷାର କୌଣସି ସଙ୍କଟ ବା ଭେଳିକି ସୃଷ୍ଟି ନ କରି ପ୍ରକୃତ ସଙ୍କଟକୁ ଆଡ଼େଇ ଯିବା, ଯାହାକି ଜନ ସମୁଦାୟକୁ ଲକ୍ଷ୍ୟର ନିକଟତର କରିଦେଇ ଥାଏ, ଫଳରେ ସେମାନେ ତା'ର ସୁଫଳ ପାଇବାରୁ ମଧ୍ୟ ବଞ୍ଚିତ ହୋଇ ନ ଥାନ୍ତି ।

ଏହି ସମ୍ମିଳନୀରେ ଭାରତବର୍ଷର ଭବିଷ୍ୟତ ଓ ଭବିଷ୍ୟତର ଭବିଷ୍ୟତକୁ ଚିତ୍ରିତ କରିବାକୁ ଯାଇ ବହୁ ଅର୍ଥନୀତି ବିଶାରଦ ବହୁଚିତ୍ର ଉପସ୍ଥାପନ କରିଥିଲେ । କିଏ ଭାରତବର୍ଷକୁ ଏକ ହାତୀ ସହ ତୁଳନା କଲାବେଳେ କିଏ ଏକ ବିଷାକ୍ତ ଗୋଖର ସାପ ଅବା କିଏ ହମ୍ବା ରଡ଼ି ଛାଡୁଥିବା ଏକ କଅଁଳା ବାଛୁରୀ ସହ ମଧ୍ୟ ତୁଳନା କରିଥିଲେ । ସବୁଠୁ ମଜା କଥା ହୋଇଥାଆନ୍ତା ଯଦି ସମସ୍ତ ଅର୍ଥନୀତିଜ୍ଞମାନେ ଏକଜୁଟ ହୋଇ ଏକାସାଙ୍ଗରେ ଭାରତୀୟମାନଙ୍କ ଅର୍ଥନୈତିକ ମାନଚିତ୍ର ଅଙ୍କନ କରିଥାଆନ୍ତେ, ତେବେ ଭାରତୀୟମାନଙ୍କୁ ସେମାନେ ପଶୁପଲମାନଙ୍କର ଏକ ସଂଘବଦ୍ଧ ଗୋଷ୍ଠୀଭାବେ ଚିତ୍ରିତ କରିଥାଆନ୍ତେ, ଯାହାକି ଅତ୍ୟନ୍ତ ସମୟୋପଯୋଗୀ ଚିତ୍ରର ମାନ୍ୟତା ଲାଭ କରିଥା'ନ୍ତା ।

ତିନିବର୍ଷ ତଳେ ଶିଳ୍ପ ମହାସଂଘ ବିଭିନ୍ନ ଯୋଗ୍ୟତା ସମ୍ପନ୍ନ ଏକ ବିଶାଳ ଓ ବିବିଧ ବ୍ୟତିକ୍ରମଯୁକ୍ତ ଗୋଷ୍ଠୀଙ୍କୁ ନେଇ ଏକ ବିରାଟ କର୍ମ ଯୋଜନା ହାତକୁ ନେଇଥିଲା । ଏହି କାର୍ଯ୍ୟକ୍ରମର ମୁଖ୍ୟ ଆଭିମୁଖ୍ୟ ଥିଲା, ଆଗାମୀ ଦିନମାନଙ୍କରେ ଭାରତବର୍ଷର ଭବିଷ୍ୟତ କ'ଣ ରୂପରେଖ ନେବାକୁ ଯାଉଛି ସେ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ଓ ତର୍ଜମା କରି ତା'ର ଏକ ପ୍ରକୃଷ୍ଟ ଚିତ୍ର ଅଙ୍କନ କରିବା ଓ ତଦନୁଯାୟୀ ଉପଯୁକ୍ତ କାର୍ଯ୍ୟପନ୍ଥା ନିର୍ଣ୍ଣୟ କରିବା । ଏ ସମସ୍ତ ଦୃଶ୍ୟପଟର ସଂକ୍ଷିପ୍ତ ବିବରଣ ଶିଳ୍ପ ମହାସଂଘର ରିପୋର୍ଟରେ ପ୍ରକାଶ ପାଇଛି । ଏହି ରିପୋର୍ଟର ନାଁ ରଖାଯାଇଛି- 'ଭାରତ : ଦୃଶ୍ୟପଟ ୨୦୧୦ - ଏକ ସମ୍ମିଳିତ ପ୍ରଚେଷ୍ଟାର

ପୁନଃ ଉପସ୍ଥାପନ' । ଏହି ରିପୋର୍ଟର ଭିତ୍ତି ସ୍ତବକର ଦୃଶ୍ୟପଟକୁ 'ମହିଁଷି ପଲଙ୍କ ପଙ୍କରେ ଗଡ଼ାଗଡ଼ି' ଆଖ୍ୟା ଦିଆଯାଇଛି । ହୁଏତ ସାଂପ୍ରତିକ ଅର୍ଥନୈତିକ ପରିସ୍ଥିତିର ଏହା ଏକ ନିଛକ ବାସ୍ତବବାଦୀ ଚିତ୍ର ପ୍ରତିପାଦିତ କରିବାକୁ ସକ୍ଷମ ହେଉଛି । ଭିନ୍ନ ଭିନ୍ନ ଗୋଷ୍ଠୀରେ ବିଭକ୍ତ ହୋଇ ପରସ୍ପର ମଧ୍ୟରେ ଶତୃତା ଆଚ଼ରଣ କରି ମହିଁଷି ପଲ ଯେପରି ପଙ୍କ ପୋଖରୀରୁ ପାହୁଣ୍ଡେ ବି ଉପରକୁ ଉଠି ପାରନ୍ତି ନାହିଁ ଓ ସେଇଠି ଖାଲି ପଡ଼ି ଉଠି ଛଟପଟ ହେଉଥାନ୍ତି, ଠିକ୍ ସେହିପରି ଆଜି ଆମର ଓ ଆମ ଅର୍ଥନୀତିର ଦୁରାବସ୍ଥା ହୋଇଛି । ସମସ୍ତେ ନିଜ ନିଜ ଭିତରେ କାଦୁଅ ଫିଙ୍ଗା ଫୋପଡ଼ା ହୋଇ ଗୋଟାପଣ କାଦୁଅରେ ଜୁଡ଼ବୁଡ଼ । ତେଣୁ କାହା ଆଗେ ଆଉ ବଖାଣି ବସିବା ଆମର ଏ ଭେଳିକି ପଣିଆ ?

ଗ୍ରୀକ୍ ସମ୍ରାଟ ଆଲେକ୍‌ଜାଣ୍ଡର ଦି ଗ୍ରେଟ ଥରେ ତାଙ୍କ ସେକ୍ରେଟାରୀ ଜେନେରାଲ ୟୁମେନେସ୍‌କୁ କହିଥିଲେ - ''ମଣିଷର ହୃଦୟରେ ଭଗବାନ ସ୍ୱପ୍ନ ପାଇଁ ଘରଟିଏ ତୋଳିଦେଲେ । କିନ୍ତୁ ଦେଖାଗଲା; ଧୀରେ ଧୀରେ ସ୍ୱପ୍ନ, କାମନା, ବାସନା, ଲାଳସା ଆଦି ମଣିଷଠାରୁ ବି ପ୍ରଭାବଶାଳୀ ହୋଇ ଉଠୁଛନ୍ତି । ମଣିଷର ବଡ଼ ପଣିଆ ସାବ୍ୟସ୍ତ ହୋଇଥାଏ ସେତିକି ବେଳେ, ଯେତେବେଳେ ସେ ନିଜପାଇଁ ସ୍ଥିର କରିଥିବା ଲକ୍ଷ୍ୟ ସ୍ଥଳ ଓ ସଂସାରରେ ଜନ୍ମ ନେଇଥିଲା ବେଳେ ପ୍ରକୃତି ତାକୁ ପ୍ରଦାନ କରିଥିବା ଶକ୍ତି ପରସ୍ପର ମଧ୍ୟରେ ଦୁଃଖଦ ଭେଦଭାବର ମୁହାଁମୁହିଁ ହୋଇଯାଆନ୍ତି'' । ତଦାନିନ୍ତନ ବିଶ୍ୱ ପୃଷ୍ଠଭୂମିରେ ଭାରତବର୍ଷର ସ୍ଥାନକୁ ଏଭଳି ଏକ ପରିସ୍ଥିତି ସହ ମଧ୍ୟ ତୁଳନା କରାଯାଇପାରେ, ଯେଉଁଠି ଦୁର୍ବାର ନେତୃତ୍ୱର ଆହ୍ୱାନ ହିଁ ମୋହ ମୁଦ୍‌ଗରର ବଳିଷ୍ଠ କର୍ମ ସଂପାଦିତ କରିପାରିବ ।

ଭାରତୀୟମାନଙ୍କ ପାଖରେ 'ଆସ୍ପିରେସନାଲ୍ ଭିଜନ୍' ବା ଦୁର୍ବାର ସ୍ୱପ୍ନର ଏକ ଆକାଂକ୍ଷିତ ଦୃଷ୍ଟିକୋଣ ରହିବା ଏକାନ୍ତ ବାଞ୍ଛନୀୟ, ଯଦ୍ୱାରା ଭାରତୀୟମାନେ ସେମାନଙ୍କର ନ୍ୟାଯ୍ୟ ଆସନ ଜାହିର୍ କରି ପାରିବେ ଓ ନିଜ କର୍ମର ପରାଭବକୁ ମଧ୍ୟ ସାବ୍ୟସ୍ତ କରି ପାରିବେ । ଆମେ ଆମର ଦୃଷ୍ଟିକୋଣକୁ ଭାରତବର୍ଷର ସୁନେଲୀ ଭବିଷ୍ୟତ୍ ପାଇଁ ବାଜି ଲଗେଇ ଦେବା ଉଚ଼ିତ ହେବ, ଯଦ୍ୱାରା ଆଗାମୀ କିଛି ବର୍ଷ ମଧ୍ୟରେ ବିଶ୍ୱ ସମ୍ମୁଖୀନ ହେବାକୁ ଯାଉଥିବା ଆହ୍ୱାନର ସଫଳ ମୁକାବିଲା କରାଯାଇ ପାରିବ । ସେହି ଦୃଷ୍ଟିକୋଣକୁ ରୂପାୟନ କରିବାକୁ ହେଲେ ଆମେ ଆମର

ଜୀବନଚର୍ଯ୍ୟାକୁ ନିଶ୍ଚିତ ରୂପେ କଳଙ୍କ ମୁକ୍ତ କରିବାକୁ ପଡ଼ିବ । କଳଙ୍କିତ ନାୟକର ପୋଷାକ ପିନ୍ଧି ଆମେ ଏବେ କେଉଁଠି ଦଣ୍ଡାୟମାନ ଓ ଆଗାମୀକାଲିର ବିଶ୍ୱ ବ୍ୟବସ୍ଥାରେ ଭାରତ ସ୍ୱାବଲମ୍ବନଶୀଳ ହୋଇ କେଉଁ ଆସନରେ ଅଧିଷ୍ଠିତ ହେବ - ତାହାହିଁ ମୁଖ୍ୟ ପ୍ରଶ୍ନ । ଆମର ବଡ଼ପଣିଆ ସେତିକିବେଳେ ପ୍ରକଟିତ ହେବ, ଯେତେବେଳେ ଆମ ସମସ୍ତଙ୍କର ସ୍ୱପ୍ନ ଓ ଆକାଂକ୍ଷା ସାଂପ୍ରତିକ ଅବସ୍ଥାରେ ଆମେ ସହୁଥିବା ଯନ୍ତ୍ରଣା ସହ ଯୁକ୍ତ ହୋଇ ଏ ସବୁ ମଧ୍ୟରେ ଥିବା ଶୂନ୍ୟସ୍ଥାନକୁ ଭରଣା କରି ଆମେ ଗ୍ରହଣ କରୁଥିବା ନାନାଦି ପଦକ୍ଷେପ ମାଧ୍ୟମରେ ବିଶ୍ୱ ସମ୍ପର୍କର ସେତୁବନ୍ଧ ପ୍ରତିଷ୍ଠା କରିବ ।

ଆଗାମୀ ୨୦ ବର୍ଷ ମଧ୍ୟରେ ଭାରତର ସୌଭାଗ୍ୟମୟ ଭବିଷ୍ୟତର ରଚ଼ନା ପାଇଁ ଯେ କୌଣସି ଦୃଷ୍ଟିକୋଣର କେନ୍ଦ୍ରବିନ୍ଦୁ ଯୁବଶକ୍ତି ହିଁ ହେବେ । ଏପରି କଥନର ପୃଷ୍ଠଭୂମି ସେପରି କୌଣସି ଆବେଗମୟ କାରଣ ଯୋଗୁଁ ନୁହେଁ, ବରଂ କ୍ରମବର୍ଦ୍ଧିଷ୍ଣୁ ଅସୁମାରୀ ଯୁବଶକ୍ତି ପାଖରେ ଥିବା ଅଫୁରନ୍ତ ଶକ୍ତି, ପ୍ରଚ଼ଣ୍ଡ ଉନ୍ମାଦନା ଓ ସୌର୍ଯ୍ୟ ବୀର୍ଯ୍ୟ ଏହାର ମୁଖ୍ୟ କାରଣ ଅଟେ । ଭାରତବର୍ଷରେ ଜନସଂଖ୍ୟା ନିୟନ୍ତ୍ରଣ ସେପରି କୌଣସି ଆଶାଜନକ ସଫଳତା ହାସଲ କରିପାରିନାହିଁ ଏବଂ ଆଗାମୀ ୨୦ ବର୍ଷ ମଧ୍ୟରେ ଅସଂଖ୍ୟ ଯୁବକ କର୍ମ ସନ୍ଧାନରେ ବ୍ରତୀ ହେବେ । ଏହା ଏକ ବିସ୍ଫୋରଣାତ୍ମକ ସମସ୍ୟା ସୃଷ୍ଟି କରିବ । ପରନ୍ତୁ ଏହି ଯୁବଶକ୍ତି ମଧ୍ୟ ରାଷ୍ଟ୍ରର ଅଗଣିତ ସମସ୍ୟାର ସମାଧାନର ପଥ ଉନ୍ମୋଚ଼ନ କରିବେ, ଯଦ୍ୱାରା ଭାରତବର୍ଷ ବିଶ୍ୱରେ ନିଜ ପାଇଁ ଏକ ଉଲ୍ଲେଖନୀୟ ସ୍ୱତନ୍ତ୍ର ଆସନ ସାବ୍ୟସ୍ତ କରିପାରିବ ।

ତିନୋଟି ଗ୍ଲୋବାଲ୍ ଟ୍ରେଣ୍ଡ ବା ବିଶ୍ୱସ୍ତରୀୟ ଧାରା ଭାରତବର୍ଷ ପାଇଁ ଅଜସ୍ର ସୁଯୋଗର ସମ୍ଭାର ଆଣି ସାମନାରେ ଥୋଇବ । ପ୍ରଥମତଃ ଗ୍ଲୋବାଲ୍ ଡେମୋଗ୍ରାଫିକ୍ ବା ବିଶ୍ୱ ଜନସଂଖ୍ୟାରେ ଅଭିବୃଦ୍ଧି ଜନିତ ନକ୍ସା । ବୋଷ୍ଟନ କନ୍‌ସଲ୍‌ଟିଂ ଗ୍ରୁପ ଓ ଏ.ଆଇ.ଏମ.ଏ ର ମିଳିତ ସହଯୋଗରେ କରାଯାଇଥିବା ଏକ ଷ୍ଟଡ଼ି ଉପସ୍ଥାପନା କରିଛି ଯେ ୨୦୨୦ ମସିହା ସୁଦ୍ଧା ପ୍ରତ୍ୟେକ ବିକଶିତ ରାଷ୍ଟ୍ର ଏପରିକି ଚୀନ ମଧ୍ୟ ରାଷ୍ଟ୍ରର ମୋଟ ଜନସଂଖ୍ୟା ତୁଳନାରେ କର୍ମକ୍ଷମ ଯୁବଶକ୍ତିଙ୍କ ସଂଖ୍ୟାରେ ଘୋର ଅଭାବ ପରିଲକ୍ଷିତ କରିବ । ଏହା ଏହି ବିକଶିତ ରାଷ୍ଟ୍ରମାନଙ୍କରେ ଜନସଂଖ୍ୟା ନିୟନ୍ତ୍ରଣର ସଫଳତା ଜନିତ ଅନିଚ୍ଛାକୃତ ଫଳାଫଳ

ଯାହାକି ସେମାନଙ୍କର ଅର୍ଥନୈତିକ ପ୍ରଗତିର ପରିଚାୟକ ଅଟେ । ଅପର ପକ୍ଷରେ ଭାରତବର୍ଷରେ ୪୫ ନିୟୁତ କର୍ମକ୍ଷମ ଉଦ୍‌ବୃତ୍ତ ଯୁବଶକ୍ତିର ସଂଖ୍ୟା ଅପେକ୍ଷାକୃତ କମ୍ ହେବ । ଦ୍ୱିତୀୟ ଧାରାଟି ହେଲା ପ୍ରତ୍ୟେକ ରାଷ୍ଟ୍ରର ଅର୍ଥନୀତି ପ୍ରଗତିର ପଥରେ ପରିଚାଳିତ ହେବା ଅବସରରେ ସର୍ଭିସ ସେକ୍ଟରର ବା ସେବା କ୍ଷେତ୍ରରେ ଅନୁପାତର ବୃଦ୍ଧିକୁ ଅବଲୋକନ କରିବ । କୃଷି ଓ ମ୍ୟାନୁଫ୍ୟାକଚ଼ରିଂ କ୍ଷେତ୍ରରେ ବିନିଯୋଗ ହେଉଥିବା ଲୋକସଂଖ୍ୟାର ଅଧିକ ଆବଶ୍ୟକତା ଦିନକୁ ଦିନ ଅନୁଭୂତ ହେବ । ଯେହେତୁ ସେବା କ୍ଷେତ୍ରରୁ ଉପଲବ୍ଧ ହେଉଥିବା ପ୍ରଡ଼କ୍ଟଗୁଡ଼ିକର ଏକକ, କୃଷିକ୍ଷେତ୍ର ବା ମ୍ୟାନୁଫ୍ୟାକଚ଼ରିଂ ପ୍ରଡ଼କ୍ଟଗୁଡ଼ିକର ଏକକ ଅପେକ୍ଷା ଅଧିକ ମାନବ ସମ୍ବଳର ବିନିଯୋଗ ଆବଶ୍ୟକ କରିଥାଏ । ତେଣୁ ବିକଶିତ ଦେଶମାନଙ୍କରେ ସେବା କ୍ଷେତ୍ର ଗୁଡ଼ିକରେ ବିନିଯୋଗ ହେବା ପାଇଁ ଆବଶ୍ୟକୀୟ ମାନବ ସମ୍ବଳ ଆସିବେ କେଉଁଠୁ ?

ଏଇଠି ହେଲା ଭାରତ ପାଇଁ ସୁବର୍ଣ୍ଣ ସୁଯୋଗର ଅଫୁରନ୍ତ ଭଣ୍ଡାର । କିନ୍ତୁ ଏଠାରେ ପ୍ରଶ୍ନ ଉଠୁଛି, ଭାରତବର୍ଷରେ ଉପଲବ୍ଧ ହେଉଥିବା ମାନବ ସମ୍ବଳ ବିକଶିତ ଦେଶମାନଙ୍କର ଆବଶ୍ୟକତା ମେଣ୍ଟାଇବ କିପରି ? ଇମିଗ୍ରେସନ ଏକ ରାସ୍ତା ବୋଲି କୁହାଯାଇପାରେ, କିନ୍ତୁ ଏହା ଏତେ ସହଜ ନୁହେଁ । ଆଉ ଏକ ରାସ୍ତା ହେଲା ରିମୋଟ ସର୍ଭିସେସ୍ ବା ଦୂରରୁ ସେବା ପ୍ରଦାନ କରିବା, ଯାହାକୁ କି ତୃତୀୟ ଗ୍ଲୋବାଲ୍ ଟ୍ରେଣ୍ଡ ବୋଲି କୁହାଯାଇପାରେ ଏବଂ ଯାହାକି ଧୀରେ ଧୀରେ ନିଜର ଆସ୍ଥାନ ଜମେଇବା ଆରମ୍ଭ କଲାଣି । ଭାରତବର୍ଷ ନିଜର ଗୌରବାଦିତ୍ୟ ସୂଚନା ପ୍ରଯୁକ୍ତି ବିଦ୍ୟାକୁ ପୁଞ୍ଜି କରି ଏବେ ବିଶ୍ୱରେ ଏକ ଉତ୍ତମ ଆସନ ଅଧିକାର କରି ପାରିଛି, ଯାହାକୁ ଆଧାର କରି ବିକଶିତ ଦେଶମାନଙ୍କୁ ସେବା କ୍ଷେତ୍ରରେ ଦୂରରୁ ଉତ୍କୃଷ୍ଟତମ ଡେଲିଭରି ପ୍ରଦାନ କରାଯାଇ ପାରିବ ।

ବୋଷ୍ଟନ କନ୍‌ସଲ୍‌ଟିଂ ଗ୍ରୁପ ଓ ଏ.ଆଇ.ଏମ.ଏ ଦ୍ୱାରା କରାଯାଇଥିବା ଷ୍ଟଡ଼ି ପ୍ରକାଶ କରିଛି ଯେ ଭାରତବର୍ଷ ପ୍ରଦାନ କରିବାକୁ ଥିବା ଏ ପ୍ରକାର ସେବା ସଫ୍‌ଟ୍‌ୱେୟାର ସେବାର ପରିଧି ଡ଼େଇଁ ଇଞ୍ଜିନିୟରିଂ, ମେଡ଼ିକାଲ୍ ଏବଂ ଶିକ୍ଷା ଆଦି ବହୁବିଧ ଅନ୍ୟାନ୍ୟ ସେବା କ୍ଷେତ୍ରରେ ପରିସରକୁ ମଧ୍ୟ ବ୍ୟାପିଯିବ । ଏତଦ୍ ବ୍ୟତୀତ ମେଡ଼ିକାଲ ଓ ପର୍ଯ୍ୟଟନ ଆଦି ସେବା କ୍ଷେତ୍ରରେ ଭାରତର ଉତ୍କୃଷ୍ଟ ଡେଲିଭରି କଳା

କୌଶଳ ଦ୍ୱାରା ଲୋଭାନ୍ୱିତ ହୋଇ ବହୁ ବୈଦେଶିକ ନାଗରିକ ଭାରତ ଭୂଇଁକୁ ଆସିବେ ଏବଂ ଏଥିପାଇଁ ଭାରତବର୍ଷ ୪୦ ନିୟୁତ ଅତିରିକ୍ତ ବୃତ୍ତିଗତ ଚାକିରି ସୃଷ୍ଟି କରିବ । ଉପରୋକ୍ତ ତିନୋଟି ଗ୍ଲୋବାଲ୍ ଟ୍ରେଣ୍ଡ ବା ବିଶ୍ୱ ସ୍ତରୀୟ ଧାରାର ମିଳିତ ସମନ୍ୱୟ, ସାହଚର୍ଯ୍ୟ ଓ ସୁଯୋଗର ସଦୁପୋଯୋଗ ମାଧ୍ୟମରେ ୨୦୨୦ ମସିହା ବେଳକୁ ଭାରତବର୍ଷ ବାର୍ଷିକ ୨୦୦ ବିଲିୟନ ଡଲାରର ରୋଜଗାର କରିବାକୁ ସକ୍ଷମ ହେବ ।

ତିନୋଟି ମୁଖ୍ୟ ପ୍ରକ୍ଷେତ୍ର, ଯେଉଁଥିରେ କି ଭାରତବର୍ଷ ଅତ୍ୟନ୍ତ ଆଗଭର ହୋଇ ଶୀଘ୍ରାତିଶୀଘ୍ର କାର୍ଯ୍ୟକ୍ରମ ହାତକୁ ନେବା ଉଚିତ ହେବ, ସେଗୁଡ଼ିକ ହେଲା- ବୃତ୍ତିଗତ ଶିକ୍ଷା, ଯୋଗାଯୋଗ ଭିତ୍ତିଭୂମି କ୍ଷେତ୍ରରେ ଉନ୍ନତି ଏବଂ ସ୍ୱଳ୍ପମୂଲ୍ୟ ବିନିମୟରେ ଉଚ୍ଚମାନ ସମ୍ପନ୍ନ ସର୍ବୋତ୍କୃଷ୍ଟ ସେବା ପ୍ରଦାନ । ଏହାକୁ ଭିତ୍ତିକରି ଭାରତବର୍ଷର ସ୍ୱର୍ଣ୍ଣାଦିତ୍ୟ ସାଫଲ୍ୟକୁ ବିଶ୍ୱବଜାରରେ ପ୍ରତିଯୋଗିତାମୂଳକ ମୂଲ୍ୟରେ ବିକ୍ରୀ କରାଯାଇ ପାରିବ । ଭାରତର ଅଗ୍ରଗାମୀ ମାନବ ସମ୍ବଳ ଗତିଶୀଳ ହେଲେ ଭାରତବର୍ଷ ବିଶ୍ୱର ସର୍ବଶ୍ରେଷ୍ଠ ସର୍ଭିସ୍ ସେଣ୍ଟର ବା ସେବା ପ୍ରଦାନକାରୀ ରାଷ୍ଟ୍ରଭାବେ ଉଦ୍ଭାସିତ ହେବ, ଯଦିଓ ଚୀନ ମ୍ୟାନୁଫ୍ୟାକଚରିଂ ସେକ୍ଟରରେ ସ୍ୱଳ୍ପମୂଲ୍ୟଯୁକ୍ତ ପଦାର୍ଥଗୁଡ଼ିକର ପ୍ରସ୍ତୁତକାରୀ ଭାବେ ଦିନ ପରେ ଦିନ ବିଶ୍ୱ ବଜାରରେ ନାଁ କମେଇ ଚାଲିଛି । ଚୀନ ପରି ଏକ ପିଂପା ଦେହରେ ଆମେ ଆମ ମୁଣ୍ଡ ବାଡ଼େଇ ଲହୁ ଲୁହାଣ କରିବାର କୌଣସି ଆବଶ୍ୟକତା ନାହିଁ । ଆମେ ଆମର ନିଜସ୍ୱ ଦୃଷ୍ଟିକୋଣକୁ ଆଧାର କରି ଭବିଷ୍ୟତ ପାଇଁ ଏକ ସୁଗମ ପଥ ବାଛି ନେବା ହିଁ ଶ୍ରେୟସ୍କର ହେବ ।

ସମାଜ
ତା- ୩.୩.୨୦୦୩



# ଭାରତବର୍ଷ ଆଗାମୀ ଦଶକର ଏକ ସମ୍ଭାବ୍ୟ ଅଭିବୃଦ୍ଧି ତାରକା ଭାବେ ପ୍ରତିଭାତ ହେବ

ବିଶ୍ୱ ଅର୍ଥନୈତିକ ଅଭିବୃଦ୍ଧିର ମହାଦୌଡ଼ରେ ଭାରତ କ'ଣ ସତରେ ଏକ କୂର୍ମ ସଦୃଶ ଅନ୍ୟ ଏସୀୟ ରାଷ୍ଟ୍ରର ପ୍ରତିଯୋଗୀଙ୍କ ସହ ପାଦରେ ପାଦ ମିଳେଇ ଦୌଡ଼ିବାକୁ ଡେରିରେ ଉଠି ପଡ଼ି ଆଗଭେ ଚାଲିଛି ? ଅର୍ଥନୈତିକ ହିସାବ ନିକାସର ଲମ୍ବା ଖସଡ଼ାକୁ ବିଶ୍ଳେଷଣ କଲେ ଏହା ସ୍ପଷ୍ଟ ଭାବେ ବାରି ହୋଇ ପଡ଼ିଥାଏ । ଏକବିଂଶ ଶତାବ୍ଦୀର ପ୍ରଥମ ଦଶକରେ ତିନୋଟି ରାଷ୍ଟ୍ର ଯେଉଁମାନେ କି ସର୍ବଶ୍ରେଷ୍ଠ ଅଗ୍ରଗଣ୍ୟ ରାଷ୍ଟ୍ରର ମାନ୍ୟତା ପାଇବାକୁ ଯୋଗ୍ୟ ଓ ହକ୍‌ଦାର ବୋଲି ଭବିଷ୍ୟବାଣୀ କରାଯାଇଛି, ସେମାନେ ହେଲେ ଆୟାରଲ୍ୟାଣ୍ଡ, ଚୀନ ଓ ଭାରତ । ଆୟାରଲ୍ୟାଣ୍ଡ ଓ ଭାରତ ଦୁଇଟି ଚାରିତ୍ରିକ ଗୁଣକୁ ସମବଣ୍ଟନ କରିଥାନ୍ତି । ତାହା ହେଲା ବିଂଶ ଶତାବ୍ଦୀର ଶେଷ ଦୁଇ ଦଶକରେ ଏହି ଦୁଇ ରାଷ୍ଟ୍ର ବିସ୍ମୟକର ଆଗନ୍ତୁକର ରୂପ ନେଇ ତାରକା ଅଭିନେତା ଭାବେ ଆବିର୍ଭାବ ହୋଇଛନ୍ତି ଏବଂ ଏହି ସମୟ ମଧ୍ୟରେ ସେମାନଙ୍କର କ୍ରମବର୍ଦ୍ଧିଷ୍ଣୁ ଉଚ୍ଚ ଅର୍ଥନୈତିକ ଅଭିବୃଦ୍ଧି ହାର ବିଶ୍ୱର ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କର ଇର୍ଷାର କାରଣ ହୋଇଛି । ଆୟାରଲ୍ୟାଣ୍ଡ ଅର୍ଥନୈତିକ ଅଭିବୃଦ୍ଧିର ହାରରେ ପ୍ରଶସ୍ତ ଉଚ୍ଚ ସମତଳ କ୍ଷେତ୍ର ବା ଅଧିତ୍ୟକାରେ ପହଞ୍ଚିଲେ ମଧ୍ୟ ସେହି ଅଭିବୃଦ୍ଧି ହାରକୁ ସ୍ଥିର କରି ରଖିବା କ୍ଷେତ୍ରରେ ଆୟାରଲ୍ୟାଣ୍ଡକୁ ନିଶ୍ଚିତ ରୂପେ ଦ୍ରୁତତମ ଅଭିବୃଦ୍ଧିଧର୍ମୀ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରର ମାନ୍ୟତା ମିଳିବ ।

୧୯୮୦ ମସିହାରୁ ୨୦୦୦ ମସିହା ମଧ୍ୟରେ ୧୧ଟି ଅତ୍ୟୁଚ୍ଚ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ର ମଧ୍ୟରେ ମାନ୍ୟତା ଲାଭ କରିଥିବା ହଂକଂ, ମ୍ୟାଲେସିଆ ଏବଂ ଇଣ୍ଡୋନେସିଆ ବିଂଶ ଶତାବ୍ଦୀର ତାରକା ଅଭିନେତା ତାଲିକାରୁ ନିଜ ନିଜର ନାଁ କଟେଇ ସାରିଲେଣି । ପ୍ରକୃତରେ କହିବାକୁ ଗଲେ ମ୍ୟାଲେସିଆ ୧୯୮୦ ରୁ ୨୦୦୦ ମସିହା ମଧ୍ୟରେ ଶୀର୍ଷ ୧୦ ଟି ରାଷ୍ଟ୍ରଙ୍କ ତାଲିକାରେ ଆଦୌ ଅନ୍ତର୍ଭୁକ୍ତ ନ

ଥିଲା । ଅପର ପକ୍ଷରେ ହଂକଂର ଅଭିବୃଦ୍ଧି ଏହି ସମୟ ମଧ୍ୟରେ କ୍ରମାଗତ ଭାବେ ତଳକୁ ତଳ ଖସି ଚାଲିଥିଲା, ଯାହାକି ହଂକଂକୁ ତାଲିକାର ସର୍ବନିମ୍ନ ସ୍ଥାନରେ ଆଣି ଅଧିଷ୍ଠିତ କରାଇଥିଲା । ଯାହା ମନେ ହେଉଛି, ହଂକଂ ତା'ର ଉଚ୍ଚ ଅଭିବୃଦ୍ଧି କର୍ଭର ଶେଷ ଭାଗରେ ଆସି ପହଞ୍ଚିଯାଇଛି । ଏସୀୟ ଆର୍ଥିକ ପରିସ୍ଥିତି ଭିତରେ ଗତିକରି ଝୁଣ୍ଟିପଡ଼ି ଉଠି ଚାଲି ଇଣ୍ଡୋନେସିଆ ଏକବିଂଶ ଶତାବ୍ଦୀରେ ତା'ର ପୂର୍ବସ୍ଥାନ ୯ମ ଆସନରୁ ତଳକୁ ଖସି ଆସିବ । ରାଜନୈତିକ ହଟଚ଼ମଟ ଓ ପରିବର୍ତ୍ତନର ଝଡ଼ ଇଣ୍ଡୋନେସିଆର ଆର୍ଥିକ ସ୍ଥିତିକୁ ମଜବୁତ କରିବାକୁ ଆବଶ୍ୟକୀୟ ସମୟ ନେବ ଏବଂ ନୂତନ ରାଜନୈତିକ ବ୍ୟବସ୍ଥା ଇଣ୍ଡୋନେସିଆ ମାଟିରେ ତା'ର ସ୍ଥିତିକୁ ସୁଦୃଢ଼ କରିବାକୁ ମଧ୍ୟ ସମୟର ଦ୍ୱାରସ୍ଥ ହେବ । ସମୟର ଏହି ବୀଜଗଣିତ ଅଧ୍ୟୟନ କରିବା ପାଇଁ ଏବଂ ଅର୍ଥନୀତିର ରଙ୍ଗଭୂମିରେ ତାରକା ଅଭିନେତା ହେବା ପାଇଁ ଇଣ୍ଡୋନେସିଆକୁ ଅର୍ଦ୍ଧଦଶକ ସମୟ ଲାଗିଯାଇପାରେ ।

ଏହା ମନେ ହେଉଛି, ସତେ ଯେପରି ଚୀନ ଅବକ୍ଷୟମାନ ସଡ଼କରେ ଜଣେ ବାଟୋଇ ହୋଇଯାଇଛି । ଚୀନର ଅଭିବୃଦ୍ଧିକୁ ନେଇ ଯାହା କିଛି ବି ଭବିଷ୍ୟବାଣୀ କରାଯାଉଛି, ତାହା ସବୁବେଳେ ଏକ ଜଟିଳ ଗାଣିତିକ ସୂତ୍ରର ଅବତାରଣା କରୁଛି ଏବଂ ଏହି ସୂତ୍ର ଲୀଳାବତୀର ସୂତ୍ର ଠାରୁ ବି କଷ୍ଟସାଧ୍ୟ ହୋଇଯାଉଛି । ସଦାସର୍ବଦା ଭବିଷ୍ୟବାଣୀ ଅତୀତର ଅଭିବୃଦ୍ଧି ହାରକୁ ହାରାହାରି ବାର୍ଷିକ ୧ ରୁ ୨ ପ୍ରତିଶତ ଅଧିକ ଉପସ୍ଥାପନା କରିଥାଏ । ଅଭିବୃଦ୍ଧି ହାରର ସମସ୍ତ ଗାଣିତିକ ହିସାବ ନିକାସକୁ ବିଚ଼ାରକୁ ନେଇ ଅର୍ଥନୀତିଜ୍ଞମାନେ ମତ ଦିଅନ୍ତି ଯେ ଚୀନର ହାରାହାରି ବାର୍ଷିକ ଅଭିବୃଦ୍ଧି ହାର ୫.୯ ପ୍ରତିଶତ ଅଟେ, ଯାହାକି ଭାରତର ବାର୍ଷିକ ଅଭିବୃଦ୍ଧି ହାରଠାରୁ ମାତ୍ର ଟିକିଏ ଉପରେ । ଯଦି ୨ ପ୍ରତିଶତର ଅଧିକ ଉପସ୍ଥାପନକୁ ପୂର୍ଣ୍ଣମାତ୍ରାରେ ହିସାବକୁ ନିଆଯାଏ, ତେବେ ଚୀନର ମୁଣ୍ଡପିଛା ମୋଟ ଆଭ୍ୟନ୍ତରୀଣ ଉତ୍ପାଦନର ହାରାହାରି ବାର୍ଷିକ ଅଭିବୃଦ୍ଧି ହାର ପ୍ରକୃତରେ ୪.୯ ପ୍ରତିଶତ ହେବ । ଏହି ହିସାବ ନିକାସ ଚୀନର ଆସନକୁ ଭାରତର ନିମ୍ନକୁ ନେଇ ଆସିବ, ତା' ସତ୍ତ୍ୱେ ବି ଚୀନ ଆଗାମୀ ଦଶକର ତିନୋଟି ମୁଖ୍ୟ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରର ମାନ୍ୟତା ଲାଭ କରିବ ।

ଚୀନର ଭବିଷ୍ୟତକୁ ନେଇ ଅର୍ଥନୀତିଜ୍ଞମାନେ ବହୁ କଳ୍ପନା ଜଳ୍ପନା ଓ ଭବିଷ୍ୟବାଣୀ ଅବତାରଣା କରୁଛନ୍ତି । ଏ ସବୁର ପୃଷ୍ଠଭୂମିର ପର୍ଯ୍ୟାଲୋଚ଼ନା

ନିମ୍ନଲିଖିତ ଉପାୟରେ କରାଯାଇପାରେ । ଚୀନର ଜନଜୀବନ ଯେ ବିଷାଦଭରା ଚିତ୍ରରୁ ମୁକ୍ତ ନୁହେଁ, ତାହା ଏଥିରୁ ସ୍ପଷ୍ଟ ବାରି ହୋଇ ପଡ଼ିବ ।

ଚୀନର ଗ୍ରାମୀଣ ଅଞ୍ଚଳରେ ଚାକିରି ପାଇଁ ସଂଖ୍ୟାତୀତ ବେକାର ବ୍ୟକ୍ତିମାନଙ୍କ ଭିଡ଼ ଲାଗି ରହିଛି ବୋଲି ସମ୍ବାଦ ପ୍ରକାଶ ପାଇଛି । ଏହାକୁ 'ଲେବର ସରପ୍ଲସ ଇକୋନୋମି' ବା 'ଶ୍ରମ ଉଦ୍‌ବୃତ୍ତ ଅର୍ଥନୀତି' ର ଆଖ୍ୟା ଦିଆଯାଉଛି । ସ୍ୱଳ୍ପ ଆୟକାରୀ ଏସୀୟ ନାଗରିକର ପୋଷାକ ପିନ୍ଧିଥିବା ଏହି ବେକାର ଜନଶକ୍ତି ଚୀନର ଗ୍ରାମୀଣ ଅର୍ଥନୀତିର ପ୍ରତିରୂପକୁ ପରିପ୍ରକାଶ କରିଥାଏ । ଏପରି ଏକ ରାଷ୍ଟ୍ର ଯେ କି ଦୀର୍ଘ ୧୮ ବର୍ଷ ଧରି ୧୦.୬ ପ୍ରତିଶତ ବା ଧରନ୍ତୁ ୮.୬ ପ୍ରତିଶତ ଅଭିବୃଦ୍ଧି ହାରରେ ଗତିକଲାପରେ ଜନଗଣମାନଙ୍କର ଏପରି ଖୋଲା ବେକାରୀ ସମସ୍ୟାରେ ପଡ଼ି ହନ୍ତସନ୍ତ ହେବା କେତେଦୂର ଯେ ସମୀଚ଼ୀନ, ତାହା ସମସ୍ତଙ୍କର ବିଚ଼ାର୍ଯ୍ୟ । ଏହା ରାଷ୍ଟ୍ରର ଅସ୍ଥିର ଅଭିବୃଦ୍ଧି ଧାରାକୁ ଆଖିରେ ଆଙ୍ଗୁଠି ଖେଞ୍ଚି ସ୍ପଷ୍ଟ ଭାବେ ସୂଚ଼େଇ ଦେଇଥାଏ ।

ସ୍ୱଳ୍ପ ଆୟ କରୁଥିବା ରାଷ୍ଟ୍ରମାନେ ପ୍ରକାରାନ୍ତରେ ସ୍ୱଳ୍ପ ଅର୍ନ୍ତଦେଶୀୟ ସଞ୍ଚୟ ମଧ କରିଥାନ୍ତି ଓ ସେମାନଙ୍କର ସଞ୍ଚୟ ହାର ମଧ ସ୍ୱଳ୍ପ ହୋଇଥାଏ । ପରନ୍ତୁ ସେହି ରାଷ୍ଟ୍ରମାନଙ୍କରେ ଆଭ୍ୟନ୍ତରୀଣ ପୁଞ୍ଜି ଲଗାଣ ଅପେକ୍ଷାକୃତ ଅଧିକ ହୋଇଥାଏ । ଏହାର ପ୍ରଭାବରେ ବାଲାନ୍ସ ଅଫ ପେମେଣ୍ଟର କରେଣ୍ଟ ଆକାଉଣ୍ଟରେ ନିଅଣ୍ଟିଆ ପରିସ୍ଥିତି ଦେଖା ଦେଇଥାଏ । ତୁଳନାତ୍ମକ ଭାବେ ବିଶ୍ଳେଷଣ କଲେ ଆପଣ ଦେଖିବେ ଯେ ଚୀନର ଆଭ୍ୟନ୍ତରୀଣ ସଞ୍ଚୟର ପରିମାଣ ତଥା ପୁଞ୍ଜି ଲଗାଣ ଅସାଧାରଣ ଭାବେ ଅଧିକ ଏବଂ ପ୍ରଚୁର ପରିମାଣର ବିଦେଶୀ ପୁଞ୍ଜି ଲଗାଣ ସଙ୍ଗେ ସଙ୍ଗେ କରେଣ୍ଟ ଆକାଉଣ୍ଟ ମଧ ଉଦ୍‌ବୃତ୍ତ ଅଟେ । ଗତ ୧୭ ବର୍ଷ ମଧରୁ ୧୨ ବର୍ଷ କେବଳ କରେଣ୍ଟ ଆକାଉଣ୍ଟ ଉଦ୍‌ବୃତ୍ତ ଅଛି, ଯାହାକି ହାରାହାରି ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି)ର ୦.୫ ପ୍ରତିଶତ ଅଟେ । ଏହି ଐତିହାସିକ ପ୍ରଭେଦର ସରଳ ସୂତ୍ରଟିଏ ଖୋଜି ପାଇବା କାଠିକର ପାଠ ହେଉଛି ।

ଜଗତୀକରଣ ପରଠାରୁ ଚୀନ ମୂଳ ପୁଞ୍ଜିରାଶିକୁ ସଫଳ ଭାବେ ନିୟନ୍ତ୍ରୀତ କରି ରଖିବା ସଙ୍ଗେ ସଙ୍ଗେ ଉଦ୍‌ବୃତ୍ତ କରେଣ୍ଟ ଆକାଉଣ୍ଟ ଏବଂ କ୍ରମାଗତ ଭାବେ ବୈଦେଶିକ ପୁଞ୍ଜିର ଅଫୁରନ୍ତ ସ୍ରୁଅକୁ ଆଦରି ନେଇଛି । ତଥାପି ସମସ୍ୟା ପରବର୍ତ୍ତୀ

ବର୍ଷ ଗୁଡ଼ିକ ମୁଦ୍ରାସ୍ଫୀତି ଆଶଙ୍କାରୁ ମୁକ୍ତ ନ ଥିଲା । ନିୟନ୍ତ୍ରିତ କ୍ୟାପିଟାଲ୍ ଆକାଉଣ୍ଟ କରେଣ୍ଟ ଆକାଉଣ୍ଟ ସରପ୍ଲସ ମଧ୍ୟରେ ମୁଦ୍ରାସ୍ଫୀତିର ଆଶଙ୍କା ଏବଂ ଆର୍ଥିକ ଗଚ୍ଛିତ ପରିମାଣରେ ଉତ୍ତରୋତ୍ତର ଅଭିବୃଦ୍ଧି ମାର୍କେଟ ଇକୋନୋମି ବା ବଜାର ଅର୍ଥନୀତିକୁ ସମ୍ପୂର୍ଣ୍ଣ ଭାବେ ଅବମାନନା ବା ବେଖାତିର କରୁଛି ।

ଚୀନର ଜାତୀୟ ଉଦ୍ୟୋଗ ପ୍ରସୂତ ପୁଞ୍ଜିଭିତ୍ତିକ ରପ୍ତାନି ବ୍ୟବସ୍ଥା ଅପେକ୍ଷା ଶ୍ରମଭିତ୍ତିକ ରପ୍ତାନି ବ୍ୟବସ୍ଥା ଅତ୍ୟନ୍ତ ପ୍ରତିଯୋଗିତାମୂଳକ ଅଟେ । ତା' ସତ୍ତ୍ୱେ ଏହି ରପ୍ତାନିର ଏକ ବହୁଳ ଅଂଶ ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଅତ୍ୟନ୍ତ ଶସ୍ତା ଦରରେ କ୍ରମାଗତ ଅଧିକ ମାତ୍ରାରେ ଉପଲବ୍ଧ ହୋଇଥାଏ । ଏ ସବୁ ଯୁକ୍ତିଯୁକ୍ତ ସମ୍ପନ୍ନ ବିଯୁକ୍ତ ତଥ୍ୟାବଳୀ ସତ୍ତ୍ୱେ ଅର୍ଥନୀତିଜ୍ଞମାନେ ମତ ପୋଷଣ କରନ୍ତି ଯେ ଚୀନର ଭବିଷ୍ୟତର ସମ୍ଭାବ୍ୟ ଫଳାଫଳ ବିଗତ ଦୁଇ ଦଶନ୍ଧିର ହାରହାରି ପ୍ରକୃତ ମୁଣ୍ଡପିଛା ଜି.ଡ଼ି.ପି. ଅଭିବୃଦ୍ଧି ଠାରୁ ୨ ପ୍ରତିଶତ କମ୍ ହେବ ।

ଏକବିଂଶ ଶତାବ୍ଦୀର ସୁଦୀର୍ଘ ଅଗଣାରେ ଦଣ୍ଡାୟମାନ ହୋଇ ଭାରତବର୍ଷ ଆଜି ବି ବିଶ୍ୱର ସ୍ୱଳ୍ପ ଆୟକାରୀ ରାଷ୍ଟ୍ରଭାବେ ସର୍ବଜନ ବିଦିତ । ଆଗକୁ ବହୁରାସ୍ତା ଯିବାର ବାକି ଅଛି । ବହୁତ କିଛି କରିବାର ବି ଅଛି । ଭାରତ ପାଖରେ ଥିବା ସର୍ବଶ୍ରେଷ୍ଠ ପୁଞ୍ଜି ମୁଠିକ ହେଲା ଏକ ସମ୍ପୂର୍ଣ୍ଣ ମୁକ୍ତ ସାର୍ବଭୌମ ଗଣତାନ୍ତ୍ରିକ ସମାଜ ବ୍ୟବସ୍ଥା ଏବଂ ରାଜନୈତିକ ବିଧି ବିଧାନ । ଏହା ହିଁ ଭାରତର ଶ୍ରେଷ୍ଠ ବଳ ଓ ଗାରୀମା । ଯଦ୍ୱାରା ରାଷ୍ଟ୍ରର ସମସ୍ତ ଦୁର୍ବଳତା ଓ ସମସ୍ୟା ସମ୍ପୂର୍ଣ୍ଣ ରୂପେ ପରିପ୍ରକାଶିତ ହୋଇ ତର୍କ ବିତର୍କ ମାଧ୍ୟମରେ ଉତ୍କୃଷ୍ଟତମ ସମାଧାନର ପନ୍ଥାକୁ ବରଣ କରି ନେଇଥାଏ । ଏହି ଜ୍ଞାନରୁ ସମ୍ଭୂତ ହୋଇଥିବା ଅର୍ଥନୈତିକ ସଂସ୍କାର ବ୍ୟବସ୍ଥାର ଗଭୀରତା ଓ ଧାରା ଉପରେ ପ୍ରକୃତ ଅଭିବୃଦ୍ଧିର ହାର ନିର୍ଭର କରିବ ।

ଯଦି ଆଗାମୀ ୫ ରୁ ୧୦ ବର୍ଷ ମଧ୍ୟରେ ଅର୍ଥନୈତିକ ସଂସ୍କାର ବ୍ୟବସ୍ଥାରେ ତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କରା ନ ଯାଏ ଏବଂ ସରକାରୀ ବ୍ୟୟ ପରିମାଣରେ ପୁନର୍ବିନ୍ୟାସ ତଥା ଗୁଣବତ୍ତାରେ ଅଭିବୃଦ୍ଧି ଅଣା ନ ଯାଏ, ତେବେ ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ଆଶାଜନକ ନ ହୋଇ ଧୀର ହୋଇଯିବ । ମୁଣ୍ଡ ପିଛା ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି.) ରେ ଅଭିବୃଦ୍ଧି ସମ୍ଭାବ୍ୟ ୫.୭ ପ୍ରତିଶତରୁ ଉର୍ଦ୍ଧ୍ୱରେ ପହଞ୍ଚିବାକୁ ହେଲେ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ପ୍ରଖରରୁ ପ୍ରଖରତର ବେଗରେ ଧାବମାନ ହେବାକୁ

ପଡ଼ିବ । ଏହା ତ୍ରିବାର ସତ୍ୟ । ଆଗାମୀ ଦଶକରେ ହେବାକୁ ଥିବା ୫.୭ ପ୍ରତିଶତର ସମ୍ଭାବ୍ୟ ଅଭିବୃଦ୍ଧି ହାର ଗତ ଦୁଇ ଦଶକର ଅଭିବୃଦ୍ଧି ଧାରା ଠାରୁ ୧.୬ ପ୍ରତିଶତ ଅଧିକ ଅଟେ । ୧୯୮୦ ରୁ ୨୦୦୦ ମସିହା ମଧ୍ୟରେ ଭାରତ ହାସଲ କରିଥିବା ତା'ର ୬ଷ୍ଠ ସ୍ଥାନରେ ପରିବର୍ତ୍ତନ ଘଟି ୨୦୧୦ ମସିହା ସୁଦ୍ଧା ତାହା ତୃତୀୟ ବା ତଦ୍‌ଉର୍ଦ୍ଧ୍ୱ ସ୍ଥାନ ହୋଇ ସାରିଥିବ । ଏହି ସମ୍ଭାବ୍ୟ ଗଣିତ ସତ୍ୟ ହେବ, କାରଣ ଆଗାମୀ ଦୁଇ ଦଶକ ମଧ୍ୟରେ ଭାରତ ତା'ର ଜନସଂଖ୍ୟାକୁ ନେଇ ଏକ ଟ୍ରାଞ୍ଜିସନ ପିରିଅଡ୍ ମଧ୍ୟରେ ଗତି କରିବ, ଯାହାକି ଜଣେ କର୍ମଜୀବୀ ଉପରେ ନିର୍ଭରଶୀଳତାର ଅନୁପାତକୁ ହ୍ରାସ କରାଇବ; ଯଦ୍ୱାରା ମୁଣ୍ଡ ପିଛା ଜି.ଡ଼ି.ପି. ଅଭିବୃଦ୍ଧି ହାରରେ ପ୍ରାୟ ୦.୭ ପ୍ରତିଶତରେ ବୃଦ୍ଧି ପରିଲକ୍ଷିତ ହେବ ।

ଦକ୍ଷିଣ କୋରିଆ ଅନ୍ୟ ଏକ ରାଷ୍ଟ୍ର ଯେ କି ୬ଟି ଦ୍ରୁତ ପ୍ରଗତିଶୀଳ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରଙ୍କ ମଧ୍ୟରେ ନିଜର ଆସନକୁ ସୁରକ୍ଷିତ କରି ରଖିବ । ଚିଲି ମଧ୍ୟ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ହେବ । ପୂର୍ବରୁ କୋରିଆ ଅଭିବୃଦ୍ଧି ସିଡ଼ିର କାହିଁ କେତେ ତଳ ଫଳକରେ ଦଣ୍ଡାୟମାନ ଥିଲା । ପରନ୍ତୁ ସାଂପ୍ରତିକ ଅର୍ଥନୈତିକ ଅଧୋପତନ ପ୍ରକ୍ରିୟା ଅତ୍ୟନ୍ତ ତୀକ୍ଷ୍ଣତର, ଯାହାକି ବହୁବିଧ ବିଯୁକ୍ତ କାରଣର ଏକତ୍ରୀକରଣର ଦ୍ୱାରା ଅତ୍ୟନ୍ତ ଭାବେ ପ୍ରଭାବିତ ହୋଇଥାଏ । ପରିସ୍ଥିତିର ମୋଡ଼କୁ ନୂତନ ଦିଗ୍‌ଦର୍ଶନ ଦେବାକୁ ହେଲେ ନୀତି ନିୟମରେ ସଂସ୍କାର ଓ ନୂତନ ପନ୍ଥା ଅବଲମ୍ବନ କରିବାକୁ ପଡ଼ିବ । ଦକ୍ଷିଣ କୋରିଆକୁ ଅର୍ଥନୀତିର ଅଗଣାରେ ଗୋଡ଼ ପୋତି ମଜବୁତ ହୋଇ ଠିଆ ହେବାକୁ ହେଲେ ଦୀର୍ଘକାଳୀନ ଅଭିବୃଦ୍ଧି ଧାରାର ପଥକୁ ବାଛି ନେବାକୁ ପଡ଼ିବ, ଯଦ୍ୱାରା ସର୍ବଶ୍ରେଷ୍ଠ ୬ଟି ଆସନ ମଧ୍ୟରେ ନିଜର ସ୍ଥାନ ସୁଦୃଢ଼ କରି ରଖି ପାରିବ ।

ଚିଲି ଅର୍ଥନୈତିକ ଅଭିବୃଦ୍ଧିର ସଡ଼କରେ କ୍ରମାଗତ ଭାବେ ଆଗକୁ ଆଗକୁ ଅଗ୍ରସର ହୋଇ ଚାଲିଛି ଏବଂ ତା'ର ଏହି ଯାତ୍ରାପଥକୁ ସଦା କୁସୁମିତ କରି ରଖିବାକୁ ପ୍ରୟାସ ଜାରି ରଖିଛି, ଯଦିଓ ଚିଲିର ଅତୀତ ରେକର୍ଡ଼ ମିଶ୍ର ଫଳ ପ୍ରଦାନ କରିଥାଏ । ଏକାଧିକ ପଛଘୁଞ୍ଚା ପ୍ରକ୍ରିୟା ଆଂଶିକ ଭାବେ ଚିରସ୍ଥାୟୀ ଫଳ ପ୍ରଦାନ କରିଥାଏ, ଯାହାକି ଅଭିବୃଦ୍ଧିର ଧାରାକୁ ହ୍ରାସ କରାଇଥାଏ । ଅପରପକ୍ଷରେ ଅନ୍ୟ ଦେଶଗୁଡ଼ିକ ଅତ୍ୟନ୍ତ କ୍ଷିପ୍ରଶୀଳ ଅଭିବୃଦ୍ଧିର ଧାରାକୁ ଜାବୁଡ଼ି ଧରି ତାହାର ନବୀକରଣ କରିବାରେ

ମନ ବଳାଉଛନ୍ତି । ଏ ବର୍ଷ ଅଭିବୃଦ୍ଧିର ଧାରାରେ ଶିଥିଳତା ଅପେକ୍ଷାକୃତ କମ୍ ଅଟେ । ତେଣୁ ଏହି ଧାରା ଓଲଟା ଧାରା ହେବାରେ କିଛି ସନ୍ଦିହାନ ନାହିଁ ।

ଭିଏତ୍‌ନାମ, ସିଙ୍ଗାପୁର ଓ ଥାଇଲ୍ୟାଣ୍ଡ ଗତ ଦୁଇ ଦଶନ୍ଧିର ଅନ୍ୟତମ ତିନି ତାରକା ଅଭିନେତା ଭାବେ ମୁଣ୍ଡ ଟେକି ଠିଆ ହୋଇଛନ୍ତି ଓ ଆଗାମୀ ଦିନ ମାନଙ୍କରେ ମଧ୍ୟ ସେମିତି ସଗର୍ବେ ମୁଣ୍ଡ ଟେକି ଠିଆ ହୋଇରହିବେ । ଯେହେତୁ ଭିଏତ୍‌ନାମ ଗୋଟିଏ ଅଭିବୃଦ୍ଧି ଚକ୍ରର ପୂର୍ଣ୍ଣ ପରିକ୍ରମା କରିସାରିଲା ପରେ ଶେଷ ଭାଗରେ ଆସି ପହଞ୍ଚି ସାରିଲାଣି ବୋଲି ମନେ ହେଉଛି, ହେଲେ ଯଥେଷ୍ଟ ଉଦ୍ଦେଶ୍ୟପୂର୍ଣ୍ଣ ସଂସ୍କାର ବ୍ୟବସ୍ଥାର ସାହଚର୍ଯ୍ୟରେ ଭିଏତ୍‌ନାମ ପୁଣି ପ୍ରଗତିର ମଙ୍ଗକୁ ନିଜ ହାତରେ ଧରି ଅଭିବୃଦ୍ଧିର ଉଚିତ ରାସ୍ତା ନିର୍ଣ୍ଣୟ କରିବ । ଭିଏତ୍‌ନାମର ଅନ୍ତର୍ନିହିତ ଶକ୍ତି ତାକୁ ପୁଣି ଆଣି ସଭ୍ୟତାର ବଡ଼ଦାଣ୍ଡରେ ଠିଆ କରାଇ ଦେବ । ରାଜନୈତିକ ଉଦ୍ଦେଶ୍ୟ କାରଣରୁ ଭିଏତ୍‌ନାମରେ ଏ ନୂତନ ସଂସ୍କାର ବ୍ୟବସ୍ଥା ପ୍ରଚଳନ ହେବା ଏତେ ସହଜସାଧ୍ୟ ଲାଗୁନାହିଁ, ଯାହାକି ଭିଏତ୍‌ନାମକୁ ୧୦ଟି ପ୍ରମୁଖ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରର ମାନ୍ୟତାରୁ ବଞ୍ଚିତ କରିବ ।

ଏବେ ବି ଥାଇଲ୍ୟାଣ୍ଡର ସମ୍ଭାବନାମୟ ଉଚ୍ଚମାନଯୁକ୍ତ ଅଭିବୃଦ୍ଧି ପ୍ରକ୍ରିୟା ଅନ୍ୟ ରାଷ୍ଟ୍ରର ଇର୍ଷାର କାରଣ ହୋଇଥାଏ । ପରନ୍ତୁ ଏବେ ବି ଥାଇଲ୍ୟାଣ୍ଡ ନାନାଦି ବିଷୟ ଜଞ୍ଜାଳ ମଧ୍ୟରେ ଘାଣ୍ଟି ଚକଟି ହେଉଛି ଓ ଦୀର୍ଘକାଳ ଧରି ବହୁବିଧ ବିଯୁକ୍ତ ପ୍ରକ୍ରିୟାର ଗଚ୍ଛିତ ଗଣ୍ଠିଲିକୁ ମୁଣ୍ଡ ଉପରେ ଧରି ଅମଡ଼ା ବାଟରେ ଗୋଡ଼ କାଢ଼ି ସେଗୁଡ଼ିକୁ ବୋହି ଚାଲିଛି । ଏହି ଗଚ୍ଛିତ ସମସ୍ୟାଗୁଡ଼ିକର ସମାଧାନ ପନ୍ଥା ନିର୍ଦ୍ଧାରଣ ଏହାର ଅଭିବୃଦ୍ଧିର ର୍‍ୟାଙ୍କିଙ୍ଗକୁ ନିରୂପିତ କରିବ । ଉଭୟ ଭିଏତ୍‌ନାମ ଓ ଥାଇଲ୍ୟାଣ୍ଡ କ୍ଷେତ୍ରରେ ସଂସ୍କାର ପ୍ରକ୍ରିୟାର ଧାରା ଏହି ଦୁଇ ଦେଶକୁ ୧୦ଟି ମୁଖ୍ୟ ସମୃଦ୍ଧଶାଳୀ ରାଷ୍ଟ୍ରର ତାଲିକାରେ ନିଶ୍ଚୟ ସମ୍ମାନିତ କରିବ । ଆଗାମୀ ଦଶକରେ ସିଙ୍ଗାପୁର ଅଭିବୃଦ୍ଧିର ଗ୍ରାଫ୍‌ରେ ଧୀରେ ଧୀରେ ତଳକୁ ତଳକୁ ଖସି ଚାଲିବ, ତା' ସତ୍ତ୍ୱେ ବି ସମ୍ଭବତଃ ୧୦ଟି ମୁଖ୍ୟ ସମୃଦ୍ଧଶାଳୀ ରାଷ୍ଟ୍ରର ତାଲିକାରେ ନିଜ ନାମକୁ ବଳବତ୍ତର କରି ରଖିପାରିବ ।

ଏକବିଂଶ ଶତାବ୍ଦୀର ତାରକା ଅଭିନେତା ହେବାର ମହାନ୍ ସୌଭାଗ୍ୟ ଲାଭ କରିବାର ସବୁକିଛି ଲକ୍ଷଣ ଶ୍ରୀଲଙ୍କା, ନରୱେ, ଲାଓସ୍, ପୋଲାଣ୍ଡ,

ବଙ୍ଗଳାଦେଶ ଏବଂ ୟୁଗାଣ୍ଡା ପାଖରେ ପରିଲକ୍ଷିତ ହେବ ବୋଲି ଭବିଷ୍ୟବାଣୀ କରାଯାଉଛି । ଅତଏବ ପୃଥିବୀର ୧୦ଟି ପ୍ରମୁଖ ସମୃଦ୍ଧଶାଳୀ ରାଷ୍ଟ୍ରର ତାଲିକାରୁ ଦୁଇଟି ଏସୀୟ ରାଷ୍ଟ୍ରଙ୍କ ନାମ କଟିଯିବାରୁ ଯେଉଁ ସ୍ଥାନ ଖାଲି ପଡ଼ିଥିଲା, ତହିଁରେ ଏସିଆ ମହାଦେଶର ୬ଟି ସମ୍ଭାବନା ଧନ୍ୟ ରାଷ୍ଟ୍ରଙ୍କ ମଧ୍ୟରୁ ତିନୋଟି ଏବଂ ଛଅଟି ଦରିଦ୍ର ରାଷ୍ଟ୍ରଙ୍କ ମଧ୍ୟରୁ ଚାରୋଟି, ଯେଉଁଠାରେ କି ସଂସ୍କାର ପ୍ରକ୍ରିୟାର ନୀତିନିୟମ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପାଦିତ କରିବ, ସେମାନେ ଏହି ତାଲିକାରେ ନିଜ ନିଜର ନାମ ଲିପିବଦ୍ଧ କରାଇବା ପାଇଁ ଖୁବ୍ ଜୋର୍‌ରେ ଲାଗିପଡ଼ିବେ ।

ଯଦି ସମୃଦ୍ଧିର ଦିଗ୍‌ବଳୟକୁ ଆମେ ଆହୁରି ଟିକେ ସଂପ୍ରସାରିତ କରି ପାରିବା, ତେବେ ଆମେ ପରିଲକ୍ଷିତ କରିବା ଯେ ଇଣ୍ଡୋନେସିଆ ମଧ୍ୟ ଗୋଟିଏ ସମୃଦ୍ଧଶାଳୀ ରାଷ୍ଟ୍ର ହେବପାଇଁ ଖୁବ୍ ଯୋର୍‌ରେ ଦୌଡ଼ ଲଗେଇ ଦେଇଛି ଏବଂ ମାଲେସିଆ ଶୀର୍ଷ ୧୫ଟି ରାଷ୍ଟ୍ରଙ୍କ ମଧ୍ୟରେ ରହିବାର ପ୍ରବଳ ପ୍ରଚେଷ୍ଟା ଜାରିରଖିଛି । ଏ ସମସ୍ତ ଅନୁଶୀଳନ ଆମକୁ ସୂଚେଇ ଦେଉଛି ଯେ ଆଗାମୀ ଦଶକରେ ଦ୍ରୁତଶୀଳ ଭାବେ ଧାବମାନ ହେଉଥିବା ବିଶ୍ୱର ୧୬ଟି ଅର୍ଥନୈତିକ ସମୃଦ୍ଧ ରାଷ୍ଟ୍ରଙ୍କ ମଧ୍ୟରୁ ୧୧ଟି ରାଷ୍ଟ୍ର ଏସିଆ ମହାଦେଶର ରାଷ୍ଟ୍ର ହେବେ, ଯାହାକି ଏକବିଂଶ ଶତାବ୍ଦୀକୁ ଏସୀୟମାନଙ୍କ ଶତାବ୍ଦୀଭାବେ ପରିଗଣିତ କରିବ ।

ସମାଜ

ତା- ୩.୨.୨୦୦୩



# ବିଲ ଗେଟ୍ସଙ୍କ ସାଂପ୍ରତିକ ଭାରତ ଭ୍ରମଣ ଭାରତ ପାଇଁ ବାଣିଜ୍ୟିକ, ବୈଷୟିକ ଓ ଅର୍ଥନୈତିକ ସିଂହଦ୍ୱାର ଉନ୍ମୁକ୍ତ କରିବ !

ସୂଚନା ପ୍ରଯୁକ୍ତି ବିଦ୍ୟା ସହ ଜଡ଼ିତ ବିଶ୍ୱସ୍ତରୀୟ ବଡ଼ ବଡ଼ କମ୍ପାନୀମାନଙ୍କର ମୁଖ୍ୟ ପଦାଧିକାରୀମାନଙ୍କର ଉଦ୍ଦେଶ୍ୟ ପ୍ରଣୋଦିତ ଭାରତ ଭ୍ରମଣ ଭାରତୀୟଙ୍କ ଜନ ମାନସରେ ଆଜି ଆଉ ସେପରି କୌଣସି ଅସାଧାରଣ ଘଟଣା ବୋଲି ପ୍ରତୀୟମାନ ହେଉନାହିଁ । ସନ୍ ମାଇକ୍ରୋସିଷ୍ଟମର ସ୍କଟ ମ୍ୟାକନିଲି ଏବଂ ଓରାକଲ୍‌ର ଲ୍ୟାରି ଏଲିସନଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ଅତି କମ୍‌ରେ ଥରେ ନା ଥରେ ଭାରତ ପରିଭ୍ରମଣରେ ଆସିଛନ୍ତି ଏବଂ ଏସୀୟ ରାଷ୍ଟ୍ରମାନଙ୍କୁ ସେମାନଙ୍କର ବାଣିଜ୍ୟିକ ଭ୍ରମଣ କାର୍ଯ୍ୟକ୍ରମରେ ନିଶ୍ଚିତ ରୂପେ ଭାରତ ଭ୍ରମଣ ଏକ ମୁଖ୍ୟ ସ୍ଥାନ ଅଧିକାର କରିଥାଏ ।

ମାଇକ୍ରୋସଫ୍ଟର ୪୭ ବର୍ଷ ବୟସ୍କ ଅଧ୍ୟକ୍ଷ ଓ ମୁଖ୍ୟ ସଫ୍ଟୱେୟାର ଆର୍କିଟେକ୍ଟ ବିଲ୍ ଗେଟ୍ସଙ୍କ ନଭେମ୍ବର ୧୧ ତାରିଖରୁ ୧୪ ତାରିଖ ପର୍ଯ୍ୟନ୍ତ ଚାରିଦିନ ବ୍ୟାପି ଭାରତର ଚାରୋଟି ସହର ପରିଭ୍ରମଣ ଏକାଧିକ ଦୃଷ୍ଟିକୋଣରୁ ଏକ ମହତ୍ୱପୂର୍ଣ୍ଣ ଘଟଣା ବୋଲି ବିବେଚିତ ହୋଇଥାଏ । ତାଙ୍କର ଏହି ପରିଭ୍ରମଣ ତୃତୀୟ ଥର ପାଇଁ ଭାରତ ପରିଭ୍ରମଣ ଥିଲା, ଯାହାକି ଭାରତ ପାଇଁ କେବଳ ଏକ ସ୍ୱତନ୍ତ୍ର ପରିଭ୍ରମଣ ନ ଥିଲା; ପରନ୍ତୁ ଏହା ଏକ ଦୀର୍ଘକାଳୀନ ଭାରତ ପରିଭ୍ରମଣ ଥିଲା । ସେ ଏକ ସ୍ୱତନ୍ତ୍ର ସିଆଟେଲ୍ -ଭାରତ - ସିଆଟେଲ ବିମାନରେ ଏହି ଯାତ୍ରା ସମ୍ପାଦିତ କରିଥିଲେ । ଭାରତରେ ତାଙ୍କର ଚାରି ଦିନର ରହଣି ମଧ୍ୟରେ ସେ ଗୋଟିଏ ଦିନ ସମ୍ପୂର୍ଣ୍ଣ ଭାବେ ସାମାଜିକ କାର୍ଯ୍ୟକ୍ରମ ପାଇଁ ଉତ୍ସର୍ଗ କରିଥିଲେ ।

ପ୍ରଥମ ଥର ପାଇଁ ବିଲ୍ ଗେଟ୍ସ ବିଶ୍ୱର ସର୍ବଶ୍ରେଷ୍ଠ ଧନୀ ବ୍ୟକ୍ତିର ମାନ୍ୟତାକୁ ବଜାଇ ରଖି 'ବିଲ୍ ଏବଂ ମେଲିଣ୍ଡା ଗେଟ୍ସ ଫାଉଣ୍ଡେସନ' ମାଧ୍ୟମରେ ଭାରତରେ

ଭୟାବହ ଏଡ୍‌ସ ରୋଗର ପ୍ରତିକାର ଓ ଚିକିତ୍ସା ପାଇଁ ୧୦୦ ମିଲିୟନ ଡଲାରର ଆର୍ଥିକ ସାହାଯ୍ୟ ଘୋଷଣା କରିଥିଲେ । ବିଶ୍ୱ ଜ୍ଞାନ ସାମ୍ରାଜ୍ୟର ଏହି ମହାମହିମ ସମ୍ରାଟ, ବିଶ୍ୱର ଏକ ନମ୍ବର ଧନାଢ୍ୟ ପୁରୁଷ କମ୍ପ୍ୟୁଟର ଦୁନିଆକୁ 'ଉଇଣ୍ଡୋଜ' ଭଳି ବିରଳ ଉପହାର ପ୍ରଦାନ କରିଥିବା ବିଲ ଗେଟ୍ସ (ଉଇଲିୟମ ଏଚ୍.ଗେଟ୍ସ-୩) ତାଙ୍କର ଭାରତ ଭ୍ରମଣକୁ ବ୍ୟବସାୟୀକ ଦୃଷ୍ଟିକୋଣରୁ ଫଳପ୍ରଦ କରିବା ପାଇଁ ମଧ ଚେଷ୍ଟିତ ଥିଲେ । ତାଙ୍କର ଶିରା ପ୍ରଶିରାରେ ଜଣେ ସଫଳ ବ୍ୟବସାୟୀର ରକ୍ତ ଯେ ଦୌଡୁଛି, ତାହା ସେ ଅଙ୍ଗେ ଅଙ୍ଗେ ଉପଲବ୍ଧ କରୁଥିଲେ । ଆଗାମୀ ୩ ବର୍ଷ ମଧ୍ୟରେ ଭାରତରେ ବିଭିନ୍ନ ବ୍ୟବସାୟ କ୍ଷେତ୍ରରେ ୪୦୦ ମିଲିୟନ ଡଲାରର ପୁଞ୍ଜି ଲଗାଣ ପାଇଁ ମୁକ୍ତ କଣ୍ଠରେ ଘୋଷଣା କରିବା ପ୍ରମାଣ କରୁଛି ଯେ ସେ ଭାରତର ସଫ୍ଟୱେୟାର ସଂପ୍ରଦାୟ ସହ ହାତରେ ହାତ ମିଳାଇ ତାଙ୍କର ସଫ୍ଟୱେୟାର ଏଜେଣ୍ଡାକୁ ରଙ୍ଗ ତୂଳୀରେ ଶେଷ ସ୍ପର୍ଶ ଦେବାକୁ ଚାହାଁନ୍ତି, ଯାହାକି ଭାରତର ଗୌରବୋଜ୍ୱଳ ସଫ୍ଟୱେୟାର ଶିଳ୍ପକୁ ଗଗନସ୍ପର୍ଶୀ ସଫଳତା ପ୍ରଦାନ କରିବ । ଏହି ୪୦୦ ମିଲିୟନ ଡଲାର ବା ପ୍ରାୟ ୨୦୦୦ କୋଟି ଟଙ୍କା ମାଇକ୍ରୋସଫ୍ଟ ଦ୍ୱାରା ନିମ୍ନଲିଖିତ ଉପାୟରେ ଆଗମୀ ୩ ବର୍ଷ ମଧ୍ୟରେ ଭାରତବର୍ଷରେ ଖର୍ଚ୍ଚ ହେବାର ଯୋଜନା ରଖାଯାଇଛି ।

(୧) ହାଇଦ୍ରାବାଦରେ ସ୍ଥାପିତ ହେବାକୁ ଯାଉଥିବା 'ମାଇକ୍ରୋସଫ୍ଟ ଇଣ୍ଡିଆ ଡେଭଲପମେଣ୍ଟ ସେଣ୍ଟର' ପାଇଁ ୫୦୦ କୋଟି ଟଙ୍କା ବ୍ୟୟ ହେବ ।

(୨) 'ପ୍ରୋଜେକ୍ଟ ଶିକ୍ଷା' ପାଇଁ ୧୦୦ କୋଟି ଟଙ୍କା ବ୍ୟୟ ହେବ, ଯାହାକି ଭାରତବର୍ଷର ୮୦ ହଜାର ସ୍କୁଲ ଶିକ୍ଷକ ଓ ୩.୫ ନିୟୁତ ଛାତ୍ରଙ୍କୁ ସୂଚନା ପ୍ରଯୁକ୍ତି ବିଦ୍ୟା ଶିକ୍ଷା ପ୍ରଦାନ କରିବ ।

(୩) ୨୦୦୦ କୋଟି ଟଙ୍କାର କିୟଦ୍‌ଅଂଶ ବିଭିନ୍ନ ରାଜ୍ୟ ସରକାରଙ୍କ ସହଯୋଗରେ ୧୦ଟି ମାଇକ୍ରୋସଫ୍ଟ ଇନଫରମେସନ୍ ଟେକ୍ନୋଲୋଜି ଏକାଡ଼େମୀ କେନ୍ଦ୍ରର ସ୍ଥାପନରେ ବିନିଯୋଗ ହେବ ।

(୪) ମାଇକ୍ରୋସଫ୍ଟ ପ୍ରୋଡକ୍ଟ ଗୁଡ଼ିକର ବିଭିନ୍ନ ଭାରତୀୟ ଭାଷାରେ ଉପଲବ୍ଧତା ବାବଦରେ ଏହି ଅର୍ଥର କିଛି ଅଂଶ ବ୍ୟୟ ହେବ ।

(୫) ଏହି ୨୦୦୦ କୋଟି ଟଙ୍କାର ଏକ ମୋଟା ଅଂଶ ପ୍ରାୟ ୧୦୦୦ କୋଟି ଟଙ୍କାରୁ ବେଶୀ ଭାରତର ଯଶସ୍ୱୀ ଓ ସ୍ୱନାମଧନ୍ୟ ସଫ୍ଟୱେୟାର କମ୍ପାନୀ

'ଇନ୍‌ଫୋସିସ୍' ଓ 'ୱିପ୍ରୋ' ସହ 'ଇଣ୍ଡଷ୍ଟ୍ରି ପାର୍ଟନରସିପ୍' ବାବଦରେ ବ୍ୟୟ ହେବ ।

ମାଇକ୍ରୋସଫ୍ଟ ଦ୍ୱାରା ଭାରତରେ ଏହି ପୁଞ୍ଜି ଲଗାଣ ମାଇକ୍ରୋସଫ୍ଟକୁ ଆଇ.ବି.ଏମ୍ ଓ ଲାଇନକ୍ସ ପରି ବିଶ୍ୱବିଖ୍ୟାତ ଆଇ.ଟି. କମ୍ପାନୀ ଏବଂ ବିଶ୍ୱ ସଫ୍ଟୱେୟାର ରଣାଙ୍ଗନରେ ଆର୍ବିଭାବ ହେବାକୁ ଥିବା ଭବିଷ୍ୟତର ଅନ୍ୟାନ୍ୟ ସଫ୍ଟୱେୟାର କମ୍ପାନୀମାନଙ୍କ ସହ ମୁହାଁମୁହିଁ ହେବାକୁ ଯଥୋଚିତ ଶକ୍ତି ପ୍ରଦାନ କରିବ । ମାଇକ୍ରୋସଫ୍ଟର ଭବିଷ୍ୟତ ଷ୍ଟ୍ରାଟେଜୀର ସଫଳ ରୂପାୟନ ପାଇଁ ଭାରତ ହିଁ ଏକ ଉପଯୁକ୍ତ ଖେଳ ପଡ଼ିଆ - ଏହା ଦିନ ପରେ ଦିନ ସାବ୍ୟସ୍ତ ହୋଇ ଚାଲିଛି । ପୃଥିବୀର ମହା ଧନାଢ଼୍ୟ ବ୍ୟକ୍ତିଙ୍କର ୪ ଦିନ ବ୍ୟାପି ଏହି ହାଡ଼ଭଙ୍ଗା ଦୁରୂହ ବାଣିଜ୍ୟିକ ଭ୍ରମଣ ଭାରତୀୟ ମିଡ଼ିଆ ଓ ସୂଚ଼ନା ପ୍ରଯୁକ୍ତି ବିଦ୍ୟା ସହ ଜଡ଼ିତ ଶିଳ୍ପ ଗୋଷ୍ଠୀଙ୍କୁ ପାଦର ଗୋଇଠିରେ ଠିଆ କରେଇ ରଖିଥିଲା । ଅଣପ୍ରମାଣ ଯୋଗ୍ୟ ସୂତ୍ରରୁ ପ୍ରକାଶ ଯେ ବିଲ ଗେଟ୍ସ ଯେତେବେଳେ ଆମେରିକା ସିଆଟେଲ ଛାଡ଼ିଲେ, ସେତେବେଳେ ପ୍ରକୃତରେ ତାଙ୍କ ପିଠିରେ ଦୁରୂହ ଯନ୍ତ୍ରଣା ଅନୁଭବ କରୁଥିଲେ ।

ବିଲ୍ ଗେଟ୍ସ ତାଙ୍କ ଘରୋଇ ଜେଟ ପ୍ଲେନରେ ସିଧା ସିଆଟେଲରୁ ଆସି ଦିଲ୍ଲୀରେ ନଭେମ୍ବର ୧୧ ତାରିଖ ଦିନ ପହଞ୍ଚିଥିଲେ ଏବଂ ପୁରାଦିନ ତମାମ 'ବିଲ ଓ ମେଲିଣ୍ଡା ଗେଟ୍ସ ଫାଉଣ୍ଡେସନ'ର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦାନ କରିଥିଲେ । ସେ ମଧ ରାଷ୍ଟ୍ରପତି ଡଃ.ଏ.ପି.ଜେ ଅବଦୁଲ କଲାମ ଓ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀଙ୍କୁ ସେଦିନ ସାକ୍ଷାତ କରିଥିଲେ । ପରନ୍ତୁ ଏହି ଦୁଇ ମିଟିଂର ପୁଙ୍ଖାନୁପୁଙ୍ଖ ବିବରଣ ବିଷୟରେ ଜନସାଧାରଣ ଅବଗତ ହୋଇ ପାରି ନ ଥିଲେ । ବିଲ ଗେଟ୍ସ ମଧ ସେଦିନ କେତେକ ଏଡ଼୍‌ସ ରୋଗୀଙ୍କୁ ସାକ୍ଷାତ କରିଥିଲେ ଓ ସେମାନଙ୍କ ସହ ବାର୍ତ୍ତାଳାପ କରି କିଛି ସମୟ ବିତାଇଥିଲେ ।

ତା'ପର ଦିନ ଅର୍ଥାତ ୧୨ ନଭେମ୍ବର ଦିନ ବିଲ ଗେଟ୍ସ ପୁରା ଦମ୍‌ରେ ବାଣିଜ୍ୟିକ ତାଣ୍ଡାକୁ ଆସିଯାଇ ସଞ୍ଚାର ଓ ସୂଚ଼ନା ପ୍ରଯୁକ୍ତି ବିଦ୍ୟା ବିଭାଗର ମନ୍ତ୍ରୀ ପ୍ରମୋଦ ମହାଜନଙ୍କୁ ତାଙ୍କ ବାସଭବନରେ ସାକ୍ଷାତ କରିଥିଲେ । ସେ ମନ୍ତ୍ରୀ ମହୋଦୟଙ୍କୁ ଆଶ୍ୱାସନା ଦେଇ କହିଥିଲେ ଯେ ଭାରତ ସରକାରଙ୍କ 'ବିଦ୍ୟା ବାହିନୀ' ପ୍ରକଳ୍ପରେ ସେ ନିଶ୍ଚିତ ରୂପେ ଭାଗ ନେବେ ଏବଂ ଏ ବାବଦରେ ୨୦ ମିଲିୟନ ଡଲାର ବ୍ୟୟ କରି ଟ୍ରେନିଂ ଓ ସ୍କିଲ ସପୋର୍ଟ ଯୋଗାଇ ଦେବେ । ଭାରତ ସରକାରଙ୍କ

ଦ୍ୱାରା ସଂପ୍ରତି କାର୍ଯ୍ୟକାରୀ ହେଉଥିବା ୨୦୦୦ କୋଟି ଟଙ୍କାର ଏକ ପ୍ରକଳ୍ପ, ଯାହାକି ଏବେ ପାଇଲଟ ପ୍ରୋଜେକ୍ଟ ସ୍ତରରେ ଅଛି; ତାକୁ ସମଗ୍ର ରାଷ୍ଟ୍ରରେ କାର୍ଯ୍ୟକାରୀ କରାଯାଇ ପ୍ରାଥମିକ ସ୍କୁଲ ସ୍ତରରେ କମ୍ପ୍ୟୁଟର ଶିକ୍ଷା ପ୍ରଦାନ କରିବାକୁ ବିନିଯୋଗ ହେବ । ମନ୍ତ୍ରୀ ମହୋଦୟ ବିଲ ଗେଟ୍ସଙ୍କୁ 'ମିଡ଼ିଆ ଲ୍ୟାବ୍ ଏସିଆ ପ୍ରୋଜେକ୍ଟ'ରେ ଭାଗ ନେଇ ଏଥିରେ ଏକ ମିଲିୟନ ଡଲାରର ପୁଞ୍ଜି ବିନିଯୋଗ କରିବାକୁ ପ୍ରବର୍ତ୍ତାଇ ଥିଲେ ।

ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ - ମିଡ଼ିଆ ସହ ସାକ୍ଷାତକାର ସମୟରେ ବିଲ ଗେଟ୍ସ ଯେ ଜଣେ ପକ୍କା ଟେକ୍ନୋଲୋଜି ଟ୍ରେଡ଼ର, ତାହା ସ୍ପଷ୍ଟ ଭାବେ ବାରି ହୋଇ ଯାଉଥିଲା । ଏହି ବାର୍ତ୍ତାଳାପରେ ସେ ମାଇକ୍ରୋସଫ୍ଟର 'ଇଣ୍ଡିଆ ପ୍ଲାନ' ବିଷୟରେ ସବିଶେଷ ବିବରଣୀ ପ୍ରଦାନ କରିଥିଲେ ଏବଂ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକ ଅର୍ଥାତ୍ 'ଡିଜିଟାଲ ଡିକେଡ଼' ୨୦୦୦ ରୁ ୨୦୦୯ ମଧ୍ୟରେ ମାଇକ୍ରୋସଫ୍ଟର 'ଡଟ ନେଟ' ଭିଜନ୍ ସଂକ୍ରାନ୍ତୀୟ କାର୍ଯ୍ୟକ୍ରମ ସମ୍ବନ୍ଧରେ ମଧ୍ୟ ଜ୍ଞାତବ୍ୟ ତଥ୍ୟାବଳୀ ପ୍ରଦାନ କରିଥିଲେ ।

ଏହି 'ଡିଜିଟାଲ ଡିକେଡ଼' ରେ କମ୍ପ୍ୟୁଟର ହାର୍ଡ଼ୱେୟାର ଅଧିକରୁ ଅଧିକତର ଶକ୍ତିଶାଳୀ ହେବ ଏବଂ ସଫ୍ଟୱେୟାରର ବ୍ୟବହାର କରିବା ଅଧିକ ସହଜସାଧ୍ୟ ହୋଇଯିବ । ସଫ୍ଟୱେୟାର ଅଧିକ ଉତ୍ପାଦକତା ପ୍ରଦାନ କରିବା ସଙ୍ଗେ ସଙ୍ଗେ ମନୋରଞ୍ଜନର ଏକ ମୁକ୍ତ ମାଧ୍ୟମ ଭାବେ ସାବ୍ୟସ୍ତ ହେବ । ଏହି ଦଶକ ପାଇଁ ତାଙ୍କର ଦୃଷ୍ଟିକୋଣର ବର୍ଣ୍ଣନା କରି ବିଲ ଗେଟ୍ସ କୁହନ୍ତି ଯେ ଆମର ଅର୍ଥ ମୁଖ୍ୟତଃ କମ୍ପ୍ୟୁଟର କିଣିବା, ଡିଜିଟାଲ ଫର୍ମରେ ସିନେମା ଓ ଛବିଗୁଡ଼ିକୁ ସଂରକ୍ଷଣ କରି ରଖିବା, ସମ୍ବାଦପତ୍ର ଓ ମ୍ୟାଗାଜିନଗୁଡ଼ିକ କମ୍ପୁଟରରେ ପାଠ କରିବା ଆଦି ବାବଦରେ ଖର୍ଚ୍ଚ ହେବ । ଆମର ଏ ସମସ୍ତ ଆବଶ୍ୟକତା ସରଳରୁ ଅତି ସରଳ ରାସ୍ତା ଖୋଜି ବୁଲିବ ଏବଂ ଟାବ୍ଲେଟ ପର୍ସନାଲ କମ୍ପ୍ୟୁଟର (ଟାବ୍ଲେଟ ପି.ସି.) ପାଖରେ ଆମକୁ ପହଞ୍ଚାଇ ଦେବ । ସେ ଏହି ସାମ୍ବାଦିକ ସମ୍ମିଳନୀରେ ଏକ ଟାବ୍ଲେଟ ପର୍ସନାଲ କମ୍ପୁଟରର ପ୍ରଦର୍ଶନ କରିଥିଲେ, ଯାହାକି 'ଇଉଣ୍ଡୋଜ-ଏକ୍ସ.ପି' ଉପରେ ପର୍ଯ୍ୟବେକ୍ଷିତ ଥିଲା ଏବଂ ମାତ୍ର ଏକ ସପ୍ତାହ ପୂର୍ବରୁ ମାଇକ୍ରୋସଫ୍ଟ ଦ୍ୱାରା ଆମେରିକାରେ ଲଞ୍ଚ ହୋଇଛି ।

ବିଲ ଗେଟ୍ସ କୁହନ୍ତି ଯେ ସଫ୍ଟୱୟାରର ବିକାଶ ପାଇଁ ମୁଖ୍ୟ ପ୍ରକଳ୍ପଗୁଡ଼ିକ ହେଲା- ସିକୁରିଟି, ପ୍ରାଇଭେସି, କମ୍ପ୍ୟୁନିକେସନ୍ସ ଏବଂ କମ୍ପ୍ୟୁଟରର ସ୍କିନ ଦକ୍ଷତା । ସେ କୁହନ୍ତି ଯେ ଆମର ସମସ୍ତ ବିକାଶର କେନ୍ଦ୍ରସ୍ଥଳୀ ଭାବେ 'ଇଣ୍ଟରନେଟ' କାର୍ଯ୍ୟ କରି ଚାଲିବ ଏବଂ 'ୱେବ ସର୍ଭିସେସ' ସୂଚନା ପ୍ରଯୁକ୍ତି ବିଦ୍ୟା ସେକ୍ଟରର ନେତୃତ୍ୱକୁ ଏହି ଦଶକରେ ପୂର୍ଣ୍ଣ ଭାବେ ଜାହିର କରିବ । ମାଇକ୍ରୋସଫ୍ଟ ସଦାସର୍ବଦା ଏକ ଦୀର୍ଘକାଳୀନ ଦୃଶ୍ୟପଟ୍ଟର ଅବତାରଣା କରିଥାଏ ଏବଂ ୨୦୧୦ ମସିହା ସୁଦ୍ଧା ଆଇ.ଟି. ସେକ୍ଟର ଯେଉଁ ସତ୍ୟତାର ସାମନା ସାମନି ହେବାକୁ ଯାଉଛି, ସେହି ସତ୍ୟତାର ଉପର ସ୍ତରକୁ ଆମେ ଯାହାକିଛି ଏ ପର୍ଯ୍ୟନ୍ତ ନଖରେ ହିଁ ଟିକେ ଛଡ଼େଇଛୁ । ଆମେ ଏବେ 'ଡଟ ନେଟ' ଉପରେ ଆମର ଲକ୍ଷ୍ୟ କେନ୍ଦ୍ରୀଭୂତ କରିଛୁ ଏବଂ ଏ ନେଇ ଯାହା କିଛି ପୁଞ୍ଜି ଲଗାଣ କରିଛୁ, ତାହା ନେଇ ଆମେ ସନ୍ତୁଷ୍ଟ ଏବଂ ଏଥିରେ ଆମକୁ ସହଯୋଗ ପ୍ରଦାନ କରିଥିବା ପାର୍ଟନରମାନଙ୍କ ପାଖରେ ମଧ୍ୟ ଆମେ ଋଣୀ ।

ମାଇକ୍ରୋସଫ୍ଟ କମ୍ପାନୀର 'ଇଣ୍ଡିଆ ପ୍ଲାନ୍' ଉପରେ ଆଲୋକପାତ କରି ବିଲ ଗେଟ୍ସ କୁହନ୍ତି ଯେ ମାଇକ୍ରୋସଫ୍ଟ ଭାରତର ବିଦ୍ୟାଳୟମାନଙ୍କରେ କମ୍ପ୍ୟୁଟର ଶିକ୍ଷାର ବହୁଳ ପ୍ରସାର ଉପରେ ତା'ର ଲକ୍ଷ୍ୟ କେନ୍ଦ୍ରୀଭୂତ କରିବା ସଙ୍ଗେ ସଙ୍ଗେ କ୍ରେତାଙ୍କ ଆବଶ୍ୟକତାନୁଯାୟୀ ଆଞ୍ଚଳିକ ଭାଷାରେ ସଫ୍ଟୱେୟାର ବିକାଶ, ଡଟ ନେଟ ଫ୍ରେମ-ୱାର୍କର ଚାରିକଡ଼େ ଏକ ପ୍ରତିଧ୍ୱନୀ ବ୍ୟବସ୍ଥାର ସୃଷ୍ଟି ପାଇଁ ସହଯୋଗୀମାନଙ୍କ ବିକାଶ ଏବଂ ହାଇଦ୍ରାବାଦସ୍ଥିତ କମ୍ପାନୀର ସଫ୍ଟୱେୟାର ଡେଭଲପମେଣ୍ଟ ସେଣ୍ଟରରେ ଅତ୍ୟନ୍ତ ମୂଲ୍ୟବାନ ପ୍ରଡ଼କ୍ଟର ବିକାଶ ବ୍ୟବସ୍ଥାର ସଂପ୍ରସାରଣ ଆଦି କାର୍ଯ୍ୟକ୍ରମ ହାତକୁ ନେବ । ମାଇକ୍ରୋସଫ୍ଟ ମଧ୍ୟ ତା'ର ସାମଗ୍ରୀକ ପୁଞ୍ଜି ଲଗାଣ ପରିମାଣରୁ ୧୦୦ ମିଲିୟନ ଡଲାର ବିକାଶ ବ୍ୟବସ୍ଥା ବାବଦରେ ବ୍ୟୟ କରିବ, ଯାହାକି ସାଂପ୍ରତିକ ୨୦୦ ଇଞ୍ଜିନିୟର ବଦଳରେ ୫୦୦ ଇଞ୍ଜିନିୟରଙ୍କ ପାଇଁ ପର୍ଯ୍ୟାପ୍ତ ହେବ ।

ଲାଇନକ୍ସ, ମାଇକ୍ରୋସଫ୍ଟ 'ଉଇଣ୍ଡୋଜ'ର ପ୍ରବଳ ପ୍ରତିଦ୍ୱନ୍ଦୀ ଭାବେ ଆସି ଠିଆ ହେଲାଣି - ଏହି କଥାପଦକୁ ବିଲ ଗେଟ୍ସ ହସି ଉଡ଼େଇ ଦିଅନ୍ତି । ସେ କୁହନ୍ତି ଯେ ମାଇକ୍ରୋସଫ୍ଟ ନୁହେଁ, ବରଂ ସନ୍ ମାଇକ୍ରୋସିଷ୍ଟମ ଲାଇନକ୍ସ ପାଖରେ ନିଜର ମାର୍କେଟ ସେୟାର ହରେଇ ବସୁଛି ।

ତା'ପର ଦିନ ଅର୍ଥାତ୍ ନଭେମ୍ବର ୧୨ ତାରିଖ ଦିନ ବିଲ ଗେଟ୍ସ ତାଙ୍କର ହଜାର ହଜାର ଗୁଣଗ୍ରାହୀ, ଶୁଭଚିନ୍ତକ ଓ ସମ ମାନସିକ ସ୍ତର ଯୁକ୍ତ ସଫ୍ଟୱେୟାର ବୃତ୍ତିଧାରୀମାନଙ୍କୁ ଭାରତର ସିଲିକନ୍ ଭ୍ୟାଲି ବାଙ୍ଗାଲୋର ସହରରେ ଭେଟିଥିଲେ ଓ ସେମାନଙ୍କ ସହ ଉଚ୍ଚ ବୈଷୟିକ ଭାବର ଆଦାନ ପ୍ରଦାନ ମଧ କରିଥିଲେ । ସେ ସକାଳେ ଇନ୍‌ଫୋସିସ୍‌ର କ୍ୟାମ୍ପସ୍ ମଧ୍ୟରେ ପ୍ରାୟ ୪ ହଜାର ସଫ୍ଟୱେୟାର ବିକାଶକାରୀମାନଙ୍କୁ ୪୫ ମିନିଟ ଧରି ତାଙ୍କର ସୁଚିନ୍ତିତ ଅଭିଭାଷଣ ପ୍ରଦାନ କରିଥିଲେ । ଭାଷଣ ପ୍ରସଙ୍ଗରେ ସେ ଆଗକୁ ଆସୁଥିବା ଅଭୂତପୂର୍ବ ସଫ୍ଟୱେୟାର ବିପ୍ଳବ ଉପରେ ଗଭୀର ଆଲୋକପାତ କରିଥିଲେ ଏବଂ ଭାରତୀୟ ସଫ୍ଟୱେୟାର ବିଶେଷଜ୍ଞମାନଙ୍କ ପାଇଁ ଅପୂର୍ବ ସୁଯୋଗର ଅଫୁରନ୍ତ ଭଣ୍ଡାର ଆଗକୁ ଯେ ମେଲା ରହିଛି, ସେ ବିଷୟରେ ମଧ ତନ୍ନ ତନ୍ନ କରି ଆଲୋଚନା କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଭାରତବର୍ଷରେ ମାଇକ୍ରୋସଫ୍ଟର ଏକ ବୃହତ୍ ସଫ୍ଟୱେୟାର ପାର୍ଟନର ଭାବେ ଇନ୍‌ଫୋସିସ୍‌ର ଅବଦାନ ଅନସ୍ୱୀକାର୍ଯ୍ୟ ।

ବିଲ ଗେଟ୍ସ 'ଡିଜିଟାଲ ଡିକେଡ଼' ଉପରେ ତାଙ୍କର ମହତ୍ ଚିନ୍ତାଧାରାର ପୁନରାବୃତ୍ତି କରି କୁହନ୍ତି ଯେ ସଫ୍ଟୱେୟାରର ଭବିଷ୍ୟତ ଉଜ୍ଜ୍ୱଳମୟ ଅଟେ । ଏକ ବିରାଟ କମ୍ପ୍ୟୁଟର ବିପ୍ଳବର ଏହା ଅଯମାରମ୍ଭ ମାତ୍ର ଏବଂ ଏହି ବିପ୍ଳବରେ ଭାରତୀୟ ସଫ୍ଟୱେୟାର ସଂପ୍ରଦାୟ ଏକ ଅତ୍ୟନ୍ତ ଯୁଗାନ୍ତକାରୀ ଭୂମିକା ସମ୍ପାଦିତ କରିବେ । ଏହି 'ଡିଜିଟାଲ ଡିକେଡ୍'ରେ ସେମାନେ ନୂଆ ନୂଆ ଜ୍ଞାନ କୌଶଳ ଓ ସାଧନର ବିକାଶ କରି ଏହି ପ୍ରକ୍ରିୟାର ମୁଣ୍ଡି ମାରିବେ । ସଫ୍ଟୱେୟାର କିପରି ଛୋଟ ଛୋଟ ଯନ୍ତ୍ରପାତି ଓ କୁଶଳୀ ପଣିଆର ଉପଯୋଗ ମାଧ୍ୟମରେ ମଣିଷର ନିତିଦିନିଆ ବ୍ୟବହାରରେ ସଠିକ୍ ବିନିଯୋଗ ହୋଇପାରିବ, ଟାବ୍‌ଲେଟ୍ ପର୍ସନାଲ କମ୍ପ୍ୟୁଟର ତା'ର ଏକ ଜ୍ୱଳନ୍ତ ଉଦାହରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଲ ଗେଟ୍ସ ମଧ ଓ୍ୱିପ୍ରୋ କ୍ୟାମ୍ପସ ପରିଭ୍ରମଣ କରି ସେଠାକାର ସଫ୍ଟୱେୟାର ବୃତ୍ତିଧାରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ବିଲ ଗେଟ୍ସ ଭାରତୀୟ ସଫ୍ଟୱେୟାର କମ୍ପାନୀମାନଙ୍କ ଦ୍ୱାରା ବିକାଶ କରାଯାଇଥିବା ସୁବିଧା ସୁଯୋଗ ଓ ସେମାନଙ୍କର ଦକ୍ଷତା ପଣିଆର ଭୂୟସୀ ପ୍ରଶଂସା ନ କରି ରହିପାରି ନ ଥିଲେ । ସେ ସେମାନଙ୍କର ବୈଷୟିକ ଜ୍ଞାନ କୌଶଳର ନିପୁଣତାକୁ

ଅବଲୋକନ କରି ଅତ୍ୟନ୍ତ ବିମୋହିତ ହୋଇଯାଇଥିଲେ । ଭାରତବର୍ଷରେ ମାଇକ୍ରୋସଫ୍ଟ ପ୍ରୋଡ଼କ୍ଟଗୁଡ଼ିକର ପ୍ରମୁଖ ଖରିଦଦାର ଏବଂ ସର୍ବବୃହତ୍ ପୁନଃବିକ୍ରେତା ଭାବେ ଖ୍ୟାତି ଲାଭ କରିଥିବା ଓ୍ୱିପ୍ରୋ ଘୋଷଣା କରିଥିଲା ଯେ ମାଇକ୍ରୋସଫ୍ଟ ଏବଂ ଓ୍ୱିପ୍ରୋ ମିଳିମିଶି ସେମାନଙ୍କର ବାଣିଜ୍ୟିକ ସାମ୍ରାଜ୍ୟର ପରିସୀମାକୁ କିପରି ବୃହତ୍ତର କରାଯାଇ ପାରିବ, ସେ ନେଇ ଖୁବ୍ ଶୀଘ୍ର ଏକ ମିଳିତ ରାଜିନାମାରେ ସ୍ୱାକ୍ଷର କରିବେ । ଏବେ ଓ୍ୱିପ୍ରୋର ମାଇକ୍ରୋସଫ୍ଟ ସହ ଗବେଷଣା ଓ ଉନ୍ନୟନ ସଂକ୍ରାନ୍ତୀୟ ମିଳିତ କାର୍ଯ୍ୟକ୍ରମ ସଫଳ ଭାବେ ଚାଲୁ ରହିଛି ।

ବିଲ ଗେଟ୍ସ ମତବ୍ୟକ୍ତ କରି କୁହନ୍ତି ଯେ ଭାରତର ବୃହତ୍ ସଫ୍ଟୱେୟାର କମ୍ପାନୀମାନେ ମାଇକ୍ରୋସଫ୍ଟର 'ଡଟକମ୍' ଭିଜନ୍‌କୁ ସଫଳ ରୂପାୟନ କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦିତ କରି ପାରିବେ । ଭାରତବର୍ଷରେ ମାଇକ୍ରୋସଫ୍ଟର ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ଏହି ବୃହତ୍ ସଫ୍ଟୱେୟାର କମ୍ପାନୀଗୁଡ଼ିକର ବିଜ୍ଞାନାଗାରରେ ହିଁ ସମ୍ପାଦିତ ହୋଇଥାଏ । ମାଇକ୍ରୋସଫ୍ଟ ଟେକ୍ନୋଲୋଜିର ଚାରିକଡ଼ରେ ଏକ ଇକୋ-ସିଷ୍ଟମ ବା ସୁସ୍ଥ ପାରିବେଶିକ ବ୍ୟବସ୍ଥାର ସୃଷ୍ଟି କରିବାରେ ଭାରତୀୟ ସଫ୍ଟୱେୟାର କମ୍ପାନୀମାନେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦିତ କରିପାରିବେ ।

ମାଇକ୍ରୋସଫ୍ଟର ଚିଫ୍ ଆର୍କିଟେକ୍ଟ ବିଲ୍ ଗେଟ୍ସ ରାଜ୍ୟ ସରକାର ଓ କେତୋଟି ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ଭେଟିବାର ପରମ ସୁଯୋଗକୁ ହାତଛଡ଼ା କରି ନ ଥିଲେ । ବହୁ ରାଜ୍ୟ ସରକାର ଇ-ଗଭରନାନ୍ସ ବା ଇଲୋକ୍ଟ୍ରୋନିକ ପ୍ରଶାସନ ବ୍ୟବସ୍ଥାର ପ୍ରଚଳନ କରିବାକୁ ଯାଉଥିବାରୁ ଏହି ଆଲୋଚନା ସେହି ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା ଏବଂ ଏହି କାର୍ଯ୍ୟକ୍ରମକୁ ଫଳପ୍ରଦ କରାଇବା ପାଇଁ ମାଇକ୍ରୋସଫ୍ଟ ଭାରତବର୍ଷରେ ତା'ର ବାଣିଜ୍ୟିକ ପକ୍ଷରା ମେଲେଇ ଦେବାକୁ ଗୋଡ଼ ଟେକି ବସି ରହିଛି । କର୍ଣ୍ଣାଟକ ସରକାର 'ବାଙ୍ଗାଲୋର ଓ୍ୱାନ' ନାମକ ଏକ ୱେବ ବ୍ୟବସ୍ଥା ବିଲ ଗେଟ୍ସଙ୍କ ପାଖରେ ଉପସ୍ଥାପନା କଲେ, ଯାହାକି ମାଇକ୍ରୋସଫ୍ଟ ସହ ମିଳିତ ଭାବେ ବିକାଶ ଲାଭ କରିବ । ଏଥିପାଇଁ ମାଇକ୍ରୋସଫ୍ଟ ଓ କର୍ଣ୍ଣାଟକ ରାଜ୍ୟ ସରକାରଙ୍କ ମଧ୍ୟରେ ଏକ ମିଳିତ ରାଜିନାମା ସ୍ୱାକ୍ଷରିତ ହୋଇଛି । ଏହି ରାଜିନାମାନୁଯାୟୀ ମାଇକ୍ରୋସଫ୍ଟ ମୁଖ୍ୟ ବୈଷୟିକ ସହଯୋଗୀ ଭାବେ ଏହି ପ୍ରକଳ୍ପରେ କାର୍ଯ୍ୟ କରିବ । ଏହି ମିଳିତ ସହଯୋଗ ବ୍ୟବସ୍ଥା ବାଙ୍ଗାଲୋରରେ ଥିବା

ସମସ୍ତ ସରକାରୀ ଓ ଅର୍ଦ୍ଧ ସରକାରୀ ବିଭାଗମାନେ ପ୍ରଦାନ କରୁଥିବା ସେବା ବ୍ୟବସ୍ଥାକୁ ଗୋଟିଏ ଛାତ ତଳେ ଆଣି ଠିଆ କରାଇବ ।

ବିଲ୍ ଗେଟ୍ସ ମଧ୍ୟ ତାଙ୍କ ରହଣିକାଳ ମଧ୍ୟରେ ମୁମ୍ବାଇ ପରିଦର୍ଶନ କରିଥିଲେ ଏବଂ ହାଇଦ୍ରାବାଦରେ ଗୋଟିଏ ଦିନ ମାଇକ୍ରୋସଫ୍ଟର ଇଣ୍ଡିଆ ଡେଭଲପମେଣ୍ଟ ସେଣ୍ଟରର ଇଞ୍ଜିନିୟରମାନଙ୍କ ସହ ବିତାଇଥିଲେ । ଏହା ବିଶ୍ୱାସ କରାଯାଉଛି ଯେ ମାଇକ୍ରୋସଫ୍ଟ ତା'ର ହାଇଦ୍ରାବାଦ ଡେଭଲପମେଣ୍ଟ ସେଣ୍ଟର ଜରିଆରେ କେତୋଟି ଇନୋଭେଟିଭ ପ୍ରୋଡ଼କ୍ଟ ଡେଭଲପମେଣ୍ଟ ଚିନ୍ତାଧାରାକୁ ଫଳପ୍ରସୂ କରିବା ପାଇଁ ମନ ସ୍ଥିର କରି ସାରିଛି । ଗତ ୨ ବର୍ଷ ମଧ୍ୟରେ ଟେଲି କମ୍ୟୁନିକେସନ କ୍ଷେତ୍ରରେ ଭାରତବର୍ଷରେ ହୋଇଥିବା ଅସାଧାରଣ ପ୍ରଗତିକୁ ଭୂୟସୀ ପ୍ରଶଂସା କରି ବିଲ ଗେଟ୍ସ କୁହନ୍ତି ଯେ ଭାରତ ତା'ର ଭିତ୍ତିଭୂମିର ବିକାଶ କରିବାକୁ ତା'ର ସମସ୍ତ ଶକ୍ତି କେନ୍ଦ୍ରୀଭୂତ କରିବା ଉଚିତ, ଯଦ୍ୱାରା ବିଦେଶୀ ପୁଞ୍ଜି ଲଗାଣକାରୀମାନେ ଯଥେଷ୍ଟ ଭାବେ ପ୍ରୋତ୍ସାହିତ ହେବେ ଏବଂ ଭାରତରେ ନାନାଦି ମାନୁଫ୍ୟାକ୍‌ଚରିଂ ଶିଳ୍ପର ପ୍ରତିଷ୍ଠାରେ ମୋଟା ଅଙ୍କର ପୁଞ୍ଜିବିନିଯୋଗ କରିବେ । ସେ ଭାରତକୁ ସତର୍କ କରେଇଦେଇ କୁହନ୍ତି ଯେ ଚୀନ ଭାରତ ପାଇଁ ଏକ ନମ୍ବର ବିପଦ ଭାବେ ସାମନାରେ ଆସି ଉଭା ହେବ ଏବଂ ଆଗାମୀ ୫ ବର୍ଷ ମଧ୍ୟରେ ଚୀନ ଭାରତର ବଜାରକୁ ସମ୍ପୂର୍ଣ୍ଣ ଭାବେ ଗ୍ରାସ କରିଦେବ । ଭାରତ ମାଟିରେ ଭାରତ ପାଇଁ ଏପରି ଏକ ସତର୍କ ଘଣ୍ଟି ବଜେଇ ବିଲ ଗେଟ୍ସ ଭାରତକୁ ଅଭୟ ପ୍ରଦାନ କରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ ।

**ସମାଜ**

**ତା- ୨୩.୧୨.୨୦୦୨**



# ବିକଶିତ ଭାରତବର୍ଷର ସର୍ଜନା ପାଇଁ କଲାମଙ୍କ ଅର୍ଥନୀତି

**ଭା**ରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ବିଭାଗ ଅନ୍ତର୍ଗତ ଟେକ୍ନୋଲୋଜି ଇନଫରମେସନ୍ ଆଣ୍ଡ୍ ଫୋରକାଷ୍ଟିଂ ଆସେସ୍‌ମେଣ୍ଟ କାଉନସିଲ (ଟାଇଫ୍ୟାକ୍) 'ଦୃଶ୍ୟପଟ-୨୦୨୦ ଭାରତବର୍ଷ' ନାମରେ ଦେଶରେ ପ୍ରଥମ ଥର ପାଇଁ ଏକ କର୍ମଯୋଜନାର ଆହ୍ୱାନ କରିଥିଲା, ଯାହାକି ଟାଇଫ୍ୟାକ୍‌ର ତଦାନିନ୍ତନ ଅଧ୍ୟକ୍ଷ ଡଃ କଲାମଙ୍କ ସଭାପତିତ୍ୱରେ ଶୁଭାରମ୍ଭ ହୋଇଥିଲା । ଟାଇଫ୍ୟାକ୍ ହେଉଛି ଭାରତ ସରକାରଙ୍କ ସର୍ବପ୍ରଥମ ଅନୁଷ୍ଠାନ ଯେ କି ଏପରି ଏକ କାର୍ଯ୍ୟକ୍ରମକୁ ହାତକୁ ନେଇଥିଲା । ଏପରି କାର୍ଯ୍ୟକ୍ରମରୁ ବହୁ ସଂଖ୍ୟକ ରିପୋର୍ଟ ପ୍ରସ୍ତୁତ ହୋଇଥିଲେ ମଧ୍ୟ ଡଃ କଲାମ ତନ୍ମଧ୍ୟରୁ ମାତ୍ର ଛଅଟିକୁ ବାଛିଥିଲେ; ଯଥା - କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଯୋଗାଯୋଗ, ଅତ୍ୟାବଶ୍ୟକ ଶିଳ୍ପ ସଂସ୍ଥା ଏବଂ ଗ୍ରାମୀଣ ଅଞ୍ଚଳର ସାମଗ୍ରୀକ ଅଭିବୃଦ୍ଧି । ପି.ୟୁ.ଆର.ଏ (ପ୍ୟୁରା) ନାମକ କର୍ମଯୋଜନା ମାଧ୍ୟମରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରକ୍ଷେତ୍ରଗୁଡ଼ିକୁ ଚିହ୍ନଟ କରି ଭାରତକୁ ବିକଶିତ ରାଷ୍ଟ୍ରରେ ପରିଣତ କରିବା ପାଇଁ ଏହା ନିଶ୍ଚିତ ରୂପେ ଏକ ପ୍ରବେଶ ଦ୍ୱାରର ଭୂମିକା ସମ୍ପାଦିତ କରିବ ବୋଲି ଡଃ କଲାମ ଗଭୀର ଆଶାବାଦୀ ଅଟନ୍ତି । ଜଣେ ବ୍ୟକ୍ତି ପ୍ରଶ୍ନ ପଚାରି ପାରନ୍ତି, ଡକ୍ଟର କଲାମ କାହିଁକି ଏପରି କ୍ଷେତ୍ରଗୁଡ଼ିକୁ ଚିହ୍ନଟ କଲେ ? ପରନ୍ତୁ ନିଃସନ୍ଦେହରେ ଏହା କୁହାଯାଇ ପାରେ ଯେ ତାଙ୍କର ଦୃଷ୍ଟିଶକ୍ତି ଅତ୍ୟନ୍ତ ପ୍ରଖର ଏବଂ ଏହା ଏକ ଉଇନ୍-ଉଇନ୍ ପରିସ୍ଥିତିର ମୃଦୁ ମନ୍ଦ ସମୀରଣ ବା 'ଆପଣ ଜିତନ୍ତୁ ଏବଂ ମୁଁ ବି ଜିତେ' ଭଳି ସୌହାର୍ଦ୍ଦ୍ୟମୟ ପରିବେଶ ସୃଷ୍ଟି କରିଥାଏ । ସମ୍ପୂର୍ଣ୍ଣରୂପେ କଳୁଷିତ ରାଜନୈତିକ ବ୍ୟବସ୍ଥାର ପରିଧି ଭିତରେ ତିଷ୍ଠି ରହି ଯେଉଁଠାରେ କି କେବଳ 'ମୁଁ ଜିତେ - ଆପଣ ହାରନ୍ତୁ'ର ଅପସଂସ୍କୃତି ନିଜର ମହାଭୀମ ରୂପକୁ ପ୍ରକଟ କରିବାରେ ସମ୍ପୂର୍ଣ୍ଣରୂପେ ସିଦ୍ଧହସ୍ତ, ସେପରି ଏକ ସାମାଜିକ ଅବୟବ ଭିତରେ ଆତଜାତ ହୋଇ ରାଷ୍ଟ୍ର ନିର୍ମାଣ ଯଜ୍ଞରେ ପୁରୋଧା ହେବା ନିଶ୍ଚିତ ରୂପେ ଅସମ୍ଭବ ଏବଂ କାଠିକର ପାଠ ଅଟେ ।

ଡଃ କଲାମ ଆଗାମୀ ୧୫-୨୦ ବର୍ଷ ମଧ୍ୟରେ ଭାରତକୁ ଏକ ବିକଶିତ ରାଷ୍ଟ୍ରରେ ପରିଣତ କରିବା ପାଇଁ ଦୃଢ଼ସଂକଳ୍ପ ଏବଂ ପ୍ରତିଜ୍ଞାବଦ୍ଧ । ତାଙ୍କର ଏହି ସଂକଳ୍ପ ଭାରତର କୋଟି କୋଟି ଆବାଳ-ବୃଦ୍ଧ-ବନିତାଙ୍କୁ ରାଷ୍ଟ୍ରନିର୍ମାଣ ମନ୍ତ୍ରରେ ଦୀକ୍ଷିତ କରିବ । ହେଲେ, ଏଠାରେ ପ୍ରଶ୍ନ ଉଠୁଛି - ଗୋଟିଏ ରାଷ୍ଟ୍ରକୁ ବିକଶିତ ରାଷ୍ଟ୍ରରେ ରୂପାନ୍ତରିତ କରାଇବାକୁ ହେଲେ କ'ଣ ସବୁର ଆବଶ୍ୟକତା ପଡ଼ିଥାଏ ? ଏଠାରେ ଗୋଟିଏ ଗପର ଅବତାରଣା କରାଯାଇପାରେ । ଥରେ ଜଣେ ପୂଣ୍ୟାତ୍ମା ଋଷି ଭଗବାନଙ୍କ ଆଶୀଷ ଲାଭ କରିବା ପାଇଁ ବହୁଦିନ ଧରି ଭୋକଉପାସରେ ନିର୍ଜଳା କଷ୍ଟସାଧ୍ୟ ତପସ୍ୟା କଲେ । ଅବଶେଷରେ ପରମାତ୍ମା ଈଶ୍ୱର ଋଷିଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କୁ ଗୋଟିଏ ମାତ୍ର ବର ମାଗିବା ପାଇଁ ଅନୁମତି ଦେଲେ । ଋଷି ଜଣକ କି ବର ମାଗିବ କି ବର ମାଗିବ, ଏହିପରି ଚିନ୍ତାରେ ପଡ଼ି ଶେଷରେ ବର ମାଗିବା ଆଳରେ ଈଶ୍ୱରଙ୍କୁ ହାତ ଯୋଡ଼ି ଜଣାଇଲା - 'ହେ ଈଶ୍ୱର ଦେବ ! ଯଦି ଆପଣ ମୋ ତପସ୍ୟାରେ ସତରେ ସନ୍ତୁଷ୍ଟ ହୋଇଛନ୍ତି, ତା'ହେଲେ ମୋତେ ଏପରି ଗୋଟିଏ ବର ଦିଅନ୍ତୁ; ଯେପରି ମୁଁ ମୋ ନାତିର ନାତିକୁ କୋଳରେ ବସେଇ ନାନାବାୟା ଗୀତ ଗାଇ ଗାଇ ଆମ ପରିବାରର ସାତ ମହଲା ବିଶିଷ୍ଟ ବଙ୍ଗଳାର ଛାତ ଉପରେ ବସି ସୁନା ଥାଳିଆରେ ତାକୁ ଦୁଧଭାତ ଖୋଇଦେଉଥିବି ଏବଂ ତତ୍ ସଙ୍ଗେ ସଙ୍ଗେ ଛାତ ଉପରେ ଥିବା ଆମ ଉଦ୍ୟାନର ମନୋରମ ଶୋଭାକୁ ମଧ୍ୟ ପ୍ରାଣଭରି ଉପଭୋଗ କରୁଥିବି ।' ଋଷି ଈଶ୍ୱରଙ୍କୁ କେବଳ ଗୋଟିଏ ମାତ୍ର ବର ମାଗିଲା, ହେଲେ ସେହି ବରର ଚତୁର୍ଦ୍ଦିଗ ବ୍ୟାପ୍ତ ବିସ୍ତାରିତ କଳେବର ଥିଲା ଯଥା - ତା'ର ଦୀର୍ଘ ଜୀବନର ଆକାଂକ୍ଷା, ଉତ୍ତମ ସ୍ୱାସ୍ଥ୍ୟ ଲାଭ, ପିଢ଼ି ପରେ ପିଢ଼ି ଦାୟାଦ, ଅପର୍ଯ୍ୟାପ୍ତ ଧନ ସମ୍ପତ୍ତି, ଉତ୍ତମ ପରିବେଶ ଓ ଏହିପରି ବହୁକିଛିର କାମନା ସେଥିରେ ସନ୍ନିବେଶିତ ଥିଲା ।

ଭାରତର ସର୍ବଦିଗ ବ୍ୟାପ୍ତ ଅଭିବୃଦ୍ଧିର ଦୃଷ୍ଟିକୋଣକୁ ସଂପ୍ରସାରିତ କରାଇବା ପାଇଁ ଆମେ ଠିକ୍ ଏହିପରି ଏକ ପରିସ୍ଥିତିର ଆହ୍ୱାନ କରି ପାରିବା । ଉଦାହରଣ ସ୍ୱରୂପ ଆଗାମୀ ୧୫ ବର୍ଷ ମଧ୍ୟରେ ଭାରତବର୍ଷର ସବୁ ମାଆମାନେ ସେମାନଙ୍କର ନିଜ ନିଜର ବଙ୍ଗଳାମାନଙ୍କରେ ବସି ରହି ପରିବାରବର୍ଗଙ୍କ ସହ ଛୁଟି କଟେଇବା ପାଇଁ ଇଣ୍ଟରନେଟ୍ ମାଧ୍ୟମରେ ନୂତନ ନୂତନ ସ୍ଥାନର ସଂଧାନ କରିବାରେ ବ୍ରତୀ ଥିବେ । ଏହି ସଜ୍ଞା ମାଆମାନଙ୍କ ଉପରେ କେନ୍ଦ୍ରୀଭୂତ ଥିଲା ଏଇଥିପାଇଁ ଯେ

ଆଗାମୀ ୧୫ ବର୍ଷ ମଧ୍ୟରେ ଭାରତବର୍ଷରେ ଲିଙ୍ଗଭେଦର ପାର୍ଥକ୍ୟ ଦୂରୀଭୂତ ହେଉ, ୧୫ ବର୍ଷର ସ୍ୱଳ୍ପ ସମୟ ଜଣେଇ ଦେଉଛି ଯେ ଏହି ସମୟ ମଧ୍ୟରେ ଭାରତବର୍ଷ ଦ୍ରୁତ ଅଭିବୃଦ୍ଧିର ଧାରାକୁ ଅବଲୋକନ କରୁ, ୧୫ ବର୍ଷ ମଧ୍ୟରେ ଭାରତର ମାଆମାନେ ଇଣ୍ଟରନେଟରେ ପ୍ରବୀଣା ହୋଇଯାଆନ୍ତୁର ଅର୍ଥ ହେଲା ଭାରତବର୍ଷରେ ଉଚ୍ଚମାନ ସାକ୍ଷରତାର ହାରରେ ବୃଦ୍ଧି ଘଟୁ, ବଙ୍ଗଳାର ଅର୍ଥ ହେଲା ଉତ୍ତମ ପରିବେଶଯୁକ୍ତ ବାତାବରଣ ମଧ୍ୟରେ ଭାରତୀୟମାନେ ଜୀବିକା ନିର୍ବାହ କରନ୍ତୁ । ଏ ସମସ୍ତ ମିଳିମିଶି ତଥା ନୂତନ ସ୍ଥାନମାନଙ୍କରେ ଭାରତର ମାଆମାନେ ପରିବାର ସହ ଛୁଟି କଟେଇବା ଯଥେଷ୍ଟ ଭାବେ ପ୍ରମାଣ କରି ଦେଉଛି ଯେ ସେମାନଙ୍କର ପାଖରେ ଉଦ୍‌ବୃତ୍ତ ପୁଞ୍ଜି ରାଶି ଓ ଅସରନ୍ତି ବିତ୍ତ ମହଯୁଦ ଅଛି । ଏପରି ଏକ ଦୃଷ୍ଟିକୋଣ ସ୍ୱପ୍ନ ହୋଇ ପାରେନା । ଏହା ନିଶ୍ଚିତ ରୂପେ ସମ୍ଭବପର ହୋଇ ପାରିବ । ଏଥିପାଇଁ ଅକ୍ଳାନ୍ତ ପରିଶ୍ରମ, ପ୍ରଗାଢ଼ ଉଦ୍ୟମ, ନିଷ୍ଠା, ବଳବତ୍ତର ପ୍ରଚେଷ୍ଟା, ଧୈର୍ଯ୍ୟ, ସାହସ ଓ ଅସରନ୍ତି ସ୍ୱପ୍ନର ଇନ୍ଦ୍ରମହଲର ଆବଶ୍ୟକତା ରହିଛି ।

ସଭ୍ୟତାର ଚଳମାନ ଶକ୍ତି ଓ ଏହା ସମ୍ମୁଖୀନ ହେଉଥିବା ଅସରନ୍ତି ବାଧା ବିଘ୍ନ ଉପରେ ଟାଇଫ୍ୟାକ୍‌ର 'ଦୃଶ୍ୟପଟ୍ଟ-୨୦୨୦ ରିପୋର୍ଟ' ଅନ୍ୟ ଏକ ଦୃଷ୍ଟିକୋଣରୁ ଏହାର ଦୃଶ୍ୟପଟ୍ଟକୁ ବର୍ଣ୍ଣନା କରିଛି । ଏହା ଉଲ୍ଲେଖ କରିଛି - ବିଗତ ୩୫ ବର୍ଷ ମଧ୍ୟରେ ଦକ୍ଷିଣ କୋରିଆ ପୃଥିବୀର ଯେ କୌଣସି ରାଷ୍ଟ୍ର ଅପେକ୍ଷା ଅସାଧାରଣ ଅର୍ଥନୈତିକ ପ୍ରଗତି ହାସଲ କରି ପାରିଛି । ତେଣୁ ଆମେ ଦକ୍ଷିଣ କୋରିଆର ସଫଳତାକୁ ଏକ ସମ୍ଭାବ୍ୟ ମଡ଼େଲ ଭାବେ ଗ୍ରହଣ କରି ପାରିବା । ତା'ହେଲେ ଯାଇ ଆମେ ୨୦୨୦ ମସିହା ସୁଦ୍ଧା ଦକ୍ଷିଣ କୋରିଆ ୧୯୯୫ ମସିହାରେ ହାସଲ କରିଥିବା ପ୍ରଗତିର ସ୍ତରକୁ ଛୁଇଁ ପାରିବା ବୋଲି ଲକ୍ଷ୍ୟ ରଖି ପାରିବା । ଏଭଳି ଏକ ପରିସ୍ଥିତିରେ ଆମେ ଯେ କେବଳ ଦକ୍ଷିଣ କୋରିଆର ଐନ୍ଦ୍ରଜାଲିକ ପ୍ରଗତିର ଧାରାକୁ ଆପଣାର କରି ପାରିବା ତାହା ନୁହେଁ, ପରନ୍ତୁ ଭାରତ ଓ ଦକ୍ଷିଣ କୋରିଆ ମଧ୍ୟରେ ଥିବା ପ୍ରଗତିର ଅସାମଞ୍ଜସ୍ୟତାକୁ ପ୍ରାୟ ୧୦ ବର୍ଷ କମେଇ ପାରିବା । ଆମେ ଏବେ ଦକ୍ଷିଣ କୋରିଆଠାରୁ ୩୫ ବର୍ଷ ପଛରେ ପଡ଼ି ରହିଥିବା ପରିବର୍ତ୍ତେ ୨୫ ବର୍ଷ ପଛରେ ପଡ଼ି ରହିବା ।

ସଂପ୍ରତି ପ୍ରଗତିର ଧାରା ହ୍ୟୁମାନ୍ ଡେଭଲପ୍‌ମେଣ୍ଟ ଇଣ୍ଡେକ୍ସ ମାଧ୍ୟମରେ ମପା ଯାଉଛି ଏବଂ ଏହି ପରିମାପକ ୟୁନାଇଟେଡ଼ ନେସନ୍ସ ଡେଭଲପମେଣ୍ଟ

ପ୍ରୋଗ୍ରାମ (ୟୁ.ଏନ.ଡି.ପି) ଦ୍ୱାରା ପରିଚାଳିତ ହେଉଅଛି । ଏହି ପରିମାପକର ତିନୋଟି କମ୍ପୋନେଣ୍ଟ ରହିଛି, ଯଥା - ମୁଣ୍ଡ ପିଛା ଆୟ, ଶିକ୍ଷାଗତ ପାରଦର୍ଶିତା ଏବଂ ଜୀବନ କାଳର ବୟସ । ଡକ୍ଟର କଲାମ୍‌ଙ୍କ ପରେ ଟାଇଫ୍ୟାକ୍‌ର ଅଧ୍ୟକ୍ଷ ଆସନ ଅଳଙ୍କୃତ କରିଥିବା ଡକ୍ଟର ଚିଦାମ୍ବରମ ହିସାବ କରି ଦେଖିଛନ୍ତି ଯେ ଏହି ତିନୋଟି କମ୍ପୋନେଣ୍ଟର ମିଶ୍ରଣ କରାଯାଇ ଦୁଇଟି କମ୍ପୋନେଣ୍ଟରେ ପରିଣତ କରାଯାଇ ପାରିବ; ଯଥା - ନାରୀ ସାକ୍ଷରତା ଏବଂ ମୁଣ୍ଡପିଛା ବିଦ୍ୟୁତ୍ ଶକ୍ତିର ବ୍ୟବହାର । ତା'ର ଅର୍ଥ ହେଲା ଥରେ ନାରୀ ସାକ୍ଷରତା ଓ ମୁଣ୍ଡପିଛା ବିଦ୍ୟୁତ୍ ଶକ୍ତିର ବ୍ୟବହାରରେ ଉନ୍ନତି ପରିଲକ୍ଷିତ ହେଲେ ବିନା ଦ୍ୱିଧାରେ ଆଉ ସମସ୍ତ କମ୍ପୋନେଣ୍ଟ ନିଜ ନିଜର ବାଟ ଠିକ୍ ରୂପେ ଧରି ନେଇ ପାରିବେ ଏବଂ ଉନ୍ନୟନ ପ୍ରକ୍ରିୟା ସ୍ୱୟଂକ୍ଷମ ଭାବେ ତା'ର ପଦାଙ୍କ ଅନୁସରଣ କରିବ ।

ଏପରି ରୂପରେ ଉପସ୍ଥାପନା କରାଗଲେ ବିକାଶ ପ୍ରକ୍ରିୟା ସତରେ ଏକ ପ୍ରାକୃତିକ ଧାରା ବୋଲି ମନେ ହୁଏ, ଯାହାକୁ କି ପ୍ରାୟ ଏକ ସିଧାସଳଖ ଉପାୟ ବୋଲି ଅଭିହିତ କରାଯାଇପାରେ । ଯଦି ଏହା ହିଁ ସତ୍ୟ, ତେବେ ଆମେ ସାତ ପଛରେ ପଡ଼ି ରହିଛୁ କାହିଁକି ? ଅଭିବୃଦ୍ଧି ପାଇଁ ଆବଶ୍ୟକ ହେଉଥିବା ଅନ୍ତଃନିହିତ କ୍ଷମତାକୁ ପ୍ରକୃତ ସଫଳତା ସହ ସଂଯୋଜିତ କରାଯାଇ ନିମ୍ନଲିଖିତ ସରଳୀକରଣ ମାଧ୍ୟମରେ ଏହାର କାରଣକୁ ସଠିକ୍‌ଭାବେ ବୁଝେଇ ଦିଆଯାଇପାରେ । ଯଥା :-

$$\text{ପ୍ରକୃତ ଅଭିବୃଦ୍ଧି} = \frac{\left\{\begin{matrix}\text{ଅଭିବୃଦ୍ଧି ପାଇଁ ଆବଶ୍ୟକ}\\ \text{ହେଉଥିବା ଅନ୍ତର୍ନିହିତ କ୍ଷମତା}\end{matrix}\right\} \times \text{ଦକ୍ଷତା}}{\text{ନାନାବିଧ ଛିଦ୍ର}} + \text{ବାଧାବିଘ୍ନ}$$

ଉପରେ ବର୍ଣ୍ଣିତ ଚାରୋଟି ସଂଜ୍ଞାରୁ ଯେ କୌଣସି ଗୋଟିଏକୁ ଆଧାର କରି ଆମେ କହି ପାରିବା ଯେ ବିକଶିତ ରାଷ୍ଟ୍ର ହେବାପାଇଁ ଭାରତବର୍ଷ ପାଖରେ ସମସ୍ତ ଆବଶ୍ୟକୀୟ ଗୁଣ ଭରପୁର ଥିବା ସଙ୍ଗେ ସଙ୍ଗେ ପ୍ରଚୁର ପରିମାଣର ଧୀଶକ୍ତି ମଧ୍ୟ ମହଜୁଦ ଅଛି । ପରନ୍ତୁ ଉପରେ ଉପସ୍ଥାପିତ ସରଳୀକରଣ ଅନୁଯାୟୀ ଏହା ସମ୍ଭବପର ହୋଇ ପାରିବ ସେତିକିବେଳେ, ଯେତେବେଳେ ଆମେ ଆମ ବ୍ୟବସ୍ଥାରେ ଥିବା ଅସଂଖ୍ୟ ଛିଦ୍ରଗୁଡ଼ିକରେ ଶକ୍ତ ଠିପି ଲଗେଇ ଦେଇ ପାରିବା

ଏବଂ ତତ୍ ସଙ୍ଗେ ସଙ୍ଗେ ସମସ୍ତ ବାଧାବିଘ୍ନକୁ ଏଡ଼େଇ ଦେଇ ବୀରଦର୍ପରେ ପ୍ରଗତିର ରାଜରାସ୍ତାରେ ଧାବମାନ ହୋଇପାରିବା ଏବଂ ସର୍ବୋପରି ଆମେ ଆମର ଦକ୍ଷତା ଓ ପାରିବାରିକ ପଣିଆର ସ୍ତରକୁ ବିକଶିତ ରାଷ୍ଟ୍ରମାନଙ୍କର ସମ ପର୍ଯ୍ୟାୟକୁ ଆଣିପାରିବା ।

ସମସ୍ତ ତିନୋଟି ପଏଣ୍ଟ ଯଥା : ଦକ୍ଷତା ବା ପାରିବାର ପଣିଆ (Capability), ବ୍ୟବସ୍ଥାରେ ଥିବା ଛିଦ୍ର (Leakages) ଏବଂ ଅସୁମାରୀ ବାଧାବିଘ୍ନର ପ୍ରତିବନ୍ଧକ (Bottlenecks) ଏ ସବୁର ବହୁବିଧ ଦିଗ ମଧ ରହିଛି । ଯଥା :- ଭୌତିକ, ଅର୍ଥନୈତିକ, ସାମାଜିକ, ରାଜନୈତିକ, ପାରିବେଶିକ ଓ ସାଂସ୍କୃତିକ । ଏ ସମସ୍ତ ଦିଗରୁ ଯେ କୌଣସି ଗୋଟିଏ ଦିଗ ଅବା ଏ ତିନୋଟି ପଏଣ୍ଟରୁ ଯେ କୌଣସି ଗୋଟିଏ ପଏଣ୍ଟରେ ଯଦି ଅଭାବ ପରିଲକ୍ଷିତ ହୁଏ, ତାହା ଅଭିବୃଦ୍ଧିର ରାସ୍ତା ଆଗରେ ବାଡ଼ ବୁଜି ଦେଇଥାଏ । ସୌଭାଗ୍ୟବଶତଃ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଅଗ୍ରଗତି ଭୌତିକ ଦିଗକୁ ପ୍ରଭାବିତ କରିଥାଏ - ଏହା ଏକ ଜଣାଶୁଣା କଥା ଏବଂ ତର୍ଜମାତ୍ମକ ଭାବେ ଏହା ପାରିବେଶିକ ଦିଗକୁ ମଧ ପ୍ରଭାବିତ କରିପାରେ । ପରନ୍ତୁ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ବିକାଶ ଅନ୍ୟାନ୍ୟ ଦିଗଗୁଡ଼ିକୁ ଯେ ଉପକୃତ କରିପାରେ, ଏହି କଥାପଦକ ହୁଏତ ନିର୍ଭୁଲ ସିଦ୍ଧାନ୍ତ ଭାବେ କୁହାଯାଇ ନ ପାରେ ।

ଉଦାହରଣ ସ୍ୱରୂପ ଏକ ପଛୁଆ ଗାଁକୁ ଯଦି ଏକ ବସ୍ ସର୍ଭିସ୍‌ର ଶୁଭାରମ୍ଭ ହୁଏ, ତେବେ ତାହା ଅସ୍ପୃଶ୍ୟତା ଦୂରୀକରଣରେ ଯଥେଷ୍ଟ ସହାୟକ ହୋଇଥାଏ; ଯାହାକି କୌଣସି ରାଜନୈତିକ ବା ବିଧି ବ୍ୟବସ୍ଥା ଦ୍ୱାରା ସମ୍ଭବପର ହୋଇପାରି ନ ଥାଏ । ଯଦିଓ ବୈଷୟିକୀକରଣ ବ୍ୟବସ୍ଥାର ପରିସର ସୀମିତ, ପରନ୍ତୁ ତାହା ଅତ୍ୟନ୍ତ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିବାର କ୍ଷମତା ରଖିଥାଏ । ପରିଶେଷରେ ପ୍ରଯୁକ୍ତି ବିଦ୍ୟାର ପ୍ରଭାବ ଅତ୍ୟନ୍ତ ସୁଦୂରପ୍ରସାରୀ ହୋଇଥାଏ, ଯାହାକି ରାଷ୍ଟ୍ରୀୟ ଅଭିବୃଦ୍ଧିର ସମସ୍ତ ଦିଗକୁ ପ୍ରବଳ ଭାବେ ପ୍ରଭାବିତ କରିଥାଏ ।

ଅତଏବ ଶିକ୍ଷା ଏବଂ ସ୍ୱାସ୍ଥ୍ୟ କ୍ଷେତ୍ରରେ ବୈଷୟିକୀକରଣ ଏବଂ ପରିଚାଳନାଗତ ଅଭିବୃଦ୍ଧି ସମାଜର ସାଧାରଣ ଦକ୍ଷତା ବୃଦ୍ଧିରେ ଯଥେଷ୍ଟ ସହାୟକ ହେବ । ଠିକ୍ ସେହିପରି କୃଷି ଓ ଶିଳ୍ପ କ୍ଷେତ୍ରରେ ବୈଷୟିକୀକରଣ ମଧ ତଦନୁଯାୟୀ

ଫଳ ପ୍ରଦାନ କରିବ । ବିଭିନ୍ନ ବ୍ୟବସ୍ଥା ମଧ୍ୟରେ ଉପଯୁକ୍ତ ଯୋଗସୂତ୍ର ସ୍ଥାପନ ମାଧ୍ୟମରେ ଗ୍ରାମୀଣ ଜନସାଧାରଣଙ୍କ ଆର୍ଥିକ ମାନଦଣ୍ଡରେ ଉତ୍ତରୋତ୍ତର ଅଭିବୃଦ୍ଧି ଅଣାଯାଇ ପାରିବ, ଯାହାକି ପ୍ରତିରୋଧତାର ସମସ୍ତ ଶକ୍ତିକୁ ସଠିକ ଭାବେ ପ୍ରତିହତ କରିପାରିବ । ପରନ୍ତୁ କ୍ରିଟିକ୍ସମାନେ ଅଭିଯୋଗ କରି ପାରନ୍ତି ଯେ କଲାମଙ୍କ ଅର୍ଥନୀତିର ମଡ଼େଲ ଭାରତୀୟ ବ୍ୟବସ୍ଥାମାନଙ୍କରେ ଥିବା ନାନାବିଧ ଛିଦ୍ରର ହ୍ରାସ ପାଇଁ ହୁଏତ ସଠିକ୍ ଭାବେ ସଫଳକାମୀ ହୋଇ ନ ପାରେ ।

ପ୍ରକାରାନ୍ତରେ ଦେଖିବାକୁ ଗଲେ କ୍ରିଟିକ୍ସମାନଙ୍କ ଏଭଳି ଚିନ୍ତାଧାରା ହୁଏତ ନିରାଧାର ନୁହେଁ । ଭାରତୀୟ ଅର୍ଥନୀତିରେ ଥିବା ବହୁବିଧ ଛିଦ୍ର ମୁଖ୍ୟତଃ ରାଜନୈତିକ ଓ ଅମଲାତାନ୍ତ୍ରୀକ ପରିସରରେ ହିଁ ସଂଗଠିତ ହୋଇଥାଏ । ଭୌତିକ ଦୃଷ୍ଟିକୋଣରୁ ଏହି ଛିଦ୍ରଗୁଡ଼ିକୁ ଅନୁଶୀଳନ କଲେ ଦେଖାଯିବ ଯେ ସେଗୁଡ଼ିକ ଗୁରୁତ୍ୱହୀନ ନୁହନ୍ତି । ଆମ କୃଷିଜାତ ଦ୍ରବ୍ୟଗୁଡ଼ିକର ମାତ୍ରାଧିକ ଅଂଶ ସୁସଂରକ୍ଷଣ ଓ ସଦୁପଯୋଗର ଅଭାବରୁ ଅସୁରକ୍ଷିତ ହୋଇ ନଷ୍ଟଭ୍ରଷ୍ଟ ହୋଇଯାଇଥାଏ । ଖାଦ୍ୟ ଶସ୍ୟର ପ୍ରକୃଷ୍ଟ ମହଯୁଦ ଓ ସୁସଂରକ୍ଷଣ କ୍ଷେତ୍ରରେ ପ୍ରଯୁକ୍ତିବିଦ୍ୟାର ବିକାଶ ଘଟାଇ ବ୍ୟବସ୍ଥାରେ ଥିବା ଛିଦ୍ର ସଂଖ୍ୟାକୁ ହ୍ରାସ କରାଇ ଗ୍ରାମୀଣ ଅର୍ଥନୀତିକୁ ବଳବତ୍ତର କରାଯାଇ ପାରିବ । ଟେଲି-କମ୍ୟୁନିକେସନ ଓ ଇଣ୍ଟରନେଟ ସେବା କ୍ଷେତ୍ରରେ ଅଗ୍ରଗତି ଗ୍ରାମୀଣ ଶାସନ ବ୍ୟବସ୍ଥାରେ ତା'ର ସୁଦୂର ପ୍ରଭାବ ପକାଇ ସାରିଲାଣି । ରେଳଯାତ୍ରା ପାଇଁ କମ୍ପ୍ୟୁଟରରେ ଅଗ୍ରୀମ ଟିକେଟ ବୁକିଂ ବା ରିଜରଭେସନ ବ୍ୟବସ୍ଥା ପରି ବହୁ ରାଜ୍ୟରେ ଟେଲିକମ୍ୟୁନିକେସନ୍ ଓ ଇଣ୍ଟରନେଟ ସେବା ଗ୍ରାମୀଣ କ୍ଷେତ୍ରରେ ଭ୍ରଷ୍ଟାଚାର ହ୍ରାସ କରାଇବାରେ ସଫଳକାମୀ ହୋଇପାରିଛି । ଅତଏବ, ଆମେ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ନିଜର ଦୃଷ୍ଟି ସନ୍ନିବେଶିତ କରି ରଖିଲେ ମଧ୍ୟ ସମାନ୍ତରାଳ ଭାବେ ଆମେ ଆମ ବ୍ୟବସ୍ଥାକୁ ଘେରି ରହିଥିବା ବହୁବିଧ ଛିଦ୍ର ପ୍ରତି ନଜର ରଖି ସେଗୁଡ଼ିକର ସଂଖ୍ୟାରେ କିପରି ହ୍ରାସ ଘଟାଯାଇ ପାରିବ, ସେଥିପ୍ରତି ଦୃଷ୍ଟି ଦେବା ଉଚିତ ।

ଏହି ପୃଷ୍ଠଭୂମିରେ ଦଣ୍ଡାୟମାନ ହୋଇ ଏକ ଅଭିନବ ରାଷ୍ଟ୍ରୀୟ ଉନ୍ନୟନ ପରିଯୋଜନାର ରୂପରେଖର ଆଲୋଚନା କରାଯାଉ ।

(୧) ଅଭିବୃଦ୍ଧିର ଏକକକୁ ଏକ ଲକ୍ଷରୁ ଦେଢ଼ ଲକ୍ଷ ଜନସଂଖ୍ୟା ବିଶିଷ୍ଟ ଏକ ଗ୍ରାମୀଣ ଅଭିବୃଦ୍ଧି ବ୍ଲକ୍ ଭାବେ ଚିହ୍ନଟ କରାଯାଉ ।

(୨) ଏହି ବ୍ଲକ୍‌ରେ ପୁଞ୍ଜି ଲଗାଣ ସମଗ୍ର ଦେଶର ମୁଣ୍ଡପିଛା ହାରାହାରି ପରିମାଣ ସହ ସମାନ ହେବା ଉଚିତ । ଏହି ହିସାବରେ ଦଶମ ପଞ୍ଚବାର୍ଷିକ ଯୋଜନାରେ ପ୍ରତି ବ୍ଲକ୍ ପିଛା ବ୍ୟୟ ବରାଦ ୩୦୦ ରୁ ୪୦୦ କୋଟି ଟଙ୍କା ହେବ ।

(୩) କଲାମଙ୍କ ମତ ଅନୁଯାୟୀ ଏହି ଅର୍ଥ ମୁଖ୍ୟତଃ ଛଅଟି କ୍ଷେତ୍ରରେ ବିନିଯୋଗ ହେବା ଉଚିତ । ଉଦାହରଣ ସ୍ୱରୂପ ଇଂରାଜୀ ଭାଷାରେ ପାରଙ୍ଗମ ତଥା କମ୍ପ୍ୟୁଟର ଶିକ୍ଷିତ ଏକ ହଜାର ଧୁରନ୍ଧର ଶିକ୍ଷକଙ୍କ ସୃଷ୍ଟି, ୫୦ ଶଯ୍ୟା ବିଶିଷ୍ଟ ଚାରୋଟି ମାତୃ ଓ ଶିଶୁମଙ୍ଗଳ କେନ୍ଦ୍ର, ଚାରୋଟି ଶୀତଳ ଭଣ୍ଡାର ଏବଂ ଖାଦ୍ୟ ମହଯୁଦ କେନ୍ଦ୍ର, ୩୦ରୁ ୬୦ କିଲୋମିଟର ବିଶିଷ୍ଟ ରିଙ୍ଗ ରୋଡ଼ ଯାହାକି ମୁଦ୍ରିକା ସମ ଅବସ୍ଥିତ ଗ୍ରାମଗୁଡ଼ିକୁ ସଂଲଗ୍ନ କରିବା ସଙ୍ଗେ ସଙ୍ଗେ ନିକଟସ୍ଥ କୌଣସି ଏକ ସହରକୁ ମଧ୍ୟ ସଂଯୋଗ କରୁଥିବ, ୫୦୦୦ ଟେଲିଫୋନ୍‌ର ବ୍ୟବସ୍ଥା, ୧୫ ହଜାର କିଲୋୱାଟ ବିଦ୍ୟୁତ୍ ସରବରାହର ବ୍ୟବସ୍ଥା ଏବଂ ଷ୍ଟ୍ରାଟେଜିକ୍ ସେକ୍ଟରରେ ଏକ ଅତ୍ୟାଧୁନିକ ଶିଳ୍ପ ସଂସ୍ଥା, ଯାହାକି ପ୍ରାୟ ୫୦୦ ରୁ ୧୦୦୦ ଲୋକଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦେଇପାରୁଥିବ ।

(୪) ଏପରି ବ୍ୟବସ୍ଥାରେ ଭାଗିଦାରୀ ହେବାପାଇଁ ପ୍ରତ୍ୟେକ ରାଜ୍ୟକୁ ସେମାନଙ୍କର କୋଟେସନ ଦାଖଲ କରିବାକୁ ଆମନ୍ତ୍ରଣ କରାଯିବ; କିନ୍ତୁ ଯେଉଁ ରାଜ୍ୟ ଅନୁଦାନ ଦେବା ପାଇଁ ଦୃଢ଼ ପ୍ରତିଜ୍ଞାବଦ୍ଧ ହେବ, (ଅର୍ଥ ବା ଅନ୍ୟାନ୍ୟ ଆନୁସଙ୍ଗିକ ସାହାଯ୍ୟ) ସେମାନଙ୍କୁ ମନୋନୀତ କରାଯିବ ।

(୫) ଉପରେ ବର୍ଣ୍ଣିତ ଅଭିବୃଦ୍ଧି ପରିଯୋଜନାର ଏକ ମୋଟା ଅଙ୍କରାଶି ବେସରକାରୀ ଉଦ୍ୟୋଗମାନଙ୍କରୁ ହିଁ ଉପଲବ୍ଧ ହେବାକୁ ପଡ଼ିବ । ଏଭଳି ପରୀକ୍ଷା ନିରୀକ୍ଷା ପାଇଁ ସ୍ଥାନ ନିରୂପଣ କରିବାରେ ଘରୋଇ ପୁଞ୍ଜି ଲଗାଣକାରୀମାନେ ଆଗ୍ରହ ସହକାରେ ଏଭଳି ପ୍ରକଳ୍ପରେ କେତେଦୂର ସେମାନଙ୍କର ଅର୍ଥ ବିନିଯୋଗ କରିବେ, ତାହା ଏକ ଦ୍ୱିତୀୟ କଥା ।

ଏଭଳି କାର୍ଯ୍ୟକ୍ରମ ସହରମାନଙ୍କରେ ହେଉଥିବା ମୋଟା ଅଙ୍କର ପୁଞ୍ଜି ଲଗାଣ ସହ ଗ୍ରାମୀଣ ପୁଞ୍ଜି ଲଗାଣର ଆପେକ୍ଷିକ ରିଟର୍ଣ୍ଣର ଆବିଷ୍କାର କରିପାରିବ । ତାହା

ମୁଖ୍ୟତଃ ତିନୋଟି ଉପାୟରେ ହିସାବ କରାଯାଇ ପାରିବ, ଯଥା- ଏକକୋଟି ଟଙ୍କା ପୁଞ୍ଜି ଲଗାଣ କରି କେତେ ଲୋକଙ୍କୁ ଚାକିରି ଦେଇ ଭରଣ ପୋଷଣ କରାଯାଇ ପାରୁଛି, ଘରୋଇ ପୁଞ୍ଜି ଲଗାଣ କ୍ଷେତ୍ରରେ ଥିବା ସୁବିଧା ସୁଯୋଗ ବନାମ ସରକାରୀ ପୁଞ୍ଜି ଲଗାଣ ଏବଂ ପରିବେଶ ଜନିତ ପ୍ରଭାବ, ଯାହାକି ପ୍ରଦୂଷଣ ଓ ସ୍ୱାସ୍ଥ୍ୟଗତ ମାନଦଣ୍ଡ ପରିପ୍ରେକ୍ଷୀରେ ପ୍ରାୟତଃ ମପାଯାଇଥାଏ ।

ଯଦି ସମଗ୍ର ଦେଶରେ ଗୋଟିଏ ଡଜନ ବା ୧୨ଟି ବ୍ଲକ୍‌କୁ ଚିହ୍ନଟ କରାଯାଇ ଏପରି କାର୍ଯ୍ୟକ୍ରମ ହାତକୁ ନିଆଯାଏ, ତା'ହେଲେ ସେଥିପାଇଁ ସରକାରଙ୍କୁ ବର୍ଷକୁ ୪୦୦ ରୁ ୫୦୦ କୋଟି ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ଅବଶିଷ୍ଟ ପୁଞ୍ଜି ଘରୋଇ ପୁଞ୍ଜି ଲଗାଣକାରୀଙ୍କ ଠାରୁ ଉପଲବ୍ଧ କରାଯାଇ ପାରିବ । ଏହି ପରିମାଣର ଅର୍ଥ ଆମ ମେଟ୍ରୋପଲିଟାନ ସହରମାନଙ୍କରେ ଥିବା ଅସଂଖ୍ୟ ଫ୍ଲାଇଓଭର ଓ ଅଗଣିତ ପରିବହନ ବ୍ୟବସ୍ଥା ଆଦିର ରକ୍ଷଣା ବେକ୍ଷଣ ପାଇଁ ବିନିଯୋଗ ହେଉଥିବା ଅର୍ଥର କାଣିଚାଏ ମାତ୍ର । ତେଣୁ ଦେଖିବାକୁ ଗଲେ ଏଭଳି ଗ୍ରାମୀଣ ପରୀକ୍ଷା ନିରୀକ୍ଷା ପାଇଁ ବ୍ୟୟ ହେବାକୁ ଥିବା ସମ୍ଭାବ୍ୟ ଅର୍ଥରାଶିର ପରିମାଣ ଖୁବ୍ ବେଶୀ ନୁହେଁ ଏବଂ ଏହାର ସୁଫଳ ଏକ ବିରାଟ ଜନସଂଖ୍ୟା ବିଶିଷ୍ଟ ସମଗ୍ର ବ୍ଲକବାସୀମାନେ ସମପରିମାଣରେ ଉପଲବ୍ଧ କରିପାରିବେ ।

ଏହା ନିଶ୍ଚିତ ରୂପେ ସତ୍ୟ ଯେ ଏପରି କର୍ମ ଯୋଜନା ପାଇଁ ପ୍ରଚୁର ପରିମାଣର ଅର୍ଥ ବିନିଯୋଗ ହେବ । ପରନ୍ତୁ ଗ୍ରାମୀଣ ବ୍ଲକମାନଙ୍କୁ ଅଭିବୃଦ୍ଧିର ଥ୍ରେସହୋଲ୍‌ଡ଼ ଲେଭେଲ୍‌କୁ ଟପି ପ୍ରଗତିର ସୁଦୀର୍ଘ ରନ୍-ୱେ ରେ ଟେକ୍-ଅଫ୍ ନେବାକୁ ହେଲେ, ଏପରି ପରିମାଣର ପୁଞ୍ଜି ଲଗାଣର ଆବଶ୍ୟକତା ପଡ଼ିବ ଏବଂ ଏହାଠାରୁ କମ୍ ପରିମାଣର ପୁଞ୍ଜିର ବିନିଯୋଗ ମାଧ୍ୟମରେ ଗ୍ରାମୀଣ ବ୍ଲକମାନଙ୍କର ସର୍ବଦିଗବ୍ୟାପ୍ତ ପ୍ରଗତି ଆଶା କରାଯାଇ ନ ପାରେ । ଆଜି ପର୍ଯ୍ୟନ୍ତ ଗ୍ରାମୀଣ ବ୍ଲକମାନଙ୍କରେ ମାର୍ଜିନାଲ ଇନଭେଷ୍ଟମେଣ୍ଟ ବା ସ୍ୱଳ୍ପ ପୁଞ୍ଜି ଲଗାଣ କରି ଆମେ ଯାହା ସବୁ ପାଇଛୁ, ତାହା ଆମ ସାମନାରେ ଯାହାକି ଥ୍ରେସହୋଲ୍ଡ ଲେଭେଲ୍‌ର ବହୁ ନିମ୍ନରେ । ସେଇଥିପାଇଁ ଗ୍ରାମୀଣ ପ୍ରଗତିରେ ବିନିଯୋଗ ହେଉଥିବା ଅର୍ଥର ମୋଟା ଅଙ୍କ ଆମ ଶାସନ ବ୍ୟବସ୍ଥାର ବହୁରୂପୀ ଛିଦ୍ର ଦେଇ ବାହାରକୁ ନିଷ୍କାସିତ ହୋଇଯାଉଛି । ଥ୍ରେସହୋଲ୍ଡ ଲେଭେଲ୍‌ର ନିମ୍ନରେ ପୁଞ୍ଜି ଲଗାଣ କରାଗଲେ,

ତାହା କଦାପି ସବୁଦିନ ପାଇଁ ସୁଫଳ ପ୍ରଦାନ କରିପାରି ନ ଥାଏ ଏବଂ ଏହା ମଧ ପ୍ରଗତିର ରାସ୍ତାରେ ଅନ୍ତରାୟ ସୃଷ୍ଟି କରୁଥିବା ନାନାଦି ପ୍ରତିବନ୍ଧକର ଉପଯୁକ୍ତ ଅପସାରଣ କରିପାରି ନ ଥାଏ । ଅତ୍ୟାଧୁନିକ ଅଗ୍ରଗତି ସହ ପାଦରେ ପାଦ ମିଳେଇ ଚାଲିବା ପାଇଁ ଆବଶ୍ୟକ ହେଉଥିବା ଦକ୍ଷତାର ଅଭିବୃଦ୍ଧିରେ ଏହା ଆଦୌ ସହାୟକ ହୋଇପାରି ନ ଥାଏ । ଅପର ପକ୍ଷରେ ସ୍ୱଳ୍ପ ପରିମାଣର ପୁଞ୍ଜି ବିନିଯୋଗ ପ୍ରଗତିର ଧାରାକୁ ପଶ୍ଚାତ୍‌ଧାବନ କରାଇବାରେ ସହାୟକ ହେଉଥିବା ତିନୋଟି ମୁଖ୍ୟ କାରଣ ଯଥା- ଅକ୍ଷମତା, ବ୍ୟବସ୍ଥାରେ ଥିବା ଛିଦ୍ର ଏବଂ ପ୍ରତିବନ୍ଧକକୁ ପ୍ରକାରାନ୍ତରେ ବହୁଗୁଣ ବୃଦ୍ଧି ହେବାରେ ସଫଳ ଯୋଗଦାନ ଦେଇଥାଏ । ଥରେ କ୍ୟାପିଟାଲ ଇନ୍‌ଭେଷ୍ଟମେଣ୍ଟ ବା ମୂଳ ପୁଞ୍ଜିରାଶି ଥ୍ରେସହୋଲ୍ଡ ଲେଭେଲ୍‌କୁ ଟପିଗଲେ, ଏଭଳି ପ୍ରତିରୋଧକ ଶକ୍ତିଗୁଡ଼ିକ ତଳେ ମୁହଁପୋତି ପଡ଼ି ରହିବାକୁ ବାଧ ହୁଅନ୍ତି ଓ କଡ଼ା ନିୟନ୍ତ୍ରଣ ମଧରେ ଚଳପ୍ରଚ଼ଳ କରିଥାନ୍ତି ।

ଏହି ପୂଣ୍ୟ ଆଶା କରାଯାଉ ଯେ ମହାମହିମ ରାଷ୍ଟ୍ରପତି ଡଃ କଲାମଙ୍କ ଅର୍ଥନୀତିର ଏହି ନିଗୁଢ଼ ତତ୍ତ୍ୱକୁ ସଠିକ୍ ହୃଦୟଙ୍ଗମ କରି ଯୋଜନା ଆୟୋଗ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରଣାଳୟ ଅତ୍ୟନ୍ତ ସାହସର ସହ ବ୍ଲକସ୍ତରୀୟ ପୃଷ୍ଠଭୂମିରେ ଏହି ପରୀକ୍ଷା ନିରୀକ୍ଷା କରନ୍ତୁ ଓ ଏହାର ଫଳାଫଳକୁ ଜନତାର ଦରବାରରେ ଉପସ୍ଥାପିତ କରି ସେମାନଙ୍କର ଶ୍ରଦ୍ଧା ଭାଜନ ହୁଅନ୍ତୁ । ଡକ୍ଟର କଲାମଙ୍କ ରୁଦ୍ରବୀଣାରୁ ଝଙ୍କୃତ ହେଉଥିବା ପ୍ରଗତିର ସ୍ୱର ଓ ସମ୍ଭାବନା ଭାରତବର୍ଷର କାୟାକଳ୍ପ ବଦଳେଇ ଦେଉ ଓ ବିକାଶଶୀଳ ରାଷ୍ଟ୍ରର ପୋଷାକକୁ ଦେହରୁ ଉତାରି ଦୂରକୁ ଫିଙ୍ଗିଦେଇ ଭାରତବର୍ଷ ବିକଶିତ ରାଷ୍ଟ୍ରର ମର୍ଯ୍ୟାଦା ଅର୍ଜନ କରୁ । ଏହା ହିଁ ରାଷ୍ଟ୍ରୀୟ ଜାଗରଣ ହେଉ, ଚେତନା ହେଉ, ପଣ ହେଉ, ବ୍ରତ ହେଉ ।

ଯୋଜନା - ଓଡ଼ିଆ
ନଭେମ୍ବର, ୨୦୦୨



# ଆମେରିକା, ଭାରତ ଓ ଚୀନର ତ୍ରିଭୂଜାକାର ସମ୍ପର୍କ ବିଶ୍ୱ ଅର୍ଥନୈତିକ କିମ୍ବଦନ୍ତୀରେ ନୂତନ ଅଧ୍ୟାୟ ସୃଷ୍ଟି କରିବ

**କୌ**ଣସି ଭାରତୀୟ ସାନ୍‌ଜୋସ୍‌ର ସନିଭେଲ ସହର କିମ୍ବା କାଲିଫର୍ଣ୍ଣିଆସ୍ଥିତ ସିଲିକନ୍ ଭ୍ୟାଲିର ପାଲୋ ଆଲ୍ଟୋ ସହର ପରିଭ୍ରମଣ କଲେ, ସେଠାରେ ସେ ଅତ୍ୟନ୍ତ ଘରୁଆ ପରିବେଶ ଅନୁଭବ କରିବ । ସହରର ପ୍ରତ୍ୟେକ ଗଳି ଉପଗଳିରେ ସେ ତା'ର ପ୍ରିୟ ଭାରତୀୟମାନଙ୍କ ମୁଖ ଦର୍ଶନ କରିବ ହିଁ କରିବ ଏବଂ ତତ୍‌ସଙ୍ଗେ ସଙ୍ଗେ ପ୍ରାୟ ପ୍ରତ୍ୟେକ ବଜାର ହାଟରେ କର୍ମମୁଖର ଭାରତୀୟ ଦୋକାନ ଓ ରେଷ୍ଟୁରାଣ୍ଟମାନ ମଧ୍ୟ ପରିଦର୍ଶନ କରିବ । ମୀରା ନାୟାରଙ୍କ 'ମନ୍‌ସୁନ୍ ୱେଡ଼ିଂ' ଚଳଚ୍ଚିତ୍ର ଆମେରିକାର ବିଭିନ୍ନ ପ୍ରେକ୍ଷାଳୟମାନଙ୍କରେ ଖୁବ୍ ଭଲ ବ୍ୟବସାୟ କରୁଛି । ଭାରତୀୟ ଚଳଚ୍ଚିତ୍ର ନିର୍ମାତା ମନୋଜ ଶ୍ୟାମଳନ୍ ଆମେରିକାର ଘରେ ଘରେ ଦିନକୁ ଦିନ ଖୁବ୍ ପରିଚିତ ହୋଇ ଚାଲିଛନ୍ତି । ଭାରତୀୟ ମେଲୋଡ଼ି ସଙ୍ଗୀତକୁ ଆଧାର କରି ଆମେରିକୀୟ ପପ୍ ସଙ୍ଗୀତର ଅପୂର୍ବ ଝଙ୍କାର ଆମେରିକାର ରେଡ଼ିଓ କାର୍ଯ୍ୟକ୍ରମରେ ଅତ୍ୟନ୍ତ ଆଦରଣୀୟ ହୋଇପାରିଛି । ନିମ୍ନଗାମୀ ଅର୍ଥନୈତିକ ଧାରା ଓ ଦେଶସାରା ବେକାରୀ ସମସ୍ୟାର ଭୟଙ୍କର ପ୍ରାଦୁର୍ଭାବ ସତ୍ତ୍ୱେ ଭାରତୀୟ ସୂଚନା ପ୍ରଯୁକ୍ତିବିଦ୍ୟାବିତ୍‌ମାନେ ଆମେରିକାର ସିଲିକନ୍ ଭ୍ୟାଲିରେ ଏବେ ବି ଗେହ୍ଲାପୁଅର ଆଦର ପାଉଛନ୍ତି । ଏସବୁ ମିଳିମିଶି ଭାରତ ଉପରେ ଥିବା ଆମେରିକାର ଅହେତୁକ ଆଗ୍ରହକୁ ସିଦ୍ଧ କରୁଛି । ବୁଶ୍ ପ୍ରଶାସନର କିଛି ସେକ୍ସନ ଭାରତ ଓ ଆମେରିକା ମଧ୍ୟରେ ଏକ ଷ୍ଟ୍ରାଟେଜିକ୍ ପାର୍ଟନରସିପ୍‌ର ଗଠନ ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଛନ୍ତି, ଯାହାକି ଚୀନର ନିରନ୍ତର ବଢ଼ି ଚାଲିଥିବା ଶକ୍ତି ଓ ସାମର୍ଥ୍ୟର ଉପଯୁକ୍ତ ମୁକାବିଲା କରିପାରିବ । ଏହି ଚିନ୍ତାଧାରା ବହୁ ବିଜ୍ଞ ତଥା ଷ୍ଟ୍ରାଟେଜିକ୍ ଭାରତୀୟ ପଣ୍ଡିତମାନଙ୍କୁ ଉନ୍ମାଦିତ କରି ଦେଉଛି । ପରନ୍ତୁ ଆମେରିକା ଓ ଚୀନ ମଧ୍ୟରେ ଗଢ଼ି ଉଠୁଥିବା ମଧୁମୟ ସମ୍ପର୍କର ସେତୁବନ୍ଧକୁ ଦେଖି ଅଦେଖା କଲେ, ତାହା ଅତ୍ୟନ୍ତ ଭୟଙ୍କର ସାବ୍ୟସ୍ତ

ହେବ । ତେଣୁ ଆମେରିକା, ଭାରତ ଓ ଚୀନ ମଧ୍ୟରେ ତ୍ରିଭୁଜାକାର ସମ୍ପର୍କ ସ୍ଥାପନ କଲା ପୂର୍ବରୁ ଏ ସମସ୍ତ ଦିଗ ପ୍ରତି ଯଥାର୍ଥ ଗୁରୁତ୍ୱ ପ୍ରଦାନ କରାଯିବା ଉଚିତ ।

ପର୍ଯ୍ୟାୟକ୍ରମେ ଆମେରିକୀୟ ଶାସନ ବ୍ୟବସ୍ଥା ଚୀନ ସାଙ୍ଗରେ ଏକ ଷ୍ଟ୍ରାଟେଜିକ୍ ବନ୍ଧୁତ୍ୱ ସ୍ଥାପନ କରିବାକୁ ଇଚ୍ଛା ପ୍ରକାଶ କରି ଆସିଛି, ଯାହାକି ପ୍ରେସିଡ଼େଣ୍ଟ ବିଲ୍ କ୍ଲିଣ୍ଟନ ମଧ୍ୟ ଗଭୀର ଭାବେ ଚାହୁଁଥିଲେ । ପରନ୍ତୁ ବୁଶ ପ୍ରଶାସନରେ ଥିବା କେତେକ ରାଷ୍ଟ୍ରୀୟ ଷ୍ଟ୍ରାଟେଜୀ ନିର୍ଣ୍ଣାୟକ ଅଗ୍ରଣୀ ବ୍ୟକ୍ତି ବିଶେଷ ଚାହାନ୍ତି ଯେ ଚୀନ ସାଙ୍ଗରେ ଆମେରିକାର ଯେପରି ସମ୍ପର୍କ ଅଛି, ଠିକ୍ ସେହିପରି ଥାଉ ଏବଂ ସେଥିପାଇଁ ସେମାନେ ମଧ୍ୟ ତାଙ୍କର ଦୃଢ଼ ଯୁକ୍ତି ଉପସ୍ଥାପନ କରିଥାନ୍ତି ।

ଏହି ଦୁଇ ବିଚାରଧାରା ମଧ୍ୟରେ କେଉଁଟିକି ପ୍ରକୃତରେ ଆପଣେଇ ନେବ, ସେ ନେଇ ଆମେରିକା ଆଜି ଦୋଦୁଲ୍ୟମାନ ଅବସ୍ଥାରେ ରହିଛି । ପରନ୍ତୁ ଗୋଟିଏ ପଟରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ କୋଲିନ ପାଓ୍ୱେଲ ଏବଂ ତାଙ୍କର ଷ୍ଟେଟ୍ ଡିପାର୍ଟମେଣ୍ଟର ମୁନିବମାନେ, ଆମେରିକାର ବ୍ୟବସାୟୀ ଗୋଷ୍ଠୀ, ବୁଦ୍ଧିଜୀବୀ ସମ୍ପ୍ରଦାୟ ତଥା ଅନ୍ୟପଟରେ ପୁରୁଣା ମିସେନାରୀମାନେ ପୂର୍ଣ୍ଣ ପ୍ରାଣରେ ବିଶ୍ୱାସ କରନ୍ତି ଯେ ଆମେରିକା ସତ୍ୟର ମୁହାଁମୁହିଁ ହୋଇ ଏହା ଗ୍ରହଣ କରୁ ଯେ ଚୀନ ଆଗାମୀକାଲି ନିଶ୍ଚିତ ରୂପେ ଏକ ବିଶ୍ୱ ମହାଶକ୍ତି ଭାବେ ପ୍ରକଟିତ ହେବାକୁ ଯାଉଛି । ଚୀନ ଯଦିଓ କାଲିଫର୍ଣ୍ଣିଆର ଲରେନ୍ସ ଲିଭରମୋର ପାରମାଣବିକ ସଂସ୍ଥାରୁ ପାରମାଣବିକ ଅସ୍ତ୍ରଶସ୍ତ୍ର ଆଦିର ଡିଜାଇନ୍ ଅନୀତି ଭାବେ ନେଇ ଯାଇଛି ଏବଂ ଖାଲି ସେତିକି ନୁହେଁ ବରଂ ମିଶାଇଲ ଏବଂ ପାରମାଣବିକ ଅସ୍ତ୍ରାଦିର ବ୍ୟବହାର କରି ଆମେରିକାକୁ ଦିନରାତି ଅଠା କାଠିରେ ନଚ଼ଉଛି, ତା' ସତ୍ତ୍ୱେ ମଧ୍ୟ ଆମେରିକା ଚୀନର ଗୁରୁତ୍ୱ ଉପଲବ୍ଧି କରି ସମୟର ଆହ୍ୱାନକୁ ଆଦର ସହ ଗ୍ରହଣ କରିନେବା ହିଁ ଉଚିତ ହେବ । ଏହି ପଟ୍ଟଭୂମିରେ କଂଗ୍ରେସନାଲ୍ କମିଶନର ସୁପାରିଶକୁ ଦୃଷ୍ଟିରେ ରଖି ବାଟ ଚାଲିବା ଉଚିତ, ଯାହାକି ନିକଟ ଅତୀତରେ ଆମେରିକାର ସାଂପ୍ରତିକ ଚୀନ ପଲିସିର ସୁରକ୍ଷା ଦିଗ ଉପରେ ପୁଙ୍ଖାନୁପୁଙ୍ଖ ରିଭ୍ୟୁ କରିଛି ।

ଏହି କମିଶନ ଚୀନ ସହିତ ପାରସ୍ପରିକ ଲାଭପ୍ରଦ ସାମରିକ-କୁ-ସାମରିକ ବିଶ୍ୱାସ ନିର୍ମାଣ କାର୍ଯ୍ୟକ୍ରମର ଅଭିବୃଦ୍ଧି ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଛି । ପରନ୍ତୁ ତା' ସଙ୍ଗେ ସଙ୍ଗେ ହାଇ-ଟେକ୍ନୋଲୋଜି ହସ୍ତାନ୍ତରକରଣ ଉପରେ ସାବଧାନତା ସହ ପଦକ୍ଷେପ ନେବା ପାଇଁ ମଧ୍ୟ ସତର୍କ କରାଇ ଦେଇଛି । ଏହି

କମିଶନ ନାନାଦି ପଦକ୍ଷେପ ଜରିଆରେ ଚୀନକୁ ତା'ର ବଜାରର ଜଗତୀକରଣ କରିବାକୁ ପ୍ରବଳ ଭାବେ ବାଧ କରୁଛି ଏବଂ ତତ୍ ସହିତ ମହାକାଶ ଶିଳ୍ପ ସମ୍ବନ୍ଧୀୟ ସହଯୋଗ ଉପରେ ଲଗାମ ଦେବାପାଇଁ ଗୁରୁତ୍ୱ ଆରୋପ କରୁଛି । ଚୀନର କ୍ରିଟିକାଲ୍ ବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅସ୍ତ୍ରଶସ୍ତ୍ର ନିର୍ମାଣ ବ୍ୟବସ୍ଥା ଉପରେ ଆମେରିକାର କ୍ରମବର୍ଦ୍ଧିଷ୍ଣୁ ନିର୍ଭରଶୀଳତା ଉପରେ ଏହି କମିଶନ ଆମେରିକାକୁ ଚେତାବନୀ ଶୁଣେଇ ଦେଇଛି ଏବଂ ତତ୍‌ସଙ୍ଗେ ସଙ୍ଗେ ଚୀନକୁ ଅସ୍ତ୍ରଶସ୍ତ୍ର ସମ୍ବନ୍ଧୀୟ ପ୍ରଯୁକ୍ତିବିଦ୍ୟାର ହସ୍ତାନ୍ତରଂ ଉପରେ ମଧ୍ୟ ସାବଧାନତା ଅବଲମ୍ବନ କରିବାକୁ ଉପଦେଶ ଦେଇଛି ।

ଆଜି ପରିସ୍ଥିତି ଏପରି ହୋଇଛି ଯେ ଚୀନ ଆମେରିକାରେ ଏକ 'ଇକୋନୋମିକ୍ ଡାଇନାମୋ' ବା 'ଅର୍ଥନୈତିକ ମହାଶକ୍ତି' ଭାବେ ପରିଗଣିତ ଓ ସମ୍ମାନୀତ ହେଉଛି । ଚୀନ ସହିତ ଆମେରିକାର ଟ୍ରେଡ୍ ଡେଫିସିଟ ବା ବାଣିଜ୍ୟିକ ନିଅଣ୍ଟିଆ ପରିସ୍ଥିତି ୧୯୭୦ ଦଶକର ଶେଷାର୍ଦ୍ଧ ବେଳକୁ ଥିବା ୨୦ ବିଲିୟନ ଡଲାର ବଢ଼ି ବଢ଼ି ୨୦୦୦ ମସିହାରେ ତାହା ୮୫ ବିଲିୟନ ଡଲାରରେ ପହଞ୍ଚିଥିଲା । ଆମେରିକା ସହିତ ଚୀନର ଟ୍ରେଡ୍ ସରପ୍ଲସ ବା ବାଣିଜ୍ୟିକ ବଳକା ପରିମାଣ ଭାରତର ବିଶ୍ୱ ରପ୍ତାନି ପରିମାଣ ଠାରୁ ଅଧିକ । ଚୀନର ବିଶ୍ୱ ରପ୍ତାନି ପରିମାଣ ଭାରତର ବିଶ୍ୱ ରପ୍ତାନି ପରିମାଣଠାରୁ ପ୍ରାୟ ୬ ଗୁଣ ଅଧିକ । ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଘଟଣାଟି ହେଲା ଆମେରିକୀୟ କମ୍ପାନୀମାନେ ଯେଉଁମାନେ କି ଆମେରିକା ବାହାରେ ମାନୁଫ୍ୟାକଚରିଂ ଶିଳ୍ପ ପ୍ରତିଷ୍ଠା କରିବାକୁ ପ୍ରବଳ ଭାବେ ଆଗ୍ରହୀ, ସେମାନଙ୍କ ପାଇଁ ଚୀନ ଏବେ ଏକ ଅପ୍ରତିହତ ଚୁମ୍ବକୀୟ ଶକ୍ତିଭାବେ ପ୍ରତିଭାତ ହୋଇଛି । କିଛି ସପ୍ତାହ ପୂର୍ବରୁ କାଲିଫର୍ଣ୍ଣିଆସ୍ଥିତ ନ୍ୟାସନାଲ ସେମିକଣ୍ଡକ୍ଟର କମ୍ପାନୀ ସିଙ୍ଗାପୁର ସହଯୋଗରେ ସାଂଘାଇ ନିକଟରେ ପ୍ରତିଷ୍ଠିତ ହୋଇଥିବା ଏକ ଇଣ୍ଡଷ୍ଟ୍ରିଆଲ ପାର୍କରେ ଏକ ଆସେମ୍ବ୍ଲି ଏବଂ ଟେଷ୍ଟ ପ୍ଲାଣ୍ଟ ପ୍ରତିଷ୍ଠା କରିବା ପାଇଁ ୨୦୦ ମିଲିୟନ ଡଲାରରେ ପୁଞ୍ଜି ଲଗାଣ ଘୋଷଣା କରିଛି । ଚୀନ ଏବେ ବିଶ୍ୱରେ କମ୍ପ୍ୟୁଟର ହାର୍ଡ଼ୱେୟାର, କାଲ୍‌କୁଲେଟର ଏବଂ ହାଇ-ଟେକ୍ନୋଲୋଜି ଇଲେକଟ୍ରୋନିକ ଓ ଇଲେକ୍‌ଟ୍ରିକାଲ୍ ସାମଗ୍ରୀ ଗୁଡ଼ିକର ପ୍ରସ୍ତୁତକର୍ତ୍ତା ଭାବେ ଏକ ଅଗ୍ରଣୀ ଓ ପ୍ରଭାବଶାଳୀ ଭୂମିକା ସଂପାଦିତ କରୁଛି । ଏହି ସାମଗ୍ରୀଗୁଡ଼ିକ ପାଇଁ ଚୀନ ଏବେ ଏକ ଗୁରୁତ୍ୱପୂର୍ଣ୍ଣ ରପ୍ତାନି ମୁଖର ରାଷ୍ଟ୍ରଭାବେ ବିବେଚିତ ହେଉଛି ।

ଏପରିକି ବିଜ୍ଞ ଭାରତୀୟ ବ୍ୟବସାୟୀ ଗୋଷ୍ଠୀମାନେ ମୁକ୍ତ କଣ୍ଠରେ ସ୍ୱୀକାର କଲେଣି ଯେ ମାନୁଫ୍ୟାକଚରିଂ ୟୁନିଟ ପ୍ରତିଷ୍ଠା କରିବା ପାଇଁ ବିଶ୍ୱରେ ଚୀନ ହିଁ ହେଉଛି

ଏକମାତ୍ର ପ୍ରାକୃତିକ ସ୍ଥାନ । ଆଇ.ଆଇ.ଟିରେ ଶିକ୍ଷାଲାଭ କରିଥିବା ଷ୍ଟକଚ଼ରାଲ୍ ଇଞ୍ଜିନିୟର ଅରୁଣ ଭିମାନି ଯେ କି ଦୀର୍ଘ ଦିନ ହେଲା ଆମେରିକାର ବାସିନ୍ଦା ଅଛନ୍ତି, ତାଙ୍କର ହେଭି ଡ୍ୟୁଟି କ୍ରେନ୍‌ର ଡିଜାଇନ ପାଇଁ ଏକ କମ୍ପାନୀ ଅଛି; ଯାହାକି ଚୀନରେ ପ୍ରସ୍ତୁତ ହୋଇ ବିଶ୍ୱର ସବୁ ରାଷ୍ଟ୍ରକୁ ରପ୍ତାନି ହେଉଛି । ସେ ସ୍ୱୀକାର କରନ୍ତି ଯେ ଅତ୍ୟନ୍ତ ଶୃଙ୍ଖଳିତ ଶ୍ରମ ଶକ୍ତି ଏବଂ ପ୍ରଥମ ଶ୍ରେଣୀର ଭିତ୍ତିଭୂମି ଏହି ଦୁଇ ମୌଳିକ ଆବଶ୍ୟକତା ଚୀନକୁ ଆନ୍ତର୍ଜାତିକ ସ୍ତରରେ ଶ୍ରେଷ୍ଠ ପ୍ରତିଯୋଗୀ ହେବା ପାଇଁ ଉପଯୁକ୍ତ ଖୋରାକ ଯୋଗାଉଛି, ଯାହା ଫଳରେ କି ଚୀନ ସବୁ ବାଜିତକ ମାରି ନେଉଛି । ସେ ଅତ୍ୟନ୍ତ ଦୁଃଖର ସହ କୁହନ୍ତି ଯେ ଭାରତର ପ୍ରଚ଼ଳିତ ଶ୍ରମ ଆଇନ ଏବଂ ଭାରତୀୟ ଶ୍ରମିକମାନଙ୍କର ନିମ୍ନ ଉତ୍ପାଦକତା ଭାରତରେ ପୁଞ୍ଜି ଲଗାଣର ପ୍ରତିବନ୍ଧକ ଭାବେ ଠିଆ ହୋଇଛି । ପରନ୍ତୁ ସେହି ଭାରତୀୟ ଶ୍ରମିକମାନେ ବିଦେଶ ମାଟିରେ ନିଯୁକ୍ତି ପାଇ ଖୁବ୍ ଶୀଘ୍ର ସେମାନଙ୍କର ଉତ୍ପାଦକତାରେ ବୃଦ୍ଧି ଘଟାଇଥାନ୍ତି ।

ଭାରତରେ ଶିଳ୍ପ ପ୍ରତିଷ୍ଠା ପାଇଁ ଭେନଚ଼ର କ୍ୟାପିଟାଲର ସୁଅ ଛୁଟିବାର କାରଣକୁ ତନ୍ନ ତନ୍ନ କରି ତର୍ଜମା କରି ଆମେରିକାର ଅର୍ଥନୀତି ବିଶ୍ଳେଷଣକାରୀମାନେ ବହୁ ଦୃଷ୍ଟାନ୍ତ ଦେଇଥାନ୍ତି । ଚୀନରେ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ଭାରତର ୧୨ ବର୍ଷ ପୂର୍ବରୁ ଆରମ୍ଭ ହୋଇଥିଲା । ଚୀନ ଓ ଭାରତରେ ଜଣେ ବ୍ୟକ୍ତିର ହାରାହାରି ଜୀବନ୍ଦଶା ଯଦିଓ ତୁଳନୀୟ ହେଲେ ଚୀନରେ ଅନ୍ତର୍ଦ୍ଦେଶୀୟ ସଞ୍ଚୟ ହାର ଜି.ଡ଼ି.ପି.ର ୩୮ ପ୍ରତିଶତ ହୋଇଥିବା ବେଳେ ଭାରତରେ ତାହା ଜି.ଡ଼ି.ପିର ମାତ୍ର ୨୨ ପ୍ରତିଶତ ଅଟେ । ଚୀନର ୧୦ ପ୍ରତିଶତ ଆର୍ଥିକ ଅଭିବୃଦ୍ଧି ହାରକୁ ଯଦିଓ ଅତ୍ୟଧିକ ମାତ୍ରାରେ ଚିତ୍ରିତ କରାଯାଉଛି, ଭାରତର ୬ ପ୍ରତିଶତ ଆର୍ଥିକ ଅଭିବୃଦ୍ଧି ହାରରେ ବୃଦ୍ଧି ହେବା ନିତାନ୍ତ ଆବଶ୍ୟକ । ଭାରତ ଗତ ଦଶକରେ ତା'ର ଶିଳ୍ପ ଅଭିବୃଦ୍ଧି ହାରରେ ହ୍ରାସକୁ ପ୍ରକୃତ ପକ୍ଷେ ଅବଲୋକନ କରିଥିଲା ବେଳେ ଚୀନ ତା'ର ଶିଳ୍ପ ଅଭିବୃଦ୍ଧିର ଉଚ୍ଚ ହାରକୁ କ୍ରମାଗତ ଭାବେ ପରିଦର୍ଶନ କଲା । ଚୀନରେ ରାସ୍ତାଘାଟ, ବିଦ୍ୟୁତ୍ ଶକ୍ତି, ରେଲୱେ ଏବଂ ପୋର୍ଟ ଆଦି ପରି ଭୌତିକ ଭିତ୍ତିଭୂମି କ୍ଷେତ୍ରରେ ବହୁଳ ପବ୍ଲିକ୍ ପୁଞ୍ଜି ଲଗାଣ ଏକ ସୁସ୍ଥ ଅର୍ଥନୈତିକ ବାତାବରଣ ସୃଷ୍ଟି କଲା, ଯାହାକି ପ୍ରକାରାନ୍ତରେ ଅର୍ଥନୈତିକ ଅଭିବୃଦ୍ଧିର ଦରଜାକୁ ସମ୍ପୂର୍ଣ୍ଣଭାବେ ଉନ୍ମୁକ୍ତ କରିଦେଲା । ଆମେରିକୀୟ ଅର୍ଥନୀତି ବିଶ୍ଳେଷଣକାରୀମାନେ ସ୍ୱୀକାର କରନ୍ତି ଯେ କୃଷି କ୍ଷେତ୍ରରେ ସଂସ୍କାର ବ୍ୟବସ୍ଥା ଅତ୍ୟନ୍ତ କଷ୍ଟସାଧ ଓ ସମୟ ସାପେକ୍ଷ ହେବ । ସେମାନେ ପୁନଶ୍ଚ କୁହନ୍ତି ଯେ ଭାରତ ପାଇଁ ଶିଳ୍ପ ପରିବେଶକୁ ଉପେକ୍ଷା କରିବା ଏବଂ ଅଭିବୃଦ୍ଧିର ଇଞ୍ଜିନ

ଭାବି ସେବା କ୍ଷେତ୍ରମାନଙ୍କ ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭରଶୀଳ ହେବା ଏକ ଆତ୍ମଘାତୀ କାର୍ଯ୍ୟ ହେବ । ଯେ ପର୍ଯ୍ୟନ୍ତ ଭାରତବର୍ଷ ତା'ର ଆର୍ଥିକ ଘରକୁ ଠିକ୍ ରୂପେ ନ ସଜାଡ଼ିଛି ଏବଂ ଭିତ୍ତିଭୂମିକୁ ବିଶ୍ୱ ସ୍ତରୀୟ ନ କରିଛି, ସେ ପର୍ଯ୍ୟନ୍ତ ଶିଳ୍ପ କ୍ଷେତ୍ରରେ ବିଶ୍ୱ ପୁଞ୍ଜି ଲଗାଣର ସ୍ୱାର୍ଥ ସାଧନ ହୋଇ ପାରିବ ନାହିଁ । ଦୁର୍ଭାଗ୍ୟବଶତଃ ଭାରତବର୍ଷର ରାଜନୈତିକ ବର୍ଗ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ବିଶ୍ୱ ଅର୍ଥ ବ୍ୟବସ୍ଥାରେ ରାଷ୍ଟ୍ରୀୟ ଅଭିବୃଦ୍ଧି ପାଇଁ ଏକ ଅତ୍ୟନ୍ତ ଆବଶ୍ୟକୀୟ ଅଙ୍ଗ ଭାବେ ନ ଭାବି ଏକ ଦୁଷ୍ଟ ଗ୍ରହ ଭାବେ ଅତ୍ୟନ୍ତ ଅନିଚ୍ଛା ସତ୍ତ୍ୱେ ଗ୍ରହଣ କରିଥାନ୍ତି ।

ଏଭଳି ପରିସ୍ଥିତିରେ ଏହା ଆଶା କରିବା ଅପ୍ରାକୃତିକ ହେବ ଯେ ଚୀନର କ୍ରମବର୍ଦ୍ଧିଷ୍ଣୁ ପ୍ରଭାବକୁ ପ୍ରତିହତ କରିବା ପାଇଁ ଭାରତ ଆମେରିକାର ଏକ ଗ୍ରାଣ୍ଡ ଡିଜାଇନ୍‌ରେ ଯୋଗଦାନ ଦେଇ କୌଣସି ମତେ ନିଜର ଜାତୀୟ ସ୍ୱାର୍ଥକୁ ହାସଲ କରିପାରିବ । ଚୀନକୁ ନେଇ ଆମେରିକାରେ ଏଭଳି ଏକ ଜାତୀୟ ସର୍ବସମ୍ମତି ଏବେ ବି ହୋଇନାହିଁ, ଯଦିଓ ଏହା ନିଶ୍ଚିତ ଯେ ଆମେରିକୀୟମାନେ ଜାତୀୟ ସୁରକ୍ଷାକୁ ନେଇ ଭବିଷ୍ୟତରେ ଚୀନକୁ ପ୍ରଯୁକ୍ତି ବିଦ୍ୟାର ହସ୍ତାନ୍ତର କ୍ଷେତ୍ରରେ ଅଧିକରୁ ଅଧିକତର ସତର୍କତା ଅବଲମ୍ବନ କରିବେ । 'ଭାରତ ଓ ଆମେରିକା ଏକା ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ବିଶ୍ୱର ଦୁଇ ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରର ମାନ୍ୟତା ଲାଭ କରିପାରିଛନ୍ତି' -ବୁଶ ପ୍ରଶାସନର ଏପରି ଛଳନାମୟ ସ୍ଲୋଗାନ ଭାରତୀୟମାନଙ୍କ ମନ ଜିଣି ପାରୁନାହିଁ, ବରଂ ହାଇ-ଟେକ୍ନୋଲୋଜିର ହସ୍ତାନ୍ତର କ୍ଷେତ୍ରରେ ଆମେରିକା ଚୀନ ଅପେକ୍ଷା ଭାରତକୁ ଅଧିକ ଅଛୁଆଁ ବୋଲି ମଣୁଛି ।

ଆଗାମୀ ଦୁଇ ଦଶନ୍ଧି ମଧ୍ୟରେ ଚୀନ ଦକ୍ଷିଣ ପୂର୍ବ ଏସିଆ ରାଷ୍ଟ୍ରମାନଙ୍କ ସହ ଏକ କମନ୍ ମାର୍କେଟରେ ଯୋଗଦାନ କରିବ । ଭାରତ ଆଜି ଯେଉଁ ପ୍ରକୃତ ଆହ୍ୱାନର ସମ୍ମୁଖୀନ ହେଉଛି, ତାହା ହେଲା କିପରି ଚୀନର ଅଭୁତପୂର୍ବ ଅର୍ଥନୈତିକ ଅଭ୍ୟୁଦୟର ମୁକାବିଲା କରିବ । ଆମର ପଡ଼ୋଶୀ ଦକ୍ଷିଣ ଓ ଦକ୍ଷିଣ ପୂର୍ବ ଏସୀୟ ରାଷ୍ଟ୍ରମାନଙ୍କ ସହ ଟ୍ରେଡ଼୍ ପଲିସି ନିର୍ଦ୍ଧାରଣ କରୁଥିବା ଆମର ବାଣିଜ୍ୟ ମନ୍ତ୍ରଣାଳୟର ବଡ଼ବାବୁମାନଙ୍କର ଏଭଳି ଆହ୍ୱାନର ସାମନା ସାମନି ହେବା ପାଇଁ ପ୍ରକୃତରେ ସତ୍‌ସାହସ ନାହିଁ । ଏପରିକି ଶ୍ରୀଲଙ୍କା, ବଙ୍ଗଳାଦେଶ ଓ ସିଙ୍ଗାପୁର ସହ ମୁକ୍ତ ବାଣିଜ୍ୟ ଚୁକ୍ତି ମାଧ୍ୟମରେ ଭାରତର ଅର୍ଥନୀତିକୁ ମୁକ୍ତ ଅର୍ଥନୀତିର ରୂପ ଦେବା ପାଇଁ ମଧ୍ୟ ସେମାନେ ପଶ୍ଚାତ୍‌ପଦ ହେଉଛନ୍ତି । ଏକ ରାଷ୍ଟ୍ର ଯେ କି ଏକ ଆଞ୍ଚଳିକ ଶକ୍ତି ଭାବେ

ମୁଣ୍ଡ ଟେକି ଠିଆ ହେବା ପାଇଁ ଚେଷ୍ଟା କରୁଛି, ସେ କେବେ ବି ଏକ ସର୍ବଦିଗ ସୁରକ୍ଷିତ ଅର୍ଥନୈତିକ ପିଗ୍‌ମୀ ଭାବେ ବ୍ୟବହାର ଦେଖାଇ ପାରିବ ନାହିଁ ।

ଚୀନ ସହ ଭାରତର ସମ୍ପର୍କକୁ ନେଇ ଭାରତରେ ତର୍କ ବିତର୍କ ଅତ୍ୟଧିକ କଠୋର ମନୋବୃତ୍ତିର ପରିଚୟ ପ୍ରଦାନ କରିଥାଏ । ଆମର ରାଜନୈତିକ, ଅମଲାତାନ୍ତ୍ରିକ ଓ ବୁଦ୍ଧିଜୀବୀ ମହଲ ବିଶ୍ୱାସ କରନ୍ତି ଯେ ଚୀନ ଆମ ପ୍ରତି କୌଣସି ବିଶ୍ୱାସଘାତକତା କରି ନ ପାରେ, ଏହା ଆମର ପରମ ମିତ୍ର ରାଷ୍ଟ୍ର ଅଟେ । ଅନ୍ୟ କେତେକ ବର୍ଗ ବିଶ୍ୱାସ କରନ୍ତି ଯେ ଚୀନ ଭାରତ ପାଇଁ ଏକ ବିରାଟକାୟ ସାମରିକ ଶତ୍ରୁ ଏବଂ ଏହାର ଶତ୍ରୁତାକୁ ପ୍ରତିହତ କରିବା ପାଇଁ ଦରକାର ପଡ଼ିଲେ ଆମକୁ କୌଣସି ସୁଦୂର ବାହ୍ୟଶକ୍ତି ସହ ମଧ୍ୟ ହାତ ମିଳେଇବା ଉଚିତ ହେବ । ପରନ୍ତୁ ଚୀନ ପ୍ରାକୃତିକ ଉପାୟରେ ଏସିଆ ମହାଦେଶରେ ନିଜର ଆଧିପତ୍ୟ ଓ ଶକ୍ତି ପ୍ରତିଷ୍ଠା କରିବାକୁ ଇଚ୍ଛୁକ ଏବଂ ବିଶ୍ୱ କାଉନସିଲ୍‌ମାନଙ୍କରେ ନିଜର ପ୍ରାଧାନ୍ୟ ଜାହିର୍ କରିବାକୁ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରୁଛି । ଚୀନୀୟମାନେ ଆମେରିକା ଓ ଫ୍ରାନ୍ସରେ ସେମାନଙ୍କର କାଉଣ୍ଟରପାର୍ଟମାନଙ୍କ ସହ କଥାବାର୍ତ୍ତା କଲାବେଳେ ସାଧାରଣତଃ ଭାରତ ବିଷୟରେ ନ୍ୟୁନ ଦୃଷ୍ଟିରେ ଆଲୋଚନା କରିଥାନ୍ତି । ପୁନଶ୍ଚ ଚୀନ ପାକିସ୍ତାନକୁ ମିଶାଇଲ ଓ ଆଣବିକ ଶକ୍ତିର ହସ୍ତାନ୍ତରକରଣ କରିବା ସଙ୍ଗେ ସଙ୍ଗେ ମ୍ୟାନାମାର୍‌ରେ ତା'ର ବର୍ଦ୍ଧିଷ୍ଣୁ ଉପସ୍ଥିତି ପ୍ରମାଣ କରୁଛି ଯେ ଚୀନ ଭାରତକୁ ପ୍ରଗତିର ରାଜରାସ୍ତାର କଡ଼କୁ ଆଉଜେଇ ଦେବାକୁ ଚାହୁଁଛି ଏବଂ ନିଜ ଗୌରବର ଧ୍ୱଜା ସଗର୍ବେ ରାଜରାସ୍ତାର ଛକ ମାନଙ୍କରେ ଉଡ଼େଇବାକୁ ମଧ୍ୟ ଚାହୁଁଛି । ଏସିଆ ମହାଦେଶରେ ନିଷ୍କଣ୍ଟକ ହୋଇ ଆଶ୍ୱସ୍ତିର ନିଶ୍ୱାସ ମାରିବାକୁ ଚୀନୀୟମାନେ ନିଜର ଜାତୀୟ ନୀତି ବୋଲି ଧରି ନେଇଛନ୍ତି । ଏହି ଆହ୍ୱାନର ମୁକାବିଲା କରିବା ପାଇଁ ଭାରତ ଆଗରେ ଆଜି ସଠିକ୍ ରାସ୍ତା ହେଲା ସୁଦୂର ମହାଶକ୍ତିମାନଙ୍କ ସହ ସହବନ୍ଧନ ନ କରି ବରଂ ନିଜର ଅସଜଡ଼ା ଅର୍ଥନୈତିକ ଘରକୁ ଠିକ୍ ରୂପେ ସଜାଡ଼ି ନେଇ ରାଷ୍ଟ୍ରୀୟ ସାମରିକ ମାଂସପେଶୀକୁ ଶକ୍ତିଶାଳୀ କରିବା ଉଚିତ । ତେବେ ଯାଇ ଏକବିଂଶ ଶତାବ୍ଦୀ ଭାରତର ଶତାବ୍ଦୀ ହେବ ଏବଂ ଭାରତର ବିଜୟଶ୍ରୀ ଦିଗ୍‌ବିଦିଗେ ପ୍ରକମ୍ପିତ ହେବ ।

ସମାଜ

ତା- ୧୮.୧୧.୨୦୦୨



# ସାଂପ୍ରତିକ ମରୁଡ଼ି ପରିସ୍ଥିତି ଭାରତୀୟ ଅର୍ଥନୀତିର ମେରୁଦଣ୍ଡକୁ ଦୋହଲାଇ ଦେବ !

୨୦୦୨ ମସିହାର ଅସ୍ଥିର ବର୍ଷାକାଳ ସମଗ୍ର ଭାରତବର୍ଷର ଦୃଷ୍ଟି ଆକର୍ଷଣ କରିବାରେ ସକ୍ଷମ ହୋଇ ପାରିଛି । ଅଗଷ୍ଟ ଓ ସେପ୍ଟେମ୍ବର ମାସରେ ଦେଶର ବିଭିନ୍ନ ପ୍ରଦେଶରେ ମୂଷଳଧାରାରେ କିଛିଟା ବର୍ଷା ହେବା ଫଳରେ ଭାରତୀୟ ଜନମାନସ କିୟଦ୍ ପରିମାଣରେ ସ୍ୱସ୍ତିର ନିଶ୍ୱାସ ମାରିଲେ । ମରୁଡ଼ିର ପଦଧ୍ୱନିରେ ଧରିତ୍ରୀମାତା ପ୍ରକମ୍ପିତ ହେଉଥିବା ବେଳେ ଯଦ୍ ସାମାନ୍ୟ ବର୍ଷାର ଆବିର୍ଭାବ ପରିସ୍ଥିତିକୁ ଏକ ଶୁଭ ଲଗ୍ନ ଆଡ଼କୁ ମୁହେଁଇ ନେଲା । କେନ୍ଦ୍ର ଓ ରାଜ୍ୟ ସରକାର ମାନଙ୍କର ମିଳିତ ସହଯୋଗ ଓ ଉଦ୍ୟମରେ ଏହି ବର୍ଷାଜଳକୁ ସଦୁପଯୋଗ କରି ଆମର କୃଷକ ଭାଇମାନେ ସେମାନଙ୍କର ପାରୁ ପର୍ଯ୍ୟନ୍ତ ଲାଗିପଡ଼ି କୃଷିକର୍ମରେ, ତାହାର ଉପଯୁକ୍ତ ବ୍ୟବହାର କରି ଉଜୁଡ଼ା ଫସଲର ସଜଡ଼ା ମୁହଁ ଦର୍ଶନ କରି ପାରିବେ । ସେମାନେ ମଧ ଏହି କଠୋର ପରିସ୍ଥିତିର ସମ୍ମୁଖୀନ ହୋଇ ଶୀଘ୍ର ଅମଳକ୍ଷମ ଫସଲ ପାତି ଚାଷ କରି ଏହି ବର୍ଷାଜଳର ସୁବିନିଯୋଗ ପରିପାରିବେ । ଚାଷୀଭାଇମାନେ ଭୂତଳ ଜଳ ଓ ବର୍ଷାଜଳର ସୁନିୟନ୍ତ୍ରଣ ମାଧମରେ ଗୋଖାଦ୍ୟର ଅଭାବ ମଧ ବହୁ ପରିମାଣରେ ଦୂର କରି ପାରିବେ । ଅବେଳରେ ଅସରାଏ ଦି'ଅସରା ବର୍ଷା ହୋଇ ବର୍ଷାକାଳର ଉଛୁରା ଆବିର୍ଭାବକୁ ଚେତେଇ ଦେଉଛି । ବହୁତ କମ୍ ବର୍ଷା ବହୁ ଡେରିରେ ହେବା ଯୋଗୁଁ ପରିସ୍ଥିତି ଆଜି ଅଣଆୟତ୍ତ ହୋଇଯାଇଛି ଏବଂ 'ଜଳ ହିଁ ଜୀବନ' ଏହି କଥା ପଦଟିର ମାହାତ୍ମ୍ୟ ଆମେ ଆଜି ସମସ୍ତେ ଅଙ୍ଗେ ଅଙ୍ଗେ ଅନୁଭବ କରୁଛେ । ତେଣୁ ମରୁଡ଼ିର କବଜାରୁ ଆମେ ଯେ ବର୍ତ୍ତିଗଲେ, ଏହା ଭାବିବା ସମ୍ପୂର୍ଣ୍ଣ ଅମୂଳକ ହେବ ।

ଏଭଳି ଏକ ପରିସ୍ଥିତିକୁ କାନ୍ଧରେ ବୋହି ଭାରତୀୟ ଅର୍ଥନୀତି ତା'ର ରୂପ ବିନ୍ୟାସକୁ ଜାତୀୟ ଜନଜୀବନ ସମ୍ମୁଖରେ କିପରି ଭାବେ ଉପସ୍ଥାପନା କରିବ, ତାହାହିଁ ଆଜିର ଏକ ମୁଖ୍ୟ ଆହ୍ୱାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ମରୁଡ଼ିର

କରାଳ କବଳରେ ପଡ଼ି ଅର୍ଥନୀତିର ସମ୍ଭାବ୍ୟ ରୂପରେଖ କିପରି ହେବାକୁ ଯାଉଛି, ସେ ନେଇ ବହୁ କଳ୍ପନା ଜଳ୍ପନା ମଧ୍ୟ ପ୍ରକାଶ ପାଇଛି । ୨୦୦୨-୦୩ ମସିହାରେ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ ଅଭିବୃଦ୍ଧି ହାର ୬ ରୁ ୬.୫ ପ୍ରତିଶତ ମଧ୍ୟରେ ରହିବାର ସମ୍ଭାବ୍ୟ ପରିକଳ୍ପନା ପ୍ରକାଶ ପାଇଥିବା ବେଳେ ଏବେ ଅର୍ଥ ମନ୍ତ୍ରଣାଳୟ ଅଭିବୃଦ୍ଧି ହାର ୫.୫ ପ୍ରତିଶତ ହେବ ବୋଲି କହିଛି ।

ଏପରିକି କେତେକ ସ୍ୱାଧୀନ ସଂସ୍ଥା ମଧ୍ୟ ଆହୁରି ନିରାଶାଜନକ ସ୍ଥିତିର ଅବତାରଣା କରି ଅଭିବୃଦ୍ଧିର ହାର ୩ ପ୍ରତିଶତ ହେବ ବୋଲି ହିସାବ କରି କହିଛି । ଅର୍ଥନୈତିକ ଅଭିବୃଦ୍ଧିର ମରୁଡ଼ି ପୂର୍ବବର୍ତ୍ତୀ ସମ୍ଭାବ୍ୟ ରୂପରେଖ ଦେଶ ପାଇଁ ବହୁ ଆଶା ଆକାଂକ୍ଷାକୁ ଜାବୁଡ଼ି ଧରିଥିବାବେଳେ ସଂଶୋଧିତ ସମ୍ଭାବ୍ୟ ରୂପରେଖ ନିରାଶାର ଗୋଧୂଳି ଛାଇ ଦେଉଛି । ବିଗତ ଶତାବ୍ଦୀର ଶେଷ ଚତୁର୍ଥାଂଶ ସମୟ ସୀମା ଅର୍ଥାତ୍ ଗତ ୨୫ ବର୍ଷ ମଧ୍ୟରେ ଦେଶରେ ଘଟିଯାଇଥିବା ବହୁ ଭୟାବହ ମରୁଡ଼ି ପରିସ୍ଥିତିର ପୁଙ୍ଖାନୁପୁଙ୍ଖ ଆଲୋଚ଼ନା ଓ ବିଶ୍ଳେଷଣ କଲେ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେବା ଯେ ମରୁଡ଼ି ପରିସ୍ଥିତି ଓ ଅର୍ଥନୈତିକ ଅଭିବୃଦ୍ଧି ମଧ୍ୟରେ ଏକ ଅତ୍ୟନ୍ତ ଜଟିଳ ସମ୍ପର୍କ ରହି ଆସିଛି । ଏହି ଦୁହିଁଙ୍କ ମଧ୍ୟରେ ୱାନ-ଟୁ-ୱାନ୍ ଅର୍ଥାତ ଏକକୁ ଏକ ସମ୍ପର୍କ କେବେ ନ ଥିଲା ବା ନାହିଁ କହିଲେ ଚଳେ । ତେଣୁ ଜୁଲାଇ ଓ ଅଗଷ୍ଟ ମାସର ବର୍ଷା ପରିମାଣକୁ ଅବା ବର୍ଷା ଋତୁର ଆଗମନର ଶୁଭାରମ୍ଭ ପୂର୍ବରୁ ଭାରତ ଭୂଖଣ୍ଡରେ ବାରିଧିର ସ୍ରୋତସ୍ୱିନୀ ଧାରାକୁ ମାପକାଠି ରୂପେ ଧରି ଆମେ ଯଦି ରାଷ୍ଟ୍ରୀୟ ମରୁଡ଼ିର ପ୍ରଭାବକୁ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନର ଅଭିବୃଦ୍ଧି ସହ ସମୀକରଣ କରିବା, ତେବେ ତାହା ଏକ ମସ୍ତବଡ଼ ନିର୍ବୋଧତା ହେବ । ତେଣୁ ଆମେ ସାଂପ୍ରତିକ ପରିସ୍ଥିତିର ଆହ୍ୱାନକୁ ହୃଦୟଙ୍ଗମ କରି ଜୀବନ ଜୀବିକା ନିର୍ବାହ ପାଇଁ ଅତ୍ୟନ୍ତ ଆବଶ୍ୟକ ହେଉଥିବା ତିନୋଟି ମୁଖ୍ୟ ଉପାଦେୟ ଯଥା - ଖାଦ୍ୟ, ଜଳ ଓ କର୍ମସଂସ୍ଥାନ ଉପରେ ଆମର ଦୃଷ୍ଟି ନିବଦ୍ଧ କରିବା ଯାହାକି ମରୁଡ଼ି ପରିସ୍ଥିତି ସହ ସାଧାରଣତଃ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଏବଂ ପ୍ରଗତିର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଆୟୁଧ ଅଟେ ।

ଉକ୍ତ ମରୁଡ଼ି ପରିସ୍ଥିତି ଅର୍ଥନୀତିକୁ ବହୁଦିଗରୁ ପ୍ରଭାବିତ କରିଥାଏ ଏବଂ ରାଷ୍ଟ୍ରୀୟ ଅର୍ଥନୈତିକ ଅବୟବକୁ ମଧ୍ୟ କ୍ଷତବିକ୍ଷତ କରି ଲହୂ ଲୁହାଣ କରି ପକାଏ । ସହରୀ ଓ ଗ୍ରାମ୍ୟ ସଭ୍ୟତାର ସରହଦ ଡେଇଁ ଏହା ସମ୍ପୂର୍ଣ୍ଣ ରାଷ୍ଟ୍ରକୁ ଗ୍ରାସ କରି

ଦେଇଥାଏ । ପ୍ରଥମ ଏବଂ ସର୍ବପ୍ରଥମ ନିଶ୍ଚିତ ପ୍ରଭାବ ରୂପେ ମରୁଡ଼ି ପରିସ୍ଥିତି ଶସ୍ୟ ଉତ୍ପାଦନକୁ ଘୋର ଭାବେ ଆକ୍ରାନ୍ତ କରିଥାଏ । ଶସ୍ୟହାନି ଯୋଗୁଁ କୃଷି ଉତ୍ପାଦନରେ ହ୍ରାସ ପରିଲକ୍ଷିତ ହୋଇଥାଏ, ଫଳତଃ କୃଷକଭାଇମାନଙ୍କର ରୋଜଗାରରେ ମଧ ହ୍ରାସ ଘଟିଥାଏ । ଏହାର ପ୍ରଭାବରେ ଗ୍ରାମୀଣ କୃଷି ଶ୍ରମଜୀବୀ ଓ ଦିନ ମଜୁରିଆ ବ୍ୟକ୍ତିମାନଙ୍କର ଦୈନନ୍ଦିନ ଗୁଜୁରାଣ ମେଣ୍ଟିବା ମଧ କାଠିକାର ପାଠ ହୋଇଥାଏ । ମରୁଡ଼ି ବେଳେ ସେମାନେ କୌଣସି କାମଧନ୍ଦା ନ ପାଇ ପିଲା କବିଲା ଧରି ଭୋକ ଉପାସରେ ଦିନ ବିତାଇବାକୁ ବାଧ ହୋଇଥାନ୍ତି । କୃଷିଜାତ ଦ୍ରବ୍ୟଗୁଡ଼ିକର ଉତ୍ପାଦନରେ ହ୍ରାସ ଘଟିବା ଯୋଗୁଁ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି)ରେ ମଧ ହ୍ରାସ ଘଟିଥାଏ, ଯାହାକି ଏକ ପ୍ରାକୃତିକ ଉପସଂହାର ବୋଲି ଧରି ନିଆଯାଇଥାଏ । କିନ୍ତୁ କଥାଟା ଏତେ ସହଜ ବୋଲି ଧରି ନିଅନ୍ତୁ ନାହିଁ ।

ଦେଶର ସମୁଦାୟ ଚାଷ ଜମିର ୪୨ ପ୍ରତିଶତ ଏବେ ଜଳସେଚନର ସୁବିଧା ଲାଭକରି ପାରୁଥିଲା ବେଳେ ୧୯୮୧-୮୨ ମସିହାରେ ଏହା ମାତ୍ର ୩୦ ପ୍ରତିଶତ ଲାଭ କରି ପାରୁଥିଲା । ଏହାର ଅର୍ଥ ହେଲା ଅତିକମ୍‌ରେ ଦେଶର କିଛି ନା କିଛି ଅଞ୍ଚଳରେ ଚାଷଜମିଗୁଡ଼ିକ ପୂର୍ବ ଅପେକ୍ଷା ଅଧିକ ସୁବିଧା ସୁଯୋଗ ଓ ନିରାପତ୍ତା ପାଇପାରୁଛି । ଦୁଇ ଦଶନ୍ଧି ପୂର୍ବରୁ ଯେଉଁ ଅଞ୍ଚଳରେ ଖରିଫ ଫସଲ ମୋଟ ଫସଲ ଅମଳର ୬୦ ପ୍ରତିଶତ ଭରଣା କରି ପାରୁଥିଲା, ଏବେ ସେହି ଅଞ୍ଚଳରେ ଖରିଫ ଓ ରବି ଫସଲ ଅମଳ ସେୟାର ପ୍ରାୟ ସମାନ ସମାନ ହୋଇ ଯାଇଛି । ତେଣୁ ସ୍ୱଳ୍ପ ଖରିଫ ଫସଲର ଅମଳ ଶୀତଦିନିଆ ରବି ଫସଲର ବହୁଳ ଅମଳ ଦ୍ୱାରା ଭରଣା କରାଯାଇ ପାରିବ ଯାହାକି ପରୀକ୍ଷିତ ହୋଇଯାଇଛି । ଏହା ସତ୍ୟ ଯେ ଶୀତଦିନିଆ ରବି ଫସଲ ମାଟିର ଆର୍ଦ୍ରତା ଓ ଜଳସେଚନର ଉପଲବ୍ଧତା ଉପରେ ନିର୍ଭର କରିଥାଏ, ଯାହାକି ପ୍ରକାରାନ୍ତରେ ବର୍ଷାଋତୁ ଓ ବର୍ଷାଋତୁର ପରବର୍ତ୍ତି ବର୍ଷା ଉପରେ ନିର୍ଭର କରିଥାଏ । ପେନିନସୁଲାର ଭାରତବର୍ଷ ପାଇଁ ମାତ୍ରାଧିକ ରବି ଫସଲର ଉତ୍ପାଦନ ସେପରି କୌଣସି ଆଶାର କିରଣ ଉଦ୍ରେକ କରି ପାରେନାହିଁ, କାରଣ ଏହି ଅଞ୍ଚଳ ଗୁଡ଼ିକ ମୁଖ୍ୟତଃ ଗୋଟିଏ ଫସଲର ଅମଳ ଉପରେ ନିର୍ଭରଶୀଳ ଥାଏ ।

ମରୁଡ଼ିର ଦ୍ୱିତୀୟ ଭୟଙ୍କର ପ୍ରଭାବ ହେଲା, ଗ୍ରାମୀଣ ଜନସାଧାରଣଙ୍କ ହାତ ପାହାନ୍ତାରେ ମାତ୍ର ସ୍ୱଳ୍ପାତିସ୍ୱଳ୍ପ ରୋଜଗାର ଉପଲବ୍ଧ ହେଉଥିବାରୁ ଉତ୍ପାଦିତ ସାମଗ୍ରୀଗୁଡ଼ିକ ପାଇଁ ଚାହିଦାରେ ହ୍ରାସ ସେମାନଙ୍କ କ୍ଷେତ୍ରରେ ପରିଲକ୍ଷିତ ହେଉଛି ।

ଏହାର ପ୍ରଭାବରେ ଫସଲପାତି ପାଇଁ ଆବଶ୍ୟକ ହେଉଥିବା ସାର ଓ ବିହନ କିଣିବା ସେମାନଙ୍କ ପାଇଁ ଦୁରୁହ ବ୍ୟାପାର ହୋଇ ପଡ଼ିଥାଏ । ଗ୍ରାମୀଣ ଜନସାଧାରଣଙ୍କ ରୋଜଗାରରେ ହ୍ରାସ ଯୋଗୁଁ ଏପରିକି ଅତ୍ୟାବଶ୍ୟକ ଛୋଟ ଛୋଟ ଖାଉଟି ଦ୍ରବ୍ୟାଦି ଗୁଡ଼ିକର କିଣିବା ମଧ୍ୟ କଷ୍ଟକର ବ୍ୟାପାର ହୋଇପଡ଼େ । ତେଣୁ ଯଦିଓ ଗାଣିତିକ ସୂତ୍ରାନୁଯାୟୀ ଆଜିର ଦିନରେ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ କୃଷିର ସ୍ୱଳ୍ପ ସେୟାର ମତ ଉପସ୍ଥାପନା କରୁଛି ଯେ କୃଷିଜାତ ଦ୍ରବ୍ୟର ଉତ୍ପାଦନରେ ହ୍ରାସ ପରିଲକ୍ଷିତ ହେଲେ ମଧ୍ୟ ଅର୍ଥନୀତି ଅପେକ୍ଷାକୃତ ଭାବେ ସେତେଟା ପ୍ରଭାବିତ ହେବ ନାହିଁ, ପରନ୍ତୁ ପ୍ରକୃତ ପ୍ରଭାବ ଅତ୍ୟଧିକ ମାତ୍ରାରେ ଅନୁଭୂତ ହେବ ଏବଂ ଅର୍ଥନୈତିକ ମାନଚିତ୍ର ଝାପ୍‌ସା ଦେଖାଯିବ । ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ କୃଷିର ଭାଗ ୧୯୮୧-୮୨ ମସିହାରେ ୩୫ ପ୍ରତିଶତ ଥିବାବେଳେ ୨୦୦୧-୨୦୦୨ ମସିହାରେ ତାହା ୨୨ ପ୍ରତିଶତକୁ ଖସି ଆସିଛି । ମରୁଡ଼ି ମଧ୍ୟ ରିଲିଫ ପ୍ରଦାନ ଉପରେ ସରକାରଙ୍କ ଦୃଷ୍ଟିକୁ ସନ୍ନିବେଶିତ କରାଇଥାଏ । ଏହାର ଅର୍ଥ ହେଲା, ବଜେଟ ଅର୍ଥରୁ ଭିତ୍ତିଭୂମି ଉପରେ ପବ୍ଲିକ୍ ଇନଭେଷ୍ଟମେଣ୍ଟ ବା ରାଷ୍ଟ୍ରାୟତ୍ତ ପୁଞ୍ଜି ଲଗାଣରେ ନିଶ୍ଚିତ ରୂପେ ହ୍ରାସ ହେବ; ଯାହାକି ଶିଳ୍ପଜାତ ଦ୍ରବ୍ୟଗୁଡ଼ିକ ପାଇଁ ଜନସାଧାରଣଙ୍କର ଚାହିଦାକୁ ମଧ୍ୟ ଊଣା କରାଇବ ।

ମରୁଡ଼ିର ତୃତୀୟ ପ୍ରାଦୁର୍ଭାବ (ସୌଭାଗ୍ୟ ବଶତଃ ଯାହାର କବଳରୁ ଭାରତବର୍ଷ ଏହି ବର୍ଷରୁ ମୁକୁଳି ଯିବ) ହେଲା ଏହି ଯେ ସ୍ୱଳ୍ପ କୃଷି ଉତ୍ପାଦନ ଚିରାଚରିତ ଭାବେ ଖାଦ୍ୟାଭାବ ସହ ଜଡ଼ିତ ଥାଏ । ବୈଦେଶିକ ବିନିମୟ ମୁଦ୍ରାରେ ନିଅଣ୍ଟକୁ ଆମେ ସାଧାରଣତଃ ଧରି ନେଇଥାଉ ଯେ ବହୁଳ ପରିମାଣରେ ଆମଦାନୀ କରିବା ମଧ୍ୟ ଦୁଃସାଧ ହୋଇ ପଡ଼ିବ । ଏହାର ଫଳ ଉଚ୍ଚ ମୁଦ୍ରାସ୍ଫିତି ହେବ, ଯାହାକି କୃଷି ଶ୍ରମିକ ଓ ଚାଷୀମାନଙ୍କୁ ବହୁତ ବାଧିବ । ପରନ୍ତୁ ଖୁସିର ଖବର ହେଲା ଏହି ଯେ ୨୦୦୨ ମସିହାରେ ଦେଶରେ ୬୦ ନିୟୁତ ଟନ ଖାଦ୍ୟଶସ୍ୟ ମହଯୁଦ ଥିବା ସଙ୍ଗେ ସଙ୍ଗେ ୬୦ ବିଲିୟନ ଡଲାରର ବୈଦେଶିକ ବିନିମୟ ମୁଦ୍ରା ମଧ୍ୟ ଗଚ୍ଛିତ ଅଛି । ଏହାର ଅର୍ଥ ହେଲା, ଯଦି ଭାରତୀୟ ଶାସନ ବ୍ୟବସ୍ଥାରେ ସେପରି କିଛି ଗୁରୁତର ବିଭ୍ରାଟ ସୃଷ୍ଟି ନ ହୁଏ; ତେବେ ଦେଶବାସୀମାନେ ଏବର୍ଷ ଖାଇପିଇ ଶାନ୍ତିରେ ନିଃଶ୍ୱାସ ମାରିପାରିବେ, ଏପରିକି ଆଞ୍ଚଳିକ ସ୍ତରରେ ମଧ୍ୟ ଖାଦ୍ୟଶସ୍ୟରେ ଅଭାବ ପରିଲକ୍ଷିତ ହେବା ଆଶା କରାଯାଉନାହିଁ ।

ଭୟଙ୍କର ମରୁଡ଼ିର କବଳରେ ପଡ଼ି ସମଗ୍ର ଦେଶ ଆଗଙ୍ଗା କୁମାରୀକା ନିଷ୍ପେସିତ ହେଉଥିଲା ବେଳେ ତାହା କିପରି ଅର୍ଥନୀତିକୁ ପ୍ରଭାବିତ କରିବ, ଏ ନେଇ ନିକଟ ଅତୀତର ଇତିହାସ ଆମକୁ କ'ଣ କହୁଛି; ଚାଲନ୍ତୁ ଟିକେ ସେ ବିଷୟରେ ପର୍ଯ୍ୟାଲୋଚ଼ନା କରିବା । କେତେକ୍ ମାତ୍ର ଉଦାହରଣ ଅସମ୍ଭାବ୍ୟ ଫଳାଫଳକୁ ଲୋକଲୋଚ଼ନକୁ ଆଣିବା ପାଇଁ ଯଥେଷ୍ଟ ହେବ ବୋଲି ମନେ ହୁଏ । ପୁନେ ସ୍ଥିତ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଟ୍ରପିକାଲ ମେଟେରୋଲୋଜି ୧୯୭୧ ରୁ ୧୯୯୦ ମସିହା ମଧ୍ୟରେ ଦେଶରେ ହୋଇଥିବା ବର୍ଷାର ପରିମାଣକୁ ରେକର୍ଡ଼ କରି ରଖି ତହିଁରୁ ଉପଲବ୍ଧ ତଥ୍ୟାବଳୀନୁଯାୟୀ ଉଲ୍ଲେଖ କରିଛି ଯେ ୧୯୭୨ ଓ ୧୯୭୮ ମସିହାରେ ଦେଶରେ ଦୁଇଟି ଅତ୍ୟନ୍ତ ଭୟଙ୍କର ମରୁଡ଼ି ପରିସ୍ଥିତି ସଙ୍ଗଠିତ ହୋଇଥିଲା । ଏହି ଦୁଇ ବର୍ଷରେ ବର୍ଷାର ପରିମାଣ ଯଥାକ୍ରମେ ୬୫୩ ଓ ୬୯୭ ମିଲିମିଟର ହୋଇଥିଲା, ଯାହାକି ବହୁବର୍ଷର ହାରାହାରି ପରିମାଣ ୮୫୨ ମିଲିମିଟର ତୁଳନାରେ ଅତ୍ୟନ୍ତ କମ୍ ଅଟେ । ଏହି ଦୁଇବର୍ଷରେ କୃଷି ଉତ୍ପାଦନରେ ଆଶାତୀତ ହ୍ରାସ ଘଟିଥିଲା ଏବଂ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନର ଅଭିବୃଦ୍ଧି ମଧ୍ୟ ପ୍ରଭାବିତ ହୋଇଥିଲା । ପରନ୍ତୁ କୃଷି ଓ ଅର୍ଥନୀତିର ଭାଗ୍ୟ ଏହି ଦୁଇବର୍ଷରେ ବହୁତ ପାର୍ଥକ୍ୟ ଥିଲା । ୧୯୭୨-୭୩ ମସିହାରେ ଖାଦ୍ୟଶସ୍ୟ ଉତ୍ପାଦନ ୭.୮ ପ୍ରତିଶତ ଖସି ଆସିଲା; ମୋଟ ଉପରେ କୃଷି କ୍ଷେତ୍ର ବିଯୁକ୍ତ ୫.୭ ପ୍ରତିଶତ ସଙ୍କୁଚ଼ିତ ହୋଇଗଲା ଏବଂ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନର ଅଭିବୃଦ୍ଧି ହାର ମଧ୍ୟ ବିଯୁକ୍ତ ୦.୩ ପ୍ରତିଶତକୁ ଖସି ଆସିଲା । ପରନ୍ତୁ ୧୯୮୭-୮୮ ବର୍ଷଟି ଏକ ଅଲଗା ଫଳାଫଳକୁ ଅବଲୋକନ କଲା । ଖାଦ୍ୟଶସ୍ୟର ଉତ୍ପାଦନରେ ହ୍ରାସ ପରିଲକ୍ଷିତ ହେଲା, ପରନ୍ତୁ ହ୍ରାସ ପରିମାଣ ମାତ୍ର ୨.୨ ପ୍ରତିଶତ ଥିଲା । ଏହାର କାରଣ ହେଲା ମରୁଡ଼ିର ପ୍ରାଦୁର୍ଭାବରେ ସେ ବର୍ଷର ଖରିଫ ଫସଲ ଭଲ ହୋଇ ନ ଥିଲେ ମଧ୍ୟ ରବି ଫସଲର ମାତ୍ରାଧିକ ଉତ୍ପାଦନ ଭୟାବହ ପରିସ୍ଥିତିକୁ ସମ୍ଭାଳି ନେଲା । କୃଷିଜାତ ରୋଜଗାରରେ ୧.୪ ପ୍ରତିଶତ ହ୍ରାସ ଅନୁଭୂତ ହୋଇଥିଲା ଏବଂ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ ଅଭିବୃଦ୍ଧି ଯଦିଓ ୧୯୮୬-୮୭ ବର୍ଷ ତୁଳନାରେ କମ୍ ଥିଲା, ହେଲେ ଯଥେଷ୍ଟ ସୁସ୍ଥ ସବଳ ୩.୮ ପ୍ରତିଶତ ଥିଲା । ଏହାର ମୁଖ୍ୟ କାରଣ ହେଲା, ମ୍ୟାନୁଫ୍ୟାକଚ଼ରିଂ ସେକ୍ଟରରେ ବଳିଷ୍ଠ ୭ ପ୍ରତିଶତ ହାରରେ ଅଭିବୃଦ୍ଧି ଘଟିଲା; ଯାହାକି କିଛି ପରିମାଣରେ ୧୯୮୦ ଦଶକର ଶେଷାର୍ଦ୍ଧର ଅର୍ଥନୈତିକ ସଂପ୍ରସାରଣ ଯୋଗୁଁ ସମ୍ଭବପର ହୋଇପାରିଲା ।

ଅଧିକନ୍ତୁ ଗ୍ରାମୀଣ ପରିଯୋଜନାମାନଙ୍କରେ ପ୍ରଚୁର ପରିମାଣରେ ପୁଞ୍ଜି ଲଗାଣରେ ଅଭିବୃଦ୍ଧି ଯୋଗୁଁ କୃଷି ଶ୍ରମିକମାନଙ୍କର ରୋଜଗାରରେ ହୋଇଥିବା କ୍ଷତିର କିଛିଟା ଭରଣା ମଧ କରି ପାରିଲା । ୧୯୮୭ ମସିହା ମରୁଡ଼ିର ଅତ୍ୟନ୍ତ ଅସାଧାରଣ ଘଟଣାଟି ହେଲା ସେ ବର୍ଷର ଗ୍ରାମୀଣ ଦାରିଦ୍ର୍ୟ ୧୯୮୩-୮୪ ମସିହାଠାରୁ ଅତିମାତ୍ରାରେ ଊଣା ଥିଲା, ଯଦିଓ ୧୯୮୩-୮୪ ବର୍ଷ ସାଧାରଣ ବର୍ଷାକୁ ଅଙ୍ଗେ ଅଙ୍ଗେ ଅନୁଭବ କରିଥିଲା । ଅପର ପକ୍ଷରେ ୧୯୭୯ ମସିହାରେ ହୋଇଥିବା ମରୁଡ଼ିର ଅଭିଜ୍ଞତା ଏକଦମ୍ ଓଲଟା ଥିଲା । ଏହା ଅତ୍ୟନ୍ତ ଭୟଙ୍କର ଥିଲା ଏବଂ ଏକ ଡିଜାଷ୍ଟର ରୂପେ ଜନସାଧାରଣଙ୍କ ସାମନାରେ ଆସି ଠିଆ ହୋଇଥିଲା । ୧୯୭୯ ମସିହାରେ ସାଧାରଣ ବର୍ଷାର ପରିମାଣ ୭୦୮ ମିଲିମିଟର ଥିଲା, ଯାହାକି ୧୯୮୩ ଓ ୧୯୮୪ ମସିହାର ବର୍ଷାର ପରିମାଣଠାରୁ ଅଳ୍ପ ଅଧିକ ଥିଲା । ତଥାପି ଶସ୍ୟର ଆମଦାନୀ ପରିମାଣରେ ୧୭ ପ୍ରତିଶତ କ୍ଷତି ହେଲା । ଖରିଫ ଫସଲ ଅପେକ୍ଷା ରବି ଫସଲରେ ଅମଳ ଅପେକ୍ଷାକୃତ କମ୍ ଥିଲା । ମୋଟ କୃଷି ଉତ୍ପାଦନ ମଧ ୧୩.୭ ପ୍ରତିଶତ କମ୍ ଥିଲା । ମୁଦ୍ରାସ୍ଫିତିରେ ୧୭ ପ୍ରତିଶତ ବୃଦ୍ଧି ଘଟିଲା । ମ୍ୟାନୁଫ୍ୟାକଚ଼ରିଂ ସେକ୍ଟରଗୁଡ଼ିକ ଅତ୍ୟଧିକ ମୂଲ୍ୟଯୁକ୍ତ ଦ୍ରବ୍ୟଗୁଡ଼ିକ କ୍ଷେତ୍ରରେ ୩.୪ ପ୍ରତିଶତ କ୍ଷତି ସହିଲା ଏବଂ ସର୍ବୋପରି ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ ଅଭିବୃଦ୍ଧି ହାର ୧୯୭୯-୮୦ ଆର୍ଥିକ ବର୍ଷରେ ବିଯୁକ୍ତ ୫.୨ ପ୍ରତିଶତ ଥିଲା ।

ପରନ୍ତୁ, ଆଞ୍ଚଳିକ ସ୍ତରରେ ବର୍ଷା ଋତୁରେ ସୁଲଭ ବଣ୍ଟନ ବ୍ୟବସ୍ଥାର ପ୍ରଚ଼ଳନ, ରବି ଫସଲର ପ୍ରାରମ୍ଭ ପୂର୍ବରୁ କି ରକମ ବର୍ଷା ହେଉଛି, ଜଳସେଚ଼ନ ବ୍ୟବସ୍ଥା ଚାଷୀଙ୍କୁ କେତେଦୂର ନିରାପତ୍ତା ଯୋଗେଇ ଦେଇ ପାରୁଛି ଏବଂ ମୋଟ ଉପରେ ସରକାରୀ କଳର କୃଷି ଉତ୍ପାଦନ ପ୍ରତି ଆଗ୍ରହ ଓ ସେବା ମନୋବୃତ୍ତି ସବୁକିଛି ମିଳିମିଶି ନିଶ୍ଚିତ କରିବ ଯେ ୨୦୦୨ ମସିହାରେ ଦେଖାଦେଇଥିବା ଅଭୂତପୂର୍ବ ମରୁଡ଼ି ସମସ୍ୟା ଭାରତୀୟ ଅର୍ଥନୀତି ଉପରେ କିଭଳି ପ୍ରଭାବ ପକାଇବ । କିନ୍ତୁ ଅତୀତର ମରୁଡ଼ି ପରି ଏଥରକ ମଧ ରାଷ୍ଟ୍ରୀୟ ଜନ ଜୀବନର ବଞ୍ଚି ରହିବା ଉପରେ ମୌଳିକ ପ୍ରାଧାନ୍ୟ ଦିଆଯିବା ଆବଶ୍ୟକ । ଗ୍ରାମୀଣ ରୋଜଗାର ବ୍ୟବସ୍ଥାରେ ଜିଲ୍ଲା ପ୍ରଶାସନ କେତେଦୂର ମାନବମୁଖୀ ହୋଇ ପାରୁଛି ଓ ମଣିଷର ସୁଖ ଦୁଃଖ, ହସକାନ୍ଦ ସହ ଶାସନ ବ୍ୟବସ୍ଥା କେତେଦୂର ନିବିଡ଼ ଭାବେ ଜଡ଼ିତ ହୋଇ ପାରୁଛି, ତାହାହିଁ ସ୍ଥିର କରିବ କୃଷି ଶ୍ରମିକ ତଥା କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ପେଟରେ ଗଣ୍ଡାଏ ଦାନା, ଦେହରେ କନା ଓ

ନିଜର ଦୈନନ୍ଦିନ ଗୁଜୁରାଣ ମେଣ୍ଟାଇବା ପାଇଁ ଏବର୍ଷ ହାତରେ କାମ ପାଇଟି ପାଇପାରୁଛନ୍ତି ନାଁ ନାହିଁ । ଚାଷୀଭାଇମାନଙ୍କୁ ସରକାରୀ ସହଯୋଗର ମାନ ନିର୍ଣ୍ଣୟ କରିବ ସେମାନଙ୍କର ରୋଜଗାରରେ ହେଉଥିବା ହ୍ରାସ କେତେଦୂର ଏହି ସହଯୋଗ ଦ୍ୱାରା ଭରଣା ହୋଇପାରିବ । ସରକାରଙ୍କ କର୍ମଦକ୍ଷତା ସେତିକିବେଳେ ପ୍ରମାଣିତ ହେବ, ଯେତେବେଳେ ତାଙ୍କ କର୍ତ୍ତୃତ୍ୱରେ ଥିବା ବହୁବିଧ ବ୍ୟବସ୍ଥା ଯଥା- ଗ୍ରାମୀଣ ରୋଜଗାର କାର୍ଯ୍ୟକ୍ରମ, ସ୍କୁଲମାନଙ୍କରେ ମାଗଣା ଖାଦ୍ୟ ଯୋଗାଣ ଓ ଦୁଃସ୍ଥ ଓ ନିରାଶ୍ରୟୀମାନଙ୍କୁ ସବ୍‌ସିଡ଼ି ପ୍ରଦାନ ଆଦି କାର୍ଯ୍ୟକ୍ରମ ସୁଫଳ ପ୍ରଦାନ କରିବ; ଯଦ୍ୱାରା ଅନାହାର ମୃତ୍ୟୁ ବହୁ ପରିମାଣରେ ନିୟନ୍ତ୍ରଣାଧିନ ହୋଇପାରିବ ।

କିନ୍ତୁ ସବୁଠାରୁ ବଡ଼ ସମସ୍ୟା ହୋଇ ଆସି ଠିଆ ହେବ ପାନୀୟ ଜଳାଭାବ୍ । ଏହି ଆହ୍ୱାନକୁ କେତେଦୂର ପ୍ରତିହତ କରାଯାଇ ପାରିବ ଏବଂ ସବୁରି ପେଟରେ ମୁନ୍ଦେ ପାଣି କିପରି ପହଞ୍ଚି ପାରିବ, ତାହା ହିଁ ବଡ଼ କଥା । ଏ ବର୍ଷ ବର୍ଷାଋତୁର ଡେରିରେ ଆଗମନ ଯଦି ସେପରି କୌଣସି ନାଟକୀୟ ପାର୍ଥକ୍ୟ ପ୍ରକଟ କରି ନ ପାରେ, ପାନୀୟ ଜଳ ସମସ୍ୟା ମସ୍ତବଡ଼ ସମସ୍ୟା ହୋଇ ଆମ ସମ୍ମୁଖରେ ଆସି ଦଣ୍ଡାୟମାନ ହେବ; ଯାହାକି ୨୦୦୨ ମସିହାର ମରୁଡ଼ିକୁ ୧୯୮୭ ମସିହାର ମରୁଡ଼ି ଠାରୁ ସମ୍ପୂର୍ଣ୍ଣ ଅଲଗା ରୂପ ପ୍ରଦାନ କରିବ । ଦୀର୍ଘଦିନ ଧରି ଆମେ ଭୂତଳ ଜଳକୁ ଏତେ ମାତ୍ରାରେ ବ୍ୟବହାର କରି ଚାଲିଛେ ଯେ ଯାହାର ଫଳରେ ଭୂତଳ ଜଳ ସ୍ତର ସବୁ ସ୍ଥାନରେ ନିମ୍ନକୁ ଏବଂ ଅତି ନିମ୍ନକୁ ଖସି ଯାଇଛି । ପାଣି ଟାଙ୍କିଗୁଡ଼ିକ ପଟୁମାଟିରେ ଭରି ହୋଇଯାଉଛି ଏବଂ ୱାଟର ସେଡ଼ ମ୍ୟାନେଜ୍‌ମେଣ୍ଟ ବା ଜଳଛାୟା ପ୍ରକଳ୍ପ ସେପରି କିଛି ସୁଫଳ ଦେଇପାରୁନି । ଜଳାଭାବ ପରିଲକ୍ଷିତ ହେଲେ ପରିବେଶ ଜନିତ ସନ୍ତୁଳନରେ ତାହା ପ୍ରତିଫଳିତ ହେବ । ବିଗତ ମରୁଡ଼ି ପରିସ୍ଥିତି ଗୁଡ଼ିକରେ ଯଦି ବେରୋଜଗାରୀ ଓ ଖାଦ୍ୟାଭାବ ମୁଖ୍ୟ ପ୍ରସଙ୍ଗ ହୋଇ ଠିଆ ହୋଇ ଜୀବନ ଓ ମୃତ୍ୟୁର ସଜ୍ଞା ନିରୂପଣ କରୁଥିଲା ୨୦୦୨ ମସିହାର ମରୁଡ଼ି ପରିସ୍ଥିତି ୨୦୦୩ ମସିହାର ଗ୍ରୀଷ୍ମ ଋତୁରେ ପାନୀୟ ଜଳର ଭୟଙ୍କର ଅଭାବକୁ ବଞ୍ଚି ରହିବାର ଏକ ମୁଖ୍ୟ ମୁଦ୍ଦାଭାବେ ଠିଆ କରାଇବ ।

ସମାଜ

ତା- ୨୮.୧୦.୨୦୦୨



# ପ୍ରଗତିର ଦର୍ପଣରେ ଚୀନର ଅନ୍ୟ ଏକ ମୁହଁ

**ଚୀ**ନ ବିଶ୍ୱ ଅର୍ଥନୈତିକ ସଫଳତାର ଏକ ପ୍ରଦର୍ଶନୀ ମଣ୍ଡପ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ୭ ପ୍ରତିଶତରୁ ଉର୍ଦ୍ଧ୍ୱ ଜି.ଡ଼ି.ପି. ଅଭିବୃଦ୍ଧି ବହୁ ରାଷ୍ଟ୍ରଙ୍କୁ ଏହା ସାମନାରେ କ୍ଷୁଦ୍ର ବାମନ ବେଶରେ ଠିଆ କରେଇ ଦେଇଥାଏ, ଯେଉଁମାନେ କି ଅନବରତ ସଂଗ୍ରାମ କରି ସମୃଦ୍ଧିର ରାଜରାସ୍ତାକୁ ଗୋଟାପଣ ଜାବୁଡ଼ି ଧରି ରଖିବାକୁ ସେମାନଙ୍କର ଚେଷ୍ଟା ଅବ୍ୟାହତ ରଖିଛନ୍ତି । ଅର୍ଥନୈତିକ ପ୍ରଗତି ହାସଲ କରିବା ପାଇଁ ବ୍ୟବସାୟୀ ଓ ଶିଳ୍ପପତିମାନଙ୍କ ଉପରେ ଚାପ ପକେଇ ମିଡ଼ିଲ କିଙ୍ଗଡ଼ମ ବା ମଧ୍ୟ ସାମ୍ରାଜ୍ୟର ମଡ଼େଲ୍‌କୁ ଅନୁସରଣ କରିବା ଦେଶ ଭିତରେ ଏକ ଫେସନ ହୋଇଗଲାଣି । ମଧ୍ୟ ସାମ୍ରାଜ୍ୟରେ ବସବାସ କରୁଥିବା ୧.୩ ବିଲିୟନ ଜନସାଧାରଣ ଏକ ବିଶାଳ କ୍ରମବର୍ଦ୍ଧିଷ୍ଣୁ ଖାଉଟୀ ଶ୍ରେଣୀଭୁକ୍ତ ଅଟନ୍ତି, ଯେଉଁଠାରେ କି ବଜାରର ଚାହିଦା ହୁ ହୁ ହୋଇ ଦିନ ପରେ ଦିନ ବଢ଼ି ଚାଲିଛି । ଏହାର ୨୨୩ ବିଲିୟନ ଡଲାରର ଗଚ୍ଛିତ ବୈଦେଶିକ ମୁଦ୍ରା ବିଦେଶୀ ଅର୍ଥ ଲଗାଣକାରୀମାନଙ୍କ ପାଇଁ ବିଶ୍ୱାସର ଏକ ମହାଦ୍ରୁମ ସଦୃଶ ପ୍ରତୀୟମାନ ହୋଇଥାଏ । ଭାରତର ୫୫ ବିଲିୟନ ଡଲାରର ଗଚ୍ଛିତ ବୈଦେଶିକ ମୁଦ୍ରା ଏହି ଅଙ୍କରାଶି ସହ ଆଦୌ ତୁଳନୀୟ ନୁହେଁ । ଚୀନ ବର୍ଷକୁ ୪୦ ବିଲିୟନ ଡଲାରରୁ ଉର୍ଦ୍ଧ୍ୱ ବୈଦେଶିକ ପୁଞ୍ଜି ଲାଭ କରି ପାରୁଥିବାରୁ ପିଠିରେ ବାହାଃ ବାହାଃର ଥାପୁଡ଼ା ପାଉଛି; ସେହି ପରିପ୍ରେକ୍ଷୀରେ ଭାରତବର୍ଷ ମାତ୍ର ୩ ବିଲିୟନ ଡଲାରର ବୈଦେଶିକ ପୁଞ୍ଜି ଆକର୍ଷିତ କରି ପାରୁଛି । ଜି.ଡ଼ି.ପି.ର ୪୦ ପ୍ରତିଶତରେ ଚୀନର ସଞ୍ଚୟ ହାରକୁ ରାଷ୍ଟ୍ରର ଅର୍ଥନୈତିକ ବଳ ବୋଲି ବିବେଚନା କରାଯାଇଥାଏ, ଯାହାକି ଭବିଷ୍ୟତରେ ଚୀନକୁ ଏକ ଅଗ୍ରଣୀ ଅର୍ଥନୈତିକ ମହାଶକ୍ତିର ମାନ୍ୟତା ପ୍ରଦାନ କରିବ ।

ଏସବୁ ସତ୍ତ୍ୱେ ଚୀନର ଅର୍ଥନୈତିକ ସଫଳତାକୁ ନେଇ ପ୍ରକାଶିତ ଚୀନର ନିଜସ୍ୱ ପରିସଂଖ୍ୟାନ କେତେଦୂର ଗ୍ରହଣୀୟ ଓ ବିଶ୍ୱାସଯୋଗ୍ୟ ସେ ନେଇ ଲୋକଙ୍କ

ମନରେ ସନ୍ଦେହର କୁହେଳିକା ଦିନକୁ ଦିନ ଘନୀଭୂତ ହେବାରେ ଲାଗିଛି । ଚୀନର ସରକାରୀ ତଥ୍ୟ ଓ ପରିସଂଖ୍ୟାନର କେତେଭାଗ ପ୍ରକୃତରେ ଭରସାଯୋଗ୍ୟ ଓ ତେଣୁ ବିଗତ ବର୍ଷମାନଙ୍କର ଅସାଧାରଣ ଅଭିବୃଦ୍ଧିର ପ୍ରତିଛବି ସତରେ କେତେ ପରିମାଣରେ ଛନ୍ଦ କପଟ ରହିତ, ସେ ନେଇ ସୁଦୀର୍ଘ ପ୍ରଶ୍ନବାଚୀ ଆଜି ମନ ଗହନରେ ଉଙ୍କି ମାରୁଛି ।

ଏହା ଜଣାଶୁଣା କଥା ଯେ ଚୀନର ଅର୍ଥନୈତିକ ପରିସଂଖ୍ୟାନ ରାଜନୈତିକ ଅଭିସନ୍ଧି ରହିତ ନୁହେଁ, ଯାହାକି ସରକାରୀ ମୁନିବମାନଙ୍କର ଇଚ୍ଛା ଓ ଆଭିମୁଖ୍ୟକୁ ପ୍ରତିଫଳନ କରିବାକୁ ବାଧ ହୋଇଥାଏ । ଫଳତଃ ଚୀନର ଅସାଧାରଣ ଅର୍ଥନୈତିକ ଅଭିବୃଦ୍ଧିର ରଙ୍ଗୀନ ମାନଚିତ୍ର ଜନସାଧାରଣଙ୍କ ଦରବାରରେ ଗର୍ବର ସହ ପରିବେଷଣ କରାଯାଇଥାଏ । ଏହି ପରିସଂଖ୍ୟାନରେ ସନ୍ନିବେଶିତ ଅର୍ଥନୈତିକ ଚିତ୍ରାବଳୀ ପ୍ରାଦେଶିକ ତଥ୍ୟରାଶି ଉପରେ ପ୍ରାୟତଃ ପର୍ଯ୍ୟବେଶିତ ଥାଏ, ଯାହାକି କିଛିଟା ମନଗଢ଼ା ଓ କିଛିଟା ସତ୍ୟର ବୁନିୟାଦକୁ ନେଇ ଏକ ଫେଣ୍ଟା ଫେଣ୍ଟି ଅବୟବର ସର୍ଜନା କରି ଜନତାର ସାମନାରେ ଠିଆ କରାଇ ଦିଆଯାଇଥାଏ । 'ମୁଁ'ର ମୁର୍ଚ୍ଛନା' ଏଭଳି ପରିପ୍ରେକ୍ଷୀରେ ଚୀନ କ୍ଷେତ୍ରରେ ହିଁ ସତରେ ପ୍ରଯୁଜ୍ୟ ହୋଇଥାଏ । ଚୀନରେ ସେପରି କୌଣସି ନମୁନା ସର୍ଭେ ପ୍ରକ୍ରିୟା ନାହିଁ, ଯାହାକି ରାଜନୈତିକ ଦୂରାଭିସନ୍ଧି ଯୁକ୍ତ ପ୍ରାଦେଶିକ ତଥ୍ୟ ଚୟନ ପ୍ରକ୍ରିୟା ଠାରୁ ଅଧିକ ବିଶ୍ୱାସଯୋଗ୍ୟ ହୋଇପାରିବ ।

ଆନ୍ତର୍ଜାତିକ ସମ୍ବାଦ ପରିବେଷଣରେ ସୁଧନ୍ୱା 'ନିୟୁଜ-ମାଗାଜିନ' -'ନିୟୁଜ ଉଇକ୍' ତା'ର ଏପ୍ରିଲ ୧, ୨୦୦୨ ସଂଖ୍ୟାରେ ଗ୍ରେଟ ୱାଲ୍ ଅଫ ଚାଇନାର ପଛପଟେ ଲୁଚ଼ାଛପା ଭାବେ କାର୍ଯ୍ୟକାରୀ ହେଉଥିବା କେତେକ ଅପ୍ରିୟ ଅର୍ଥନୈତିକ ତଥ୍ୟର ହାତ ସଫେଇର କାର୍ଯ୍ୟକଳାପକୁ ଉଦ୍‌ଘାଟନ କରିବାରେ ସଫଳକାମୀ ହୋଇ ପାରିଛି । ଏହି ଅନୁସନ୍ଧାନ ଚୀନର ଅର୍ଥନୈତିକ ପ୍ରବଞ୍ଚନାର ଅନ୍ଧପୁଟୁଳିକୁ ଜନତା ଜନାର୍ଦ୍ଦନର ଆଖିରୁ ଖୋଲି ଦେବାରେ ସକ୍ଷମ ହୋଇ ପାରିଛି । 'ନିୟୁଜ ଉଇକ୍' ଦେଖେଇ ଦେଇଛି ଯେ ଚୀନର ଅର୍ଥନୈତିକ ଅଭିବୃଦ୍ଧିର କାହାଣୀ ହୁଏତ ଏକ୍ ମନଗଢ଼ା କାହାଣୀ ହୋଇଥାଇପାରେ । ଏହି ମାଗାଜିନ୍ ପୁନଶ୍ଚ କହିଛି ଯେ ଚୀନ ତା'ର ଅର୍ଥନୈତିକ ଗଣିତକୁ ନେଇ ମିଥ୍ୟା ପ୍ରଚ଼ାର ରଟି ଚାଲିଛି ଏବଂ ଭୟ ଲାଗୁଛି ଯେ ସତରେ କ'ଣ ଚୀନର ପରିସଂଖ୍ୟାନବିତ୍‌ମାନେ ନିଜର ଠିକଣା ଗନ୍ତବ୍ୟସ୍ଥଳ ଐନ୍ଦ୍ରଜାଲିକ ଅର୍ଥନୈତିକ ଫଳାଫଳର ବର୍ଦ୍ଧିଷ୍ଣୁ ଢୋଲ ପେଟକୁ ସ୍ଥିରୁ

ଝୁଣ୍ଟରେ କଣା କରି ଫୁସ୍ କରିଦେବେ, ଯଦ୍ୱାରା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରି ତାହା ଆଉ ସୌନ୍ଦର୍ଯ୍ୟମୟ, ଜୀବନ୍ତ ଓ ରସସିକ୍ତ ପ୍ରେମାଭିନୟ କରିପାରିବ ନାହିଁ !

ଚୀନ ଏବେ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇଗଲାଣି । ବିଶ୍ୱର ସବୁ ରାଷ୍ଟ୍ରମାନଙ୍କ ସହ ସମନ୍ୱୟତାର ସେତୁବନ୍ଧ ପ୍ରତିଷ୍ଠା କରିବା ପାଇଁ ଚୀନ ତା'ର ସମସ୍ତ ଦୁଆର କବାଟକୁ ଉନ୍ମୁକ୍ତ କରି ଦେଇଛି । ଚୀନୀୟମାନେ ବିଶ୍ୱର ସର୍ବଶ୍ରେଷ୍ଠ ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ବାଣିଜ୍ୟିକ ଅଧିକାରୀ ଅଟନ୍ତି ଏବଂ ସେମାନେ ପରିବର୍ତ୍ତିତ ପରିସ୍ଥିତିକୁ ନିଜେ ଆଡୁଆ କରି ସେଥିରୁ ଲାଭବାନ ହେବାରେ ଅତ୍ୟନ୍ତ ପ୍ରବୀଣ ଓ ଧୁରନ୍ଧର । 'ଇକୋନୋମିକ ବୁକ୍ କିପିଙ୍ଗ' ଅର୍ଥାତ୍ ଅର୍ଥନୈତିକ ଫଳାଫଳର ପୁସ୍ତକୀକରଣ ତାଙ୍କ ବାଁ ହାତର ଖେଳ । ଚୀନ ପରି ମହା ଅସୁରର ଅର୍ଥନୈତିକ ପ୍ରଗତିର ଶୋଭାଯାତ୍ରାକୁ ହାତ ଟେକି ପ୍ରତିବନ୍ଧକ ସୃଷ୍ଟି କରିବା କୌଣସି ରାଷ୍ଟ୍ରପାଇଁ କାଠିକର ପାଠ ଅଟେ । ଏହି ଡ୍ରାଗନ୍ ବା ମହାଅସୁରର ପଞ୍ଝା କବଳରୁ ମୁକ୍ତି ପାଇବା ଅବା ଚୀନୀୟ ଅଧିକାରୀଙ୍କ ଅର୍ଥନୈତିକ ତଥ୍ୟାବଳୀକୁ କେହି ହେଲେ ପ୍ରତିରୋଧ ନ କରିବା ପ୍ରମାଣ କରିଦେଉଛି, ଚୀନର ଅର୍ଥନୈତିକ ଆଧିପତ୍ୟର ଚକବନ୍ଦି କେତେଦୂର ସୁଦୂର ପ୍ରସାରୀ ।

୨୦୦୧ ମସିହାରେ ଚୀନର ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନ ସରକାରୀ ଭାବେ ୭.୩ ପ୍ରତିଶତ ହୋଇଥିଲା ବେଳେ ବେସରକାରୀ ତଥ୍ୟାବଳୀ ଏହାକୁ ୩-୪ ପ୍ରତିଶତ ମଧ୍ୟରେ ଦର୍ଶାଇଥାଏ । ବିଶ୍ୱର ସର୍ବବୃହତ୍ ବିପଣୀର ମାନ୍ୟତା ଅର୍ଜ୍ଜନ କରିଥିବା 'ଦି ପିପୁଲ୍ସ ରିପବ୍ଲିକ୍ ଅଫ ଚାଇନା' ଯେ କି ୧.୩ ବିଲିୟନ ଜନସଂଖ୍ୟାର ମୁରବୀ ଏବଂ ଯେଉଁଠି ୨୦୦୧ ମସିହାରେ ୪୭ ବିଲିୟନ ଡଲାରର ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର କାରବାର ହୋଇଥିଲା, ସେହି ଚୀନ ଦେଶ ରାଷ୍ଟ୍ରୀୟ ଅଭିବୃଦ୍ଧିର ଗାଣିତିକ ପରିସଂଖ୍ୟାନକୁ ବେଶ ପୋଷାକ ପିନ୍ଧେଇ ଜନତାର ଦରବାରରେ ଏଭଳି ଭାବେ ପରିବେଷଣ କରୁଛି ଯେ ସତେ ଯେପରି ତାହା ପ୍ରକୃତ ଅର୍ଥନୈତିକ ପ୍ରଗତିର ଇନ୍ଦ୍ରମହଲ ସୃଷ୍ଟି କଲାପରି ପ୍ରତୀୟମାନ ହୋଇଥାଏ ।

ପ୍ରାଦେଶିକ ସ୍ତରରୁ ଉପଲବ୍ଧ ହେଉଥିବା ଅଧିକାଂଶ ଅର୍ଥନୈତିକ ପରିସଂଖ୍ୟାନକୁ ବିଶ୍ଳେଷଣ କଲେ, ଏହା ଜଣା ପଡ଼େ ଯେ ବେଜିଂର ଶାସନାଧକ୍ଷଙ୍କୁ

ପ୍ରୀତ କରିବାକୁ ସେଥିରେ ଅର୍ଥନୈତିର ଯାଦୁର ପ୍ରଲେପ ବୋଲି ଦିଆଯାଉଛି । ୧୯୯୭ ମସିହାର ଏସୀୟ ଅର୍ଥନୈତିକ ସଙ୍କଟ ପରଠାରୁ ପ୍ରାଦେଶିକ ଶାସକମାନେ ପ୍ରାୟ ୭ ପ୍ରତିଶତ ଅଭିବୃଦ୍ଧି ହାର ଦେଖେଇ ଆସୁଛନ୍ତି । ଏହି ମାନଦଣ୍ଡକୁ ସେମାନେ ଅସାଧୁ ଉପାୟ ମାଧ୍ୟମରେ ବ୍ୟବହାର କରି ଆସୁଛନ୍ତି ସେହି ଦିନରୁ, ଯେଉଁଦିନରୁ ଚୀନର ଜାତୀୟ ଅର୍ଥନୀତି ଗବେଷଣା ପ୍ରତିଷ୍ଠାନର ୱାଙ୍ଗ ଝିଆଲୁ 'ନିୟୁଜ ଉଇକ୍'ରେ କହିଲେଣି ଯେ ପରିସଂଖ୍ୟାନ ଜନିତ ମିଥ୍ୟା ସମ୍ବାଦ ପାଇଁ ଉପଯୁକ୍ତ ପାରିଶ୍ରମିକ ମଧ୍ୟ ମିଳି ପାରିବ ।

ମିଥ୍ୟା ତଥ୍ୟ ଉପରେ ଆଧାରିତ ଏହି ପରିସଂଖ୍ୟାନର ଗଣିତ ସମ୍ପୂର୍ଣ୍ଣ ମୂଲ୍ୟହୀନ ଅଟେ । ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନ (ଜି.ଡ଼ି.ପି) ର ଅଭିବୃଦ୍ଧି ଚିତ୍ର, ଶିଳ୍ପଜାତ ଦ୍ରବ୍ୟଗୁଡ଼ିକର ଉତ୍ପାଦନ ପରିମାଣ ଏବଂ ବେରୋଜଗାରର ଛବି ସମ୍ପୂର୍ଣ୍ଣ ମିଥ୍ୟା ତଥ୍ୟ ଉପରେ ପର୍ଯ୍ୟବେଶିତ ହୋଇଥାଏ । ଦେଶରକ୍ଷା କ୍ଷେତ୍ରରେ ଗତବର୍ଷ ବ୍ୟୟ ହୋଇଥିବା ଅର୍ଥରାଶିର ପରିମାଣ ୧୭ ବିଲିୟନ ଡଲାର ହୋଇଥିଲା ବେଳେ ପ୍ରକୃତରେ ତାହା ଏହାର ପାଞ୍ଚଗୁଣ ବୃହତ୍ତର ଅଟେ । ପ୍ରକୃତ ସମସ୍ୟାଟି ହେଲା, ଚୀନରେ ଅର୍ଥନୈତିକ ଅଭିବୃଦ୍ଧିର ଗାଣିତିକ ଅଙ୍କରାଶିର ଚିତ୍ର ବୈଜ୍ଞାନିକ ଟୁଲ୍ ଅପେକ୍ଷା ରାଜନୈତିକ ହାତ ବାରିସି ରୂପେ ପ୍ରାୟତଃ ବ୍ୟବହୃତ ହୋଇଥାଏ । ଉପଯୁକ୍ତ ଯାଞ୍ଚ ବ୍ୟବସ୍ଥାର ଅଭାବରେ ଏହି ରାଜନୈତିକ ଅସ୍ତ୍ରର ଅସଦ୍‌ବ୍ୟବହାର କରାଯାଇ ରାଷ୍ଟ୍ରର ଅର୍ଥନୈତିକ ଭାବମୂର୍ତ୍ତିକୁ ବାଜି ଲଗେଇ ଦିଆଯାଇଥାଏ ।

ଚୀନର ନିକଟ ଅତୀତର ଇତିହାସ ସଂଖ୍ୟାତୀତ ମିଥ୍ୟା ପରିସଂଖ୍ୟାନରେ ଭରପୁର ଥିବାର ଜ୍ୱଳନ୍ତ ଦୃଷ୍ଟାନ୍ତ ରହିଛି । ୧୯୫୮ ରୁ ୧୯୬୦ ଏହି ଦୁଇ ବର୍ଷ ମଧ୍ୟରେ ଚୀନ ହାସଲ କରିଥିବା ଅସାଧାରଣ ସମୃଦ୍ଧି ଯାହାକୁ କି 'ଗ୍ରେଟ ଲିପ୍ ଫରୱାର୍ଡ଼'ର ବର୍ଷ ବୋଲି ପ୍ରାୟତଃ ଅଭିହିତ କରାଯାଇଥାଏ, ସେହି ବର୍ଷ ମାନଙ୍କରେ ଚୀନର ମୋଟ ଇସ୍ପାତ ଉତ୍ପାଦନର ପରିମାଣକୁ ମାତ୍ରାଧିକ ଭାବେ ପ୍ରଦର୍ଶିତ କରାଯାଇଥିଲା । ୧୯୭୬ ମସିହାର ଟ୍ୟାଙ୍ଗସାନ ଭୂମିକମ୍ପଠୁଁ ଆରମ୍ଭ କରି ୧୯୮୯ ମସିହାର ତିଆନାନ୍‌ମେନ୍ କ୍ରାକ୍‌ଡ଼ାଉନ ବା ଧ୍ୱସ୍ତବିଧ୍ୱସ୍ତ ଘଟଣାରେ ମୃତ୍ୟୁବରଣ କରିଥିବା ଲୋକଙ୍କ ସଂଖ୍ୟା ତଥା ଏବର ଏଚ୍.ଆଇ.ଭି/ଏଡ଼୍‌ସକୁ ନେଇ ମୃତ୍ୟୁମୁଖରେ ପଡୁଥିବା ଲୋକଙ୍କ ସଂଖ୍ୟାକୁ ନ୍ୟୂନ କରି ପରିବେଷଣ କରାଯାଉଛି ।

ଆମେରିକାର ପିଟ୍ସବର୍ଗ ବିଶ୍ୱବିଦ୍ୟାଳୟର ପ୍ରଫେସର ତଥା ପ୍ରଖ୍ୟାତ ଚାଇନା ୱାଚ୍‌ର (ଚୀନ ପର୍ଯ୍ୟବେକ୍ଷକ) ଥମାସ ରସ୍କି ଚୀନର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନକୁ ସମୀକ୍ଷା କରି କୁହନ୍ତି ଯେ - '୧୯୯୮ ଓ ୧୯୯୯ ମସିହାରେ ଚୀନର ଅର୍ଥନୀତି ହୁଏତ ଯଥାକ୍ରମେ ବିଯୁକ୍ତ ୨.୨ ଓ ୨.୫ ପ୍ରତିଶତ ସ୍ତରକୁ ଖସି ଆସିଥିଲା ।' ଚୀନରେ ବେକାର ଲୋକଙ୍କ ସଂଖ୍ୟାକୁ ମଧ୍ୟ ନ୍ୟୁନ କରି ପ୍ରଦର୍ଶିତ କରାଯାଉଛି । ଏହି ପରିସଂଖ୍ୟାନ ପ୍ରାୟ ୧୦ ମିଲିୟନ ଝିଆଗ୍ୟାଙ୍ଗ କର୍ମୀ ଓ ଗାଁଗଣ୍ଡା ଛାଡ଼ି ସବୁଦିନ ପାଇଁ ସହର ବୁକୁରେ ପାଦ ଥାପିଥିବା ୧୫୦ ମିଲିୟନ ବାସିନ୍ଦାଙ୍କୁ ହିସାବକୁ ନେଇନାହିଁ । ଚୀନର ଜଣେ ଅର୍ଥନୀତିଜ୍ଞ କୁହନ୍ତି ଯେ ଗ୍ରାମୀଣ କ୍ଷେତ୍ରମାନଙ୍କରେ ବେକାରୀମାନଙ୍କ ସଂଖ୍ୟା ୭.୬ ପ୍ରତିଶତ ହୋଇଥିବା ବେଳେ ସହରମାନଙ୍କରେ ତାହା ୮.୫ ପ୍ରତିଶତରୁ ଅଧିକ ଅଟେ ।

ଆଗାମୀ ଦିନରେ ଚୀନରେ ବେକାର ସମସ୍ୟା ଭୟଙ୍କର ରୂପ ଧାରଣ କରିବାକୁ ଯାଉଛି । ଏ ବର୍ଷ ସହରମାନଙ୍କରେ ବେରୋଜଗାରର ହାର ୯ ପ୍ରତିଶତରୁ ୧୧ ପ୍ରତିଶତକୁ ବୃଦ୍ଧି ପାଇବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ଚୀନ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହେବା ଦିନଠାରୁ ପ୍ରଥମ ୫ ବର୍ଷ ଭିତରେ ଚୀନରେ ୪୦ ମିଲିୟନ ଚାକିରି କାଟ ହେବାକୁ ଯାଉଛି । ଜାତୀୟ ଆଭ୍ୟନ୍ତରୀଣ ଋଣ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନର ୧୬ ପ୍ରତିଶତରୁ ବି କାହିଁ କେତେ ଅଧିକ ଅଟେ । ଜଣେ ଅତ୍ୟନ୍ତ ଉଚ୍ଚପଦସ୍ଥ ଚୀନୀୟ ଅଧିକାରୀ କୁହନ୍ତି ଯେ ଅଣପୁଞ୍ଜି ଲଗାଣ ରାଜ୍ୟ ପେନ୍‌ସନର ଗୁରୁ ଦାୟିତ୍ୱ, ଆଞ୍ଚଳିକ ସରକାରଙ୍କ ପ୍ରଦତ୍ତ ଋଣ ଏବଂ ବିଶିଷ୍ଟ ବ୍ୟାଙ୍କମାନଙ୍କର ନନ୍-ପରଫରମିଂ ଋଣ ଆଦିକୁ ହିସାବକୁ ନେଲେ ଜାତୀୟ ଆଭ୍ୟନ୍ତରୀଣ ଋଣ ଜାତୀୟ ଆଭ୍ୟନ୍ତରୀଣ ଉତ୍ପାଦନ (ଜିଡ଼ିପି) ର ପ୍ରାୟ ୬୦ ପ୍ରତିଶତ ହେବ । ଏପରିକି ଚାଇନା ୱାଚ୍‌ର ରସ୍କି କୁହନ୍ତି ଯେ ଏହା ୧୦୦ ବା ୧୨୫ ପ୍ରତିଶତ ହେବା ଉଚିତ ଅଟେ । ଅତ୍ୟନ୍ତ ଯତ୍ନବାନ ଓ ଗାମ୍ଭୀର୍ଯ୍ୟଧାରୀ ଚୀନ ପର୍ଯ୍ୟବେକ୍ଷକମାନେ ଚୀନର ଅସାଧାରଣ ଅର୍ଥନୈତିକ ଅଭିବୃଦ୍ଧି ଜନିତ ଗାଣିତିକ ଅଙ୍କର ମାୟାମୃଗ ପଛରେ ଦୌଡ଼ି ଦୌଡ଼ି ନିଜର ହାତଗୋଡ଼ ଖଣ୍ଡିଆ ଖାବରା ନ କରିବା ପାଇଁ ଉଚିତ ପରାମର୍ଶ ଦେଇଛନ୍ତି ଏବଂ ସେମାନେ ସତର୍କ କରେଇ ଦେଇ କୁହନ୍ତି ଯେ କାଲି ସକାଳେ କିଏ ଜାଣେ ହୁଏତ ଚୀନର ଚନ୍ଦ୍ର

ବିଧୌତ ଅର୍ଥନୀତି ଭୁଷୁଡ଼ି ଚୁରମାର ନ ହୋଇଯିବ ? ପୁନଶ୍ଚ ଚୀନ ନିଜକୁ ୧.୩ ବିଲିୟନ ଗରାଖ ଇଶ୍ଵରଙ୍କ ବିଶାଳ ମହାସମୁଦ୍ରର ମୁଖ୍ୟ ପ୍ରବେଶ ଦ୍ୱାର ବୋଲି କରୁଥିବା ଦାବୀ ନେଇ ସେମାନେ ମଧ୍ୟ ସନ୍ଦେହ ପ୍ରକାଶ କରୁଛନ୍ତି ।

ଏ ସବୁ ସତ୍ତ୍ୱେ ମଧ୍ୟ ଚୀନର ଅର୍ଥନୈତିକ ପରିସଂଖ୍ୟାନକୁ ନେଇ ଏକ ଅଧିକ ଦାନଶୀଳ ଦୃଷ୍ଟିକୋଣ ପୋଷଣ କରାଯାଇ ପାରିବ । ଦଶକ ପରେ ଦଶକ ରୁଦ୍ଧ ଦ୍ୱାର ଅଭିବୃଦ୍ଧିର ଖଟାମିଠା ସ୍ୱାଦ ଚାଖିଥିବା କୌଣସି ଏକ ଅର୍ଥନୀତି ଯେତେବେଳେ ମୁକ୍ତ ଅର୍ଥନୀତିର ନୂତନ ରୂପ ଧାରଣ କରି ଜନତାଙ୍କ ସମ୍ମୁଖରେ ଉଭା ହୁଏ, ସେତେବେଳେ ଅର୍ଥନୀତିର ସମସ୍ତ ଦୋଷ ଦୁର୍ବଳତା ତା' ଦେହରେ ପରିସ୍ଫୁଟିତ ହୋଇଥାଏ । ତେଣୁ ଆପଣ ଆଦୌ ଆଶ୍ଚର୍ଯ୍ୟାନ୍ୱିତ ହେବା ଉଚ୍ଚିତ ନୁହେଁ ଯେତେବେଳେ ଆପଣ ଏ ମୁକ୍ତ ଅର୍ଥନୀତିରେ ବିରୋଧାତ୍ମକ ଶବ୍ଦ ଛାଉଣି, ଜାଲିଆତି ମୂଲ୍ୟସୂଚୀ ଏବଂ ପରିବର୍ତ୍ତିତ ପ୍ରକ୍ରିୟାଗୁଡ଼ିକ ଚୀନର ଅର୍ଥନୈତିକ ପରିସଂଖ୍ୟାନ ଭିତରକୁ ପଶି ଆସୁଛି । ୧୯୯୭ ମସିହାର ପୂର୍ବବର୍ତ୍ତୀ ଅଭିବୃଦ୍ଧିର ଚିତ୍ର ଊଣା ଅଙ୍କ ରାଶି ଦ୍ୱାରା ପରିପ୍ରକାଶିତ ହୋଇଛି, ଯେହେତୁ ଏହା ସର୍ଭିସ ସେକ୍ଟରର ଅଭିବୃଦ୍ଧିକୁ ବିଚାରକୁ ନେଇନାହିଁ । ଯେହେତୁ ରାଷ୍ଟ୍ରର ସାମଗ୍ରୀକ ଅଭିବୃଦ୍ଧିର ଚିତ୍ର ରାଜ୍ୟମାନଙ୍କରୁ ମିଳୁଥିବା ତଥ୍ୟରାଶି ଉପରେ ପର୍ଯ୍ୟବେଶିତ ତେଣୁ ରାଜନୈତିକ ସୂତ୍ର ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଝେଜିଆଙ୍ଗ ପ୍ରଦେଶ ଶୀଘ୍ର ଅଭିବୃଦ୍ଧି ହାସଲ କରୁଥିବା ବେସରକାରୀ ସେକ୍ଟରମାନେ କାଳେ ଅତ୍ୟଧିକ ପରିପ୍ରକାଶିତ ହୋଇଯିବେ, ସେହି ଭୟରେ ସେମାନଙ୍କର ଅଭିବୃଦ୍ଧିକୁ ଊଣା କରି ଦେଖାଇଥିଲେ । ସେହିପରି ଗୁଆଙ୍ଗଡୋଙ୍ଗ ପ୍ରଦେଶ ସେମାନଙ୍କର ପ୍ରକୃତ ଅଭିବୃଦ୍ଧିକୁ ଟିକସର ଜାଲରୁ ମୁକ୍ତ ରଖିବା ପାଇଁ ନ୍ୟୁନ କରି ଦେଖାଇଥିଲେ ।

ଚୀନର ତଥ୍ୟ ସଂଗ୍ରହ ବ୍ୟବସ୍ଥା ଦୁର୍ବଳତା ସହ ଓତଃପ୍ରୋତ ଭାବେ ଜଡ଼ିତ । ଯେଉଁ ଅଧିକାରୀମାନେ ତଥ୍ୟ ସଂଗ୍ରହ ଦାୟିତ୍ୱରେ ରହିଲେ ତାଙ୍କ ହାତରେ ଏକ ବିଶାଳ କର୍ମ ଯୋଜନା ବନ୍ଧା ହୋଇ ରହିଲା, ଯଦ୍ୱାରା ସେମାନେ ଅଧିକ ସ୍ୱଚ୍ଛ, ନିର୍ଭୁଲ ଓ ବିଶ୍ୱାସଯୋଗ୍ୟ ପରିସଂଖ୍ୟାନ ପ୍ରସ୍ତୁତ କରିବେ । ହେଲେ ଜାତୀୟ ପରିସଂଖ୍ୟାନ ବ୍ୟୁରୋ ଏବଂ ତଥ୍ୟ ସଂଗ୍ରହ ଦାୟିତ୍ୱରେ ଥିବା କେନ୍ଦ୍ରୀୟ ସରକାରୀ ଏଜେନ୍ସି ସାଧାରଣ ତଥ୍ୟ ସଂଗ୍ରହ ଚ୍ୟାନେଲ୍‌ର ପରିସର ବାହାରକୁ ଯାଇ ତଥ୍ୟ

ସଂଗ୍ରହ କରିବାର କ୍ଷମତା ରହିତ ଥିଲେ । ଏକ ଆଶାର କିରଣ ଜାଗ୍ରତ କରି ଏସୀୟ ଉନ୍ନୟନ ବ୍ୟାଙ୍କ ଚୀନକୁ ୬ ଲକ୍ଷ ଡଲାର ଦେଇ ଏହାର ତଥ୍ୟ ସଂଗ୍ରହ ବ୍ୟବସ୍ଥାରେ ଉନ୍ନତି ଘଟାଇ ଏହାକୁ ଆନ୍ତର୍ଜାତିକ ସ୍ତରକୁ ଆଣିବା ପାଇଁ ଚେଷ୍ଟା କରିଥିଲେ । ଏହା ଏକ ଖୁସିର ଖବର ଯେ ଚୀନର କେନ୍ଦ୍ରୀୟ ପଦାଧିକାରୀମାନେ ନିଜେ ଏବେ ସେମାନଙ୍କର ତଥ୍ୟ ସଂଗ୍ରହର ଗୁଣବତ୍ତା ଉପରେ ଆବଶ୍ୟକୀୟ ପ୍ରାଧାନ୍ୟ ପ୍ରଦାନ କଲେଣି ଏବଂ ଏହି ପ୍ରକ୍ରିୟାକୁ ଅଧିକ ବିଜ୍ଞାନଭିତ୍ତିକ କରିବାରେ ମନୋନିବେଶ କଲେଣି । ଏହି ଅଧିକାରୀମାନେ ୨୦୦୧ ମସିହାର ଦ୍ୱିତୀୟାର୍ଦ୍ଧରେ ୬୦ ହଜାର ଚୀନୀୟ ପରିସଂଖ୍ୟାନ ନୀତି ନିୟମର ଉଲଂଘନ କରାଯାଇଛି ବୋଲି ସ୍ୱୀକାର କଲେଣି । ନିଶ୍ଚିତ ରୂପେ ଏ ନେଇ ବିଶ୍ୱ ବାଣିଜ୍ୟ ସଂଗଠନର ଚାପ କାମ କରୁଛି, ଯଦ୍ୟପି ଚୀନ ସଂସ୍କାର ବ୍ୟବସ୍ଥାକୁ ଆପଣେଇ ନେଇ ବିଶ୍ୱ ପ୍ରତିଯୋଗିତାର ବାଜି ମାରିନେବାକୁ ଅଣ୍ଟାଭିଡ଼ି ବସି ରହିଛି । ଚୀନୀୟ ବ୍ୟାଙ୍କ ଓ ଫାର୍ମମାନେ ଅଭିବୃଦ୍ଧିର ଗାଣିତିକ ଅଙ୍କରାଶିକୁ ହେର ଫେର କରିବା ପ୍ରକ୍ରିୟାରୁ ନିବୃତ୍ତ ରହିବାକୁ ପଡ଼ିବ ତଥା ରାଜନୈତିକ ଅଣ୍ଟାସୂତାକୁ ହାତରେ ଜାବୁଡ଼ି ଧରି ସେମାନଙ୍କୁ ରାସ୍ତାର ସର୍କସ ମାଙ୍କଡ଼ପରି ଥେଇ ଥେଇ ନଚାଉଥିବା କେନ୍ଦ୍ରୀୟ ପଦାଧିକାରୀଙ୍କ କବଳରୁ ମଧ୍ୟ ମୁକ୍ତ ରହିବାକୁ ପଡ଼ିବ, ଯଦ୍ୱାରା ସେମାନେ ସ୍ୱଚ୍ଛତାର ପୋଷାକ ପିନ୍ଧି ବିଶ୍ୱ ପୃଷ୍ଠଭୂମିରେ ଅଧିକରୁ ଅଧିକତର ପ୍ରତିଯୋଗିତାମୂଳକ ହୋଇପାରିବେ ।

ନିକଟ ଅତୀତରେ ରୁଷ ଓ ଆର୍ଜେଣ୍ଟିନାର ଅର୍ଥନୈତିକ ଦୁର୍ଗ ପତନ ପ୍ରମାଣ କରି ଦେଇଥିଲା ଯେ ଏପରି ଅସତ୍ୟ ତଥ୍ୟାବଳୀର ଭୂମିକା କେତେଦୂର ଗୁରୁତ୍ୱପୂର୍ଣ୍ଣ । କେବଳ ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ଯାହାକି ଏକ ଚେକ ଓ ବାଲାନ୍ସ କାର୍ଯ୍ୟ ପ୍ରଣାଳୀ ମଧ୍ୟରେ ଆତଯାତ ହେଉଥାଏ, ତାହାହିଁ ଅଧିକ ସ୍ୱଚ୍ଛ ଓ ଗୁଣଶାଳୀ ପରିସଂଖ୍ୟାନ ପ୍ରଦାନ କରିବାରେ ନିର୍ଭର ପ୍ରତିଶ୍ରୁତି ଦେଇପାରିବ । ପରନ୍ତୁ, ତାହା ହେବାକୁ ହେଲେ ଚୀନକୁ ଆହୁରି ବହୁ ରାସ୍ତା ଅତିକ୍ରମ କରିବାକୁ ପଡ଼ିବ ।

**ଯୋଜନା - ଓଡ଼ିଆ**
**ସେପ୍ଟେମ୍ବର, ୨୦୦୨**



# ପରବର୍ତ୍ତୀ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ଅର୍ଥନୈତିକ ବିକାଶର ମୂଳମନ୍ତ୍ର ହେବ

ନୂତନ ଅର୍ଥନୀତି ସମାଜର ବଡ଼ ଦାଣ୍ଡରେ ତା'ର ରୂପ ଲାବଣ୍ୟର ପେଡ଼ି ପଶରାକୁ ମେଲେଇ ଦେଇ ଆପଣଙ୍କୁ ତହିଁରେ ଆକୃଷ୍ଟ କରିବାରେ ସଫଳକାମୀ ହେଉ ବା ନ ହେଉ, ପରନ୍ତୁ ପରବର୍ତ୍ତୀ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ଯେ ଖୁବ୍‌ଶୀଘ୍ର ଆସି ଆପଣଙ୍କ ଘର ଦୁଆରକୁ ଠକ୍ ଠକ୍ କରିବାକୁ ଗୋଡ଼ ବଢ଼େଇ ସାରିଲାଣି, ଏ ନେଇ ସନ୍ଦିହାନ ହେବାର କୌଣସି କାରଣ ନାହିଁ । ବିକଶିତ ରାଷ୍ଟ୍ରମାନଙ୍କରେ ଏବଂ ସମ୍ଭବତଃ ବିକଶିତ ରାଷ୍ଟ୍ରର ମାନ୍ୟତା ଲାଭ କରିବାକୁ ନିରନ୍ତର ପ୍ରୟାସ ଜାରି ରଖୁଥିବା ରାଷ୍ଟ୍ରମାନଙ୍କରେ ଏହି ନୂତନ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ନୂତନ ଅର୍ଥନୀତି ଅପେକ୍ଷା ଅଧିକ ଗ୍ରହଣୀୟ ହେବ । ବିଂଶ ଶତାବ୍ଦୀର ଶେଷାର୍ଦ୍ଧର ସାମାଜିକ ବ୍ୟବସ୍ଥା ଅପେକ୍ଷା ଆଗକୁ ଆସୁଥିବା ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ସମ୍ପୂର୍ଣ୍ଣ ରୂପେ ନିଆରା ହେବ ଏବଂ ଆମେ ଆଶା କରୁଥିବା ସମାଜ ବ୍ୟବସ୍ଥାଠାରୁ ମଧ୍ୟ ଏହା ସବୁମନ୍ତେ ଫରକ ହେବ । ନୂତନ ସମାଜ ବ୍ୟବସ୍ଥାର ଅଭିନବ ରୂପରେଖ ଅପ୍ରତ୍ୟାଶିତ ଭାବେ ଆମ ଆଗରେ ଆସି ଯେ ଉଭା ହେବ, ଏହାର ଆଭାସ ଏବେଠୁଁ ମଧ୍ୟ ଆମେ ଅନୁଭବ କରିବା ଆରମ୍ଭ କଲୁଣୁ ।

ବିକଶିତ ରାଷ୍ଟ୍ରମାନଙ୍କରେ ପରବର୍ତ୍ତୀ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାର କଳେବରକୁ ଆଖି ପୁରେଇ ଦେଖିବାକୁ ଉତ୍କଣ୍ଠା ଓ ଆଗ୍ରହ ଅନୁଭୂତ ହେବା ଆରମ୍ଭ ହେଲାଣି ଏବଂ ଅଧିକାଂଶ ଲୋକମାନଙ୍କର ଦୃଷ୍ଟି ମଧ୍ୟ ସେ ଆଡ଼କୁ ଧୀରେ ଧୀରେ ଯିବା ଆରମ୍ଭ କଲାଣି । ବୟସ୍କ ଲୋକମାନଙ୍କର ସଂଖ୍ୟାରେ ଆଶାତୀତ ବୃଦ୍ଧି ଓ ଯୁବଶକ୍ତିର ସଂଖ୍ୟାରେ କ୍ରମାଗତ ହ୍ରାସକୁ ସାଂପ୍ରତିକ ସମାଜ ବ୍ୟବସ୍ଥା ବିସ୍ଫାରିତ ନେତ୍ରରେ ପରିଦର୍ଶନ କରୁଛି । ସବୁଦେଶରେ ରାଜନୀତିଜ୍ଞମାନେ ସେମାନଙ୍କର ଦେଶମାନଙ୍କରେ ପ୍ରଚଳିତ ଥିବା ପେନ୍‌ସନ ସ୍କିମ୍‌କୁ ବଞ୍ଚେଇ ରଖିବାକୁ ଆଶ୍ୱାସନା

ବାଣୀ ଶୁଣେଇ ଚାଲିଛନ୍ତି, ପରନ୍ତୁ ସେମାନେ ଓ ସେମାନଙ୍କର ନିର୍ବାଚନ ମଣ୍ଡଳୀର ଜନସାଧାରଣମାନେ ଖୁବ୍ ଭଲ ଭାବେ ହୃଦୟଙ୍ଗମ କଲେଣି ଯେ ଆଗାମୀ ୨୫ ବର୍ଷ ମଧରେ ଲୋକମାନଙ୍କୁ ପ୍ରାୟ ୭୫ ବର୍ଷ ହେଲା ପର୍ଯ୍ୟନ୍ତ କର୍ମକ୍ଷମ ହୋଇ ରହିବାକୁ ପଡ଼ିବ, ହେଲେ ସେମାନଙ୍କର ସ୍ୱାସ୍ଥ୍ୟାବସ୍ଥା ଭଲ ରହିଲେ ହେଲା ।

ଆଗାମୀକାଲିର ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାର ପରିଧି ମଧରେ ଆତଯାତ ହୋଇ ୫୦ ବର୍ଷରୁ ଉର୍ଦ୍ଧ୍ୱ ବ୍ୟକ୍ତିମାନେ କୌଣସି ପ୍ରତିଷ୍ଠାନରେ ସକାଳ ୯ଟାରୁ ସନ୍ଧ୍ୟା ୫ଟା ପର୍ଯ୍ୟନ୍ତ କର୍ମଚାରୀ ହୋଇ ଆଉ ରହିବେ ନାହିଁ, ବରଂ ସେମାନେ ପ୍ରତିଷ୍ଠାନମାନଙ୍କର ଶ୍ରମ ଶକ୍ତି ସହ ଓତଃପ୍ରୋତ ଭାବେ ଜଡ଼ିତ ରହି ଅସ୍ଥାୟୀ କର୍ମଚାରୀ, ସାମୟିକ କର୍ମଚାରୀ କିମ୍ବା ସେପରି କୌଣସି ବିଶେଷ କାମ ପାଇଁ କନ୍‌ସଲ୍‌ଟାଣ୍ଟ ଭାବେ ନିଯୁକ୍ତି ପାଇ କାମ କରିବେ । ପରନ୍ତୁ ସାଂପ୍ରତିକ ମାନବ ସମ୍ବଳ ବିଭାଗର ଦୃଷ୍ଟିରେ କୌଣସି ପ୍ରତିଷ୍ଠାନରେ କାମ କରୁଥିବା କର୍ମଚାରୀ ଜଣକୁ ଆମେ ପ୍ରାୟ ସ୍ଥାୟୀ କର୍ମଚାରୀ ବୋଲି ବିବେଚନା କରିଥାଉ । ତଦନୁଯାୟୀ ନିଯୁକ୍ତି ସଂକ୍ରାନ୍ତୀୟ ନିୟମ-କାନୁନ ମଧ ଗଢ଼ାଯାଇଛି । ପରନ୍ତୁ ଆଗାମୀ ୨୦-୨୫ ବର୍ଷ ମଧରେ ପ୍ରାୟତଃ ପୃଥିବୀର ଯେ କୌଣସି ପ୍ରତିଷ୍ଠାନରେ କର୍ମରତ ପ୍ରାୟ ଅର୍ଦ୍ଧେକ କର୍ମଚାରୀଙ୍କୁ ସେହି ପ୍ରତିଷ୍ଠାନରୁ ବିଦାୟ ନେବାକୁ ପଡ଼ିବ । ନିଃସନ୍ଦେହରେ ସେମାନେ ଆଉ ପୂର୍ଣ୍ଣ ସମୟ କର୍ମଚାରୀ ହୋଇ ରହିବେ ନାହିଁ । ବିଶେଷତଃ ଏହା ବୟସ୍କ କର୍ମଚାରୀମାନଙ୍କ କ୍ଷେତ୍ରରେ ହିଁ ପ୍ରଯୁଜ୍ୟ ହେବ । କେବଳ ବ୍ୟବସାୟୀକ ପ୍ରତିଷ୍ଠାନ କାହିଁକି ଅନ୍ୟାନ୍ୟ ପ୍ରତିଷ୍ଠାନମାନଙ୍କରେ ମଧ ନୂତନ ପରିଚାଳନାଗତ କଳାର ବ୍ୟବହାର ମାଧମରେ ହାତେ ଦୂରରେ କର୍ମଚାରୀମାନଙ୍କୁ ରଖି ପ୍ରତିଷ୍ଠାନକୁ ଚଳାଇବାକୁ ପଡ଼ିବ । ଧୀରେ ଧୀରେ ଏହା ହିଁ କେନ୍ଦ୍ରୀୟ ପରିଚାଳନାଗତ ଶୈଳୀର ମର୍ଯ୍ୟାଦା ଲାଭ କରିବ ।

ସମାଜରେ ଯୁବକମାନଙ୍କ ସଂଖ୍ୟାରେ ଆଶାତୀତ ହ୍ରାସ ମଧ ବହୁ ସମସ୍ୟା ଆଣି ଠିଆ କରାଇବ । ରୋମ ସାମ୍ରାଜ୍ୟର ପତନ ପରଠାରୁ ଏପରି ଏକ ଘଟଣା ପୃଥିବୀ ଇତିହାସରେ କେବେ ବି ଘଟି ନ ଥିଲା । ପୃଥିବୀର ପ୍ରତ୍ୟେକ ବିକଶିତ ରାଷ୍ଟ୍ରରେ ଏପରିକି ଚୀନ ଏବଂ ବ୍ରାଜିଲରେ ମଧ ଏବେ ଜଣେ ଗର୍ଭଧାରଣକ୍ଷମ ମହିଳା ପିଛା ଶିଶୁ ଜନ୍ମହାର ୨.୨ ପ୍ରତିଶତରୁ ବି ନିମ୍ନରେ ଅଛି । ରାଜନୈତିକ ଦୃଷ୍ଟିକୋଣରୁ ବିଚାର କଲେ ଏହାର ଅର୍ଥ ହେବ ଯେ ପ୍ରତ୍ୟେକ ଧନୀ ରାଷ୍ଟ୍ରରେ

ଇମିଗ୍ରେସନ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏବଂ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିବ । ଏହା ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଚିରାଚରିତ ରାଜନୈତିକ ସରଳୀକରଣର ଦିଗଦିଗନ୍ତକୁ କାଟି କୁଟି ଖିନ୍‌ଭିନ କରି ପକାଇବ । ଅର୍ଥନୈତିକ ଦୃଷ୍ଟିକୋଣରୁ ଯୁବକମାନଙ୍କ ସଂଖ୍ୟାରେ କ୍ରମାଗତ ହ୍ରାସ ବଜାରର ମୌଳିକ ଛବିକୁ ସମ୍ପୂର୍ଣ୍ଣ ରୂପେ ବଦଳାଇ ଦେବ । ପରିବାରର ଗଠନ ଶୈଳୀରେ ଅଭିବୃଦ୍ଧି ବିକଶିତ ଦେଶମାନଙ୍କରେ ସମସ୍ତ ଆଭ୍ୟନ୍ତରୀଣ ବଜାରକୁ ଚାଳନା ଶକ୍ତି ଯୋଗାଇଥାଏ । ପରିବାରର ଗଠନ ଓ ଅଭିବୃଦ୍ଧିକୁ ଏ ଯେଉଁ କ୍ରମାଗତ ଶକ୍ତି ଧକ୍କା ଲାଗିବାକୁ ଯାଉଛି, ତା'ର ପ୍ରତିହତ କରାଯାଇ ପାରିବ କେବଳ ଯୁବପିଢ଼ିର ବହୁଳ ଇମିଗ୍ରେସନ ମାଧ୍ୟମରେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସମସ୍ତ ଧନୀ ଦେଶମାନଙ୍କରେ ଯେଉଁ ସମଧର୍ମୀ ବିଶାଳ ବଜାରର ଆବିର୍ଭାବ ହୋଇଥିଲା, ତାହା ମୂଳରୁ ହିଁ ଯୁବପିଢ଼ି ଭିତ୍ତିକ ଥିଲା । ପରନ୍ତୁ ଏବେ ଏହି ବଜାର ମଧ୍ୟମ ବୟସ୍କ ବ୍ୟକ୍ତିଭିତ୍ତିକ ହେବ ଅବା ସମ୍ଭବତଃ ଏହି ବଜାରର ବିଭାଜନ ଘଟି ତାହା ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ହୋଇଯିବ । ଗୋଟିଏ ମଧ୍ୟମ ବୟସ୍କ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ନିୟନ୍ତ୍ରୀତ ହେବାବେଳେ ଅନ୍ୟଟି ଏକ ଅତ୍ୟନ୍ତ କ୍ଷୁଦ୍ର ଯୁବପିଢ଼ି ଭିତ୍ତିକ ହେବ । ଯୁବପିଢ଼ିଙ୍କ ଯୋଗାଣରେ ହ୍ରାସ ପ୍ରତିଷ୍ଠାନମାନଙ୍କରେ ନୂତନ ନିଯୁକ୍ତି ବ୍ୟବସ୍ଥାର ପଥ ଉନ୍‌ମୋଚନ କରିବ, ଯଦ୍ୱାରା ବ୍ୟୟସାୟୀକ ଅଭିଜ୍ଞତା ସମ୍ପନ୍ନ ଜ୍ଞାନୀ ଓ ଗୁଣୀ ବ୍ୟକ୍ତିମାନଙ୍କୁ ପ୍ରତିଷ୍ଠାନ ପ୍ରତି ଆକର୍ଷିତ କରାଇ ଦୀର୍ଘକାଳ ଥଇଥାନ କରି ରଖିବାର ପ୍ରୟାସ ଜାରୀ ରହିବ ।

ଆଗାମୀ ସମାଜ ଜ୍ଞାନାଶ୍ରୟୀ ସମାଜ ହେବ । ଜ୍ଞାନ ହିଁ ସବୁ କିଛି ବୋଲି ପରିଗଣିତ ହେବ । ଜ୍ଞାନ ହିଁ ଅସଲ ଚାବିକାଠି ହେବ ଏବଂ ଜ୍ଞାନକର୍ମୀମାନେ କୌଣସି ପ୍ରତିଷ୍ଠାନର କର୍ମଶକ୍ତିର ମୁଖ୍ୟ ଧାରା ବୋଲି ବିବେଚିତ ହେବେ । ଏହି ଜ୍ଞାନାଶ୍ରୟୀ ସମାଜର ତିନୋଟି ମୁଖ୍ୟ ଚରିତ୍ରର ଅବତାରଣା ଏଠାରେ ପ୍ରଣିଧାନଯୋଗ୍ୟ । ପ୍ରଥମତଃ ଜ୍ଞାନାଶ୍ରୟୀ ସମାଜ ସୀମା ରହିତ ସମାଜ ବ୍ୟବସ୍ଥାର ରୂପରେଖ ନେବ । କାରଣ ଜ୍ଞାନ ଅପେକ୍ଷାକୃତ କମ୍ ପ୍ରଚେଷ୍ଟାରେ ଅର୍ଥ ଅପେକ୍ଷା ଅଧିକ ଗତିଶୀଳ ଅଟେ । ଦ୍ୱିତୀୟତଃ ଜ୍ଞାନାଶ୍ରୟୀ ସମାଜରେ ସହଜସାଧ ଶିକ୍ଷା ବ୍ୟବସ୍ଥାର ଉପଲବ୍ଧ ଯୋଗୁଁ ସମସ୍ତଙ୍କୁ ଉର୍ଦ୍ଧ୍ୱମୁଖୀ ଅଭିବୃଦ୍ଧି ଯାତ୍ରା କରିବାକୁ ସମାନ ସୁଯୋଗ ମିଳିଥାଏ । ତୃତୀୟତଃ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାରେ ପ୍ରତ୍ୟେକ ବ୍ୟକ୍ତି ପାଖରେ ସଫଳତା ଓ ବିଫଳତାକୁ ଧରି ରଖିବାର ଅଶେଷ ଶକ୍ତି ପ୍ରଚୁର ପରିମାଣରେ ମହଯୁଦ ରହିବ ।

ଯେ କୌଣସି କର୍ମ ପାଇଁ ଆବଶ୍ୟକ ହେଉଥିବା ଜ୍ଞାନକୁ ହାତ ମୁଠାକୁ ଆଣିବା ପାଇଁ ଯେ କୌଣସି ବ୍ୟକ୍ତି ସକ୍ଷମ ହୋଇ ପାରିବ, ହେଲେ ଜିତାପଟ ସମସ୍ତଙ୍କ ଭାଗ୍ୟରେ ଜୁଟିବ ନାହିଁ । ଜ୍ଞାନାଶ୍ରୟୀ ସମାଜର ଏହି ତିନୋଟି ମୁଖ୍ୟ ଚରିତ୍ର ମିଳିମିଶି ଜ୍ଞାନାଶ୍ରୟୀ ସମାଜକୁ ଅତ୍ୟନ୍ତ ପ୍ରତିଯୋଗିତାମୂଳକ କରି ଗଢ଼ି ତୋଳିବ, ଯାହାକି ପ୍ରତିଷ୍ଠାନ ବା ବ୍ୟକ୍ତିବିଶେଷମାନଙ୍କ ପାଇଁ ମଧ୍ୟ ସମପରିମାଣରେ ପ୍ରଯୁଜ୍ୟ ହେବ । ସୂଚ଼ନା ପ୍ରଯୁକ୍ତି ବିଦ୍ୟା ଯଦିଓ ପରବର୍ତ୍ତୀ ଜ୍ଞାନାଶ୍ରୟୀ ସମାଜର ବହୁବର୍ଣ୍ଣ ରୂପରେଖ ମଧ୍ୟରୁ କେବଳ ଗୋଟିଏ ରୂପ ବୋଲି ପରିଗଣିତ ହେବ ତାହା ସାଂପ୍ରତିକ ସମାଜ ବ୍ୟବସ୍ଥାରେ ନିଜର ପ୍ରଭାବ ଓ ପରାଭବକୁ ବହୁ ଗୁଣରେ ଜାହିର କରି ସାରିଲାଣି ଓ ସମାଜର ନାଡ଼ି ନକ୍ଷତ୍ରକୁ ମଧ୍ୟ ଗୋଟାପଣେ ଚିହ୍ନି ସାରିଲାଣି । ଏହା ଜ୍ଞାନର ସଚ଼ରାଚ଼ର ଯାତ୍ରାପଥକୁ ଅତ୍ୟନ୍ତ ସହଜସାଧ କରି ଦେଇଛି, ଫଳରେ ବିଶ୍ୱର ପ୍ରତ୍ୟେକ ମାନବ ଜ୍ଞାନର ଏହି ଅସାଧାରଣ ବିସ୍ଫୋରଣର ସ୍ୱ ସ୍ୱ ଭୂମିକା ସୁଚ଼ାରୁରୂପେ ସମ୍ପାଦିତ କରି ପାରୁଛନ୍ତି । ଯେଉଁ ଗତିରେ ସୂଚ଼ନାର ଧାରା ଦିନ ପରେ ଦିନ କ୍ରମାଗତ ଭାବେ ବହି ଚାଲିଛି, ତାହା ଅବ୍ୟାହତ ରହିଲେ ଆଗାମୀ ଜ୍ଞାନାଶ୍ରୟୀ ସମାଜର ପ୍ରତ୍ୟେକ ଅନୁଷ୍ଠାନ ଯଥା - ବ୍ୟବସାୟୀକ ପ୍ରତିଷ୍ଠାନ, ସ୍କୁଲ କଲେଜ, ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ, ଡାକ୍ତରଖାନା ଓ ସରକାରୀ ଏଜେନ୍ସିମାନଙ୍କୁ ବିଶ୍ୱସ୍ତରୀୟ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ିବ; ଯଦିଓ ବହୁ ଅନୁଷ୍ଠାନ ସେମାନଙ୍କର କାର୍ଯ୍ୟକଳାପ ଦୃଷ୍ଟିରୁ ଆଞ୍ଚଳିକ ସ୍ତରରେ ଚଳପ୍ରଚ଼ଳ କରିବେ ଏବଂ ସେମାନଙ୍କର ବଜାର ମଧ୍ୟ ଆଞ୍ଚଳିକ ପରିସୀମା ମଧ୍ୟରେ ଆତଯାତ ହେଉଥିବ । ଏହାର କାରଣ ହେଲା ଇଣ୍ଟରନେଟ ଗରାଖ ଈଶ୍ୱରମାନଙ୍କୁ ଜଣେଇ ଦେବ ଯେ କେଉଁ ଦେଶର କେଉଁ ରାଜ୍ୟର କେଉଁ କୋଣରେ କ'ଣ ଉପଲବ୍ଧ ହେଉଛି ଏବଂ ତାହାର ମୂଲ୍ୟ କ'ଣ ?

ଏହି ନୂତନ ଜ୍ଞାନାଶ୍ରୟୀ ଅର୍ଥନୀତି (Knowledge Economy) ଜ୍ଞାନକର୍ମୀମାନଙ୍କ ଉପରେ ଅତ୍ୟନ୍ତ ନିର୍ଭରଶୀଳ ହେବ । ଏବେ ଜ୍ଞାନକର୍ମୀ କହିଲେ ଆମେ ପ୍ରଚୁର ପରିମାଣରେ ମୌଳିକ ଜ୍ଞାନ ସମ୍ପନ୍ନ ଶିକ୍ଷିତ ବ୍ୟକ୍ତି ବିଶେଷ ଯଥା - ଡାକ୍ତର, ଓକିଲ, ଶିକ୍ଷକ, ଆକାଉଣ୍ଟାଣ୍ଟ, କେମିକାଲ ଇଞ୍ଜିନିୟର ଆଦିକୁ ବୁଝିଥାଉ । ପରନ୍ତୁ ଆଗାମୀ କାଲିର ସମାଜ ବ୍ୟବସ୍ଥାରେ ଯେଉଁମାନେ ନିଜକୁ ଜ୍ଞାନକର୍ମୀ (Knowledge Worker) ଭାବେ ପରିଚ଼ିତ କରାଇବେ, ସେମାନଙ୍କୁ 'ନଲେଜ

ଟେକ୍ନୋଲୋଜିଷ୍ଟ' ବା ଜ୍ଞାନାଶ୍ରୟୀ ପ୍ରଯୁକ୍ତିବିଦ୍ୟାବିତ୍ ବୋଲି ବିବେଚିତ କରାଯିବ । ଯଥା - କମ୍ପ୍ୟୁଟର ଟେକ୍ନିସିଆନ୍, ସଫ୍ଟୱେୟାର ଡିଜାଇନ୍‌ର, କ୍ଲିନିକାଲ୍ ଲାବୋରାଟୋରୀ ଟେକ୍ନିସିଆନ, ମ୍ୟାନୁଫ୍ୟାକଚ଼ରିଂ ଟେକ୍ନୋଲୋଜିଷ୍ଟ ଇତ୍ୟାଦି ଇତ୍ୟାଦି । ଏହି ବ୍ୟକ୍ତିମାନେ ଏକାଧାରରେ 'ନିଜ ହାତ ଜଗନ୍ନାଥ' ଉପରେ ଭରସା ରଖିବା ସଙ୍ଗେ ସଙ୍ଗେ ଜ୍ଞାନକର୍ମୀ ଭାବେ ମଧ୍ୟ ପରିଚ଼ିତ ହୋଇଥାନ୍ତି । ସତ କହିବାକୁ ଗଲେ ଏହି ବ୍ୟକ୍ତିମାନେ ନିଜ ମସ୍ତିଷ୍କ ଅପେକ୍ଷା ନିଜ ହାତ ଉପରେ ଅଧିକ ବିଶ୍ୱାସ ରଖିଥାନ୍ତି ଓ ସେହି ଅନୁସାରେ ନିଜର ଜ୍ଞାନର ସଦୁପଯୋଗ ମଧ୍ୟ କରିଥାନ୍ତି । କିନ୍ତୁ ସେମାନଙ୍କର ମାନୁ୍ୟଆଲ ୱାର୍କ ବା ହସ୍ତକର୍ମ ଥିଓରିଟିକାଲ ନଲେଜ ବା ମୌଳିକ ଜ୍ଞାନ ଭଣ୍ଡାର ଉପରେ ଅତ୍ୟଧିକ ନିର୍ଭର କରିଥାଏ, ଯାହାକି ଆପ୍ରେଣ୍ଟିସ ନୁହେଁ ବରଂ ଫର୍ମାଲ ଏଜୁକେଶନ ବା ଚିରାଚ଼ରିତ ଶିକ୍ଷା ଉପରେ ନିର୍ଭର କରିଥାଏ । ସେମାନେ ଗତାନୁଗତିକ କୁଶଳୀ କର୍ମୀମାନଙ୍କ ଅପେକ୍ଷା ଯେ ଅଧିକ ଦରମା ପାଇଥାନ୍ତି ତାହା ନୁହେଁ, ବରଂ ସେମାନେ ସମାଜ ଆଗରେ ନିଜକୁ ଜଣେ ଜଣେ ପ୍ରଫେସନାଲ୍ ବା କର୍ମ ନୈପୁଣ୍ୟ ପୁରୁଷଭାବେ ପରିଚ଼ିତ କରିଥାନ୍ତି । ବିଂଶ ଶତାବ୍ଦୀରେ ଯେପରି ଅଣକୁଶଳୀ ଶ୍ରମଜୀବୀମାନେ ନିଜ ହାତରେ ନିଜେ କାମ କରି ପେଟ ପୋଷୁଥିଲେ ଏବଂ ସମାଜର ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସାମାଜିକ ଏବଂ ରାଜନୈତିକ ଶକ୍ତିଭାବେ ପରିଗଣିତ ହେଉଥିଲେ ଠିକ୍ ସେହିପରି ଆଗାମୀ ଦଶକମାନଙ୍କରେ 'ନଲେଜ୍ ଟେକ୍ନୋଲୋଜିଷ୍ଟ' ବା ପ୍ରଜ୍ଞାବାନ ପ୍ରଯୁକ୍ତିବିଦ୍ୟାବିତ୍‌ମାନେ ଏକ ପ୍ରମୁଖ ସାମାଜିକ ଏବଂ ହୁଏତ ରାଜନୈତିକ ଶକ୍ତି ଭାବେ ସଗର୍ବେ ମୁଣ୍ଡଟେକି ସମାଜ ବୁକୁରେ ଉଭା ହେବେ ।

ଗଠନ ଶୈଳୀ ହିସାବରେ ଦେଖିବାକୁ ଗଲେ ଆଗାମୀ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ଆମେ ବଞ୍ଚି ରହୁଥିବା ସାଂପ୍ରତିକ ସମାଜର ଜଠରରୁ ଜନ୍ମନେଇ ସେଇ ଆଡ଼କୁ ଧୀରେ ଧୀରେ ମୁହେଁଇଲାଣି । ଦୀର୍ଘ ୧୦ ହଜାର ବର୍ଷ ଧରି ଯେଉଁ ସେକ୍ଟର ଗୁଡ଼ିକ ଆଶାତୀତ ସଫଳତା ଦେଖେଇଥିଲା ବିଂଶ ଶତାବ୍ଦୀ ସେଗୁଡ଼ିକର ଦ୍ରୁତ ଅବକ୍ଷୟକୁ ଆଖି ପୁରେଇ ଦେଖିଲା । ଉଦାହରଣ ସ୍ୱରୂପ - କୃଷି, କୃଷିଜାତ ଦ୍ରବ୍ୟର ଉତ୍ପାଦନ ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ ଯାହା ଥିଲା; ଏବେ ତହିଁରେ ଅତିକମ୍‌ରେ ୪ଗୁଣ ବା ୫ଗୁଣ ବୃଦ୍ଧି ଘଟିଛି । ପରନ୍ତୁ ୧୯୧୩ ମସିହାରେ କୃଷିଜାତ ଦ୍ରବ୍ୟର ଉତ୍ପାଦନ ବିଶ୍ୱର ସାମଗ୍ରିକ ବାଣିଜ୍ୟ ବ୍ୟବସାୟର ୭୦ ପ୍ରତିଶତ ଥିଲା ବେଳେ ଏବେ

ଅତିବେଶୀରେ ତାହା ୧୭ ପ୍ରତିଶତ ହେଲେ ହୁଏତ ହୋଇପାରେ । ବିଂଶ ଶତାବ୍ଦୀର ପ୍ରାରମ୍ଭିକ ବର୍ଷମାନଙ୍କରେ ଅଧିକାଂଶ ବିକଶିତ ଦେଶମାନଙ୍କରେ କୃଷି ସେହି ଦେଶର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (G D P)କୁ ସର୍ବାଧିକ ଏକକ ଅବଦାନ ବୋଲି ବିବେଚିତ ହେଉଥିଲା । ପରନ୍ତୁ ଏବେ ଧନୀରାଷ୍ଟ୍ର ମାନଙ୍କର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନରେ କୃଷିର ଯୋଗଦାନ ଅତି ନଗଣ୍ୟ ଏବଂ ସବୁଠାରୁ ବଡ଼ ଚିନ୍ତାର ବିଷୟ ହେଲା କୃଷି ଶ୍ରମିକମାନଙ୍କର ସଂଖ୍ୟାରେ ଆଶାତୀତ ହ୍ରାସ ଏବଂ ସର୍ବୋପରି ସେ ଦେଶର ମୋଟ ଶ୍ରମଜୀବୀଙ୍କ ସଂଖ୍ୟା ଅନୁପାତରେ କୃଷି ଶ୍ରମିକଙ୍କ ସଂଖ୍ୟା କ୍ଷୁଦ୍ରାତିକ୍ଷୁଦ୍ର ।

ମାନୁଫ୍ୟାକଚ଼ରିଂ ସେକ୍ଟରଗୁଡ଼ିକ କିନ୍ତୁ ସେହି ରାସ୍ତାରେ ଗତିକରି ଚାଲିଛନ୍ତି । ଦ୍ୱିତୀୟ ବିଶ୍ୱ ଯୁଦ୍ଧବେଳୁ ବିକଶିତ ଦେଶମାନଙ୍କରେ ମାନୁଫ୍ୟାକଚ଼ରିଂ ସେକ୍ଟରଗୁଡ଼ିକରୁ ଉତ୍ପାଦିତ ହେଉଥିବା ଦ୍ରବ୍ୟଗୁଡ଼ିକରେ ୩ ଗୁଣ ବୃଦ୍ଧି ଘଟିଛି ସତ, ପରନ୍ତୁ ମୁଦ୍ରାସ୍ଫିତିକୁ ଆଦରି ନେଇଥିବାରୁ ଉତ୍ପାଦିତ ମୂଲ୍ୟରେ କ୍ରମାଗତ ହ୍ରାସ ପରିଲକ୍ଷିତ ହୋଇଛି । ପରନ୍ତୁ ପ୍ରମୁଖ Knowledge Product ବା ଜ୍ଞାନଜାତ ଦ୍ରବ୍ୟ ଯଥା : ହେଲଥ୍‌କେୟାର ଏବଂ ଶିକ୍ଷାର ମୂଲ୍ୟରେ ମୁଦ୍ରାସ୍ଫିତିକୁ ହିସାବକୁ ନେଇ ମଧ୍ୟ ୩ ଗୁଣ ବୃଦ୍ଧି ଘଟିଛି ।

ମାନୁଫ୍ୟାକଚ଼ରିଂ ଦ୍ରବ୍ୟଗୁଡ଼ିକର ସାଂପ୍ରତିକ କ୍ରୟ ଶକ୍ତି ଜ୍ଞାନଜାତ ଦ୍ରବ୍ୟଗୁଡ଼ିକର ତୁଳନାରେ ୫୦ ବର୍ଷ ତଳେ ଥିବା ମୂଲ୍ୟର ଏକ ପଞ୍ଚମାଂଶ ବା ଏକ ଷଷ୍ଠାଂଶ ହେବ । ୧୯୫୦ ଦଶକରେ ଆମେରିକାରେ ମାନୁଫ୍ୟାକଚ଼ରିଂ କ୍ଷେତ୍ରରେ ନିଯୁକ୍ତି ପାଇଥିବା ବ୍ୟକ୍ତିମାନଙ୍କର ସଂଖ୍ୟା ସମଗ୍ର ଶ୍ରମଜୀବୀ ଲୋକମାନଙ୍କର ସଂଖ୍ୟାର ୩୫ ପ୍ରତିଶତ ଥିଲାବେଳେ, କୌଣସି ସାମାଜିକ ବିଶୃଙ୍ଖଳା ନ ଘଟାଇ ଏବେ ତାହା ଅଧାରୁ ବି ତଳକୁ ଖସି ଆସିଛି, ପରନ୍ତୁ ଜାପାନ କିମ୍ବା ଜର୍ମାନୀରେ ଏବେ ସମଗ୍ର ଶ୍ରମଶକ୍ତିର ୨୫-୩୦ ପ୍ରତିଶତ ମାନୁଫ୍ୟାକଚ଼ରିଂ କର୍ମୀଭାବେ ପରିଗଣିତ ହେଉଛନ୍ତି । ଜୀବନ-ଜୀବିକା ଓ ଧନ ସମ୍ପତ୍ତିର କର୍ତ୍ତା ଭାବେ କୃଷିର ଭୂମିକାରେ ଅଧୋଗତି ପରିଲକ୍ଷିତ ହେବା ଯୋଗୁଁ କୃଷିଜାତ ଦ୍ରବ୍ୟର ସୁ-ସଂରକ୍ଷଣ ଓ ନିରାପତ୍ତା ପାଇଁ ଯଥେଷ୍ଟ ଧ୍ୟାନ ଦିଆଯାଉଛି, ଯାହାକି ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସ୍ୱପ୍ନାତୀତ ଥିଲା ।

ସମାଜ

ତା- ୧୬.୯.୨୦୦୨



# ପୁଞ୍ଜି ଲଗାଣର ଆକର୍ଷଣୀୟ ଲକ୍ଷ୍ୟସ୍ଥଳ -ଭିଏତ୍‌ନାମ

ତିନି ଧାଡ଼ିଆ ରାସ୍ତା, ଶାନ୍ତ ଗମ୍ଭୀର ହୋଆନ କିଏମ୍ ହ୍ରଦ; ଯାହାର ଚାରିକଡ଼ରେ ବୟସ୍କ ନାଗରିକମାନେ ସେମାନଙ୍କର ପ୍ରାତଃ ଭ୍ରମଣ କରିବା ସଙ୍ଗେ ସଙ୍ଗେ ଗପ ସପ କରି ବିଶ୍ରାମ ନେଇଥାନ୍ତି । ଶୀତଦିନ ସକାଳୁ ସକାଳୁ ରାସ୍ତାକଡ଼ ରୋଷେଇଶାଳମାନଙ୍କରୁ ଆସୁଥିବା ଗରମା ଗରମ ସୁପ୍‌ର ମନମୁଗ୍ଧକର ଆଘ୍ରାଣ - ଏହା ହିଁ ଥିଲା ୧୦ ବର୍ଷ ତଳର ହାନୋଇ ସହରର ଚିତ୍ର । ହାନୋଇ ସହର ପୁରାତନ ସଂସ୍କୃତି ଓ କଳା ବୈଭବ ପାଇଁ ଯେତିକି ପ୍ରସିଦ୍ଧି ଲାଭ କରିଥିଲା, ତା'ଠୁଁ ଅଧିକ ପ୍ରସିଦ୍ଧି ପାଇଥିଲା ତା'ର ଲୋକମାନଙ୍କର ସ୍ନେହପୂର୍ଣ୍ଣ ମନମୁଗ୍ଧକର ଆତିଥ୍ୟ ପାଇଁ ।

ଏବେ କିନ୍ତୁ ଚିତ୍ର ପୁରା ବଦଳି ଯାଇଛି । ଯେଉଁ ରାସ୍ତାରେ ଦିନେ ଅଗଣିତ ସାଇକେଲ୍ ସାଇଁ ସାଇଁ ହୋଇ ଚାଲୁଥିଲା, ଆଜି କିନ୍ତୁ ସେହି ରାସ୍ତାରେ ଅସଂଖ୍ୟ ହୋଣ୍ଡା, ମୋପେଡ଼ ଓ ଅନ୍ୟାନ୍ୟ ଚୀନୀୟ ଆମଦାନୀ ଯାନବାହାନ ଦ୍ରୁତ ଧାବମାନ । ପୁରାତନ ଘରଗୁଡ଼ିକ ଧ୍ୱଂସପାଇ ଯାଇ ତା' ବଦଳରେ ଏବେ ସେଠାରେ କଂକ୍ରିଟ ଓ କାଚ଼ର ଅତ୍ୟୁଚ୍ଚ ଅଟ୍ଟାଳିକାମାନ ମୁଣ୍ଡ ଟେକି ଠିଆ ହେଲାଣି । ସେଦିନର ରାସ୍ତାକଡ଼ର ରୋଷେଇଶାଳଗୁଡ଼ିକ ରୂପ ବଦଳେଇ ଅତ୍ୟାଧୁନିକ ରେଷ୍ଟୁରାଣ୍ଟମାନଙ୍କରେ ବଦଳି ଗଲେଣି । ଏହି ରେଷ୍ଟୁରାଣ୍ଟମାନଙ୍କରେ ଏବେ ଫ୍ରାନ୍ସ, ଇଟାଲି, କୋରିଆ ଓ ଜାପାନର ସବୁ ରକମର ଖାଦ୍ୟ ମିଳିପାରୁଛି ଏବଂ ଏପରିକି ଭାରତୀୟ ଭେଜିଟାରିଆନ୍ ଖାଦ୍ୟ ମଧ୍ୟ ଏଠାରେ ଉପଲବ୍ଧ ହେଉଛି । ଯେଉଁ ବଜାରରେ ଦିନେ ଶସ୍ତା ଗୃହୋପକରଣର ନାନାବିଧ ସାମଗ୍ରୀ ମିଳିପାରୁଥିଲା, ଆଜି ସେଠାରେ ପ୍ରତି କିଲୋମିଟର ଏରିଆରେ ଯେତେ ସଂଖ୍ୟାରେ ଫ୍ଲାଟ ସ୍କ୍ରିନ ଟେଲିଭିଜନ ସେଟ୍ ଓ ଅନ୍ୟାନ୍ୟ ଇଲେକ୍‌ଟ୍ରୋନିକ ଗ୍ୟାଡ଼ଜେଟ୍ସ ବିକ୍ରୀ ହେଉଛି; ତାହା ସିଙ୍ଗାପୁର ଓ ହଂକଂର ବଜାରକୁ ମଧ୍ୟ ଟପି ଗଲାଣି ।

ଭିଏତ୍‌ନାମର ଦକ୍ଷିଣରେ ଅବସ୍ଥାପିତ ହୋ-ଚି-ମିନ ସହରର ଚିତ୍ର ହାନୋଇ ସହରର ଚିତ୍ର ସହ ପ୍ରାୟ ସମାନ କହିଲେ ଚଳେ । ହୋ-ଚି-ମିନ ସହରରେ ଏବେ ଅସମ୍ଭବ ଟ୍ରାଫିକ୍ ଭିଡ଼ । ସାଇଗନ ନଦୀର ଉପର ଓ ତଳପଟ ଦେଇ ବହୁ ମାଲବୁହା ଜାହାଜର ଚଳ ପ୍ରଚଳ, ଜନଗହଳିପୂର୍ଣ୍ଣ ସୁପର ମାର୍କେଟ, ଗଗନଚୁମ୍ବୀ ପ୍ରାସାଦ ଓ ନାନାବିଧ ପଦାର୍ଥର କିଣାବିକା ପାଇଁ ବଜାର ହାଟ ସର୍ବତ୍ର ଭରପୁର ହୋଇ ଯାଇଛି । ମରସିଡ୍ସ ବେଞ୍ଜ ଏବଂ ବି.ଏମ.ଡବ୍ଲ୍ୟୁ ଗାଡ଼ିଗୁଡ଼ିକ ଜାପାନୀ ଓ କୋରିଆ ଗାଡ଼ିଗୁଡ଼ିକ ସହ ପ୍ରତିଦ୍ୱନ୍ଦିତା କରି ପ୍ରାଣ ପ୍ରାଚୁର୍ଯ୍ୟପୂର୍ଣ୍ଣ ବ୍ୟସ୍ତ ସହରର ମନୋରମ ସଡ଼କର ଉଭୟ ପାର୍ଶ୍ୱରେ ଲମ୍ବା ଧାଡ଼ି କରି ଠିଆ ହୋଇଥାଆନ୍ତି । ରାସ୍ତାକଡ଼ରେ ଗାଡ଼ିଟିଏ ପାର୍କିଂ କରିବା ପାଇଁ ଉପଯୁକ୍ତ ଜାଗା ଖଣ୍ଡେ ପାଇବା କାଠିକର ପାଠ ।

ଭିଏତ୍‌ନାମ ଉତ୍ତମ ଜୀବନ ନିର୍ବାହର ସରଳ ରାସ୍ତାଟିଏ ଖୋଜି ପାଇବା ପାଇଁ ଆଜି ଅତ୍ୟନ୍ତ ବ୍ୟଗ୍ର ହୋଇ ପଡ଼ିଛି ଏବଂ ଆଗାମୀ ଅଳ୍ପ କେଇ ବର୍ଷ ମଧ୍ୟରେ ଦାରିଦ୍ର୍ୟର ବହୁବିଧ ରୂପର ସମୂଳେ ବଂଶ ନିପାତ କରିବା ପାଇଁ ସମ୍ପୂର୍ଣ୍ଣ ରୂପେ ବଦ୍ଧପରିକର । ୨୦୨୦ ମସିହା ସୁଦ୍ଧା ଭିଏତ୍‌ନାମକୁ ଏକ ଶିଳ୍ପ ସମୃଦ୍ଧ ରାଷ୍ଟ୍ରର ମାନ୍ୟତା ପ୍ରଦାନ କରିବା ପାଇଁ ଏହାର ନେତୃବୃନ୍ଦ ଦୃଢ଼ପ୍ରତିଜ୍ଞ । ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି (ଆଇ.ଏମ୍.ଏଫ) ଭିଏତ୍‌ନାମକୁ ଏକ ଉତ୍ତମ ରିପୋର୍ଟ କାର୍ଡ଼ ପ୍ରଦାନ କରିଛି । ୯ ବିଲିୟନ ଡଲାରର ଗଚ୍ଛିତ ମୁଦ୍ରା, ରାଷ୍ଟ୍ରର ସର୍ବାଙ୍ଗୀନ ଉନ୍ନତିରେ ଘରୋଇ ଉଦ୍ୟୋଗ ଗୁଡ଼ିକର କ୍ରମବର୍ଦ୍ଧିଷ୍ଣୁ ଯୋଗଦାନ, ବିଗତ ସାତ ବର୍ଷ ମଧ୍ୟରେ ବର୍ଷକୁ ହାରାହାରି ୭ ପ୍ରତିଶତ ହାରରେ ମୋଟ ଆଭ୍ୟନ୍ତରିଣ ଉତ୍ପାଦନ (ଜି.ଡ଼ି.ପି)ରେ ଅଭିବୃଦ୍ଧି ଏବଂ ରପ୍ତାନି କ୍ଷେତ୍ରରେ ବର୍ଷକୁ ହାରାହାରି ୨୦ପ୍ରତିଶତ ଅଭିବୃଦ୍ଧିକୁ ଅବଲୋକନ କରି ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି ଭିଏତ୍‌ନାମର ଅହେତୁକ ଅଭିବୃଦ୍ଧିକୁ ନେଇ ଅତ୍ୟନ୍ତ ଉତ୍ସାହିତ ହୋଇ ଉଠିଛି ।

ପ୍ରାକୃତିକ ବାଷ୍ପ ଓ ପେଟ୍ରୋଲିୟମର ସମୁଦ୍ର ତଟବର୍ତ୍ତୀ ଅଞ୍ଚଳରେ ପ୍ରଚୁର ପରିମାଣରେ ଉପଲବ୍ଧତା, ଜଳବିଦ୍ୟୁତ୍ ଉତ୍ପାଦନ ପାଇଁ ଅଜସ୍ର ସମ୍ଭାବନା, ଆନ୍ଥ୍ରାସାଇଟ କୋଇଲାର ଉତ୍ତମ ଭଣ୍ଡାର ତଥା ସମୃଦ୍ଧ ବକ୍‌ସାଇଟ ଖଣି ଓ ଅନ୍ୟାନ୍ୟ ଖଣିଜ ପଦାର୍ଥର ସୁରକ୍ଷିତ ଆବାସସ୍ଥଳ ଯୋଗୁଁ ଭିଏତ୍‌ନାମକୁ ପ୍ରାକୃତିକ ସମ୍ପଦର ଗନ୍ତାଘର କହିଲେ ଅତ୍ୟୁକ୍ତି ହେବ ନାହିଁ । ବହୁ ନଦ ନଦୀ ଛନ୍ଦାଛନ୍ଦି ହୋଇ ଭିଏତ୍‌ନାମ ଭିତର ଦେଇ ବହି ଚାଲିଛନ୍ତି । ମେକଙ୍ଗ ନଦୀର ଦକ୍ଷିଣ ପାର୍ଶ୍ୱରେ ଥିବା ଏହାର

ଡେଲ୍ଟା ଅଞ୍ଚଳ ଭିଏତ୍‌ନାମକୁ ବିଶ୍ୱର ୨ୟ ବୃହତ୍ତମ ଚାଉଳ ରପ୍ତାନିକାରୀ ରାଷ୍ଟ୍ରର ମାନ୍ୟତା ପ୍ରଦାନ କରିଛି । ଭିଏତ୍‌ନାମର ସର୍ବାଙ୍ଗ ସୁନ୍ଦର ବିସ୍ତୀର୍ଣ୍ଣ ସାମୁଦ୍ରିକ ବେଳାଭୂମି ପର୍ଯ୍ୟଟକମାନଙ୍କ ପାଇଁ ଅତ୍ୟନ୍ତ ମନମୁଗ୍ଧକର ସ୍ଥାନରୂପେ ବିବେଚିତ ହୋଇଥାଏ ।

ମହାଯୁଦ୍ଧରୁ ନିଷ୍କୃତି ପାଇସାରିଲା ପରେ ଭିଏତ୍‌ନାମର ସାଂପ୍ରତିକ ଜନସଂଖ୍ୟା ପ୍ରାୟ ୮୦ ମିଲିୟନ ଅଟେ ଏବଂ ଜନସଂଖ୍ୟାର ବାର୍ଷିକ ଅଭିବୃଦ୍ଧି ହାର ୧.୬ ପ୍ରତିଶତ । ପ୍ରାପ୍ତବୟସ୍କ ଲୋକମାନଙ୍କ ସାକ୍ଷରତା ହାର ପ୍ରାୟ ୯୪ ପ୍ରତିଶତ ଏବଂ ହାରାହାରି ଭାବେ ଲୋକମାନଙ୍କ ଜୀବନକାଳ କ୍ରମାଗତ ଭାବେ ବୃଦ୍ଧି ପାଇବାରେ ଲାଗିଛି । ଶିଶୁ ମୃତ୍ୟୁ ହାର ହ୍ରାସ ପାଇବା ସଙ୍ଗେ ସଙ୍ଗେ ଦାରିଦ୍ର୍ୟର ସୀମାରେଖା ମଧ୍ୟ ହ୍ରାସ ପାଇବାରେ ଲାଗିଛି । ଭିଏତ୍‌ନାମ ପାଇଁ ଏବେ ମୁଖ୍ୟ ଆହ୍ୱାନ ହେଲା ୧.୪ ମିଲିୟନ ଯୁବଶକ୍ତି ପାଇଁ ଚାକିରି ଯୋଗେଇବା ଯେଉଁମାନେ କି ପ୍ରତିବର୍ଷ ଶ୍ରମ ଶକ୍ତିଭାବେ ଯୋଗଦେଇ ଚାଲିଛନ୍ତି ।

ଭିଏତ୍‌ନାମରେ ପରିବର୍ତ୍ତନର ମହାସ୍ରୋତ ପ୍ରବାହିତ ହେବା ଏକ ଶୁଭଙ୍କର ଘଟଣା ଏବଂ ଏହି ପରିବର୍ତ୍ତନର ଅଣୁଘଟକ ହେଲା ଘରୋଇ ବ୍ୟାପାର ପାଇଁ ରାଷ୍ଟ୍ରର ଶୁଭ ଦୃଷ୍ଟିଭଙ୍ଗୀ । ଭିଏତ୍‌ନାମ ୧୯୮୬ ମସିହାରେ ରାଷ୍ଟ୍ରୀୟ ନବନିର୍ମାଣ ପ୍ରକ୍ରିୟାର ଶୁଭାରମ୍ଭ କଲା ଏବଂ ରାଷ୍ଟ୍ରଦ୍ୱାରା ନିୟନ୍ତ୍ରିତ ଅର୍ଥନୀତିର ଶକ୍ତ ପଞ୍ଜୁରୀ ଭିତରୁ ସମ୍ପୂର୍ଣ୍ଣ ରୂପେ ମୁକୁଳି ଆସିଲା । ବିଗତ କେତେବର୍ଷ ଅର୍ଥନୀତିରେ ନୂଆ ମୋଡ଼ ଆଣିଲା । ୧୯୯୦ ରୁ ୨୦୦୦ ମସିହା ମଧ୍ୟରେ ଅନ୍ତର୍ଦ୍ଦେଶୀୟ ଘରୋଇ ସଂସ୍ଥା ୧୧୦ ରୁ ୩୫ ହଜାରକୁ ଏବଂ ବିଦେଶୀ ଶିଳ୍ପ ସଂସ୍ଥା ୧୦୮ ରୁ ୨୨୨୮କୁ ବୃଦ୍ଧି ଘଟିଲା । ଅଣତୈଳ ସେକ୍ଟରଗୁଡ଼ିକର ରପ୍ତାନିରେ ବେସରକାରୀ ଶିଳ୍ପ ସଂସ୍ଥା ଗୁଡ଼ିକର ଅଂଶଧନ ୩ ପ୍ରତିଶତରୁ ୫୨ ପ୍ରତିଶତକୁ ମଧ୍ୟ ଅଭିବୃଦ୍ଧି ଘଟିଲା । ଶିଳ୍ପଜାତ ଦ୍ରବ୍ୟଗୁଡ଼ିକର ଉତ୍ପାଦନରେ ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜି ନିବେଶର ଭାଗିଦାରୀ ୮.୮ ପ୍ରତିଶତରୁ ୩୪ ପ୍ରତିଶତକୁ ମଧ୍ୟ ବୃଦ୍ଧି ଘଟିଲା । ଏସବୁ ହାସଲ କରିବା ପାଇଁ ଭିଏତ୍‌ନାମର ସରକାର ୨୦୦୦ ମସିହାର ପ୍ରାରମ୍ଭରେ ଏଣ୍ଟରପ୍ରାଇଜ ଲ'ର ପ୍ରଚଳନ, ଜମିଜମା ଉପରେ ଥିବା ଅଧିଗ୍ରହଣକୁ କୋହଳ କରିବା ତଥା ବ୍ୟାଙ୍କିଙ୍ଗ ସଂସ୍କାର ସଂକ୍ରାନ୍ତୀୟ ପ୍ୟାକେଜ୍ ଆଦି ନାନାବିଧ ଉଲ୍ଲେଖନୀୟ ପଦକ୍ଷେପ ଗ୍ରହଣ କରିଥିଲେ । ସଂପ୍ରତି ଭିଏତ୍‌ନାମ ଯଦିଓ ବର୍ଷକୁ ୧ ବିଲିୟନ ଡଲାରର ଉଚ୍ଚସ୍ତରୀୟ ବହୁପାକ୍ଷିକ ଓ ଦ୍ୱିପାକ୍ଷିକ ଅର୍ଥନୈତିକ ସହଯୋଗ ଉପଲବ୍ଧ କରି ଚାଲିଛି, ପରନ୍ତୁ

ରାଷ୍ଟ୍ରର ଅର୍ଥନୈତିକ ଅଭିବୃଦ୍ଧିରେ ସ୍ଥିରତା ଆଣିବାକୁ ହେଲେ ବର୍ଷକୁ ୨ -୩ ବିଲିୟନ ଡଲାରର ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜି ନିବେଶର ଆବଶ୍ୟକତା ପଡ଼ିବ । ଏବର୍ଷ ଏପ୍ରିଲ ମାସରେ ଭିଏତ୍‌ନାମର ଯୋଜନା ଓ ପୁଞ୍ଜି ଲଗାଣ ବିଭାଗର ମନ୍ତ୍ରୀ ମହୋଦୟ ଟ୍ରାନ ଜୁଆନ ଗିଆ ଘୋଷଣା କରିଥିଲେ ଯେ ନୂତନ ବିଦେଶୀ ପୁଞ୍ଜି ଲଗାଣର ନିୟମାବଳୀ, ଯାହାକି ଖୁବ୍ ଶୀଘ୍ର ଲୋକଲୋଚନକୁ ଆସିବ; ତାହା ଆହୁରି ଅଧିକ ଛାଡ଼ ବ୍ୟବସ୍ଥାର ପ୍ରଚଳନ କରିବ । ନିକଟ ଅତୀତରେ ସମ୍ପାଦିତ ହୋଇଥିବା ୧୫୪ ମିଲିୟନ ଡଲାରର ଦୁଇଟି 'ବ୍ୟୁଲ୍ଡ-ଅପରେଟ-ୟାଣ୍ଡ-ଟ୍ରାନ୍ସଫର' (ବି.ଓ.ଟି) ପ୍ରକଳ୍ପ ଯଥା- 'ଥୁ ଦକ୍' ଜଳ ଯୋଗାଣ ପ୍ରକଳ୍ପ ଏବଂ 'ଫୁ ମାଇଁ ଥ୍ରୀ' କମ୍ବାଇଣ୍ଡ ସାଇକ୍ଲ ପାୱାର ପ୍ରୋଜେକ୍ଟ, ଯାହାକି ଆଖିରେ ଆଙ୍ଗୁଠି ଖେଞ୍ଚି କହି ଦେଉଛି ଯେ ବ୍ୟୟବହୁଳ ଭିତ୍ତିଭୂମି ପ୍ରକଳ୍ପଗୁଡ଼ିକୁ ଘରୋଇ ପୁଞ୍ଜି ଲଗାଣକାରୀଙ୍କୁ ବି.ଓ.ଟି. ବେସିସ୍‌ରେ ପ୍ରଦାନ କରାଯିବା ଉଚିତ ।

ମୂଲ୍ୟବାନ୍ ପ୍ରାକୃତିକ ସଂପଦ ଏବଂ ଅର୍ଥନୀତିର ଉତ୍ତମ ପରିଚାଳନା ଯୋଗୁଁ ପୁଞ୍ଜି ଲଗାଣ ସୁଯୋଗକୁ ଆଁ କରି ଚାହିଁରହିଥିବା କମ୍ପାନୀମାନଙ୍କ ପାଇଁ ଭିଏତ୍‌ନାମ ଏକ ଅତ୍ୟନ୍ତ ଏକ୍‌ସାଇଟିଂ ତଥା ଲାଭଦାୟକ ରାଷ୍ଟ୍ରଭାବେ ସାବ୍ୟସ୍ତ ହେବ । ଭିଏତ୍‌ନାମର ଦକ୍ଷିଣ-ପଶ୍ଚିମ ତଟବର୍ତ୍ତୀ ଅଞ୍ଚଳରେ ୟୁନୋକାଲ୍ କମ୍ପାନୀ ୪୦୦ ମିଲିୟନ ଡଲାରର ପୁଞ୍ଜି ନିବେଶ କରି ୭୨୦ ମେଗାୱାଟ ବିଦ୍ୟୁତ୍ କେନ୍ଦ୍ର ସ୍ଥାପନା କରିବାକୁ ତା'ର ଆଗ୍ରହ ଘୋଷଣା କରି ସାରିଲାଣି । ପେଟ୍ରୋଲିୟମ, ଖଣିଜ ଭିତ୍ତିକ ଶିଳ୍ପ, ବିଦ୍ୟୁତ୍ ଶକ୍ତିର ଉତ୍ପାଦନ ଓ ସରବରାହ, ଗମନାଗମନ ଓ ଯୋଗାଯୋଗ କ୍ଷେତ୍ରରେ ପୁଞ୍ଜି ନିବେଶର ପ୍ରଚୁର ଆବଶ୍ୟକତା ରହିଥିବା ସଙ୍ଗେ ସଙ୍ଗେ ରପ୍ତାନି ଭିତ୍ତିକ ଶିଳ୍ପ ଯଥା- ପୋଷାକ ପତ୍ର, ଯୋତା ଏବଂ କଫି ଆଦିରେ ପୁଞ୍ଜି ଲଗାଣର ବହୁଳ ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । ଆଜି ପର୍ଯ୍ୟନ୍ତ ଲାଇସେନ୍ସପ୍ରାପ୍ତ ବିଦେଶୀ ପୁଞ୍ଜିଲଗାଣର ପରିମାଣ ପ୍ରାୟ ୫୦ ବିଲିୟନ ଡଲାର ଏବଂ ଏହି ପରିମାଣର ଅର୍ଦ୍ଧେକ ଅର୍ଥ ପ୍ରକୃତରେ ବିନିଯୋଗ ହୋଇ ସାରିଲାଣି ।

ସୂଚନା ପ୍ରଯୁକ୍ତି ବିଦ୍ୟା ହେଉଛି ଏକ ନୂତନ ପ୍ରକ୍ଷେତ୍ର, ଯାହା ଉପରେ ଭିଏତ୍‌ନାମ ସରକାର ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ହାନୋଇ ଓ ହୋ-ଚି-ମିନ୍ ସହରରେ ନୂଆ ନୂଆ ହାଇ-ଟେକ୍ ପାର୍କ ତିଆରି ଚାଲିଛି ଏବଂ ଭିଏତ୍‌ନାମର ଯୁବକ ଯୁବତୀମାନେ ହଜାର ହଜାର ସଂଖ୍ୟାରେ ସୂଚନା ପ୍ରଯୁକ୍ତି ବିଦ୍ୟା

ପାଠ୍ୟକ୍ରମରେ ଯୋଗଦାନ କରୁଛନ୍ତି । କମ୍ପ୍ୟୁଟର ପ୍ରୋଗ୍ରାମର୍‌ମାନଙ୍କୁ ଦେଶ ବାହାରୁ ଉପଲବ୍ଧ କରିବାରେ ଭାରତ ଅପେକ୍ଷା ଭିଏତ୍‌ନାମରେ ସେମାନଙ୍କର ଦରମା ବାବଦରେ କମ୍ ଅର୍ଥ ବିନିଯୋଗ କରିବାକୁ ପଡୁଛି । ଭିଏତ୍‌ନାମର ଯୁବଶକ୍ତିଙ୍କ ପାଖରେ ଉପଲବ୍ଧ ହେଉଥିବା ପ୍ରଚଣ୍ଡ ଆଗ୍ରହ, ଉତ୍‌କଣ୍ଠା, ଉଦ୍ଦିପନା ଓ ଉତ୍ପାଦକତାର ଗୁଣସୂତ୍ର ସତରେ ଏକ ଦୁର୍ଲ୍ଲଭ ଗୁଣ; ଯାହାକୁ ପୁଞ୍ଜି କରି ଭିଏତ୍‌ନାମ ବିଶ୍ୱର ମାତ୍ର କେତୋଟି ହାତ ଗଣତି ସୂଚନା ପ୍ରଯୁକ୍ତି ବିଦ୍ୟା ସମୃଦ୍ଧ ରାଷ୍ଟ୍ରମାନଙ୍କ ମଧ୍ୟରେ ଅନ୍ୟତମ ରାଷ୍ଟ୍ରଭାବେ ସଗର୍ବେ ମୁଣ୍ଡଟେକି ଠିଆ ହେବ ଓ ଏକ ସୌଭାଗ୍ୟବନ୍ତ ଆଇ.ଟି. ଖେଳାଳୀ ଭାବେ ବିଶ୍ୱବାସୀଙ୍କ ଆଗରେ ନିଜର ଗୌରବାଦିତ୍ୟ ପରିଚୟ ପ୍ରଦାନ କରିବ ।

ଭିଏତ୍‌ନାମ ଦ୍ୱାରା ବାଣିଜ୍ୟ କ୍ଷେତ୍ରରେ କୋହଳ ନୀତି ନିୟମର ପ୍ରଣୟନ କରାଯିବା ଯୋଗୁଁ ଘରୋଇ ଓ ବିଦେଶୀ ପୁଞ୍ଜି ଲଗାଣକାରୀମାନେ ତଦ୍ୱାରା ବିଶେଷଭାବେ ଆକୃଷ୍ଟ ହେଉଛନ୍ତି । ୨୦୦୧ ମସିହାର ଶେଷ ଭାଗରେ ଆମେରିକା ସହ ହୋଇଥିବା ଦ୍ୱିପାକ୍ଷିକ ବାଣିଜ୍ୟିକ ରାଜିନାମାରେ ଉଭୟ ଦେଶର ସହମତି ପୁଞ୍ଜିଲଗାଣକାରୀମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରି ପାରିଛି । ଆମେରିକାର ବଜାରରେ ଭିଏତ୍‌ନାମରୁ ରପ୍ତାନି କରାଯାଉଥିବା ପଦାର୍ଥଗୁଡ଼ିକ ଏମ.ଏଫ୍.ଏନ୍. ଷ୍ଟାଟସ୍ ଲାଭ କରୁଥିବାରୁ ଏବଂ ଭିଏତ୍‌ନାମରେ ଶ୍ରମ ଶକ୍ତିର ମୂଲ୍ୟ ସ୍ୱଳ୍ପ ତଥା ଇଣ୍ଡଷ୍ଟ୍ରିୟାଲ୍ ଇଷ୍ଟେଟର ସୁବିଧାରେ ଉପଲବ୍ଧ ଯୋଗୁଁ ଆମେରିକାର ବଜାର ଚାହୁଁଥିବା ପଦାର୍ଥ ଗୁଡ଼ିକ ଯଥା - ପୋଷାକ ପତ୍ର, ଯୋତା, ସାମୁଦ୍ରିକ ଖାଦ୍ୟ ଇତ୍ୟାଦିର ଉତ୍ପାଦନ କେନ୍ଦ୍ରର ସ୍ଥାପନା ପାଇଁ ଭିଏତ୍‌ନାମ ସର୍ବୋତ୍ତମ ସ୍ଥଳ ଭାବେ ବିବେଚିତ ହେଉଛି । ସିଙ୍ଗାପୁର, ମ୍ୟାଲେସିଆ, ଥାଇଲ୍ୟାଣ୍ଡ, ତାଇୱାନ ତଥା ଅନ୍ୟାନ୍ୟ ଦେଶର କମ୍ପାନୀମାନେ ଭିଏତ୍‌ନାମରେ ୬୮ ଟି ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ ବା ଶିଳ୍ପାଞ୍ଚଳ ଏବଂ ଏକ୍ସପୋର୍ଟ ପ୍ରୋସେସିଂ ଜୋନର ସ୍ଥାପନା କରିଛନ୍ତି । ଭିଏତ୍‌ନାମ ମଧ୍ୟ ଆସୋସିଏସନ ଫର ସାଉଥ୍ ଇଷ୍ଟ ଏସିଆନ କୋପରେସନ୍ (ଆସିୟାନ) ରାଷ୍ଟ୍ର ସମୂହର ସଦସ୍ୟ ରାଷ୍ଟ୍ରର ମାନ୍ୟତା ଲାଭ କରି ସାରିଛି, ଯେଉଁଠାରେ କି ଏକ ଯୁକ୍ତ ବାଣିଜ୍ୟିକ ଅଞ୍ଚଳର ସଂସ୍ଥାପନା ପାଇଁ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରାଯାଉଛି ତଥା ୨୦୦୫ ମସିହା ସୁଦ୍ଧା ଭିଏତ୍‌ନାମ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହେବା ପାଇଁ ନିଶ୍ଚିତ ରୂପେ ଦୃଢ଼ ପ୍ରତିଜ୍ଞ ହୋଇଯାଇଛି ।

ଭିଏତ୍‌ନାମର ପ୍ରଗତିର ଫଳାଫଳ ମଧ୍ୟ ଆପଣଙ୍କ ସାମନାରେ । ଏମିତି ଗୋଟେ ସମୟରେ ଯେତେବେଳେ କି ସମଗ୍ର ବିଶ୍ୱର ଅଧିକାଂଶ ରାଷ୍ଟ୍ର ଅର୍ଥନୈତିକ ମାନ୍ଦା ଅବସ୍ଥା ଦେଇ ଗତି କରୁଛନ୍ତି, ଠିକ୍ ସେତିକିବେଳେ ଭିଏତ୍‌ନାମ ତା'ର ପଡ଼ୋଶୀ ରାଷ୍ଟ୍ର ଚୀନ ସହ ଶିଳ୍ପ ଉତ୍ପାଦନ ଓ ଅଭିବୃଦ୍ଧି କ୍ଷେତ୍ରରେ ପାଦରେ ପାଦ ମିଳେଇ ଏକା ତାଳରେ ଚାଲି ପାରୁଛି । ୨୦୦୨ ମସିହାର ପ୍ରଥମ ପାଞ୍ଚ ମାସ ମଧ୍ୟରେ ଶିଳ୍ପ ଉତ୍ପାଦନ ୨୦୦୧ ମସିହାର ସେହି ସମୟ ଅପେକ୍ଷା ୨୦ ପ୍ରତିଶତ ଅଧିକ ଏବଂ ସେହି ସମୟ ମଧ୍ୟରେ ଜି.ଡ଼ି.ପି.ର ଅଭିବୃଦ୍ଧି ୭ ପ୍ରତିଶତର ପାଖାପାଖି ହୋଇ ପାରିଛି ।

ଏ ସବୁ ସତ୍ତ୍ୱେ ମଧ୍ୟ ଆଉ କେତେକ ସମସ୍ୟାର କ୍ଷେତ୍ର ଭିଏତ୍‌ନାମ ଆଗରେ ଆସି ଠିଆ ହୋଇଛି । ବ୍ୟାଙ୍କିଙ୍ଗ ସେକ୍ଟର ପୁନଃ ସଂସ୍କାରର ଆବଶ୍ୟକତା କାମନା କରୁଛି ଏବଂ ଉଭୟ ବିଶ୍ୱବ୍ୟାଙ୍କ ଓ ଏସୀୟ ଅଭିବୃଦ୍ଧି ବ୍ୟାଙ୍କ ବଜେଟ ପ୍ରସ୍ତୁତି ପ୍ରକ୍ରିୟା ଓ ଅନ୍ୟାନ୍ୟ ସରକାରୀ କ୍ଷେତ୍ରରେ ଆହୁରି ଅଧିକ ସ୍ୱଚ୍ଛତା ଅଭିଳାଷ କରୁଛି, ସେମାନେ ସରକାରୀ ମାଲିକାନାରେ ଥିବା ଉଦ୍ୟୋଗଗୁଡ଼ିକର ସଂଖ୍ୟାରେ ହ୍ରାସ ଘଟାଇ ସେଗୁଡ଼ିକୁ ଯେତେଦୂର ସମ୍ଭବ ବେସରକାରୀ ଉଦ୍ୟୋଗମାନଙ୍କର କର୍ତ୍ତୃତ୍ୱାଧୀନ କରିବାକୁ ସରକାରଙ୍କ ପାଖରେ ଦୃଢ଼ ଦାବୀ ଉପସ୍ଥାପନା କରୁଛନ୍ତି ।

ଭାରତୀୟ କମ୍ପାନୀମାନେ ଭିଏତ୍‌ନାମରେ ଥିବା ସମ୍ଭାବ୍ୟ ଅଭିବୃଦ୍ଧିର ସୁଯୋଗକୁ କିପରି ହାତଛଡ଼ା ନ କରିବେ, ତାହା ଆଜି ଏକ ଆହ୍ୱାନ ହୋଇ ଠିଆ ହୋଇଛି । ଫାର୍ମାସେଉଟିକାଲ୍ସ ଓ ଆଉ ଅଳ୍ପ କେତେକ ଦ୍ରବ୍ୟର ଯୋଗାଣକୁ ଛାଡ଼ିଦେଲେ ଭାରତୀୟ କମ୍ପାନୀମାନେ ଆମେରିକା, ୟୁରୋପ, ଜାପାନ, କୋରିଆ, ଚୀନ ଓ ସିଙ୍ଗାପୁରର କମ୍ପାନୀମାନେ ପ୍ରବେଶ କରିଥିବା ଅନ୍ୟାନ୍ୟ ଆକର୍ଷଣୀୟ ବ୍ୟବସାୟୀକ କ୍ଷେତ୍ରଗୁଡ଼ିକ ପରି ସେପରି କୌଣସି ସୁଯୋଗର ବାର୍ତ୍ତାବହ ଭାବେ କର୍ମ କରୁନାହାନ୍ତି ।

ଭିଏତ୍‌ନାମ୍‌ରେ ସଂପ୍ରତି କାର୍ଯ୍ୟକାରୀ ହେଉଥିବା ନାନାବିଧ ଭିତ୍ତିଭୂମି ଉନ୍ନୟନ ପ୍ରକଳ୍ପ ଯଥା - ଶକ୍ତି ଉତ୍ପାଦନ ଓ ସରବରାହ, ପରିବହନ ଓ ସଂଚାର, ପର୍ଯ୍ୟଟନ ଓ ହୋଟେଲ ଶିଳ୍ପ, ସୂଚନା ପ୍ରଯୁକ୍ତି ବିଦ୍ୟା ଏବଂ ଲାଇଟ ଇଞ୍ଜିନିୟରିଂରେ ଯୋଗଦେବା ପାଇଁ ଭାରତୀୟ କମ୍ପାନୀମାନଙ୍କ ଆଗରେ ଆଜି ବହୁବିଧ ସୁଯୋଗ ଲହଡ଼ି ଭାଙ୍ଗୁଛି । ଏହି ପ୍ରକଳ୍ପମାନଙ୍କ ମଧ୍ୟରୁ ଅଧିକାଂଶକୁ ବିଶ୍ୱ ବ୍ୟାଙ୍କ, ଏସୀୟ

ଉନ୍ନୟନ ବ୍ୟାଙ୍କ ଆର୍ଥିକ ସହାୟତା ପ୍ରଦାନ କରୁଛନ୍ତି । ବିଭିନ୍ନ ପ୍ରକଳ୍ପର ରୂପାୟନ ପାଇଁ ଯେଉଁଠାରେ କି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କଠାରୁ ପୁଞ୍ଜି ଉପଲବ୍ଧତା ପ୍ରାୟତଃ ନିଶ୍ଚିତ ଥାଏ, ସେଗୁଡ଼ିକର ଟେଣ୍ଡର ପେପର୍ ଦାଖଲ କରିବା ବ୍ୟତିରେକ ଭାରତୀୟ କମ୍ପାନୀମାନେ ନିଜସ୍ୱଭାବେ ଆର୍ଥିକ ଦୃଷ୍ଟିକୋଣରୁ ଲାଭଦାୟକ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ସୁସ୍ଥ ପ୍ରକଳ୍ପଗୁଡ଼ିକରେ ପୁଞ୍ଜି ନିବେଶ କରିବା ଉଚିତ । ନୂଆ ଭାବେ ସ୍ଥାପନା କରାଯାଇଥିବା 'ମେକଙ୍ଗ ଫଣ୍ଡ' ଓ 'ମେକଙ୍ଗ ପ୍ରକଳ୍ପ ଉନ୍ନୟନ ଫଣ୍ଡ' ପୁଞ୍ଜି ଲଗାଣକାରୀମାନଙ୍କ ପାଇଁ ଆକର୍ଷଣୀୟ ସମ୍ଭାବନାର ଦ୍ୱାର ଖୋଲି ଦେଇଛି, ଯାହାକି ଅତିରିକ୍ତ ପୁଞ୍ଜିର ଉପଲବ୍ଧ ପାଇଁ ଏକ ସୁବର୍ଣ୍ଣ ସୁଯୋଗ ।

ଭାରତ ସରକାର ଭିଏତ୍‌ନାମକୁ ରିହାତି ହାରରେ ଋଣ ପ୍ରଦାନ କରୁଛନ୍ତି, ଯାହାର ଉପଲବ୍ଧ କରି ଭାରତୀୟ କମ୍ପାନୀମାନେ ସେଠାରେ ନିଜ ମନଲାଖି ପ୍ରକଳ୍ପର ଶୁଭାରମ୍ଭ କରି ପାରିବେ । ଏତଦ୍‌ବ୍ୟତୀତ ତୈଳ ଓ ପ୍ରାକୃତିକ ବାଷ୍ପ ଆୟୋଗ ପ୍ରାକୃତିକ ବାଷ୍ପ ରିହାତିରୁ ଉପଲବ୍ଧ କରୁଥିବା କିଛିଟା ଲାଭାଂଶକୁ ବିନିଯୋଗ କରି ଅନ୍ୟ ଭାରତୀୟ କମ୍ପାନୀମାନଙ୍କ ସାହଚର୍ଯ୍ୟରେ ଭିଏତ୍‌ନାମରେ ଅନ୍ୟାନ୍ୟ ପ୍ରକଳ୍ପର ସଂସ୍ଥାପନ ମଧ୍ୟ କରିପାରିବ । ଏକ୍ସପୋର୍ଟ ଇମ୍ପୋର୍ଟ ବ୍ୟାଙ୍କ ଅଫ୍ ଇଣ୍ଡିଆ (ଏକ୍‌ଜିମ) ଅଗ୍ରଣି ଭୂମିକା ଗ୍ରହଣ କରି ଭାରତୀୟ କମ୍ପାନୀମାନଙ୍କ ପାଇଁ ପୁଞ୍ଜି ଲଗାଣର ସୁବନ୍ଦୋବସ୍ତ କରିପାରିବ, ଯଦ୍ୱାରା ସେମାନେ ଭିଏତ୍‌ନାମରେ ବ୍ୟୁଲ୍ଟ-ଅପରେଟ-ୟାଣ୍ଡ-ଟ୍ରାନ୍ସଫର (ବି.ଓ.ଟି) ପ୍ରକଳ୍ପମାନ ସ୍ଥାପନା କରିପାରିବେ ।

ଭାରତବର୍ଷ ପ୍ରଥମ ଥର ପାଇଁ ନଭେମ୍ବର ୨୦୦୨ ମସିହାରେ ଅନୁଷ୍ଠିତ ହେବାକୁ ଯାଉଥିବା 'ଆସୋସିଏସନ ଫର ଦି ସାଉଥ ଇଷ୍ଟ ଏସିଆନ୍ କୋପରେସନ (ଆସୀୟାନ)' ସମ୍ମିଳନୀରେ ଭାଗନେବା ପାଇଁ ନିମନ୍ତ୍ରିତ ହୋଇଛି । ଆସୀୟାନ ରାଷ୍ଟ୍ରମାନଙ୍କ ସହ ଭାରତବର୍ଷ ସୌହାର୍ଦ୍ଧ୍ୟପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ ଆଣି ଦେବ । ଭିଏତ୍‌ନାମ ଭାରତବର୍ଷର ଦୀର୍ଘଦିନର ପରମ ମିତ୍ର ରାଷ୍ଟ୍ର ହୋଇଥିବାରୁ ଏହି ପଦକ୍ଷେପରେ ଅଗ୍ରଣି ଆସନ ଅଧିକାର କରିବା ନିଃସନ୍ଦେହ ।

ସମାଜ

ତା- ୫.୮.୨୦୦୨



# ଚୀନର ଅସାଧାରଣ ସମୃଦ୍ଧି ପଛରେ ଲୁଚି ରହିଥିବା ଅସଲ କାହାଣୀଟି କ'ଣ ?

**ଚୀ**ନ ସତରେ କ'ଣ ଏକବିଂଶ ଶତାବ୍ଦୀର ବିଶ୍ୱ ଅର୍ଥନୈତିକ ଶକ୍ତି କେନ୍ଦ୍ର ଭାବେ ଉଦ୍‌ଭାସିତ ହେବାକୁ ଯାଉଛି ନା ନିଜକୁ ଖାଲି ଇନ୍ଦ୍ରଧନୁର ସାତ ରଙ୍ଗରେ ସୁସଜ୍ଜିତ କରେଇ ଅଳସ କନ୍ୟା ସାଜି ବିଶ୍ୱବାସୀଙ୍କ ଆଗରେ ଆକର୍ଷଣୀୟ ରୂପରେ ପରିବେଷିତ ହେବାକୁ ଚାହୁଁଛି ? ତା'ହେଲେ ପ୍ରକୃତରେ ଚୀନର ଆଭିମୁଖ୍ୟ କ'ଣ ? ତା'ର ଆଭ୍ୟନ୍ତରୀଣ କାହାଣୀର ଟିକିନିଖି ବିବରଣ ଓ ଭାରତ ପାଇଁ ସେ ସବୁର ଅର୍ଥ କ'ଣ ଜାଣିବା ପାଇଁ ଏହି ପ୍ରବନ୍ଧଟିର ଉପସ୍ଥାପନା କରାଯାଇଛି ।

ଆଜିର ବିଶ୍ୱ ଅର୍ଥନୀତିରେ ରାଷ୍ଟ୍ରଗୁଡ଼ିକ ପ୍ରଗତିର ବସ ଯାତ୍ରାରେ ଭାଗ ନେଇ ପୁସ୍ ବ୍ୟାକ୍ ସିଟ୍‌ରେ ଉପବିଷ୍ଟ ହୋଇ ଜୟଯାତ୍ରାର ଗାନ ଗାଇ ଚାଲନ୍ତୁ, ନଚେତ୍ ବସ୍‌ରେ ସିଟ୍ ନ ପାଇ ରାସ୍ତାକଡ଼ରେ ସେଇମିତି ଖୁଣ୍ଟ ଭଳି ଠିଆ ହୋଇ ବସ୍ ଯାତ୍ରୀଙ୍କୁ ଟା ଟା କରି ଦୀର୍ଘ ନିଶ୍ୱାସକୁ ପାଥେୟ କରି ବଞ୍ଚି ରୁହନ୍ତୁ । ଚୀନ ନିଶ୍ଚିତ ରୂପେ ବସ ଭିତରେ ବସି ରହିଛି । ଭାରତ କେତେବେଳେ ବସ୍ ଭିତରେ ତ କେତେବେଳେ ବସ୍ ବାହାରେ । ଚୀନର ଅର୍ଥନୈତିକ ପରିସଂଖ୍ୟାନ କେବଳ ଯେ ଆପଣଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଛି ତା' ନୁହେଁ, ତାହା ପ୍ରଗତିର ପ୍ରକୃଷ୍ଟ ପରିଚାୟକ ବୋଲି ମଧ୍ୟ ସାବ୍ୟସ୍ତ ହୋଇ ସାରିଲାଣି ।

ଚୀନ ଗତ ୧୦ ବର୍ଷ ମଧ୍ୟରେ ୫୦ ହଜାର କିଲୋମିଟରର ଏକ୍ସପ୍ରେସ ହାଇୱେ ନିର୍ମାଣ କରିଛି । କେବଳ ୧୯୯୮ ମସିହା ପରଠାରୁ ଆଜି ପର୍ଯ୍ୟନ୍ତ ୨୫ ହଜାର କିଲୋମିଟର ତହିଁରେ ଅନ୍ତର୍ଭୁକ୍ତ; ଅର୍ଥାତ୍ ଚୀନ୍‌ରେ ଦିନକୁ ୧୭ କିଲୋମିଟରର ଏକ୍ସପ୍ରେସ୍ ହାଇୱେ ନିର୍ମାଣ କରାଯାଉଛି । ବେଜିଂରୁ ତାଟଙ୍ଗ ଯିବା ପାଇଁ ନିର୍ମିତ ହୋଇଥିବା ୩୬୦ କିଲୋମିଟରର ଏକ୍ସପ୍ରେସ ହାଇୱେର ସେତେ ଅଧିକ ଟ୍ରାଫିକ ଦୃଷ୍ଟିଗୋଚର ହୋଇ ନ ଥାଏ । ପରନ୍ତୁ ଚୀନର କାର୍ଯ୍ୟକ୍ରମ ସବୁବେଳେ ଭବିଷ୍ୟତକୁ

ଆଖି ଆଗରେ ରଖି ପ୍ରସ୍ତୁତ ହୋଇଥାଏ, ଆଜିର ପରିସ୍ଥିତିକୁ ଦେଖି ନୁହେଁ । ଭାରତବର୍ଷ କିନ୍ତୁ ୨୦୦୭ ମସିହା ସୁଦ୍ଧା ସ୍ଥିରିକୃତ କରାଯାଇଥିବା ୧୩,୧୫୧ କିଲୋମିଟରର ସୁବର୍ଣ୍ଣ କ୍ୱାଡ୍ରିଲ୍ୟାଟରାଲ୍ ଜାତୀୟ ରାଜପଥର ନିର୍ମାଣ ସମ୍ପୂର୍ଣ୍ଣ କରିପାରିବ କି ନାହିଁ, ତହିଁରେ ସନ୍ଦେହ ଅଛି ।

ଗତ ୧୦ ବର୍ଷ ମଧ୍ୟରେ କେବଳ ସାଂଘାଇର ଆକାଶରେଖା ୨୦ ହଜାର ସୁବୃହତ୍ ଅତ୍ୟୁଚ୍ଚ ଅଟ୍ଟାଳିକାର ନିର୍ମାଣକୁ ଆଖି ପୂରେଇ ଦେଖିଲା । ପରନ୍ତୁ ଭାରତବର୍ଷ, ନୂଆଦିଲ୍ଲୀର ଉପଗ୍ରହ ନଗରୀ ଗୁରଗାଓଁ ଓ ମୁମ୍ବାଇର ବାନ୍ଦ୍ରା କୁର୍ଲା କମ୍ପ୍ଲେକ୍ସର ନିର୍ମାଣକୁ ନେଇ କେବେଠୁଁ ସଂଗ୍ରାମ କରି ଚାଲିଛି, ଯେଉଁଠାରେ କି ଉଭୟ ସ୍ଥାନକୁ ବିଚାର ନେଲେ ୧୦୦ରୁ ଉର୍ଦ୍ଧ୍ୱ ବହୁତଳ ପ୍ରାସାଦର ନିର୍ମାଣ ହୁଏତ ହେଉ ନ ଥିବ ।

ଚୀନରେ ୧୬୦ ମିଲିୟନରୁ ଉର୍ଦ୍ଧ୍ୱ ମୋବାଇଲ ଫୋନ ବ୍ୟବହାର ହୋଇଥାଏ, ପରନ୍ତୁ ଭାରତରେ ମାତ୍ର ସ୍ୱଳ୍ପାତିସ୍ୱଳ୍ପ ୬ ମିଲିୟନ । ଏକବିଂଶ ଶତାବ୍ଦୀର ମଧ୍ୟଭାଗ ସୁଦ୍ଧା ବିଶ୍ୱର ଅଦ୍ୱିତୀୟ ଅର୍ଥନୈତିକ ମହାଶକ୍ତି ଭାବେ ଉଦ୍‌ଭାସିତ ହେବାର ଯୋଗ୍ୟତା ଚୀନ ପାଖରେ ଅଛି କି ନାହିଁ - ଏ ନେଇ ଯଦ୍ୟପି ବହୁ ପ୍ରଶ୍ନ ଉତ୍‌ଥାପନ କରାଯାଇପାରେ, ହେଲେ ପ୍ରଗତିର ରାଜରାସ୍ତାରେ ଚୀନ ଯେ ଆଗକୁ ଆଗକୁ ବୀର ଦର୍ପରେ ମାଡ଼ି ନ ଚାଲୁଛି; ଏ କଥା କହିବାକୁ କାହା ଜିଭରେ ହାଡ଼ ନାହିଁ । ମାର୍ଚ୍ଚ ଓ ଏପ୍ରିଲ ମାସରେ ଇଣ୍ଟରନ୍ୟାସନାଲ୍ ମିଡ଼ିଆ ଚୀନର ଅସାଧାରଣ ପ୍ରଗତିକୁ ନେଇ ନାନାଦି ପବ୍ଲିକେଶନ ଓ ଚ୍ୟାନେଲ୍ ମାଧ୍ୟମରେ ପରି ପ୍ରଚାର କରିଥିଲା ଏବଂ ସେଥିରେ କାହିଁକି ଚୀନ କିଛିଟା ହେରାଫେରି ନ କରି ଗତବର୍ଷ ୭ ପ୍ରତିଶତ ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ହାସଲ କରି ପାରି ନ ଥା'ନ୍ତା, ସେ ସବୁ କାହାଣୀର ମଧ୍ୟ ଅବତାରଣା କରିଥିଲା । ଏକ ନିର୍ଦ୍ଧାରିତ ହାରରେ ଅଭିବୃଦ୍ଧି ହାସଲ କରିବା କୌଣସି ରାଷ୍ଟ୍ରପାଇଁ ଗୁରୁତ୍ୱପୂର୍ଣ୍ଣ ହେଉ କି ନ ହେଉ ଚୀନ ପାଇଁ ତାହା ଆଜି ଅତ୍ୟନ୍ତ ମୂଲ୍ୟବାନ ହୋଇ ପଡ଼ିଛି । ଗଲଅପ୍ ପ୍ରତିଷ୍ଠାନ ବେଜିଂ ଅପରେସନ୍‌ର ଜେନେରାଲ୍ ମ୍ୟାନେଜର ମାଇକେଲ ଗୁଓ କୁହନ୍ତି ଯେ ବଜାର ଭିତ୍ତିକ ସଂସ୍କାର ପ୍ରକ୍ରିୟାର ଲାଭକୁ ଗ୍ରାମୀଣ ଅଞ୍ଚଳରେ ପହଞ୍ଚେଇବାକୁ ହେଲେ ଆମକୁ ଅତି କମ୍‌ରେ ୭ ପ୍ରତିଶତ ଅଭିବୃଦ୍ଧି ହାର ହାସଲ କରିବାକୁ ପଡ଼ିବ । ପରନ୍ତୁ ଆମେ ଯଦି ୯ ପ୍ରତିଶତ ବା ତଦୂର୍ଦ୍ଧ୍ୱ ହାର ହାସଲ କରୁ, ତେବେ ତାହା ମୁଦ୍ରାସ୍ଫୀତିକୁ ଆମନ୍ତ୍ରଣ କରି ଆଣିବ ।

ଚୀନୀୟ ନେତୃତ୍ୱ ବ୍ୟାଙ୍କିଙ୍ଗ ବ୍ୟବସ୍ଥାରେ ଥିବା 'ନନ୍ ପରଫର୍ମିଂ ଲାୟାବିଲିଟି' ମୁଦ୍ଧା ପ୍ରତି ଧ୍ୟାନ ଦେବା ଉଚିତ, ଯାହାକି ଏବେ ୩.୬ ରୁ ୪.୨ ଟ୍ରିଲିୟନ ୟୁଆନ ବା ୪୩୪ ରୁ ୫୦୭ ବିଲିୟନ ଡଲାର ବା ୨୧,୨୫,୦୦୩ରୁ ୨୪,୭୯,୧୭୦କୋଟି ଟଙ୍କାରେ ପହଞ୍ଚିଲାଣି ଏବଂ ଦେଶ ରୋଗିଣା ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକୁ ମଧ୍ୟ ପୁନର୍ବିନ୍ୟାସ କରିବା ଏକାନ୍ତ ବାଞ୍ଛନୀୟ । ବ୍ୟାଙ୍କିଙ୍ଗ ବ୍ୟବସ୍ଥାରେ ଥିବା 'ନନ-ପରଫର୍ମିଂ ଲାୟାବିଲିଟି' ଗୁଡ଼ିକୁ ଟେକ୍-ଓଭର ବା ଅଧିଗ୍ରହଣ କରିନେବା ପାଇଁ ଚୀନ ସରକାର ଚାରୋଟି 'ଆସେଟ ମ୍ୟାନେଜମେଣ୍ଟ କମ୍ପାନୀ' ସୃଷ୍ଟି କରିବା ପାଇଁ ଯେଉଁ ନିର୍ଣ୍ଣୟ ନେଇଥିଲେ ସେ ପରିପ୍ରେକ୍ଷୀରେ ଭାରତୀୟ ଷ୍ଟେଟ ବ୍ୟାଙ୍କର ସାଙ୍ଘାଇ କାର୍ଯ୍ୟାଳୟର ମୁଖ୍ୟ ପ୍ରତିନିଧି ରାକେଶ ଶର୍ମା କୁହନ୍ତି ଯେ ଆସେଟ ମ୍ୟାନେଜମେଣ୍ଟ କମ୍ପାନୀ ଆପ୍ରୋଚ୍ ସୁଫଳ ପ୍ରଦାନ କରି ପାରିଲା ନାହିଁ । କାହିଁକି ଏହା ଫଳପ୍ରଦ ହୋଇ ପାରିଲା ନାହିଁ, ତା'ର କାରଣ ଖୋଜି ପାଇବା ଏତେ କଷ୍ଟକର ବ୍ୟପାର ନୁହେଁ । କଥାଟି ହେଲା ନନ୍-ପରଫର୍ମିଂ ଲାୟାବିଲିଟିର ଗୁଣବତ୍ତା ଏପରି ଥିଲା ଯେ ଡିସକାଉଣ୍ଟ ବା କିଛି ପ୍ରତିଶତ ଛାଡ଼ ସତ୍ତ୍ୱେ ମଧ୍ୟ ବହୁ କମ୍ ସଂସ୍ଥା ସେ ସବୁର ଟେକ୍-ଓଭର କରିନେବା ପାଇଁ ଆଗ୍ରହ ପ୍ରକାଶ କଲେ ।

ଅସଫଳ ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକର ସଂଖ୍ୟା ଚୀନର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି) ର ୪୦ ରୁ ୭୦ ପ୍ରତିଶତର ଭାଗିଦାରି ଅଟନ୍ତି । ଚୀନରେ ଥିବା ଆମେରିକାନ ଚାମ୍ବର ଅଫ କମର୍ସ କୁହେ ଯେ ଯଦି ଏହି ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକ ସହ କରାଯାଇଥିବା ଜଏଣ୍ଟ ଭେଁନଚର୍ ଏବଂ ଟାଉନସିପ ଦ୍ୱାରା ପ୍ରୋତ୍ସାହନପ୍ରାପ୍ତ ଭେନଚରଗୁଡ଼ିକୁ ଏଥିରେ ଅନ୍ତର୍ଭୁକ୍ତ କରା ନ ଯାଏ, ତେବେ ଏହା ୪୦ ପ୍ରତିଶତରୁ କମ୍ ହେବ । ଚୀନ ଦେଶର ସରକାରଙ୍କୁ ମଧ୍ୟ ଏହା ନିଶ୍ଚିତ ରୂପେ ଦେଖିବାକୁ ପଡ଼ିବ ଯେ ଧନୀ ଓ ଦରିଦ୍ର ଲୋକଙ୍କ ମଧ୍ୟରେ ବଢ଼ି ଉଠୁଥିବା ତାରତମ୍ୟ ସାମାଜିକ ଅଶାନ୍ତି ସୃଷ୍ଟି କରିବାରେ ଯେପରି ସହାୟକ ନ ହୁଏ । ପୁନଶ୍ଚ ଚୀନର ବିତ୍ତୀୟ ନିଅଣ୍ଟ ମଧ୍ୟ ଚିନ୍ତାର କାରଣ ହୋଇଛି, ଯାହାକି ଏ ବର୍ଷ ୩୦୯.୮ ବିଲିୟନ ୟୁଆନ ବା ୩୭.୪୩ ବିଲିୟନ ଡଲାର ବା ୧,୮୨,୮୬୮ କୋଟି ଟଙ୍କା ହେବ ବୋଲି ଅଟକଳ କରଯାଇଛି । ଭାରତର ନିଜର ସମସ୍ୟା ଏ ତୁଳନାରେ କିଛି ନୁହେଁ କହିଲେ ଚଳେ ।

## ଭିତ୍ତିଭୂମିର ଅସାଧାରଣ ସଂପ୍ରସାରଣ :

ବେଜିଂ ଓ ସାଂଘାଇର କୋଣ ଅନୁକୋଣରେ ନିର୍ମାଣ ଯୁଗର ମହାପର୍ବ ତା'ର ଅଭୂତପୂର୍ବ ରୂପ ବିନ୍ୟାସ ଦିନ ପରେ ଦିନ ପରିସ୍ଫୁଟିତ କରି ଚାଲିଛି । ଯେଉଁଠିକି ଆଖି ଯିବ ସେଠି ଖାଲି ଅତ୍ୟୁଚ୍ଚ ଅଟ୍ଟାଳିକାମାନଙ୍କର ନବଜନ୍ମ ଉତ୍ସବ ପାଳନ ହେଉଥିବା ଆପଣଙ୍କର ଦୃଷ୍ଟିଗୋଚର ହେବ । ଏପରିକି ଡାଟଙ୍ଗ ମଧ୍ୟ ବେଜିଂ ଓ ସାଂଘାଇ ପରି ଏକ ମେଟ୍ରୋପଲିଟାନ ସହର ଭାବେ ବିଶ୍ୱ ବୁକୁରେ ମୁଣ୍ଡଟେକି ଠିଆ ହେବା ପାଇଁ ପଣ ନେଇ ସାରିଛି । ରାସ୍ତାଘାଟ ଗୁଡ଼ିକ ଏକଦମ ନୂଆକରି ତିଆରି ହୋଇଛି । ପୁରୁଣା ଅଟ୍ଟାଳିକାଗୁଡ଼ିକୁ ରୁଟିନ ବନ୍ଧା କାର୍ଯ୍ୟକ୍ରମାନୁଯାୟୀ ଭାଙ୍ଗି ଧୂଳିସାତ୍ କରି ଦିଆଯାଉଛି ଏବଂ ସେ ସ୍ଥାନରେ ମନୋରମ ସୁଶୋଭିତ ଗଗନଭେଦୀ 'ଗ୍ଲାସ୍ ପ୍ୟାଲେସ୍' ଗୁଡ଼ିକ ମୁଣ୍ଡ ଟେକି ଠିଆହୋଇ ଚାଲିଛନ୍ତି । ଦିନକୁ ଦିନ ନୂଆ ନୂଆ କୋଠାଘର ଗଢ଼ିବାର ପ୍ରବଳ ଉତ୍କଣ୍ଠା ଓ ବାସନା ଚୀନୀୟ ନାଗରିକମାନଙ୍କ ନାଡ଼ିର ଗତିରୁ ଆପେ ଆପେ ବାରି ହୋଇଯାଏ ।

ବେଜିଂରେ ଅବସ୍ଥିତ ଏକ ପରାମର୍ଶ ପ୍ରଦାନକାରି ସଂସ୍ଥା ନାଗା ଗ୍ରୁପର ମୁଖ୍ୟ କାର୍ଯ୍ୟନିର୍ବାହୀ ଲରେନ୍ସ ବ୍ରାହାମ କୁହନ୍ତି ଯେ ଭିତ୍ତିଭୂମି ହେଲା ପ୍ରଗତିର ପ୍ରାଥମିକ ଅସ୍ତ୍ର ଯାହାର ପରିପ୍ରୟୋଗ କରାଯାଇ କମ୍ପାନୀମାନଙ୍କୁ ଚୀନରେ ସେମାନଙ୍କର ପୁଞ୍ଜି ବିନିଯୋଗ କରିବା ପାଇଁ ଆକର୍ଷିତ କରାଯାଇ ପାରିବ । ଚୀନର ବୈଦେଶିକ ବାଣିଜ୍ୟ ଓ ଅର୍ଥନୈତିକ ସହଯୋଗ ମନ୍ତ୍ରଣାଳୟ (ମୋଫଟେକ୍)ର ବୈଦେଶିକ ବ୍ୟାପାର ବିଭାଗର ମହାନିର୍ଦ୍ଦେଶକ ୱାଙ୍ଗ ବିଙ୍ଗଜିନ୍ କୁହନ୍ତି ଯେ ଚୀନର ସରକାର ଏହି କମ୍ପାନୀମାନଙ୍କୁ ଉପଯୁକ୍ତ ପ୍ଲାଟଫର୍ମ ପ୍ରଦାନ କରି ଚୀନରେ ସେମାନଙ୍କର ବ୍ୟବସାୟ ସାମ୍ରାଜ୍ୟର ସ୍ଥାପନାକୁ ଯଥାର୍ଥ ପ୍ରୋତ୍ସାହନ ଦେବା ଉଚିତ ।

ଉପଯୁକ୍ତ ମୌଳିକ ଭିତ୍ତିଭୂମିର ଆବଶ୍ୟକତା ସହ ବୈଦେଶିକ ପୁଞ୍ଜି ବିନିଯୋଗର ଯେ ଏକ ନିବିଡ଼ି ସମ୍ପର୍କ ରହିଛି, ଏହି ସତ୍ୟକୁ କଦାପି ଅସ୍ୱୀକାର କରାଯାଇ ପାରିବ ନାହିଁ । ୧୯୯୫ ମସିହାରୁ ଚୀନ ୩୦୦ ବିଲିୟନ ଡଲାରର ଯେଉଁ ପୁଞ୍ଜି ବ୍ୟବହାର କରି ଆସିଛି; ତହିଁରୁ ୭୦ ପ୍ରତିଶତରୁ ଅଧିକ ପୁଞ୍ଜି କେବଳ ହଂକଂ, କୋରିଆ, ଜାପାନ, ତାଇୱାନ ଏବଂ ଗତକାଲିର ଦକ୍ଷିଣ-ପୂର୍ବ ଏସିଆର ମହାପରାକ୍ରମଶାଳୀ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରଗୁଡ଼ିକରୁ ଉପଲବ୍ଧ ହୋଇଛି । ସାଂଘାଇସ୍ଥିତ ଜେ.ୱାଲ୍‌ଟର ଥମସନ୍ କମ୍ପାନୀର ହିସାବପତ୍ରର ଅଧିକାରୀ ରତନ

ମାଲି କୁହନ୍ତି ଯେ - ଏହି ରପ୍ତାନି ଧର୍ମୀ ବଳିଷ୍ଠ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ରମାନେ କୌଣସି ରାସ୍ତା ନ ପାଇ ସେମାନଙ୍କର ଉତ୍ପାଦନକ୍ଷମ ୟୁନିଟ୍‌ଗୁଡ଼ିକୁ ଚୀନରେ ପୁନଃ ସ୍ଥାନିତ କରୁଛନ୍ତି ।

କେବଳ ଉତ୍କୃଷ୍ଟତମ ଭିତ୍ତିଭୂମି ଯେ ଚୀନରେ ସିଧାସଳଖ ବିଦେଶୀ ପୁଞ୍ଜି ନିବେଶକୁ ଆକର୍ଷିତ କରୁଛି ତା' ନୁହେଁ, ବରଂ ଶସ୍ତା ଶ୍ରମର ଉପଲବ୍ଧ ଏହାର ମୁଖ୍ୟ କାରଣ । ଗତ ଦଶକରେ ଚୀନ ସରକାରଙ୍କ ଦ୍ୱାରା ନିଆଯାଇଥିବା ବହୁବିଧ କାର୍ଯ୍ୟକ୍ରମ ଏକ ବିଶାଳ ଶ୍ରମ ବିପଣୀ ସୃଷ୍ଟି କଲା, ଯଦ୍ୱାରା ବଳକା କୃଷି ଶ୍ରମିକମାନେ ସହରମାନଙ୍କୁ ନିଜ ନିଜର ପେଡ଼ି ପୁଟୁଳା ଧରି ଆଗେଇ ଚାଲିଲେ । ଏହି ଅଞ୍ଚଳରେ ବହୁ ରପ୍ତାନି ଭିତ୍ତିକ କମ୍ପାନୀମାନଙ୍କ ପାଇଁ ଚୀନ "Destination of Choice" ଭାବେ ସାବ୍ୟସ୍ତ ହୋଇ ଯାଇଛି । ସେମାନେ ସେମାନଙ୍କର ମ୍ୟାନୁଫ୍ୟାକଚରିଂ ୟୁନିଟ୍‌ଗୁଡ଼ିକୁ ଚୀନର ଉପକୂଳ ଅଞ୍ଚଳକୁ ସ୍ଥାନାନ୍ତରିତ କଲେ, ଯେଉଁଠାରେ କି ଆନୁଷଙ୍ଗିକ ଭିତ୍ତିଭୂମି ସେମାନଙ୍କ ନିଜ ଦେଶ ତୁଳନାରେ ଯଥେଷ୍ଟ ଭଲ ଏବଂ ଉତ୍ପାଦନକ୍ଷମ, ଶସ୍ତା ତଥା ବହୁଳ ଭାବେ ଉପଲବ୍ଧ ହେଉଥିବା ଶ୍ରମ ଶକ୍ତି ହାତ ପାହାନ୍ତାରେ ମିଳିଯାଇଥାଏ ।

ସାଂଘାଇସ୍ଥିତ ଇମ୍ପେରିଆଲ କେମିକାଲ ଇଣ୍ଡଷ୍ଟ୍ରିର ସ୍ୱିରେ ପେଣ୍ଟ୍‌ସ କାରଖାନାର ପରିଚାଳନା ନିର୍ଦ୍ଦେଶକ ମୁରଲୀ ଶିବରମଣ କୁହନ୍ତି ଯେ ରେଡ଼ ଚାଇନାରେ କୌଣସି ୟୁନିଅନ ବାଜି ନାହିଁ ବା ନ ଥିଲା କିମ୍ବା Antiquated Labour Law ମଧ୍ୟ ନାହିଁ । ମୋର ଲୋକମାନେ ସମସ୍ତେ ଠିକା ଭାବେ କାମ କରିଥାନ୍ତି । ସେଇଥି ପାଇଁ ମୁଁ ଯେତେବେଳେ ଚାହିଁବି ସେତେବେଳେ ସେମାନଙ୍କୁ ଠିକାରେ ଆଣି ପାରିବି ଓ ଠିକ୍ ଭାବେ କାମ ନ କଲେ ତାଙ୍କ ଉପରେ ମଧ୍ୟ ମୁଁ ବିଗିଡ଼ି ପାରିବି ।

ଚୀନରେ ଉତ୍ପାଦିତ ସାମଗ୍ରୀଗୁଡ଼ିକ ମୂଲ୍ୟଭିତ୍ତିକ ପ୍ରତିଯୋଗିତାରେ ସବୁବେଳେ ଦୁଇ ପାହୁଣ୍ଡ ଆଗରେ ଥାଆନ୍ତି । ତା'ର ମୁଖ୍ୟ କାରଣ ହେଲା ଉତ୍ତମ ଭିତ୍ତିଭୂମି ଓ ଶସ୍ତା ଶ୍ରମର ଯୁଗ୍ମ ଉପଲବ୍ଧତା । ଜଣେ କର୍ମଚାରୀକୁ ଯଦି ତା'ର ମଜୁରି ବାବଦରେ ଏକ ୟୁଆନ ପ୍ରଦାନ କରାଯାଏ, ତେବେ ସେହି କର୍ମଚାରୀଟିର ସାମାଜିକ ସୁରକ୍ଷା ପାଇଁ ତା'ର ନିଯୁକ୍ତି ଦାତା ସରକାରଙ୍କୁ ୦.୫୩ ୟୁଆନ ପ୍ରଦାନ କରିଥାଏ; ଯାହାକି କର୍ମଚାରୀଙ୍କର ଅବସର ଗ୍ରହଣ ପରେ ତାଙ୍କର ପେନ୍‌ସନ୍, ହାଉସିଂ ଓ

ଚିକିତ୍ସା ଖର୍ଚ୍ଚ ପାଇଁ ବ୍ୟୟ ହୋଇଥାଏ । ହାଇଦରାବାଦସ୍ଥିତ ଅରବିନ୍ଦ ଫାର୍ମାର ୧୦୦ ପ୍ରତିଶତ ଅନୁବନ୍ଧିତ କମ୍ପାନୀ ଡାଟଙ୍ଗର ଅରବିନ୍ଦ ବାୟୋ ଫାର୍ମା ଲିମିଟେଡ଼ର ଡେପୁଟୀ ଜେନେରାଲ ମ୍ୟାନେଜର ଶ୍ରୀ ଜି. ମହେଶ୍ୱର ରାଓ କୁହନ୍ତି ଯେ ମୋଟ ଉପରେ ଚୀନରେ ଜଣେ କର୍ମଚାରୀ ପାଉଥିବା ଦରମା ଭାରତରେ ପାଉଥିବା ଦରମାର ୭୦ ପ୍ରତିଶତ ଅଟେ ।

## ପ୍ରଚଣ୍ଡ ପ୍ରଗତିଧର୍ମୀ ଅନ୍ତର୍ଦ୍ଦେଶୀୟ ବଜାର :

ସବୁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଚୀନରେ ଉପଲବ୍ଧ ହେଉଥିବା ଉତ୍ତମ ଭିତ୍ତିଭୂମି ଅବା ଶସ୍ତାରେ ବ୍ୟବସାୟ କରିବା ପାଇଁ ଏଠାରେ ମିଳୁଥିବା ସୁବିଧା ସୁଯୋଗ ଦ୍ୱାରା ଆକୃଷ୍ଟ ହୋଇ ଚୀନକୁ ଆସୁ ନାହାନ୍ତି । ବେଜିଂରେ ଅବସ୍ଥାପିତ ଆମେରିକାର ଚାମ୍ବର ଅଫ କମର୍ସର କାର୍ଯ୍ୟନିର୍ବାହୀ ଅଧିକାରୀ ମାଇକେଲ ଫର୍ଷ୍ଟ କୁହନ୍ତି ଯେ ଏଠାରେ ମିଳୁଥିବା ଭିତ୍ତିଭୂମିର ଗୁଣାତ୍ମକ ମାନକୁ ମୁଁ ହଂକଂ, କାନାଡ଼ା ଓ ମେକ୍ସିକୋରେ ମିଳୁଥିବା ଭିତ୍ତିଭୂମିର ଗୁଣାତ୍ମକ ମାନ ସହ ତୁଳନା କରିବି ନାହିଁ । ଖାଲି ମୁଁ ଏତିକି କହିବି ଯେ ଚୀନରେ ଭିତ୍ତିଭୂମିର ଗୁଣାତ୍ମକ ମାନରେ ତୁଳନାତ୍ମକ ଭାବେ ଅଭିବୃଦ୍ଧି ଘଟିଛି । ଚୀନରେ ବ୍ୟବସାୟ କରିବା ଅତ୍ୟନ୍ତ ଶସ୍ତା - ଏହି ପ୍ରସଙ୍ଗଟି ଉପରେ ମାଇକେଲ ଫର୍ଷ୍ଟ କୁହନ୍ତି ଯେ ପଶ୍ଚିମ ୟୁରୋପ କିମ୍ବା ଆମେରିକା ଅପେକ୍ଷା ଚୀନରେ ହୁଏତ ଏହା ଶସ୍ତା ହୋଇପାରେ । ପରନ୍ତୁ ଥାଇଲ୍ୟାଣ୍ଡ କିମ୍ବା ଇଣ୍ଡୋନେସିଆ ପରି ଏମିତି ବହୁ ରାଷ୍ଟ୍ର ଅଛନ୍ତି, ଯେଉଁଠାରେ କି ବ୍ୟବସାୟ କରିବା ମଧ୍ୟ ଶସ୍ତା ।

ଏହି ବହୁରାଷ୍ଟ୍ରୀୟ କମ୍ପାନୀମାନେ ଯଦି ଆଜି ଚୀନରେ ସେମାନଙ୍କର ବ୍ୟବସାୟିକ ତମ୍ବୁ ପୋତି ସାରିଲେଣି ତା'ର ମାନେ ହେଲା ଯେ ଚୀନ ସତରେ ଏକ ବିରାଟ ବଜାର, ଯାହାକୁ ଆମେ ଉପେକ୍ଷା କରି ପାରିବା ନାହିଁ । ଚୀନରେ ଏବେ ବର୍ଷକୁ ଉତ୍ପାଦିତ ହେଉଥିବା ୯ ଲକ୍ଷ ମୋଟର ଗାଡ଼ି ଏକ ବଡ଼ ସଂଖ୍ୟା ନୁହେଁ, ପରନ୍ତୁ ୨୦୨୫ ମସିହା ସୁଦ୍ଧା ଏହା ବର୍ଷକୁ ୧୬ ମିଲିୟନ କାର୍ ନିର୍ମାଣ କରିବ ବୋଲି ଆଶା କରାଯାଉଛି । ୩୮ ମିଲିୟନ ସହରୀ ପରିବାର ଗୋଟିଏ କାର୍ ଖରିଦ କରିବା ପାଇଁ ଏକ ଲକ୍ଷ ୟୁଆନ (୫.୯ ଲକ୍ଷ ଟଙ୍କା) ବ୍ୟୟ କରିବାକୁ ପ୍ରସ୍ତୁତ ଅଛନ୍ତି । ଦୈନିକ ଖବର କାଗଜ ପଢୁଥିବା ଯେ କୌଣସି ବ୍ୟକ୍ତି ନିଶ୍ଚିତ

ରୂପେ ଜାଣେ ଯେ ପୃଥିବୀର ସର୍ବବୃହତ୍ ମୋବାଇଲ ଫୋନ ବଜାର ଚୀନରେ ହିଁ ଅଛି ଏବଂ ଏଥିପାଇଁ ଚୀନ ଅତ୍ୟନ୍ତ ଗର୍ବିତ । ଏହି ବିଶାଳ ବଜାର ଚୀନର ଭବିଷ୍ୟତ ସମ୍ଭାବନାକୁ ସୁଯୋଗରେ ରୂପାନ୍ତରିତ କରିବ ।

ସାଂଘାଇସ୍ଥିତ ନ୍ୟାସ୍‌ନାଲ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇନଫରମେସନ ଟେକ୍ନୋଲୋଜିର ଜେନେରାଲ ମ୍ୟାନେଜର ଶ୍ରୀ ପ୍ରକାଶ ମେନନ କୁହନ୍ତି ଯେ ଚୀନୀୟମାନେ ସର୍ବୋତ୍ତମ ଗୁଣବତ୍ତା ସାଙ୍ଗକୁ ସଂଖ୍ୟାଧିକ ବସ୍ତୁର ପ୍ରସ୍ତୁତି ଓ ତା'ର ବ୍ୟାବସାୟିକ କଳାକୁ ଠିକ୍‌ଭାବେ ଚିହ୍ନିଛନ୍ତି । ଶ୍ରୀ ମେନନ୍ ଯୁକ୍ତି ବାଢ଼ି କୁହନ୍ତି ଯେ - ଭିତ୍ତିଭୂମି ଓ ଶ୍ରମର ଗୁଣବତ୍ତା ଓ ମୂଲ୍ୟ ବ୍ୟତିରେକ ଅନ୍ତର୍ଦ୍ଦେଶୀୟ ବଜାରର ରୂପରେଖ ଚୀନୀୟମାନଙ୍କୁ ସେମାନଙ୍କର ଉତ୍ପାଦନ ଖର୍ଚ୍ଚ ହ୍ରାସ କରାଇବାରେ ଯଥେଷ୍ଟ ସହାୟକ ହୋଇଥାଏ ଏବଂ ଏଇଥିପାଇଁ ସେମାନେ ବିଶ୍ୱ ପ୍ରତିଯୋଗିତାରେ ବାଜି ମାରି ନେଇଥାଆନ୍ତି ।

୨୦୦୧ ମସିହା ସୁଦ୍ଧା ଚୀନରେ ବିକ୍ରିକରାଯାଇଥିବା ପ୍ରଡ଼କ୍ଟ ଓ ସେବା କ୍ଷେତ୍ରଗୁଡ଼ିକର ୮୩ ପ୍ରତିଶତ ଓଭର-ସପ୍ଲାଇ ଥିଲା । ଶ୍ରୀ ଗୁଓ କୁହନ୍ତି ଯେ ଆମେ ଏବେ ପରିବର୍ତ୍ତନ ପ୍ରକ୍ରିୟାର ଘୋଡ଼ା ପିଠିରେ ସବାର ହୋଇ ପ୍ରଗତିର ମଝି ରାସ୍ତାରେ ପହଞ୍ଚି ଯାଇଛୁ । ଆମେ ଏକ ନିଅଁଣ୍ଟିଆ ଅର୍ଥନୀତିରୁ ଏକ ବଳକା ଅର୍ଥନୀତି, କମ୍ପାନୀମାନଙ୍କ ମଧ୍ୟରେ ଡିଫ୍ଲେସନ୍‌ରୁ ପ୍ରାଇସ୍ ୱାର୍ ଏବଂ ସ୍ଥାୟୀ ଚାକିରିରୁ ଛଟେଇ ଭଳି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଛି । ଟେଲିଭିଜନ ଚ୍ୟାନେଲ ବାବଦରେ ଖର୍ଚ୍ଚ ଚୀନରେ ଅତ୍ୟନ୍ତ ଅଧିକ ଏବଂ ଏବେ ଏକାଧିକ ଚ୍ୟାନେଲ ପରିଚାଳକମାନେ ଆସୁଥିବାରୁ ଖର୍ଚ୍ଚରେ ହ୍ରାସ ପରିଲକ୍ଷିତ ହୋଇଛି । ନୂତନ ମୂଲ୍ୟବାନ ପ୍ରଡ଼କ୍ଟ ଗୁଡ଼ିକର ଚାହିଦା ଚୀନର ଚାରୋଟି ବଡ଼ ବଡ଼ ସହର ମାନଙ୍କରେ ବସବାସ କରୁଥିବା ପ୍ରମୁଖ ୨୦ ପ୍ରତିଶତ ନାଗରିକମାନଙ୍କ ପାଖରେ ଯଥାକ୍ରମେ ଫଟୋଗ୍ରାଫି କ୍ୟାମେରା ପାଇଁ (୯୧ ପ୍ରତିଶତ), ରେଫ୍ରିଜରେଟର ପାଇଁ (୯୭ ପ୍ରତିଶତ) ଏବଂ ରଙ୍ଗୀନ ଟେଲିଭିଜନ ପାଇଁ (୧୦୦ ପ୍ରତିଶତ) ପଡୁଛି ।

ଚୀନରେ ଧନୀ ଓ ଦରିଦ୍ରମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଦିନକୁ ଦିନ ବଢ଼ି ବଢ଼ି ଚାଲିଛି । ସରକାରଙ୍କ ଦ୍ୱାରା ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକୁ ପୁନର୍ବିନ୍ୟାସ କରାଯାଉଥିବାରୁ କର୍ମଚାରୀମାନଙ୍କର ଦରମାରେ ହ୍ରାସ ପରିଲକ୍ଷିତ ହେଉଛି । ସାଂଘାଇର ଇସ୍ପାତ୍ କର୍ମଚାରୀମାନେ ମାସକୁ ପାଉଥିବା ଦରମା ୨୦୦୦ ୟୁଆନ

(୧୧,୮୦୫ ଟଙ୍କା)ରୁ ହ୍ରାସ ଘଟି ୮୦୦ ୟୁଆନ (୪୭୨୨ ଟଙ୍କା)ରେ ପହଞ୍ଚିବା ଫଳରେ ସେମାନେ ଚାକିରି ଛାଡ଼ି ଏବେ ସବୁ ଟ୍ୟାକ୍ସି ଡ୍ରାଇଭର ହୋଇଯାଇଛନ୍ତି ।

## ଅଙ୍କରାଶିର ମନଗଢ଼ା ଅଭିବୃଦ୍ଧି ଗଣିତ :

ଯଦି ଗତବର୍ଷର ଅଭିବୃଦ୍ଧି ଗଣିତ ଚୀନକୁ ବିଶ୍ୱର ଦ୍ୱିତୀୟ ଅର୍ଥନୈତିକ ମହାଶକ୍ତି ଭାବେ ପ୍ରତିଭାତ କରାଇ ପାରିଲା, ତେବେ ଏ ବର୍ଷ ଗୋରଡ଼ନ ଚ୍ୟାଙ୍ଗଙ୍କର ଜନପ୍ରିୟ ପୁସ୍ତକ "Coming Collapse of China" ପରି ପରିସ୍ଥିତି ଓଲଟ ପାଇଟ ହୋଇ ଯିବାର ଯଥେଷ୍ଟ ସମ୍ଭାବନା ପରିଲକ୍ଷିତ ହୁଏ । ପ୍ରେସ୍‌ରେ ଆସୁଥିବା ବିଭିନ୍ନ ସମ୍ବାଦକୁ ଭିତ୍ତିକରି ଜଣେ କହିପାରିବ ଯେ ଚୀନକୁ ନେଇ ଯେତେ ଯାହା ଅର୍ଥନୈତିକ ସମ୍ବାଦ ପରିବେଷଣ ହେଉଛି, ତାହା ସତ୍ୟର ପାଖାପାଖି ପହଞ୍ଚି ପାରୁନାହିଁ । ଚୀନର ଅର୍ଥନୈତିକ ପରିସଂଖ୍ୟାନ ସଠିକ୍ ଭିତ୍ତିଭୂମି ଉପରେ ଦଣ୍ଡାୟମାନ ନୁହେଁ । ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକର କର୍ମଚାରୀମାନେ ଛଟେଇ ହେବା ଫଳରେ ସେମାନେ ଧର୍ମଘଟର ବାଟକୁ ଆପଣେଇ ନେଉଛନ୍ତି । ବେଜିଂକୁ ୨୦୦୮ ମସିହାର ଅଲମ୍ପିକ୍ ଖେଳ ପାଇଁ ପ୍ରସ୍ତୁତ କରି ରଖିବା ପାଇଁ ଆଗାମୀ ୬ ବର୍ଷ ମଧ୍ୟରେ ଭିତ୍ତିଭୂମି ବାବଦରେ ପ୍ରାୟ ୪୦ ବିଲିୟନ ଡଲାର ମୁଦ୍ରା ବା ୧,୯୫, ୪୧୯ କୋଟି ଟଙ୍କା ଖର୍ଚ୍ଚ ହେବ । ଫଳସ୍ୱରୂପ ଚୀନର ଆର୍ଥିକ ନିଅଣ୍ଟିଆ ପରିମାଣରେ ବୃଦ୍ଧି ଘଟିବ ।

କେତେକ ଚୀନୀୟ ଅଧିବାସୀ ବିଶ୍ୱାସ କରନ୍ତି ଯେ ଏହି ସମାଲୋଚନା ଆମେରିକା ପ୍ରସୂତ । ସେମାନେ ଭାବୁଛନ୍ତି ଯେ ଆମେରିକା ଚୀନର ଗୋଛି କାଟିବା ପାଇଁ ଏପରି ଷଡ଼ଯନ୍ତ୍ର କରୁଛି, ଯେପରି ଷଡ଼ଯନ୍ତ୍ର ୮୦ ଦଶକରେ ଜାପାନ ବିରୁଦ୍ଧରେ ହୋଇଥିଲା । ସାଂଘାଇର ବିଦେଶ ଅର୍ଥନୀତି ସମ୍ପର୍କ ଏବଂ ବାଣିଜ୍ୟିକ କମିଶନ୍‌ର ଲିୟୁ ଛିନ୍ ପିଙ୍ଗ୍ ଚୀନର ମୋଟ ରାଷ୍ଟ୍ରୀୟ ଉତ୍ପାଦନ ୭.୮ ପ୍ରତିଶତରୁ ତଳକୁ ଖସୁ - ଏହା ଗ୍ରହଣ କରିବାକୁ ସମ୍ପୂର୍ଣ୍ଣ ରୂପେ କୁଣ୍ଠାବୋଧ କରିଥାନ୍ତି, ଯାହାକି ପିପୁଲ୍ସ କଂଗ୍ରେସରେ ସ୍ପଷ୍ଟ ଭାବେ ନିର୍ଘୋଷିତ ହୋଇଥିଲା ଏବଂ ଏହି ସତ୍ୟ ମଧ୍ୟ ପରମ ସତ୍ୟ ଯେ ଚୀନ ତା'ର ଆଭ୍ୟନ୍ତରୀଣ ଅର୍ଥନୀତିକୁ ଠିକ୍‌ଭାବେ କରାୟତ୍ତ କରି ପାରିଛି ।

ଚୀନରେ କାର୍ଯ୍ୟନିର୍ବାହ କରୁଥିବା ବହୁ ବିଦେଶୀ କମ୍ପାନୀ ଏହି ଧାରଣା ପୋଷଣ କରିଥାନ୍ତି ଯେ ଚୀନର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ ୭.୮ ପ୍ରତିଶତ

ବା ତା'ର ଉପରସ୍ତରକୁ ନ ପହଞ୍ଚିଥିଲେ ମଧ୍ୟ ଏହା ନିଶ୍ଚିତ ରୂପେ ୫ ପ୍ରତିଶତର ଉପର ସ୍ତରରେ ପହଞ୍ଚି ପାରିଛି, ଏହା ଏକ ନିର୍ବିବାଦୀୟ ସତ୍ୟ କଥା ଏବଂ କୌଣସି ଏକ ଅର୍ଥନୀତିରେ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ ଏକ ଟ୍ରିଲିୟନ ଡଲାରରୁ ଊର୍ଦ୍ଧ୍ୱ ହେବା ସେହି ଅର୍ଥନୀତି ପାଇଁ ଏକ ନିରର୍ଥକ ଅଭିବୃଦ୍ଧିର ହାର-ଏହା ଭାବିବା ସମ୍ପୂର୍ଣ୍ଣ ରୂପେ ଏକ ମୂର୍ଖାମୀ ଏବଂ ପାଗଳାମିର ପରିଚାୟକ ହେବ । ଆମେରିକାର ଚାମ୍ବର ଅଫ କମର୍ସର ମିଷ୍ଟର ଫର୍ଷ୍ଟ ମହୋଦୟ କୁହନ୍ତି ଯେ - ମୁଁ କେବେ ଭାବୁନି ଯେ ଚୀନର ଭାଗ୍ୟାକାଶରେ ଅମାବାସ୍ୟାର ଜହ୍ନ ରାଜୁତି କରିବ ବୋଲି ।

ଚୀନୀୟ ଅର୍ଥନୀତିର ମହାଅବତାରର ରୂପକୁ ପ୍ରକଟ କରିବାକୁ କେବଳ ମାତ୍ର ଗୋଟିଏ ଛବି ପ୍ରକୃଷ୍ଟ ରୂପେ ପ୍ରତିପାଦିତ କରିପାରିବ, ତାହା ହେଲା ସମଗ୍ର ଚୀନୀୟ ଜନସାଧାରଣଙ୍କ ସାମଗ୍ରୀକ ସଂଚୟ ପରିମାଣ; ଯାହାକି ୨୦୦୧ ମସିହାର ଶେଷ ସୁଦ୍ଧା ପ୍ରାୟ ୬୫୦୦ ଟ୍ରିଲିୟନ ୟୁଆନ ଥିଲା । ଏହି ସଂଖ୍ୟାକୁ ଡଲାର ଓ ଟଙ୍କାରେ ପରିପ୍ରକାଶ କଲେ ତାହା ୭୮୫.୩୪ ଟ୍ରିଲିୟନ ଡଲାର ବା ୩୮, ୩୬, ୮୧,୧୦୦ କୋଟି ଟଙ୍କା ହେବ । ଏହି ଅର୍ଥରାଶିର କିଛି ଅଂଶ ସରକାରୀ ବଣ୍ଡକୁ ଯାଇଥାଏ, ଯାହାକି ଭିତ୍ତିଭୂମି ପ୍ରକଳ୍ପମାନଙ୍କ ରୂପାୟନରେ ବିନିଯୋଗ କରାଯାଇଥାଏ ।

ଚୀନର ବିତ୍ତୀୟ ନିଅଣ୍ଟ ପରିମାଣ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି)ର ୩ ପ୍ରତିଶତ ହୋଇଥିଲେ ମଧ୍ୟ ଭାରତ ପରିପ୍ରେକ୍ଷୀରେ ଏହା ୫.୩ ପ୍ରତିଶତ ହୋଇଥିବାରୁ ଏ ନେଇ କିଛି ବ୍ୟସ୍ତ ହେବାର କାରଣ ନାହିଁ । ପରନ୍ତୁ ଚୀନର ନାନାବିଧ ସମସ୍ୟା ମଧ୍ୟରେ ଏହି ସମସ୍ୟା ଯେପରି କିଛି ଗୁରୁତର ସମସ୍ୟା ହୋଇ ଦଣ୍ଡାୟମାନ ହୋଇନାହିଁ, ବରଂ ଧନୀ ଓ ଗରିବ ଶ୍ରେଣୀ ମଧ୍ୟରେ କ୍ରମବର୍ଦ୍ଧମାନ ପ୍ରଭେଦକୁ କିପରି ସଙ୍କୁଚିତ କରାଯାଇ ପାରିବ ତାହା ଏକ ମୁଖ୍ୟ ସମସ୍ୟା ହୋଇ ଠିଆ ହୋଇଛି । ଟିକସ ପଲିସି ମାଧ୍ୟମରେ ଏହି ସମସ୍ୟାକୁ ଆକ୍ରମଣ କରାଯାଇପାରେ । ଚୀନର ଶାସନାଧକ୍ଷ ଝୁ ରୋଙ୍ଗଜୀ ନିକଟ ଅତୀତରେ ସମ୍ପାଦିତ ହୋଇଥିବା ପିପୁଲ୍ସ କଂଗ୍ରେସରେ କହିଛନ୍ତି ଯେ ଏହି ସମସ୍ୟାର ସମାଧାନ ପାଇଁ ଆମକୁ ଆଉକିଛି ସମୟ ଲାଗିବ ।

ଏକାଧିକ ଯୁକ୍ତି ପ୍ରତିଛବି ମିଳିମିଶି ସାବ୍ୟସ୍ତ କରୁଛି ଯେ ଏକବିଂଶ ଶତାବ୍ଦୀ ଚୀନର ଶତାବ୍ଦୀ ହେବ । ପ୍ରଥମଟି ହେଲା - କୌଣସି ଏକ ଯୁକ୍ତି ଚିନ୍ତାଧାରାକୁ

ଦୃଢ଼ଭାବେ ଜାବୁଡ଼ି ଧରି ତାକୁ ପ୍ରାଣପଣେ ଲାଗିପଡ଼ି କାର୍ଯ୍ୟରେ ରୂପାୟନ କରିବା ପାଇଁ ଚୀନୀୟମାନଙ୍କ ପାଖରେ ଥିବା ଅସମ୍ଭବ ଦକ୍ଷତା । ତା'ପରେ ହେଲା - ଚୀନର ରାଜନୈତିକ ଓ ଶାସନ ବ୍ୟବସ୍ଥା । ଏହା ଅଟୋକ୍ରାଟିକ ହେଲେ ମଧ୍ୟ ଚୀନ ଦୁଇଟି ସମାନ୍ତରାଳ ଶାସନ ଶୈଳୀର ପ୍ରଚଳନ କରି ତା'ର କାର୍ଯ୍ୟ ନିର୍ବାହ ପ୍ରଣାଳୀକୁ ସୂଚାରୁ ରୂପେ ପରିଚାଳିତ କରି ପାରୁଛି । ତନ୍ମଧ୍ୟରୁ ପ୍ରଥମଟି ହେଲା ପ୍ରଶାସନିକ ସ୍ତର ଯାହାକି ଡେପୁଟି ମେୟରଠୁଁ ଆରମ୍ଭ କରି ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସଂପ୍ରସାରିତ ହୋଇଛି, ଯେଉଁମାନେ କି ଶାସନ କଳର ବ୍ୟବସାୟକୁ ନିୟନ୍ତ୍ରିତ କରିଥାଆନ୍ତି । ଏହି ସ୍ତରରେ ଥିବା ଅଧିକାଂଶ ଲୋକ ଅତ୍ୟନ୍ତ ଉଚ୍ଚ ଶିକ୍ଷିତ ଓ ଅଭିଜ୍ଞତା ସମ୍ପନ୍ନ ଅଟନ୍ତି । ଦ୍ୱିତୀୟଟି ହେଲା ରାଜନୈତିକ ପାର୍ଟି ସ୍ତରର । ପ୍ରଶାସନିକ ସ୍ତର ସହ ଏହା ସମାନ୍ତରାଳ ଭାବେ କାର୍ଯ୍ୟ ନିର୍ବାହ କରି ଉପର ସ୍ତର ପର୍ଯ୍ୟନ୍ତ ସୁବ୍ୟାପ୍ତ ପରିଚାଳିତ ହୋଇଥାଏ ଏବଂ ପାର୍ଟିର ଯୋଗ୍ୟ ଓ ଅସାଧାରଣ କର୍ମୀମାନଙ୍କୁ ମଧ୍ୟ ପୁରସ୍କୃତ କରାଯାଇଥାଏ । ଚୀନରେ ଭ୍ରଷ୍ଟାଚାର ଯଦିଓ ତା'ର ଚେର ପୋତିଛି ଏବଂ ସେଠାରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ମୁଦ୍ଦା ଭାବେ ପରିଗଣିତ ହୋଇଥାଏ, ପରନ୍ତୁ ଜଣେ ବ୍ୟକ୍ତି ଅଭିବୃଦ୍ଧିର ସିଡ଼ି ଫଳକକୁ ଗୋଟିକ ପରେ ଗୋଟିଏ ଅତିକ୍ରମ କରି ଉପର ସୋପାନରେ ପହଞ୍ଚିବାକୁ ହେଲେ ତାକୁ ତା'ର କାର୍ଯ୍ୟ ପ୍ରଣାଳୀ ହିଁ କେବଳ ଏହି ସମ୍ମାନର ଅଧିକାରୀ କରାଇ ପାରିବ । ଉଦାହରଣ ସ୍ୱରୂପ ଜଣେ ମେୟର ତା'ର ବୁଦ୍ଧି ବିଦ୍ୟା ପ୍ରୟୋଗ କରି ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜି ନିବେଶକୁ କେତେଦୂର ଆକୃଷ୍ଟ କରିପାରୁଛି ଓ ତଦନୁଯାୟୀ ତା'ର ଅଞ୍ଚଳକୁ କେତେଦୂର ସମୃଦ୍ଧିର ପଥରେ ଆଗେଇ ନେଇ ଯାଇ ପାରୁଛି, ତାକୁ ନେଇ ତା'ର ଯୋଗ୍ୟତା ଓ କର୍ମଦକ୍ଷତାର ମୂଲ୍ୟାୟନ ହେବ । ଶେଷରେ, ଚୀନୀୟମାନେ ସବୁକିଛିକୁ ବିଭାଗୀକରଣ କରିବାର ଦୁର୍ଲଭ କଳାଟିକୁ ଭଲ ଭାବରେ ଶିଖି ନେଇଛନ୍ତି । ଚୀନର ଅର୍ଥନୀତି ସମ୍ମୁଖୀନ ହେଉଥିବା ସମସ୍ତ ମୁଦ୍ଦାଗୁଡ଼ିକୁ ଏକାବେଳକେ ଆକ୍ରମଣ ନ କରି ଚୀନୀୟ ନେତୃବୃନ୍ଦ ତନ୍ମଧ୍ୟରୁ କେତେକକୁ ଯଥା ଏନ.ପି.ଏଲ ଭଳି ମୁଦ୍ଦାକୁ ଆଗାମୀ ପିଢ଼ୀର ନେତାମାନଙ୍କ ପାଇଁ ନିର୍ଦ୍ଧାରିତ କରିଦେଇଛନ୍ତି ।

ଏ ସମସ୍ତ ସ୍ତର ବିନ୍ୟାସ ଓ ସମାନ୍ତରାଳ କାର୍ଯ୍ୟକ୍ରମ ସର୍ବଶେଷରେ ଅଭିବୃଦ୍ଧିର କିପରି ରୂପ ପ୍ରକଟ କରୁଛି ତାହା ଯୁକ୍ତିତର୍କର ବିଷୟବସ୍ତୁ ଅଟେ ।

ପରନ୍ତୁ ଯେତେଯାହା ହେଇଯାଉନା କାହିଁକି ଚୀନୀୟମାନେ ନିଶ୍ଚିତ ରୂପେ ସେମାନଙ୍କ ଅର୍ଥନୀତିର ଗୌରବୋଜ୍ଜ୍ୱଳ ନଭଶ୍ଚୁମ୍ବୀ ପତାକାକୁ ୨୦୦୮ ମସିହା ପର୍ଯ୍ୟନ୍ତ ସୁଦୀର୍ଘ ନୀଳ ଆକାଶର ଅସୁମାରୀ ବିସ୍ତୀର୍ଣ୍ଣ ବକ୍ଷରେ ଉଡ୍ଡୀୟମାନ କରିବେ ହିଁ କରିବେ । ଏହା ତ୍ରିବାର ସତ୍ୟ । ସେମାନେ ସେମାନଙ୍କର ୨୦୦୮ ମସିହାର ଅଲମ୍ପିକ ପାର୍ଟିକୁ ଭଣ୍ଡୁର କରିବାକୁ କାହାକୁ ହେଲେ କସ୍ମିନ୍ କାଳେ କୌଣସି ପ୍ରଶୟ ଦେବେ ନାହିଁ । ଯଦି ଚୀନୀୟମାନେ ୨୦୦୮ ମସିହାର ଅଲମ୍ପିକ କ୍ରୀଡ଼ା ପରେ ମଧ୍ୟ ସେମାନଙ୍କର ଅର୍ଥନୈତିକ ଗାରୀମାର ଦୀପାବଳୀକୁ ଜଳେଇ ରଖି ପାରନ୍ତି, ତେବେ ଚୀନ ଏକବିଂଶ ଶତାବ୍ଦୀର ମଧ୍ୟ ଭାଗ ସୁଦ୍ଧା ପୃଥିବୀର ସର୍ବବୃହତ ଅର୍ଥନୀତିର ପରମ ମର୍ଯ୍ୟାଦା ପାଇବାକୁ ସମ୍ପୂର୍ଣ୍ଣ ହକଦାର ହେବ । ଏକରିକି କେତେକ ଅର୍ଥନୈତିକ ବିଶ୍ଳେଷଣକାରୀମାନେ ମତ ଦିଅନ୍ତି ଯେ ଏହି ପରମ ସୌଭାଗ୍ୟ ଲାଭ କରିବାକୁ ଚୀନକୁ ହୁଏତ ଏକବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ନ ପଡ଼ିପାରେ ଏବଂ ତା' ପୂର୍ବରୁ ଏହି ଜୟମାଲ୍ୟ ଚୀନ ବେକରେ ଝୁଲିବାର ଯଥେଷ୍ଟ ସମ୍ଭାବନା ରହିଛି । ଯଦି ଏହା ସମ୍ଭବ ନ ହୁଏ, ତେବେ ଚୀନୀୟ ଅର୍ଥନୀତି ପୁଣି ୧୯୮୦ ମସିହା ସ୍ତରକୁ ଫେରିଯିବ ଏବଂ ଅର୍ଥନୈତିକ ଧ୍ୱଂସ ଲୀଳାର ତାଣ୍ଡବନୃତ୍ୟକୁ ଅବଲୋକନ କରି ଆମ୍ଭ ସନ୍ତୋଷ ଲାଭ କରିବ । ବରଂ ଚୀନର ଅବସ୍ଥା ୧୯୮୦ ମସିହା ଠାରୁ ଆହୁରି ସାଙ୍ଘାତିକ ହୋଇଯିବ । ଆମେ ଶେଷରେ ଚୀନର ପ୍ରଧାନମନ୍ତ୍ରୀ ଝୁ ରୋଙ୍ଗଜୀ ନିକଟ ଅତୀତରେ ପିପୁଲ୍ସ କଂଗ୍ରେସରେ ଦେଇଥିବା ଅଭିଭାଷଣକୁ ଉଦ୍ଧୃତ କରି ଏତିକି କହିପାରିବା ଯେ - 'ଚୀନର କୁଙ୍ଗ-ଫୁ ଅର୍ଥନୀତି ଏବେ ଖୁବ୍ ଭଲ ଖେଳ ଦେଖେଇ ଚାଲିଛି' ।

**ସମୟ**

**ତା- ୯.୮.୨୦୦୨**



# ଚୀନ ଓ ଭାରତର ମଧୁମୟ ସମ୍ପର୍କ ବିଭେଦତାର ବିଶାଳ ପ୍ରାଚୀରକୁ ଭାଙ୍ଗି ଚୁର୍‌ମାର୍ କରିଦେବ

**କି**ଛି ସପ୍ତାହ ପୂର୍ବରୁ ଏହା ପ୍ରକାଶ ପାଇଥିଲା ଯେ ମ୍ୟାଲେସିଆର ପ୍ରଖ୍ୟାତ ଅଟୋମୋବାଇଲ ନିର୍ମାତା 'ପ୍ରୋଟନ' ନିକଟ ଭବିଷ୍ୟତରେ ଉତ୍ତର କୋରିଆରେ ହୁଏତ ତା'ର ଏକ ଉତ୍ପାଦନ କେନ୍ଦ୍ର ଖୋଲିପାରେ । ଆପଣମାନଙ୍କର ହୁଏତ ମନେ ଥିବ ସେତେବେଳେ ଉତ୍ତର କୋରିଆର ଅଧିବାସୀମାନେ ଦକ୍ଷିଣ ପୂର୍ବ ଏସିଆ, ୟୁରୋପ ଏବଂ ରୁଷିଆ ମାଧ୍ୟମରେ ପୁଞ୍ଜି ଲଗାଣ ଓ ଆବଶ୍ୟକୀୟ ଅନୁଦାନ, ସାହାଯ୍ୟ ଓ ସହଯୋଗର ଉପଲବ୍ଧ ପାଇଁ ଚେଷ୍ଟିତ ହେଉଥିଲେ । ଅର୍ଥନୈତିକ ସହଯୋଗ ହିଁ ଆମ ସମୟର ସଠିକ ଅଭିବ୍ୟକ୍ତି, ପରନ୍ତୁ ଭୂଗୋଳ ସୃଷ୍ଟ ରାଜନୈତିକ ବାଦାନୁବାଦ ନୁହେଁ - ଏହା ହିଁ ଆମ ଯୁଗର ପରିବାହକ ଏବଂ ସବୁକଥାର ମୋଟାମୋଟି ସାରାଂଶ ।

ଘଟଣାର ପୃଷ୍ଠଭୂମିକୁ ଟିକେ ଧୀରେ ଧୀରେ ଉନ୍ମୋଚନ କରାଯାଉ । ୨୦୦୨ ମସିହା ମାର୍ଚ୍ଚ ୨୮ ତାରିଖ ଦିନ ଚୀନର ଶାସନାଧ୍ୟକ୍ଷ ଝୁ ରୋଙ୍ଗଜି ତାଙ୍କର ଭାରତ ପରିଦର୍ଶନ ସମୟରେ ଘୋଷଣା କଲେ ଯେ ଚୀନର ପୂର୍ବାଞ୍ଚଳ ଏୟାର ଲାଇନ୍ସ କର୍ପୋରେସନ ଯାହାକି ଚୀନର ତୃତୀୟ ବୃହତ୍ତମ ପରିବହନ ସଂସ୍ଥା, ତାହା ବେଜିଂ ଓ ନୂଆଦିଲ୍ଲୀ ମଧ୍ୟରେ ଖୁବ୍ ଶୀଘ୍ର ଏକ ବିମାନ ସେବା ପ୍ରଚଳନ କରିବ । ମୁମ୍ବାଇରେ ଶିଳ୍ପପତିମାନଙ୍କର ଏକ ଅଧିବେଶନରେ ଝୁ ରୋଙ୍ଗଜି ଭାରତର ବିଦେଶ ବ୍ୟାପାର ମନ୍ତ୍ରୀ ଯଶୋବନ୍ତ ସିଂହଙ୍କୁ ଉଦ୍‌ଘାଟନୀ ବିମାନ ଯାତ୍ରାରେ ତାଙ୍କ ସହ ସହଯାତ୍ରୀ ହେବା ପାଇଁ ଅନୁରୋଧ କରିଥିଲେ ।

ଝୁ ରୋଙ୍ଗଜୀଙ୍କ ଘୋଷଣାନାମାର ଠିକ୍ ପରଦିନ ଯଶୋବନ୍ତ ସିଂହ ମହୋଦୟଙ୍କ ବେଜିଂକୁ ରାଷ୍ଟ୍ରୀୟ ପରିଭ୍ରମଣ ଅବସରରେ ମତ ପ୍ରକାଶ କଲେ ଯେ ତାଙ୍କର ବେଜିଂ ଯାତ୍ରା ଓ ଗୋଲ ଟେବୁଲ ବୈଠକ ଅତ୍ୟନ୍ତ ଫଳପ୍ରଦ ଓ ଶୁଭକାମୀ

ହୋଇପାରିଛି । ଏହା ବର୍ତ୍ତମାନ ସମ୍ପୂର୍ଣ୍ଣ ସ୍ପଷ୍ଟ ହୋଇଯାଇଛି ଯେ ଉଭୟ ଚୀନ ଓ ଭାରତ ଗତକାଲିର ଶତ୍ରୁତାକୁ ଭୁଲିଯାଇ ମିତ୍ରତାର ନିଗୂଢ଼ ବାହୁ ବନ୍ଧନରେ ଆବଦ୍ଧ ହୋଇ କୋଳାକୋଳି ହେବା ପାଇଁ ଉତ୍‌କଣ୍ଠାର ସହ ଚାହିଁ ବସିଛନ୍ତି । ଉଭୟ ବାଣିଜ୍ୟ ବ୍ୟବସାୟ ଓ କୂଟନୀତି କ୍ଷେତ୍ରରେ ଏହି ନବୀନ ସମ୍ପର୍କର ସେତୁବନ୍ଧ ପ୍ରତିଷ୍ଠା ପାଇଁ ସେମାନେ ବଦ୍ଧ ପରିକର ଓ ଦୃଢ଼ ପ୍ରତିଜ୍ଞ ।

ସୀମାରେଖାକୁ ନେଇ ଉଭୟ ଦେଶମଧ୍ୟରେ ଥିବା ବାଦ ବିବାଦ ଗୁରୁତର ଅଶାନ୍ତି ସୃଷ୍ଟି କରୁଛି । ପୃଥିବୀ ଗ୍ରହର ପ୍ରାୟ ଅର୍ଦ୍ଧେକ ଜନସଂଖ୍ୟା ବସବାସ କରୁଥିବା ଦେଶ ଦ୍ୱୟ ଚୀନ ଓ ଭାରତ ମଧ୍ୟରେ ହେଉଥିବା ବ୍ୟାପାର ବାଣିଜ୍ୟ ବର୍ଷକୁ ମାତ୍ର ଅତି ନଗଣ୍ୟ ୩.୫ ବିଲିୟନ ଡଲାରର ଅଟେ ଯାହାକି ଅତ୍ୟନ୍ତ ଦୁଃଖଦ ଚିତ୍ର ପ୍ରତିପାଦିତ କରିଥାଏ । ତୁଳନା କଲେ ଆପଣ ଦେଖିବେ ଯେ ଚୀନର ଦକ୍ଷିଣ କୋରିଆ ସହ ହେଉଥିବା ବାଣିଜ୍ୟ କାରବାରର ଏହା ଏକ ଦଶମାଂଶ ଅଟେ ।

ପାଶ୍ଚାତ୍ୟ ସମ୍ବାଦ ପତ୍ର କିମ୍ବା ଆମେରିକୀୟ ପ୍ରେସ ମାନଙ୍କରେ ଏହି ଚିତ୍ରର ବିନ୍ଦୁ ବିସର୍ଗ କଦାଚିତ୍‌କାଳେ ଆପଣଙ୍କ ଦୃଷ୍ଟିଗୋଚର ହେବନାହିଁ । ତାହାର କାରଣ ହେଲା ଯେ ପାଶ୍ଚାତ୍ୟ ଜଗତ ନିଜ ଭିତରେ ନିଜକୁ ଏତେ ପରିମାଣରେ ହଜେଇ ଦେଇଛି ଯେ ଏହା ସିଧାସଳଖ କିଛି ଦେଖିପାରେ ନାହିଁ । ପୃଥିବୀର ଘଟଣା ପ୍ରବାହକୁ ମଧ୍ୟ ଠିକ୍ ଭାବେ ପରିଲକ୍ଷିତ କରିପାରେ ନାହିଁ କାରଣ ପରିବର୍ତ୍ତନଶୀଳ ସମୟର ରଥଚକ୍ର ଦିନ ପରେ ଦିନ ପରିସ୍ଥିତି ଓ ପରିବେଶର ନୂତନ ମେରୁ ସୃଷ୍ଟି କରି ଚାଲିଛି ।

ଚୀନରେ ଆକାଶପଥରେ ଗମନାଗମନ ନୂତନ ଦିଗନ୍ତ ସୃଷ୍ଟିକରି ଚାଲିଛି । 'ଚାଇନା ଇଷ୍ଟର୍ଣ୍ଣ' ବାୟୁ ସେବା କମ୍ପାନୀ ନିଜ ଅଧିକାରରେ ନିଜେ ହିଁ ଏକ ଗଳ୍ପ କହିଲେ ଅତ୍ୟୁକ୍ତ ହେବନାହିଁ । ସାଂଘାଇସ୍ଥିତ ଏହି ବାୟୁ ସେବା ପ୍ରତିଷ୍ଠାନ ଏପ୍ରିଲ ୯ ତାରିଖରେ ଘୋଷଣା କଲେ ଯେ ୨୦୦୧ ମସିହାରେ ତା'ର ମୋଟ ଆୟ ୫୪୧.୭ ମିଲିୟନ ୟୁଆନ୍ ବା ୬୫ ମିଲିୟନ ଡଲାର ହୋଇଥିଲା । ମୋଟ ବିକ୍ରୀର ଆଠ ପ୍ରତିଶତ ଲାଭକୁ ବିଚାରକୁ ନେଲେ ତାହା ୧୨.୨ ବିଲିୟନ ୟୁଆନ୍ ହେବ । ଏହା ଏପରି ଏକ କମ୍ପାନୀ ଯାହାକି ସର୍ବଦା ଏକ ଗତିଶୀଳ ସ୍ଥିତିରେ ଥାଏ; ଯାହାକି ଟଙ୍କାର ଅସରନ୍ତି ଶକ୍ତି ଦ୍ୱାରା ମଧ୍ୟ ପ୍ରଭାବିତ ହୁଏ ନାହିଁ । ୩୦୬ ମିଲିୟନ ୟୁଆନ ପରିମାଣର ଟିକସ ରିହାତି ଅଧିକ ମାତ୍ରାରେ ଗତବର୍ଷର ଲାଭ ପରିମାଣକୁ ହିଁ ବୁଝେଇଥାଏ । 'ବ୍ୟାଙ୍କ ଅଫ୍ ଚାଇନା' 'ଚାଇନା ଇଷ୍ଟର୍ଣ୍ଣ'କୁ ୨୦୦ ମିଲିୟନ ଡଲାରର ଋଣ ପ୍ରଦାନ କରି ଏହି କମ୍ପାନୀର ବାୟୁ

ସେବାର ସଂପ୍ରସାରଣ ପାଇଁ ପଥ ଉନ୍ମୋଚନ କରିଦେଇଥିଲା । ଅଧିକନ୍ତୁ ଆଉ ଏକ ବ୍ୟାଙ୍କରୁ ମଧ୍ୟ ୧୮ ବିଲିୟନ ୟୁଆନ୍‌ର ଋଣ ଏହି କମ୍ପାନୀ ଲାଭ କରିଥିଲା ।

ଏହି କମ୍ପାନୀର ସଂପ୍ରତି ୭୨ଟି ଉଡ଼ାଜାହାଜ ଆକାଶପଥରେ ଚଳପ୍ରଚଳ କରୁଥିବା ସତ୍ତ୍ୱେ ଏହା ୨୦୦୫ ମସିହା ସୁଦ୍ଧା ଆଉ ୨୬ଟି ଏୟାର ବସ ଓ ବୋଇଙ୍ଗ କିଣିବା ପାଇଁ ଆଶା ବାନ୍ଧି ରଖିଛି । ଏ ମଧ୍ୟରେ ଏୟାର ବସ୍ ଇଣ୍ଡଷ୍ଟ୍ରି ସହ ଏକ ଦ୍ୱିପାକ୍ଷିକ ରାଜିନାମା ମଧ୍ୟ ସ୍ୱାକ୍ଷରିତ ହୋଇଯାଇଛି । ଛୋଟ ଛୋଟ ଅନ୍ତର୍ଦ୍ଦେଶୀୟ ଉଡ଼ାଜାହାଜ କମ୍ପାନୀ ସହ ଚାଇନା ଇଷ୍ଟର୍ଣ୍ଣ କମ୍ପାନୀ ଜଏଣ୍ଟ ଭେନଚ଼ର କମ୍ପାନୀ, ଅଧିଗ୍ରହଣ ବା କିଣାବିକାର ରାଜିନାମା କରିବା ପାଇଁ ଏବେ ମନ ଦେଇଛି । ଚୀନର ଏୟାର ଇଣ୍ଡଷ୍ଟ୍ରିଗୁଡ଼ିକୁ ପର୍ଯ୍ୟାୟାନୁକ୍ରମିକ କାର୍ଯ୍ୟକ୍ରମ ଭିତ୍ତିରେ ଏକତ୍ରୀକରଣ କରିବା ସଙ୍ଗେ ସଙ୍ଗେ ଆନ୍ତର୍ଜାତିକ ସ୍ତରରେ ତିନୋଟି ବିଶାଳ ପ୍ରତିଯୋଗିତାମୂଳକ ଗ୍ରୁପ ସୃଷ୍ଟି କରି ବେଜିଂର ପରିଯୋଜନା ଅନୁଯାୟୀ ଅବଶେଷରେ 'ଚାଇନା ଇଷ୍ଟର୍ଣ୍ଣ' ଆଉ ଦୁଇଟି ଏୟାର ଲାଇନ୍ସ ସହ ସମ୍ମିଶ୍ରିତ ହୋଇଯିବ ।

ସୀମାରେଖା ବିବାଦ ଓ ତା'ର ସମାଧାନକୁ ବିଚାରକୁ ନେଲେ ଆପଣ ଦେଖିବେ ଯେ ନୂଆଦିଲ୍ଲୀ ଓ ବେଜିଂ ମଧ୍ୟରେ ନିକଟ ଅତୀତର ହୋଇଥିବା ଉଦ୍‌ଘାଟନୀ ଉଡ଼ାଜାହାଜ ଚଳାଚଳ ଉତ୍ସବ ଏ ଦିଗରେ ଏକ ଉଲ୍ଲେଖନୀୟ ଅଗ୍ରଗତି, ଯାହାକୁ କି ଆମେ ଦୁଇଟି ବିପଦଶଙ୍କୁଳ ପାହାଡ଼ ମଧ୍ୟରେ ପୋଲଟିଏ ବାନ୍ଧିବା ସହ ତୁଳନା କରି ପାରିବା । ଭାରତ ଓ ଚୀନ ମଧ୍ୟରେ ସମ୍ପର୍କ ସେହି ଦିନରୁ ଆମ୍ବିଲା ଧରିଲା, ଯେବେଠୁଁ ଚୀନ ୧୯୫୪ ମସିହାରେ ତିବ୍ବତ ଉପରେ ତା'ର ଅଧିକାର ଜାହିର କରିବା ଆରମ୍ଭ କଲା । ସେହିବର୍ଷ ଯଦିଓ ଏକ ଦ୍ୱିପାକ୍ଷିକ ସନନ୍ଦ ଓ ବ୍ୟାପାର ବାଣିଜ୍ୟ ଏବଂ ସାଂସ୍କୃତିକ ସମନ୍ୱୟତାର ଅଭିବୃଦ୍ଧି ପାଇଁ ଏକ ସ୍ୱତନ୍ତ୍ର ରାଜିନାମା ଉଭୟ ଦେଶ ମଧ୍ୟରେ ସ୍ୱାକ୍ଷରିତ ହୋଇଥିଲା, ପରନ୍ତୁ ଏ ସବୁ ବ୍ୟବସ୍ଥା ଏହାର ୫ବର୍ଷ ପରେ ଘଟିଥିବା ପ୍ରଥମ ମିଲିଟାରୀ ଆକ୍ରମଣକୁ ପ୍ରତିହତ କରିପାରି ନ ଥିଲା । ଏ ସମସ୍ତ ଘଟଣା ପ୍ରବାହର ଫଳ ମିଠା ବଦଳରେ ଖଟା ହେଲା, ଯାହାକି ୧୯୬୨ ମସିହାରେ ଚୀନ ଓ ଭାରତ ମଧ୍ୟରେ ଯୁଦ୍ଧକୁ ପାଛୋଟି ଆଣିଲା । ଏହି ଯୁଦ୍ଧ ପଣ୍ଡିତ ନେହେରୁଙ୍କ ନିରପେକ୍ଷବାଦ ଛାତିଟାକୁ ଭାଙ୍ଗି ଚୁର୍‌ମାର୍ କରିଦେଲା ।

ଏହା ମଧ୍ୟରେ ଦୀର୍ଘ ଦିନ ଧରି ବିବାଦାପନ୍ନ ଅବସ୍ଥାରେ ରହିଆସିଥିବା 'ଲାଇନ ଅଫ୍ ଆକଚୁଆଲ କଣ୍ଟ୍ରୋଲ' ବା ପ୍ରକୃତ ନିୟନ୍ତ୍ରଣ ରେଖାକୁ ନେଇ ଚୀନ ଓ ଭାରତ ମଧ୍ୟରେ କଥାବାର୍ତ୍ତା ଆରମ୍ଭ ହୋଇଛି ଏବଂ ଏକ କାର୍ଯ୍ୟପ୍ରଣାଳୀର ପ୍ରଣୟନ ଦିଗରେ

ଯୁକ୍ତ ଭାବାପନ୍ନ ହୋଇ ଦୁଇ ଦେଶ ଦୁଇ ପାହୁଣ୍ଡ ଆଗେଇ ଆସିଛନ୍ତି । ପ୍ରାକ୍‌ଟିକା ଦୃଷ୍ଟିକୋଣରୁ ଏବଂ ଦୁଇ ଦେଶର ସେନା ବାହିନୀର ଅଣସୌଜନ୍ୟ ମୂଳକ ମିଳନସ୍ଥଳ ଭାବେ ଏହି ରେଖା ପରିଗଣିତ ହେବ । ଏହା ପରେ ଦୁଇ ଦେଶର ଫର୍ମାଲ ବିଭାଜନ ରେଖା ସ୍ଥିର କରାଯିବ । ଏ ବର୍ଷର ଶେଷ ସୁଦ୍ଧା ଦୁଇ ଦେଶର ମାନଚିତ୍ର ମଧ୍ୟ ବିନିମୟ ହେବ । ସେତେବେଳକୁ ପ୍ରଧାନମନ୍ତ୍ରୀ ବାଜପେୟୀ ଏକ ରାଷ୍ଟ୍ରସ୍ତରୀୟ ପ୍ରତିନିଧି ମଣ୍ଡଳ ସହ ବେଜିଂ ଗସ୍ତରେ ଯିବେ ଏବଂ ଆଶା କରାଯାଉଛି ଯେ ଚୀନ ଓ ଭାରତ ମଧ୍ୟରେ ବାଣିଜ୍ୟିକ କାରବାର ସେତେବେଳକୁ ପୁରାଦମ୍‌ରେ ଆରମ୍ଭ ହୋଇଯିବ ।

ଆଜିଠୁଁ ୪୮ ବର୍ଷତଳେ ଚୀନ ଓ ଭାରତ ମଧ୍ୟରେ ଗଢ଼ି ଉଠିଥିବା ସହୃଦୟତାର ସମ୍ପର୍କ ଆଜି ଏକ ସମ୍ପର୍କ ବିହୀନ ସମ୍ପର୍କର ବୁନିୟାଦ ଉପରେ ଦଣ୍ଡାୟମାନ ହୋଇଛି । ସମ୍ପର୍କର ସେତୁବନ୍ଧକୁ ପୁଣି ଉଜ୍ଜିବୀତ କରିବାକୁ ହେଲେ ଗତିଶୀଳତାର ଇଞ୍ଜେକ୍‌ସନ ଉଭୟ ଦେଶର ଶିରା ପ୍ରଶିରାରେ ଭରି ଦେବାକୁ ପଡ଼ିବ । ଉଭୟ ଦେଶ ଶୀତଳ ଯୁଦ୍ଧର ପ୍ରଚ୍ଛାୟାର କବଳରୁ ଗୁରୁଣ୍ଡି ଗୁରୁଣ୍ଡି ମୁକୁଳିବାକୁ ବ୍ୟଗ୍ର ହୋଇ ପଡ଼ିଛନ୍ତି, ଏହା ନିଶ୍ଚୟ ଏକ ଶୁଭ ସଙ୍କେତ । ପ୍ରଧାନମନ୍ତ୍ରୀ ବାଜପେୟୀଙ୍କ ଭାଷାରେ, 'ଉଭୟ ଦେଶ ଆଗାମୀକାଲିର ସୂର୍ଯ୍ୟୋଦୟ ଆଡ଼କୁ ଅଗ୍ରସର ହେଉଛନ୍ତି' । ଏପ୍ରିଲ ମାସ ଦ୍ୱିତୀୟ ସପ୍ତାହରେ ବାଜପେୟୀ ସିଙ୍ଗାପୁରକୁ ତାଙ୍କର ରାଷ୍ଟ୍ରୀୟ ଗସ୍ତକାଳରେ ଏହି ମୂଲ୍ୟବାନ ମନ୍ତବ୍ୟ ପ୍ରଦାନ କରିଥିଲେ । ତାଙ୍କ ବକ୍ତବ୍ୟର ସାରମର୍ମ ଥିଲା ବାଣିଜ୍ୟ, ମୁକ୍ତ ବାଣିଜ୍ୟ ଓ ଉଭୟ ରାଷ୍ଟ୍ର ମଧ୍ୟରେ ମାନବ ସମ୍ବଳର ସହଜସାଧ୍ୟ ଚଳପ୍ରଚଳକୁ ଉପଯୁକ୍ତ ପ୍ରୋତ୍ସାହନ ଦେଇ ଦେଶରକ୍ଷାର ପୁରୁଣା ସୁରକ୍ଷା କବଚକୁ ଦେହରୁ ଉତାରି ଦେବା ଉଚିତ ଏବଂ ଏହା ହିଁ ଆଗାମୀକାଲିର ସୂର୍ଯ୍ୟୋଦୟକୁ ହାତ ବଢ଼େଇ ଛୁଇଁବାର ଏକମାତ୍ର ଅମୋଘ ଅସ୍ତ୍ର ।

ଦୁଃଖ ଓ ବିଶାଦର କଳା ବାଦଲ ଉଭୟ ଦେଶର ସମ୍ପର୍କର ନୀଳ ଆକାଶକୁ ଢାଙ୍କି ରଖିଥିଲେ ମଧ୍ୟ ଏକ ନୂତନ ଯୁଗ ଯେ କଡ଼ ଲେଉଟେଇବାକୁ ଆଗଭର ହେଲାଣି, ତାହା ଆମେ କେବେ ବି ଅସ୍ୱୀକାର କରି ପାରିବା ନାହିଁ । ତେଣୁ ଏହି ନୂତନ ସମ୍ପର୍କ ଓ ନୂତନ ଆହ୍ୱାନକୁ ଉଭୟ ଚୀନ ଓ ଭାରତ ଆଦର ସହ ପାଛୋଟି ନେଇ ପ୍ରଗତିର ଲମ୍ବା ସଡ଼କରେ ଲମ୍ଫ ଡିଆଁ ମାରି ଚାଲିବା ଉଚିତ ।

ଯୋଜନା - ଓଡ଼ିଆ
ଜୁଲାଇ, ୨୦୦୨



# ଅର୍ଥନୈତିକ ମହାବିପ୍ଳବର ରଣାଙ୍ଗନରେ ଚୀନର ଅବିରାମ ଜୟଯାତ୍ରା

ଭାରତରେ ଅବସ୍ଥାପିତ ଆମେରିକାର ପୂର୍ବତନ ରାଷ୍ଟ୍ରଦୂତ ଫ୍ରାଙ୍କ ଉଇଜନରଙ୍କୁ ଥରେ ଜଣେ ସାମ୍ବାଦିକ ବନ୍ଧୁ ଚୀନ ଓ ଭାରତର ସମ୍ପର୍କ ଉପରେ ପ୍ରଶ୍ନ ପଚାରିବାରୁ ତା'ର ଉତ୍ତରରେ ଉଇଜନର ତାଙ୍କୁ କହିଥିଲେ ଯେ ଭାରତୀୟ ସାମ୍ବାଦିକମାନେ ସଦାସର୍ବଦା ଏହି ଦୁଇଦେଶ ମଧ୍ୟରେ ମୂର୍ଖୋଚିତ ତୁଳନା କରିଥାନ୍ତି । ସେ ସ୍ପଷ୍ଟ କଣ୍ଠରେ କହିଥିଲେ ଯେ -'ଭାରତ ଓ ଚୀନ ମଧ୍ୟରେ କୌଣସି ତୁଳନା କରାଯାଇ ପାରେନା' । ଯେତେବେଳେ କୌଣସି ବ୍ୟକ୍ତି କଳା କୌଶଳ ବିମଣ୍ଡିତ ବେଜିଂର ଷ୍ଟେଟ-ଅଫ୍-ଦି-ଆର୍ଟ ନୂଆ ବିମାନ ବନ୍ଦରରେ ପାଦ ଥାପିବ, ଏହି ମତାମତର ସତ୍ୟାସତ୍ୟତା ଠିକ୍ ସେତିକି ବେଳେ ହିଁ ପ୍ରମାଣିତ ହୋଇଯିବ ଓ ନିଜ ଗାଲରେ ନିଜେ ଗୋଟାଏ ଶକ୍ତ ବ୍ରହ୍ମ ଚାପୁଡ଼ା ଖାଇଲା ଭଳି ତାଙ୍କୁ ନିଶ୍ଚୟ ଲାଗିବ । ଚୀନର ଆନ୍ତର୍ଜାତିକ ବ୍ୟାପାର କାଉନସିଲର ଉପାଧ୍ୟକ୍ଷ ଲିଉ ଓ୍ୱେଞ୍ଜି ଅତ୍ୟନ୍ତ ଗର୍ବର ସହ କୁହନ୍ତି ଯେ ଚୀନର ପ୍ରଗତିକୁ ଆପଣ ନିଜ ଆଖିରେ ନିଜେ ଆସି ଦେଖନ୍ତୁ ଏବଂ ହୃଦୟଙ୍ଗମ କରନ୍ତୁ ଯେ ଆମେ ପ୍ରଗତିର ରାଜରାସ୍ତାରେ କେତେଦୂର ଆଗେଇ ଯାଇ ପାରିଛୁ । ଚୀନ ନବେ ଦଶକର ଅର୍ଥନୈତିକ ବିସ୍ମୟ ଭାବେ ବିଶ୍ୱ ପୃଷ୍ଠଭୂମିରେ ପ୍ରତିଭାତ ହୋଇ ପାରିଛି ଏବଂ ଏହାର ନିଛକ ଛବି ପ୍ରଗତିର ଛତ୍ରେ ଛତ୍ରେ ଅନୁଭବ କରାଯାଇ ପାରିବ । ଏହାର ସହରଗୁଡ଼ିକ ଗତ ଦଶକରେ ଅବିଶ୍ୱାସଯୋଗ୍ୟ ହେଲେ ମଧ୍ୟ ଆଶାତୀତ ଭାବେ ଅଭିବୃଦ୍ଧି ହାସଲ କରି ପାରିଛି । ଅଭିବୃଦ୍ଧିର ଗତି ଯେ ଅତ୍ୟନ୍ତ ଦ୍ରୁତ ଓ ପ୍ରଖର, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ୧୦ ବର୍ଷ ପୂର୍ବେ ବିଶ୍ୱ ପ୍ରସିଦ୍ଧ ସାଂଘାଇ ନଦୀବନ୍ଧର ଆରପଟରେ ଥିବା ପ୍ୟୁଡ଼ଙ୍ଗ ଅଞ୍ଚଳରେ ମାତ୍ର କେତୋଟି ବିକ୍ଷିପ୍ତ ତଥା କ୍ଷୁଦ୍ର ଆବାସସ୍ଥଳୀ ଓ ଚାଷ ଜମି ଥିବାବେଳେ ଆଜି ସେଠାରେ ବିଭିନ୍ନ କଳ କାରଖାନା ଓ ଆକାଶ ଛୁଆଁ ଅଟ୍ଟାଳିକା ନଭମଣ୍ଡଳର ଶୋଭା

ବର୍ଦ୍ଧନ କରୁଛି । ଗଣତି କରି ଦେଖା ଯାଇଛି ଯେ ସେଠାରେ ୪୦ ମହଲାରୁ ଊର୍ଦ୍ଧ୍ୱ ୪୧ଟି ଅତ୍ୟୁଚ୍ଚ ଅଟ୍ଟାଳିକା ଆକାଶକୁ ଭେଦକରି ସଗର୍ବେ ମୁଣ୍ଡଟେକି ଠିଆ ହୋଇଛି । ସେଠାରେ ସର୍ବୋଚ୍ଚ ଅଟ୍ଟାଳିକାଟି ହେଲା ୮୦ ମହଲା ବିଶିଷ୍ଟ 'ଗ୍ରାଣ୍ଡ ହ୍ୟାଟ', ଯାହାକି ପୁ୍ୟଡ଼ଙ୍ଗର ଗର୍ବ ଓ ଗୌରବ ଭାବେ ପରିଗଣିତ ହୋଇଥାଏ । ଏହା ଏକ ମୁଖ୍ୟ ଆକର୍ଷଣୀୟ ପର୍ଯ୍ୟଟନସ୍ଥଳ ଭାବେ ଜନ ମାନସରେ ମଧ୍ୟ ପ୍ରସିଦ୍ଧି ଲାଭ କରିଛି ।

୧୦ ବର୍ଷ ସମୟ ମଧ୍ୟରେ ଗୋଟାଏ ରାଷ୍ଟ୍ର ପ୍ରଗତିର ରାଜରାସ୍ତାରେ କେତେଦୂର ଯେ ଆଗେଇ ଯାଇପାରେ, ତାହା ଆଜି ଭାରତୀୟମାନଙ୍କ ପାଇଁ ଏକ ଦୁର୍ବାର ସଙ୍କେତ ଭାବେ ପ୍ରତିଭାତ ହୋଇଛି । ଏହି ପ୍ରଗତିର ହାର ଯେ କୌଣସି ମାନଦଣ୍ଡକୁ କାହିଁ କେତେ ପଛରେ ନିଶ୍ଚୟ ପକେଇଦେବ । ଭାରତବର୍ଷରେ 'କେଣ୍ଟୁକି ଫ୍ରାଏଡ୍ ଚିକେନ୍'ର କେତୋଟି ବିକ୍ରୟ କେନ୍ଦ୍ର ଖୋଲିବାକୁ ନେଇ ଆମ ମଧ୍ୟରେ ବହୁ ବାଦାନୁବାଦ ଓ ଯୁକ୍ତିତର୍କ ମୁଣ୍ଡଟେକି ଠିଆ ହୋଇଥିଲା ବେଳେ ଚୀନରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ବର୍ଷା ଅବିରାମ ଗତିରେ ବର୍ଷି ଚାଲିଛି ଏବଂ ଚୀନୀୟ ନାଗରିକମାନେ ଅର୍ଥର ବିନିମୟରେ ରାଷ୍ଟ୍ରର ରୂପରେଖ ପରିବର୍ତ୍ତନ କରିବା ପାଇଁ ବଦ୍ଧପରିକର ଓ ଦୃଢ଼ ପ୍ରତିଜ୍ଞ ଅଟନ୍ତି । ଗୋଟିଏ ମାତ୍ର ପରିସଂଖ୍ୟାନ କେବଳ ଏକୁଟିଆ ଭାବେ ପ୍ରମାଣ କରିଦେବ ଯେ ଚୀନ ରାଷ୍ଟ୍ରୀୟ ପ୍ରଗତିକୁ କିଭଳି ନିଜର ଅତି ଆପଣାର କରିପାରିଛି । ସେହି ପରିସଂଖ୍ୟାନଟି ହେଲା - କେବଳ ସାଂଘାଇରେ ବିଶ୍ୱର 'ଫରଚ୍ୟୁନ-୫୦୦' କମ୍ପାନୀଙ୍କ ମଧ୍ୟରୁ ୨୫୦ରୁ ଊର୍ଦ୍ଧ୍ୱ କମ୍ପାନୀ ସେମାନଙ୍କର କାର୍ଯ୍ୟାଳୟ ଖୋଲିଛନ୍ତି ।

ଦୀର୍ଘ ୪୦ ବର୍ଷ ଧରି ଭାରତ ଚୀନକୁ ନିଜର ଏକ ପରମ ଶତ୍ରୁଭାବେ ବିବେଚିତ କରି ଆସିଛି ଓ ଅବିଶ୍ୱାସର ହିମାଳୟ ପାହାଡ଼କୁ ତା' ଉପରେ ଗୋଟାପଣ ଲଦି ଦେଇଛି । ଉଭୟ ଦେଶ ପରସ୍ପରକୁ ଭରଷି ପାରୁ ନ ଥିବାରୁ ବିଶ୍ୱାସଭାଜନର କାଣିଚାଏ ଲକ୍ଷଣ କାହା ପାଖରେ ବି ଟିକେ ହେଲେ ପରିସ୍ଫୁଟିତ ହୋଇ ପାରୁନାହିଁ । ସମୟ ଦ୍ରୁତ ଗତିରେ କଡ଼ ଲେଉଟାଉଥିବାରୁ ଅବିଶ୍ୱାସର ବିଷକୁଣ୍ଡରୁ ବିଷ ଆପେ ଆପେ ହରି ହୋଇ ହୋଇଯାଉଛି । 'ଚାଇନା ଇଷ୍ଟର୍ଣ୍ଣ' ଏୟାର ଲାଇନ୍ସ ନୂଆଦିଲ୍ଲୀରୁ ବେଜିଂ ଓ ସାଂଘାଇକୁ ତା'ର ଉଡ଼ାଣ ଓ ପୁନଃ ଓଲଟ ଉଡ଼ାଣ ନିକଟ ଅତୀତରେ

ଆରମ୍ଭ କରି ଦେଲାଣି । ନୂଆଦିଲ୍ଲୀରୁ ବେଜିଂ ଯିବା ପାଇଁ ମାତ୍ର ୫ ଘଣ୍ଟା ୨୦ ମିନିଟ ଲାଗିଥାଏ । ଭାରତର ବିଦେଶମନ୍ତ୍ରୀ ଯଶୋବନ୍ତ ସିଂହଙ୍କ ଉଦ୍‌ଘାଟନୀ ଉଡ଼ାଣରେ ଯାତ୍ରୀ ହୋଇ ନୂଆଦିଲ୍ଲୀରୁ ବେଜିଂ ଯାତ୍ରା କୂଟନୈତିକ କଳାର ଯୁକ୍ତ ପ୍ରତିଛବିକୁ ସ୍ପଷ୍ଟ ରୂପେ ଜାହିର କରିଥାଏ, ଯାହାକି ଆଗାମୀ ଦିନର ଚୀନ-ଭାରତ ମୈତ୍ରୀ ସମ୍ପର୍କକୁ ନିଶ୍ଚୟ ଦୃଢ଼ୀଭୂତ କରିବ । ଆଗାମୀ କେଇମାସ ମଧ୍ୟରେ ଚୀନ ଓ ଭାରତ ମଧ୍ୟରେ ହେଉଥିବା ଉଚ୍ଚସ୍ତରୀୟ ବୈଠକ ସୀମାରେଖା ସଂକ୍ରାନ୍ତୀୟ ସମସ୍ୟା ଓ ବହୁ ଅନ୍ୟାନ୍ୟ ଆନୁସଙ୍ଗିକ ମୁଦ୍ଦାଗୁଡ଼ିକର ସମାଧାନର ସୂତ୍ର ନିଶ୍ଚୟ ଖୋଜି ବାହାର କରିବ । ଯଶୋବନ୍ତ ସିଂହ କୁହନ୍ତି ଯେ - 'ଚୀନ ଓ ଭାରତ ସମ୍ପର୍କ ମଧ୍ୟରେ ଏକ ନୂତନ ଗତିଶୀଳତା ଭରି ଦିଆ ଯାଇଛି, ଯାହାକି ଉଭୟ ଦେଶକୁ ପ୍ରଗତିର ନୂତନ ସୂର୍ଯ୍ୟୋଦୟ ଆଡ଼କୁ ଆଦର ସହକାରେ ପାଛୋଟି ନେଇଯିବ' ।

ଭାରତୀୟମାନେ ସଦାସର୍ବଦା ଚୀନୀୟମାନଙ୍କୁ ଏକ ମିଶ୍ର ଦୃଷ୍ଟିକୋଣରୁ ଦେଖିଥାନ୍ତି । ଭାରତ-ଚୀନ ଯୁଦ୍ଧ ବ୍ୟତିରେକ ଐତିହାସିକ କାରଣ ଏଥିପାଇଁ ଆଂଶିକ ଭାବେ ଦାୟୀ । ଆଜି ଚୀନୀୟ ଫୌଜର ଭୟ ବଦଳରେ ଅତ୍ୟନ୍ତ ପ୍ରତିଯୋଗିତାମୂଳକ ଚୀନୀୟ ଉତ୍ପାଦନ ସେକ୍ଟରଗୁଡ଼ିକର ଭୟ ଆମକୁ ଗୋଟାପଣେ ଚୋକେଇ ପକେଇ ମାଡ଼ି ବସିଛି, ଯାହାକି ବିଶ୍ୱର ଶସ୍ତାତମ ଦରରେ ନିୟୁତ ନିୟୁତ ସଂଖ୍ୟାରେ ଦୁଇଚକିଆ ଯାନ, ଟେଲିଭିଜନ ସେଟ୍, ରେଫ୍ରିଜରେଟର ପରି ଶୁଭ୍ରତମ ବସ୍ତୁଗୁଡ଼ିକୁ ଆପଣଙ୍କ ହାତ ପାହାନ୍ତାରେ ଉପଲବ୍ଧ କରାଇବ ।

ପରନ୍ତୁ ଚୀନୀୟ ସଫଳ କାହାଣୀର ଫାଳେ ଅଧେ ଅଂଶର ଭାଗିଦାରୀ ହେବାପାଇଁ କେତେକ ଭାରତୀୟ ବ୍ୟବସାୟୀ ଅତ୍ୟନ୍ତ ଦୃଢ଼ପ୍ରତିଜ୍ଞ ଅଛନ୍ତି । ହାଇଦ୍ରାବାଦସ୍ଥିତ ଅରବିନ୍ଦ ଫାର୍ମ ବେଜିଂରୁ ୩୦୦ କିଲୋମିଟର ଦୂରରେ ଥିବା ଡାଟଙ୍ଗ ଠାରେ ବହୁଧା ପ୍ରଚଳିତ ଲୋକପ୍ରିୟ ଡ୍ରଗ୍‌ର ପ୍ରସ୍ତୁତ କରୁଅଛି । ଏହି କମ୍ପାନୀ ଡାଟଙ୍ଗ ଠାରେ ଦୀର୍ଘ ଦେଢ଼ବର୍ଷ ହେଲା ତା'ର ସଫଳ ବ୍ୟବସାୟ ଚାଲୁ ରଖିଛି ଏବଂ ଏଥିପାଇଁ ସେମାନଙ୍କ ମଧ୍ୟରୁ କେହି ଜଣେ ହେଲେ ବି ଦୁଃଖିତ ନୁହନ୍ତି । ଏହି କମ୍ପାନୀରେ କର୍ମରତ ଥିବା ତେଲୁଗୁ ଭାଷାଭାଷି ମ୍ୟାନେଜରମାନେ ଏବେ ଚୀନୀୟ ଭାଷାରେ ଏତେ ଧୁରନ୍ଧର ହୋଇଗଲେଣି ଯେ ଚୀନୀୟ ଭାଷାରେ ସେମାନେ ସେମାନଙ୍କ ଜଏଣ୍ଟ ଭେନଚର ସହଯୋଗୀମାନଙ୍କ ସହ ମଧ୍ୟ ବାର୍ତ୍ତାଳାପ କରୁଛନ୍ତି ।

ଏଲ୍.ଏନ୍.ଜେ ଭିଲୱାରା ଗ୍ରୁପର ରବି ଝୁନ୍‌ଝୁନ୍‌ୱାଲାଙ୍କ କଥା ବିଚାରକୁ ନିଆଯାଉ, ଯେ କି ତାଟଙ୍ଗ ଠାରେ ଏକ ଗ୍ରାଫାଇଟ୍ ଇଲେକ୍‌ଟ୍ରୋଡ୍ ପ୍ଲାଣ୍ଟ ସ୍ଥାପନ କରିବା ପାଇଁ ମନ ବଳାଇଛନ୍ତି । ରବି ଝୁନ୍‌ଝୁନ୍‌ୱାଲାଙ୍କ ମତରେ ଘରଦ୍ୱାର ଛାଡ଼ି ଚୀନରେ ସ୍ଥାୟୀ ଭାବେ ବସବାସ କରିବାର ମାଧୁର୍ଯ୍ୟ କିନ୍ତୁ ଅଲଗା, ଯଦ୍ୱାରା କେତେକ ନିର୍ଦ୍ଦିଷ୍ଟ ସୁବିଧା ସୁଯୋଗ ତାଙ୍କର ହସ୍ତଗତ ହୋଇଥାଏ । ଗ୍ରାଫାଇଟ ଇଲେକ୍‌ଟ୍ରୋଡ୍‌ଗୁଡ଼ିକ ମିନି ଷ୍ଟିଲ ପ୍ଲାଣ୍ଟମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥାଏ ଏବଂ ଚୀନ ହେଉଛି ବିଶ୍ୱର ସର୍ବ ବୃହତ୍ତମ ଇସ୍ପାତ ଉତ୍ପାଦନକାରୀ ରାଷ୍ଟ୍ର । ୧୯୯୯ ମସିହାରେ ଚୀନ ୧୨୦ ମିଲିୟନ ଟନ ଇସ୍ପାତ ଉତ୍ପାଦନ କରିଥିବା ବେଳେ ଭାରତ ମାତ୍ର ୨୬ ମିଲିୟନ ଟନ ଇସ୍ପାତ ଉତ୍ପାଦନ କରିଥିଲା । ଅଧିକନ୍ତୁ ଆହୁରି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା, ଚୀନରେ ବିଦ୍ୟୁତ୍ ଶକ୍ତି ଭାରତ ଅପେକ୍ଷା ଶସ୍ତାରେ ଉପଲବ୍ଧ ହୋଇଥାଏ ଏବଂ ଗ୍ରାଫାଇଟ୍ ଇଲେକ୍‌ଟ୍ରୋଡ୍ ପ୍ଲାଣ୍ଟଗୁଡ଼ିକ ପ୍ରଚୁର ପରିମାଣର ବିଦ୍ୟୁତ୍ ଶକ୍ତି ଆବଶ୍ୟକ କରିଥାଆନ୍ତି । ରବି ଝୁନଝୁନୱାଲା କୁହନ୍ତି ଯେ କୌଣସି ଶିଳ୍ପ ଯେ କି ବହୁଳ ପରିମାଣର ବିଦ୍ୟୁତ୍ ଶକ୍ତି ଆବଶ୍ୟକ କରିଥାଆନ୍ତି, ସେମାନେ ଆଖି ଉଠେଇ ଚୀନ ଆଡ଼କୁ ଥରେ ଚାହାନ୍ତୁ । ଯଦି ସେମାନଙ୍କ ଦ୍ୱାରା ଉତ୍ପାଦିତ ବସ୍ତୁଗୁଡ଼ିକ ପାଇଁ ଚୀନରେ ଠିକଣା ବଜାର ଅଛି, ତେବେ ସେମାନେ ଚୀନ ମାଟିକୁ ଆପଣାର ମଣି ଭାରତରୁ ଲମ୍ବା ଡିଆଁଟେ ମାରନ୍ତୁ ଏବଂ ସେଠାରେ ନିଜ ସିଂଘରେ ମାଟି ତାଡ଼ି ବ୍ୟବସାୟିକ ସାମ୍ରାଜ୍ୟ ପ୍ରତିଷ୍ଠା କରନ୍ତୁ । ଆବଶ୍ୟକ ଅନୁଯାୟୀ ବିଦ୍ୟୁତ୍ ଶକ୍ତିର ନିଶ୍ଚିତ ଉପଲବ୍ଧତା ଆପଣ ସେଠାରେ ପାଇ ପାରିବେ ଏବଂ ବିଦ୍ୟୁତ୍ ସରବରାହରେ କୌଣସି ଝିନ୍‌ଝଟ ବା ବ୍ୟାଘାତ ମଧ୍ୟ ପରିଲକ୍ଷିତ ହେବ ନାହିଁ । ଚୀନୀୟ ବଜାରରେ ବିଶାଳ ସୁଯୋଗ ଯେ ଆପଣଙ୍କ ଅପେକ୍ଷାରେ ବସି ରହିଛି, ଏହା କହିବା ବାହୁଲ୍ୟ ମାତ୍ର । ଧୀରେ ଧୀରେ ଅନ୍ୟମାନେ ଏହି ମଞ୍ଜି କଥାଟିକୁ ବୁଝିଲେଣି । ଗତବର୍ଷ ଭାରତୀୟ ପ୍ଲାଷ୍ଟିକ୍ ଓ ପଲିମର ଆସୋସିଏସନର ୧୮୦ ଜଣ ସଦସ୍ୟ ବିଶିଷ୍ଟ ଏକ ବଡ଼ ଗ୍ରୁପ ମିଡ଼ିଲ କିଙ୍ଗଡ଼ମ୍ ବା ମଧ୍ୟ-ସାମ୍ରାଜ୍ୟ ସହ ସମ୍ଭାବ୍ୟ ବାଣିଜ୍ୟିକ ସମ୍ପର୍କ ପ୍ରତିଷ୍ଠା ପାଇଁ ଚୀନ ଗସ୍ତରେ ଯାଇଥିଲେ । ଚୀନକୁ ପ୍ଲାଷ୍ଟିକ୍ ଓ ପଲିମର ରପ୍ତାନି ୨୦୦୦ ମସିହାରେ ୧୦ ବିଲିୟନ ଡଲାରର ହୋଇଥିବା ବେଳେ ୨୦୦୧ ମସିହାରେ ତାହା ୧୬୦ ମିଲିୟନ ଡଲାରରେ ପହଞ୍ଚି ପାରିଥିଲା । ଏପରିକି ସୂଚନା ପ୍ରଯୁକ୍ତି ବିଦ୍ୟାଠୁଁ ଆରମ୍ଭ କରି ଗ୍ରାନାଇଟ୍

ଉତ୍ପାଦନକାରୀ ପର୍ଯ୍ୟନ୍ତ ବହୁ ପ୍ରତିନିଧି ଦଳ ନୂଆ ବଜାରର ସନ୍ଧାନରେ ଚୀନ ଆଡ଼କୁ ଧାଁ ଧପଡ଼ ଲଗେଇ ଦେଇଛନ୍ତି । ଏ ମୁଣ୍ଡରୁ ସେ ମୁଣ୍ଡ ଚୀନ ବଜାରକୁ ଘାଣ୍ଟି ଚକଟି ପକେଇ ସେମାନେ ନିଜ ବ୍ୟବସାୟ ପାଇଁ ଏକ ସୁରକ୍ଷିତ ଆସ୍ଥାନ ଖୋଜିବାରେ ଯୋର୍‌ସୋର ଲାଗି ପଡ଼ିଛନ୍ତି ।

ବେଜିଂରେ ଥିବା ଭାରତୀୟ ଦୂତାବାସର ପ୍ରଥମ ସଚିବ ଶ୍ରୀ ଦିନେଶ ପଟ୍ଟନାୟକ କୁହନ୍ତି ଯେ ନିକଟ ଅତୀତରେ ଚୀନକୁ ବହୁ ପ୍ରତିନିଧି ଦଳ ଗସ୍ତକ୍ରମରେ ଆସିଛନ୍ତି, ସତେ ଯେପରି କୂଳ କିନାରା ନ ମାନି ପ୍ରତିନିଧି ଦଳମାନଙ୍କର ବନ୍ୟାର ସୁଅ ଚୀନ ମାଟିରେ ପ୍ରଖର ବେଗରେ ଆଗକୁ ଆଗକୁ ମାଡ଼ି ଚାଲିଛନ୍ତି । ଏବେ ମଧ ବହୁ ଭାରତୀୟ ବ୍ୟବସାୟୀ ମନ ମଧରେ ସ୍ଥିର କରି ନାହାନ୍ତି ଯେ ସତରେ ଚୀନ ସେମାନଙ୍କର ପ୍ରତିଯୋଗୀ ନା ସହଯୋଗୀ । ପରନ୍ତୁ ବିଶ୍ୱ ପୃଷ୍ଠଭୂମିରେ ସଗର୍ବେ ମୁଣ୍ଡ ଟେକି ତିଷ୍ଠି ରହିବାକୁ ହେଲେ ଚୀନ ସାଙ୍ଗରେ ଯେ ବ୍ୟବସାୟ ନିଶ୍ଚୟ କରିବାକୁ ପଡ଼ିବ - ଏହି ଯୁକ୍ତିର ମାୟାଜାଲ ଭିତରୁ ଭାରତୀୟ ବ୍ୟବସାୟୀମାନେ ଆଦୌ ମୁକୁଳି ପାରୁନାହାନ୍ତି । ଭାରତ ଓ ଚୀନ ମିଳିମିଶି ବିଶ୍ୱ ଜନସଂଖ୍ୟାର ୪୦ ପ୍ରତିଶତର ଅଧିକାରୀ ଅଟନ୍ତି । ଚୀନ ସହ ଭାରତର ବାଣିଜ୍ୟିକ କାରବାର ଦେଶର ମୋଟ ବାଣିଜ୍ୟିକ କାରବାରର କେବଳ ମାତ୍ର ୪ ପ୍ରତିଶତ ଅଟେ । କିନ୍ତୁ ଯାହା ଜଣା ପଡୁଛି, ପ୍ରକୃତ ଛବି ଏହାଠୁଁ ଅଧିକ ହେବ । ହଂକଂ ଓ ତାଇୱାନ ଭାରତର ମୋଟ ବାଣିଜ୍ୟିକ କାରବାରର ଯଥାକ୍ରମେ ୩ ପ୍ରତିଶତ ଓ ୨ ପ୍ରତିଶତର ଭାଗିଦାରୀ ହୋଇପାରିଛନ୍ତି । କେତେକ ବାଣିଜ୍ୟ ବିଶେଷଜ୍ଞ ବିଶ୍ୱାସ କରନ୍ତି ଯେ ହଂକଂ ଓ ତାଇୱାନ ପାଇଁ ଉଦ୍ଦିଷ୍ଟ ଥିବା ବହୁ ସାମଗ୍ରୀ ଏହି ଦୁଇ ଦେଶରେ ନ ପହଞ୍ଚି ପ୍ରକୃତରେ ଚୀନ ଦେଶରେ ପହଞ୍ଚି ଯାଇଥାଏ ।

କେତେକ ଭାରତୀୟ କମ୍ପାନୀ ବହୁ ଆଗରୁ ଚୀନ ଦେଶରେ ସେମାନଙ୍କର ବ୍ୟବସାୟର ଡେଣା ମେଲେଇବା ପାଇଁ ନିଷ୍ପତ୍ତି ନେଇ ଅଣ୍ଟା ଭିଡ଼ି ଶକ୍ତ କରି ସେଠାରେ ବସି ରହିଛନ୍ତି । ବ୍ୟବସାୟରୂପୀ ଅସୁରର ଲଗାମକୁ ସେମାନେ ଜୋର୍‌କରି ହାତରେ ଧରି ତାକୁ ନିଜର ପୋଷା ମନେଇଛନ୍ତି । ଉଦାହରଣ ସ୍ୱରୂପ କମ୍ପ୍ୟୁଟର ଟ୍ରେନିଂ ଓ ସଫ୍ଟୱେୟାର କମ୍ପାନୀ ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇନ୍‌ଫରମେସନ ଟେକ୍ନୋଲୋଜି (ନିଟ୍) ୫ ବର୍ଷ ପୂର୍ବେ ଚୀନରେ କୌଣସି ପ୍ରକାରେ ଗଳି ପଶି

ନିଜର ଆସ୍ଥାନ ଜମେଇଥିବା ବେଳେ ଏବେ ସେମାନେ ଚୀନର ୨୧ଟି ପ୍ରଦେଶରେ ୨୭ଟି ପ୍ରତିଷ୍ଠାନ ଖୋଲି ସାରିଲେଣି ଏବଂ ଏ ବର୍ଷ ଶେଷ ସୁଦ୍ଧା ଏହା ୧୦୦ଟି ଅନୁଷ୍ଠାନର ମୁଣ୍ଡି ମାରିବ । ସାଂଘାଇ ସ୍ଥିତ ନିଟ୍‌ର ଜେନେରାଲ ମ୍ୟାନେଜର ପ୍ରକାଶ ମେନନ କୁହନ୍ତି ଯେ - ''ଚୀନ ଏକ ବିଶାଳ ରାଷ୍ଟ୍ର ଏବଂ ଏ ରାଷ୍ଟ୍ର କାହାକୁ ଆଦୌ କ୍ଷମା ଦେଇ ଜାଣିନି । ଚୀନ ବଜାରର ନାଡ଼ି ଚିପି ତା'ର ଉପଯୁକ୍ତ ଲକ୍ଷଣ ଚିହ୍ନି ଉପଚାରର ସୁବନ୍ଦୋବସ୍ତ କରିବାକୁ ଆମକୁ ଦୀର୍ଘ ଅଢ଼େଇ ବର୍ଷ ସମୟ ଲାଗିଲା ।'' ଅନ୍ୟ ଭାରତୀୟ କମ୍ପାନୀମାନେ ଚୀନରେ ଧୀରେ ଧୀରେ ନିଜର କାର୍ଯ୍ୟାଳୟ ଖୋଲୁଛନ୍ତି ଏବଂ ବ୍ୟବସାୟୀକ କଳାର ଦଉଡ଼ି ଚଢ଼ା ବିଦ୍ୟାରେ ସେମାନେ ନିଜକୁ ସିଦ୍ଧହସ୍ତ କରିନେଉଛନ୍ତି । ରିଲାଏନ୍ସ କମ୍ପାନୀ ସାଂଘାଇରେ ଗତବର୍ଷ ତା'ର ଏକ ଅଫିସ୍ ଖୋଲିଛି ଏବଂ ଏହା ମଧ୍ୟରେ ଏକ ବଡ଼ ଅର୍ଡ଼ର ତା'ର ହସ୍ତଗତ ହୋଇଛି ବୋଲି ଜଣା ପଡ଼ିଛି । ଡକ୍ଟର ରେଡ୍ଡୀଙ୍କ ଲାବୋରାଟୋରୀ ଏବଂ ଲ୍ୟୁପିନ୍ ଫାର୍ମାସେଉଟିକାଲ୍ସ ଚୀନ ବଜାରରେ ନିଜର ଔଷଧ ପତ୍ରକୁ ଠେଲି ଛାଡ଼ି ଦେଲେଣି । ସେହିପରି ଏସେଲ୍ ପ୍ୟାକେଜିଂ ଚୀନରେ ତା'ର ପ୍ୟାକେଜିଂ ବଜାରର ପଶରାକୁ ଖୁବ୍ ଭଲ ଭାବେ ମେଲେଇ ଦେଲାଣି । 'ଆପଟେକ୍ କମ୍ପ୍ୟୁଟର' ବେଜିଂରେ ତା'ର ଆସ୍ଥାନ ଜମେଇ ଦେଲାଣି ଏବଂ ଚୀନର ଯୁବ ଶକ୍ତିକୁ 'କମ୍ପ୍ୟୁଟର ପାଗଳ' କରି ବଜାରକୁ ଛାଡ଼ିବାକୁ ତା'ର ସମସ୍ତ ଲକ୍ଷ୍ୟ କେନ୍ଦ୍ରୀଭୂତ କରିଛି ।

ଅପର ପକ୍ଷରେ ଚୀନର ଅର୍ଥନୈତିକ ଚମତ୍କାରିତାର ସୁନେଲୀ ଛବି ନେଇ ସନ୍ଦେହର ବୀଜ ମଧ୍ୟ ଅଙ୍କୁରୋଦ୍‌ଗମ ହୋଇଛି । ଚୀନର ମୋଟ ରାଷ୍ଟ୍ରୀୟ ଉତ୍ପାଦନର ଅଭିବୃଦ୍ଧି ଚିତ୍ର ଏବଂ ଅନ୍ୟାନ୍ୟ ସରକାରୀ ଅର୍ଥନୈତିକ ତଥ୍ୟାବଳୀ ମଧ୍ୟ ସନ୍ଦେହର ଜାଲରେ ଛନ୍ଦି ହୋଇଯାଇଥିବା ପରି ପ୍ରତୀୟମାନ ହେଉଛି । ବିଶିଷ୍ଟ ଅର୍ଥନୀତିଜ୍ଞ ଓ ଚୀନ ପର୍ଯ୍ୟବେକ୍ଷକ ଥମାସ୍ ରସ୍କି କୁହନ୍ତି ଯେ ପ୍ରକୃତରେ ଚୀନୀୟ ଅର୍ଥନୀତିର ଅଭିବୃଦ୍ଧି ହାର ସରକାର ମାନୁଥିବା ଅଭିବୃଦ୍ଧି ହାରର ବହୁ ନିମ୍ନ ସ୍ତରରେ ଥାଏ । ରସ୍କିଙ୍କ ଅର୍ଥନୈତିକ ବିଶ୍ଳେଷଣ ବିଦ୍ୟୁତ୍ ଶକ୍ତିର ଖର୍ଚ୍ଚ ପରି ନାନାଦି ଅର୍ଥନୈତିକ ମାନଦଣ୍ଡ ଉପରେ ପର୍ଯ୍ୟବେଶିତ ଅଟେ, ଯାହାକି ସରକାରୀ ଜି.ଡ଼ି.ପି. ଅଭିବୃଦ୍ଧି ପରିସଂଖ୍ୟାନ ଚିତ୍ର ତୁଳନାରେ ଏକ ବିପରୀତ ଦିଗରେ ଗତି କରି ଚାଲିଛି । ୧୯୯୮ରୁ ୨୦୦୧ ମସିହା ମଧ୍ୟରେ ଚୀନରେ ବିଦ୍ୟୁତ୍ ଶକ୍ତି ଖର୍ଚ୍ଚ ୫.୫ ପ୍ରତିଶତ ହ୍ରାସ ପାଇଛି । ସେହିପରି ସହରରେ ଚାକିରି କରୁଥିବା ଲୋକଙ୍କ ସଂଖ୍ୟା ଏହି

ସମୟ ମଧ୍ୟରେ କେବଳ ମାତ୍ର ୧ ପ୍ରତିଶତ ହାରରେ ବୃଦ୍ଧି ଘଟିଛି । ଚୀନୀୟ ଅଧିକାରୀମାନେ କୁହନ୍ତି ଯେ ରସ୍କିଙ୍କ ଅର୍ଥନୈତିକ ଗଣନା ଓ ହିସାବ ନିକାଶରେ ଭୁଲ୍ ରହିଛି ଏବଂ ରସ୍କିଙ୍କ ଗାଣିତିକ ଅଙ୍କରାଶି ସେବା ପ୍ରକ୍ଷେତ୍ରଗୁଡ଼ିକର ଅଭିବୃଦ୍ଧିକୁ ହିସାବକୁ ନେବାରେ ଫେଲ୍ ମାରୁଛି । ଚାଇନା କାଉନସିଲ ଫର ଦି ପ୍ରମୋଶନ ଅଫ୍ ଇଣ୍ଟରନ୍ୟାସନଲ ଟ୍ରେଡ଼ର ସାଂଘାଇ ଉପ-କାଉନ୍‌ସିଲ୍‌ର ଉପାଧ୍ୟକ୍ଷ ଝିଓ ଜେଫୁ ଉପରୋକ୍ତ ମନ୍ତବ୍ୟ ପ୍ରଦାନ କରି ରସ୍କିଙ୍କ ପରିସଂଖ୍ୟାନର ଓଜନକୁ କମେଇ ଦେଉଛନ୍ତି ।

ଚୀନ ଦେଶର ସରକାର ଅର୍ଥନୈତିକ ଶିଥିଳତାକୁ ବିଶ୍ୱର ଅନ୍ୟାନ୍ୟ ଗଣତାନ୍ତ୍ରିକ ସରକାରଙ୍କ ଠାରୁ ଅଲଗା ଢଙ୍ଗରେ ପରିଚାଳିତ କରିଥାଏ । ଉଦାହରଣ ସ୍ୱରୂପ, ବିଗତ ବର୍ଷମାନଙ୍କରେ ଚୀନ ବର୍ଷରେ ତିନୋଟି ବଡ଼ ବଡ଼ ଛୁଟି ବ୍ୟବସ୍ଥା କରି 'ହଲିଡ଼େ ଇକୋନୋମିକ୍ସ' ବା 'ଛୁଟି ଅର୍ଥନୀତି' ପ୍ରଦାନ କରିବାର ଅଭ୍ୟାସ ପ୍ରଚଳନ କରିଛି; ଯାହାକି ଆବଶ୍ୟକତାକୁ ବହୁଗୁଣ ବୃଦ୍ଧି କରାଇବ ତଥା ମାତ୍ରାଧିକ ଉତ୍ପାଦନରେ ମଧ୍ୟ ହ୍ରାସ ଘଟାଇବ । ଚୀନୀୟମାନେ ଏବେ ବର୍ଷରେ ତିନୋଟି ବଡ଼ ବଡ଼ ଛୁଟି ଦିନ ପାଉଛନ୍ତି, ଯେତେବେଳେ କି ସମଗ୍ର ଦେଶ ମଧ୍ୟ ଛୁଟି ଉପଭୋଗ କରୁଥାଏ । ପରନ୍ତୁ ଏହି ସମୟରେ ଦେଶର ସମସ୍ତ ଦୋକାନ ବଜାର ଖୋଲାଥାଏ, ଯେପରି ଉଦ୍‌ବୃତ୍ତ ଅର୍ଥରାଶି ପ୍ରଚୁର ପରିମାଣରେ ଖର୍ଚ୍ଚ କରାଯାଇ ପାରିବ ।

ଅପର ପକ୍ଷରେ ଚୀନ ଦେଶର ସରକାର ରାସ୍ତାଘାଟ, ବିମାନ ବନ୍ଦରର ନିର୍ମାଣ ତଥା ଅନ୍ୟାନ୍ୟ ଆନୁସଂଗିକ ଭିତ୍ତିଭୂମିର ବିକାଶ ପାଇଁ ଅଜସ୍ର ଟଙ୍କା ବ୍ୟୟ କରି ଚାଲିଛି, ଏହି ଆଶାରେ କି ଦିନେନା ଦିନେ ଏହା ସୁଧ ସହିତ ଉପଯୁକ୍ତ ଫଳ ରାଷ୍ଟ୍ରକୁ ନିଶ୍ଚୟ ଫେରେଇ ଦେବ ।

ଚୀନର କମ୍ୟୁନିଷ୍ଟମାନେ ରାଜନୈତିକ ଶକ୍ତିକୁ କସ୍ମିନ୍ କାଳେ ହାତଛଡ଼ା କରିବେ ନାହିଁ ବୋଲି ଦୃଢ଼ ପ୍ରତିଜ୍ଞ । ସେଇଥିପାଇଁ ଦ୍ରୁତ ଅର୍ଥନୈତିକ ଅଭିବୃଦ୍ଧି ଓ ବିଶାଳ ଧନବାନ ବ୍ୟକ୍ତି ହେବାର ସୁନେଲୀ ସ୍ୱପ୍ନ ସେମାନେ ଚୀନୀୟ ଜନସାଧାରଣଙ୍କ ପାଖରେ ବିକଳ୍ପ ଭାବେ ରଖିବାକୁ ଚାହୁଁଛନ୍ତି । ମୋଟ ରାଷ୍ଟ୍ରୀୟ ଉତ୍ପାଦନକୁ ସେମାନେ ୭ ପ୍ରତିଶତର ପାଖାପାଖି ରଖିବାକୁ ଚାହୁଁଛନ୍ତି, ଯଦ୍ୱାରା

ଚାକିରି ବଜାରରେ ପାଦ ରଖିବାକୁ ଚାହୁଁଥିବା ବେରୋଜଗାରକାରୀଙ୍କ ବିଶାଳ ପଦାତିକ ବାହିନୀର ସଫଳ ମୁକାବିଲା କରାଯାଇ ପାରିବ ଏବଂ ସରକାରୀ କର୍ତ୍ତୃତ୍ୱାଧୀନ ସଂସ୍ଥାମାନଙ୍କରୁ ଛଟେଇ ହେଉଥିବା ଲୋକମାନଙ୍କର ସୁବନ୍ଦୋବସ୍ତ ମଧ୍ୟ କରାଯାଇ ପାରିବ । ସୂଚନା ମିଳିଲାଣି ଯେ ଏପରି ଚାକିରି ଛଡ଼ା ବ୍ୟକ୍ତିମାନଙ୍କର ଭିତରେ ଅସନ୍ତୋଷର ବହ୍ନି ପ୍ରଜ୍ୱଳିତ ହେବାକୁ ଲାଗିଲାଣି । ପୁନଶ୍ଚ ଚୀନୀୟମାନେ ଯେଉଁମାନେ କି ସଂଚୟ କଳାରେ ପ୍ରବୀଣ ଓ ଧୁରନ୍ଧର ଅଟନ୍ତି, ଏବେ ଅର୍ଥର ଖର୍ଚ୍ଚ-ବାର୍ଚ୍ଚରେ ସାବଧାନତା ସହ ପଦକ୍ଷେପ ଗ୍ରହଣ କରୁଛନ୍ତି । ଏହାର ମୁଖ୍ୟ କାରଣ ହେଲା, ଅତୀତରେ ଚାକିରି କ୍ଷେତ୍ରରେ ଥିବା ଜୀବନବ୍ୟାପୀ ସ୍ଥିରତା ଏବଂ ବାସଗୃହ ଯୋଗାଣ ଆଦି ବ୍ୟବସ୍ଥା ଖୁବ୍ ଶୀଘ୍ର ପରିବର୍ତ୍ତନର ସ୍ୱାଦ ଚାଖୁଛି ।

କମ୍ୟୁନିଷ୍ଟମାନେ ମଧ୍ୟ ବହୁ ବଡ଼ ବଡ଼ ଭୁଲ୍ କରିଛନ୍ତି ଏବଂ ଏହାର ବିଯୁକ୍ତ ପ୍ରଭାବ ଆଗାମୀ ବର୍ଷମାନଙ୍କରେ ସେମାନେ ନିଶ୍ଚୟ ଭୋଗିବେ । ଉଦାହରଣ ସ୍ୱରୂପ, ଭୟଙ୍କର ଡ୍ରାକୋନିଆନ୍ 'ଏକ ସନ୍ତାନ' ପଲିସି । ଏହି ପଲିସିର ପ୍ରଭାବରେ 'ଚୀନୀୟ ପରିବାର' ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଛି । ଆଜି ଚୀନର ସହରମାନଙ୍କରେ ବସବାସ କରୁଥିବା ଚୀନୀୟ ଯୁବକମାନଙ୍କର କୌଣସି ଭାଇ ବା ନିକଟ ସମ୍ପର୍କୀୟ ନାହାନ୍ତି କିମ୍ବା କୌଣସି ପାରିବାରିକ ଅବୟବ ବି ନାହିଁ, ଯେଉଁଠି ଯାଇ ସେମାନେ ସେମାନଙ୍କର ସୁଖ ଦୁଃଖର ପସରା ମେଲେଇ ବସି ପଡ଼ିବେ ଅବା ହସ କାନ୍ଦର ଦିନ ଗୁଡ଼ିକର ଅବୋଲକରା କାହାଣୀ ବଖାଣି ବସିବେ । ଆଗାମୀ ଦିନମାନଙ୍କରେ ଏହି ପରିସ୍ଥିତି ଉପଭୋକ୍ତାମାନଙ୍କର ବ୍ୟୟରାଶି ଉପରେ ଭୟଙ୍କର ପ୍ରଭାବ ପକାଇବ । ଉଦାହରଣ ସ୍ୱରୂପ, ଯୁବା ସ୍ୱାମୀ-ସ୍ତ୍ରୀ ମାନେ ଯେଉଁମାନେ କି ନିଜେ ସେମାନଙ୍କର ପିତାମାତାମାନଙ୍କର ଏକୋଇର ବଳା ବିଶିକେଶନ ବା ଏକମାତ୍ର ଅଲିଅଳୀ ରାଧାରାଣୀ ହୋଇଥିବେ, ସେମାନଙ୍କୁ ଏକା ସାଙ୍ଗରେ ଦୁଇ ଯୋଡ଼ା ପିତାମାତା ଯଥା ଜନ୍ମିତ ବାପା ମାଆ ଓ ଶାଶୁ ଶଶୁରଙ୍କ ଭରଣ ପୋଷଣ ଓ ଦେଖାଶୁଣା କରିବାକୁ ପଡ଼ିବ ।

ଟିକିଏ ଭିତରକୁ ପଶିଲେ ଆପଣ ଜାଣିବେ ଚୀନର ଅର୍ଥନୈତିକ ବିସ୍ମୟର ଛତ୍ରେ ଛତ୍ରେ କାହିଁ କେତେ ଯେ ଛିଦ୍ର ରହିଯାଇଛି । କିନ୍ତୁ ଏହା ମଧ୍ୟ ସତ୍ୟ ଯେ

ବିଗତ ଦିନମାନଙ୍କରେ ଚୀନର କଡ଼ାକଡ଼ି ନୀତି ନିୟମ ସେ ଦେଶ ପାଇଁ ସୌଭାଗ୍ୟର ରବି ଉଦୟରେ ଯଥେଷ୍ଟ ସହାୟକ ହୋଇପାରିଛି । ପ୍ରବୀଣ ଚାଇନା ୱାଚ଼ର ବା ଚୀନ ପର୍ଯ୍ୟବେକ୍ଷକ ଜନ୍ ଗିଟିଂସ ୧୯୯୯ ମସିହାରେ 'ଥ୍ରୁ ଦି ସ୍ଲାଇଡ଼ିଂ ଡୋର' ନାମକ ଏକ ପୁସ୍ତକ ରଚ଼ନା କରିଥିଲେ, ଯେଉଁଥିରେ କି ସେ ବିଗତ ତିନି ଦଶକ ମଧ୍ୟରେ ଚୀନ କିପରି ପରିବର୍ତ୍ତନର ବହୁବିଧ ସ୍ୱାଦ ଚାଖି ପାରିଛି, ତା'ର ବିଷଦ ଅବତାରଣା କରିଛନ୍ତି । ୧୯୭୧ ମସିହାରେ ଯେତେବେଳେ ସେ ପ୍ରଥମେ ଚୀନର ରାଜଧାନୀ ବେଜିଂରେ ପଦାର୍ପଣ କରିଥିଲେ, ସେତେବେଳେ ପଞ୍ଚତାରକା 'ବେଜିଂ ହୋଟେଲ'ରେ ହିଁ କେବଳ 'ସ୍ଲାଇଡ଼ିଂ ଡୋର' ଲାଗିଥିଲା ଏବଂ ତଦନୁଯାୟୀ ସେ ତାଙ୍କ ପୁସ୍ତକର ନାମକରଣ କରିଥିଲେ । ସେତେବେଳେ ଚୀନୀୟ ନାଗରିକମାନେ ବେଜିଂ ହୋଟେଲର ବାହାରେ ଠିଆହୋଇ କଦବାୟ କ୍ୱଚ଼ିତ୍ ପରିଭ୍ରମଣରେ ଆସୁଥିବା ବୈଦେଶିକ ଆଗନ୍ତୁକମାନଙ୍କୁ ଅଭ୍ୟର୍ଥନା ପୂର୍ବକ ବେଜିଂ ହୋଟେଲ ଭିତରକୁ ଆନନ୍ଦ ସହକାରେ ପାଛୋଟି ନେଉଥିବା ବେଳେ ଏବେ ୩୧ ବର୍ଷ ପରେ ସମୟର ଚକ୍ର ଗୋଟାପଣ ଘୂରି ଯାଇଛି ଓ ଚୀନୀୟ ନାଗରିକମାନେ ସେହି ବେଜିଂ ହୋଟେଲ ଭିତରେ ଆସ୍ଥାନ ଜମେଇ ବସିରହିଥିବା ବେଳେ ବୈଦେଶିକ ଅତିଥିମାନେ କୋଠରୀଟିଏ ପାଇବା ପାଇଁ ଏ ହୋଟେଲରୁ ସେ ହୋଟେଲକୁ ଚକ୍କର କାଟୁଛନ୍ତି । ଏବେ କିନ୍ତୁ ମଜାର କଥା ହେଲା - ବେଜିଂ ହୋଟେଲରେ 'ସ୍ଲାଇଡ଼ିଂ ଡୋର୍' ପରିବର୍ତ୍ତେ 'ରିଭଲ୍‌ଭିଂ ଡୋର୍' ଲାଗିଯାଇଛି ।

ସମାଜ

ତା- ୨୪.୬.୨୦୦୨



# ମୁକ୍ତ ଅର୍ଥନୀତିର ପଶାଖେଳରେ ଚୀନ ଓ ଭାରତ ଯୁଗ୍ମ ବିଜେତା ହେବେ !

ଏହା ଏକ ନିଛକ ସତକଥା ଯେ ଭାରତୀୟ ନେତାମାନେ ଆନ୍ତର୍ଜାତିକ ଅର୍ଥ ଲଗାଣକାରୀମାନଙ୍କୁ ଭାରତ ଆଡ଼କୁ ଅହେତୁକ ଭାବେ ଆକର୍ଷିତ କରାଇବା ପାଇଁ ଆହୁରି ଢେର ବେଶୀ ପ୍ରଗାଢ଼ ଚେଷ୍ଟା କରିବା ଉଚିତ, ଯଦ୍ଵାରା ଅର୍ଥନୈତିକ ସଂସ୍କାର ପ୍ରତି ଥିବା ଭାରତର ଅଙ୍ଗୀକାରବଦ୍ଧତା ବିଶ୍ୱ ପୃଷ୍ଠଭୂମିରେ ପ୍ରକୃଷ୍ଟଭାବେ ଜାହିର ହୋଇ ପାରିବ । ଏହି ପରିପ୍ରେକ୍ଷୀରେ ଚୀନ ଆଶାତୀତ ଭାବେ ଅଧିକ ଲାଭବାନ ହୋଇ ଅର୍ଥନୀତିର ତୁଳାଦଣ୍ଡକୁ ନିଜଆଡ଼କୁ ଯଥେଷ୍ଟ ଅଧିକ ଝୁଙ୍କେଇ ନେଇ ପାରିଛି । ଏହି ଦୁଇ ଅର୍ଥନୀତିକୁ ଗଭୀର ଭାବେ ଅଧ୍ୟୟନ କରି ଘାଣ୍ଟି ଚକଟି ସେମାନଙ୍କର ପ୍ରଗତିର ଧାରାକୁ ତନ୍ନତନ୍ନ ବିଶ୍ଳେଷଣ କଲେ ଆପଣ ଏହି ସିଦ୍ଧାନ୍ତରେ ଉପନୀତ ହେବେ ଯେ ବିଜୟଶ୍ରୀର ଜୟମାଲ୍ୟ ପାଇବାକୁ ଚୀନ ପ୍ରକୃତରେ ହିଁ ହକ୍‌ଦାର । ଚୀନ ବିଶ୍ୱ ଅର୍ଥନୀତିର ଏହି ଘୋଡ଼ା ଦୌଡ଼ରେ ଜଣେ ସଫଳ ଧାବକ ଭାବେ କିପରି ନିଜକୁ ସାବ୍ୟସ୍ତ କରି ପାରିଲା ଓ ବିଶ୍ୱ ବଜାରରେ ନିଜପାଇଁ ଏକ ଯୁକ୍ତ-ପ୍ରତିଛବି ସୃଷ୍ଟି କରିବାରେ କିପରି ସଫଳକାମୀ ହୋଇପାରିଲା, ସେ ବିଷୟରେ ବିଷଦ ଆଲୋଚ଼ନା ଓ ପର୍ଯ୍ୟାଲୋଚ଼ନା ଏଠାରେ ପ୍ରଣିଧାନଯୋଗ୍ୟ ।

ବଜାର ଭିତ୍ତିକ ସଂସ୍କାର ବ୍ୟବସ୍ଥାକୁ ଗୋଟାପଣ ଆପଣାର କରିନେଇ ଚୀନ ଯେଉଁ ଅର୍ଥନୈତିକ ଚମତ୍‌କାରିତା ପ୍ରଦର୍ଶନ କରିପାରିଛି, ସତରେ ତା'ର କୌଣସି ପଟାନ୍ତର ନାହିଁ । ଭାରତ ଅପେକ୍ଷା ଚୀନ ବହୁ ଆଗରୁ ଏହି ସଂସ୍କାର ବ୍ୟବସ୍ଥାକୁ ଆଦରି ନେଇଥିଲେ ମଧ୍ୟ ସଫଳତାର ସମସ୍ତ ସିଡ଼ି ପାହାଚ଼ ଯେ ବେଜିଂ ଚଢ଼ି ସାରିଛି; ତାହା କହିବା ମଧ୍ୟ ଧୃଷ୍ଟତା ହେବ । ଉଭୟ ନୂଆଦିଲ୍ଲୀ ଓ ବେଜିଂ ସେମାନଙ୍କର ଜନସାଧାରଣମାନଙ୍କୁ ଅର୍ଥନୈତିକ ସ୍ୱଚ୍ଛଳତାର ମିଠା ସ୍ୱାଦ ଚଖେଇବା ପାଇଁ ଯେଉଁ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ, ତାହା ଆଜି ବି ଅପୂରଣୀୟ ହୋଇ ରହିଛି । କାରଣ ଯାହାକିଛି ହେଉନା କାହିଁକି, ତା'ର ଯୁକ୍ତିଯୁକ୍ତତା ପ୍ରମାଣ କରିବା

ଏତେ ସହଜର ପାଠ ନୁହେଁ । ଅଧିକନ୍ତୁ 'ବେନିଫିଟ ଅଫ ଡାଉଟ' ବା 'ସନ୍ଦେହରୁ ସୁଯୋଗ'କୁ ବିଚାରକୁ ନେଲେ ନୂଆଦିଲ୍ଲୀ ଅପେକ୍ଷା ବେଜିଂର ଅର୍ଥନୀତି ଖାତାରେ ଅଙ୍କରାଶି ଟିକେ ଅଧିକା କୁଢ଼େଇ ହୋଇ ପଡ଼ିବ ।

ବେଜିଂର ସରକାରୀ ପରିସଂଖ୍ୟନ ପ୍ରଦତ୍ତ ଅର୍ଥନୈତିକ ତଥ୍ୟାବଳୀକୁ ଗ୍ରହଣଯୋଗ୍ୟ ଭାବେ ବିବେଚନା କଲେ ଆପଣ ଦେଖିବେ ଯେ ତାହା ସଦାସର୍ବଦା ଅର୍ଥନୀତିର ଏକ ରଙ୍ଗୀନ ଗୋଲାପି ଛବି ଆପଣଙ୍କ ସମ୍ମୁଖରେ ପରିବେଷଣ କରିଥାଏ । ଯଦିଓ ତଥ୍ୟାଭିଜ୍ଞ ମହଲ ମତପୋଷଣ କରିଥାନ୍ତି ଯେ ଏହି ତଥ୍ୟାବଳୀ ସଦାସର୍ବଦା ସମ୍ପୂର୍ଣ୍ଣ ସତ୍ୟ ଉପରେ ପର୍ଯ୍ୟବେଶିତ ନ ଥାଏ, ବରଂ ଅର୍ଦ୍ଧ-ସତ୍ୟର ବୁନିୟାଦ ଉପରେ ଏହାର ଆଧାରଶିଳା ଗଢ଼ା ଯାଇଥାଏ । ତା'ର ମାନେ ନୁହେଁ ଯେ ଭାରତ ସରକାରଙ୍କ ପରିସଂଖ୍ୟାନ ପ୍ରଦତ୍ତ ଅର୍ଥନୈତିକ ତଥ୍ୟାବଳୀ ସଦାସର୍ବଦା ଠିକ୍ ଅଟେ ଓ ସେଥିରେ ଲେସ ମାତ୍ର ଭୁଲ୍ ଭଟକା ନ ଥାଏ ।

କେନ୍ଦ୍ରୀୟ ଯୋଜନା ଦ୍ୱାରା ଗଠିତ ରୁଦ୍ଧ ମାନସିକତାର ବୁଢ଼ିଆଣୀ ଜାଲ ଭିତରେ ଛନ୍ଦି ହୋଇପଡ଼ିଯାଇ ଚୀନୀୟ ଅଧିକାରୀମାନେ ପ୍ରକୃତ ତଥ୍ୟ ବଦଳରେ ଅର୍ଥନୀତିର ଗାଣିତିକ ପରିସଂଖ୍ୟାନ ଏପରି ଭାବେ ଉପସ୍ଥାପିତ କରିଥାଆନ୍ତି, ଯେପରି କେନ୍ଦ୍ରୀୟ ନେତୃବୃନ୍ଦଙ୍କ ମୁହଁରେ ତାହା ହସ ଫୁଟେଇ ଥାଏ । ୨୦୦୦ ମସିହାରେ ଅର୍ଥନୈତିକ ତଥ୍ୟର ସଂଗ୍ରହ ଓ ସେଗୁଡ଼ିକର ଏକତ୍ରୀକରଣ କରିବାରେ ଚୀନର ଜାତୀୟ ପରିସଂଖ୍ୟାନ ବ୍ୟୁରୋର ଏକ ରିପୋର୍ଟ ସ୍ପଷ୍ଟ ଦିବାଲୋକରେ ଏପରି ୬୨ ହଜାର ନୀତିନିୟମର ଉଲଂଘନ କରାଯାଇଛି ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରିଛି । ଏପରିକି ମୋଟ ଜାତୀୟ ଉତ୍ପାଦନ (ଜି.ଡ଼ି.ପି) ଏବଂ ବେରୋଜଗାର ପରି ମୌଳିକ ତଥ୍ୟର ଉପସ୍ଥାପନ ଯେ କେତେଦୂର ସତ୍ୟ ଉପରେ ପର୍ଯ୍ୟବେଶିତ, ତାହା ମଧ୍ୟ ସନ୍ଦିହାନ ଅଟେ । ସରକାରୀ ସ୍ତରର ବେରୋଜଗାରର ହାର କେବଳ ସହର ମାନଙ୍କରେ ଥିବା ପଞ୍ଜୀକୃତ ବେରୋଜଗାରୀମାନଙ୍କ ଗଣତିକୁ ହିଁ କେବଳ ହିସାବକୁ ନେଇଥାଏ । ସମ୍ପୂର୍ଣ୍ଣ ଗ୍ରାମୀଣ ଜନସଂଖ୍ୟା ଏହି ଗଣତିରୁ ବାଦ୍ ପଡ଼ିଥାଏ । ପରନ୍ତୁ ଜି.ଡ଼ି.ପି. ଜନିତ ତଥ୍ୟାବଳୀ ବେରୋଜଗାର ଜନିତ ତଥ୍ୟାବଳୀଠାରୁ ଅପେକ୍ଷାକୃତ ଭଲ । ଜାତୀୟ ଆୟର ଆକାଉଣ୍ଟିଂ କରିବାରେ ଯଦିଓ ଚୀନ ସେଭଳି ଉନ୍ନତ ଆଧୁନିକ ବ୍ୟବସ୍ଥାର ପରିପ୍ରୟୋଗ କରି ନ ଥାଏ, ହେଲେ ୨୦୦୧ ମସିହାର ୭.୩ ପ୍ରତିଶତ ଜାତୀୟ

ଅଭିବୃଦ୍ଧି ହାରର ଘୋଷଣା କରିବାରେ ଚୀନ ଶୀଘ୍ରତା ପ୍ରକାଶ କରିଥିଲା, ଯାହାକି ବିଶ୍ୱ ଅର୍ଥନୈତିକ ଶିଥିଳତାର ପରିପନ୍ଥୀ ନୁହେଁ । ଏହି ଶୀଘ୍ରତାକୁ ବାଦ୍ ଦେଲେ ମଧ୍ୟ ଆପଣ ପରିଲକ୍ଷିତ କରିବେ ଯେ ସରକାରୀ ପରିସଂଖ୍ୟାନକୁ କଦବାୟ କ୍ୱଚିତ୍ ସୁଧୁରା ଯାଇଥାଏ ।

ବିଦେଶୀ ପୁଞ୍ଜି ଲଗାଣକାରୀମାନେ ବଜାରର ପରିସ୍ଥିତି ଓ ଆବହାୱା ଜାଣିବା ପାଇଁ ଯେହେତୁ ଆଞ୍ଚଳିକ ପରିସଂଖ୍ୟାନବିତ୍‌ମାନଙ୍କ ଅର୍ଥନୈତିକ ତଥ୍ୟାବଳୀ ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭର କରିଥାନ୍ତି, ଏଠାରେ ପ୍ରଶ୍ନ ଉଠୁଛି ଯେ ଚୀନର ଅର୍ଥନୈତିକ ଖେଳ ପଡ଼ିଆରେ ବିଦେଶୀ ପୁଞ୍ଜି ଲଗାଣକାରୀଙ୍କ ବିଲିୟନ ବିଲିୟନ ଡଲାର ପୁଞ୍ଜି ନିବେଶ ଅତ୍ୟନ୍ତ ବୁଦ୍ଧିମତ୍ତାର ସହ ସତରେ ବିନିଯୋଗ ହୋଇପାରୁଛି କି ? ଏ ପ୍ରଶ୍ନର ସମ୍ୟକ୍ ଉତ୍ତର ଏପରି ଦିଆଯାଇପାରେ ଯେ ଏକାଧିକ ବିଦେଶୀ ପୁଞ୍ଜି ଲଗାଣକାରୀମାନେ ସେମାନଙ୍କର ପୁଞ୍ଜି ବିନିଯୋଗରେ ଅଯଥା ଅର୍ଥଶ୍ରାଦ୍ଧ କରୁଛନ୍ତି ଅଥବା ସେମାନେ ସେମାନଙ୍କର ଅର୍ଥନୈତିକ ସମ୍ଭାବ୍ୟ ଚିତ୍ରର ଅତି ପଛରେ ପଡ଼ି ରହିଛନ୍ତି ।

ସରକାରୀ ତଥ୍ୟାବଳୀଗୁଡ଼ିକର ନିର୍ଭରଶୀଳତା ଓ ସ୍ୱାଧୀନଧର୍ମୀ ପରିପ୍ରୟୋଗ ବ୍ୟତିରେକ ହାତ ପାପୁଲିର ବୁଢ଼ା ଆଙ୍ଗୁଠିର ନିୟମର ବ୍ୟବହାର ଏଠାରେ ପ୍ରଣିଧାନ ଯୋଗ୍ୟ, ଯାହାକି ଚୀନ ପରି ପ୍ରଭୁତ୍ୱ ଧର୍ମୀ ସାମ୍ରାଜ୍ୟ ପରିପ୍ରେକ୍ଷୀରେ ସର୍ବାଦୌ ଗ୍ରହଣୀୟ ହେବା ଉଚିତ । ଏହି ଯୁକ୍ତିକୁ ଆଧାର କଲେ ଆପଣ ଦେଖିବେ, ଚୀନର ପ୍ରକୃତ ସହରୀ ବେରୋଜଗାରୀଙ୍କ ସଂଖ୍ୟା ୧୫ ଏପରିକି ୨୦ ପ୍ରତିଶତର ପାଖାପାଖି ଅଟେ ଏବଂ ଚୀନର ପ୍ରକୃତ ଅର୍ଥନୈତିକ ଅଭିବୃଦ୍ଧି ୪ ପ୍ରତିଶତର ପାଖାପାଖି ହୋଇପାରେ । ତେଣୁ ଏହା ଆମକୁ ଏହି ଉପସଂହାରରେ ଉପନୀତ କରାଉଛି ଯେ ଚୀନ ଓ ଭାରତର ଅର୍ଥନୀତି ମଧ୍ୟରେ ଥିବା ପ୍ରଭେଦ ହୁଏତ ଏତେ ବିଶାଳ ନୁହେଁ, ଯାହାକି ଚୀନର ସରକାରୀ ତଥ୍ୟ ଉପସ୍ଥାପିତ କରିଥାଏ ।

ବୋଧହୁଏ ଚୀନର ଅର୍ଥନୀତିକୁ ସେଠାରେ ବହୁଳ ଭାବେ ପ୍ରଚଳିତ ଥିବା ନିୟନ୍ତ୍ରଣ ବର୍ହିଭୂତ ଦୁର୍ନୀତି ଗୋଡ଼ରେ ଜଞ୍ଜିର ଲଗାଇ ପଛକୁ ପଛକୁ ଟାଣିନେଇ ଚାଲିଛି - ଯେଉଁ ସମସ୍ୟାଟିକୁ ହିଁ ଚୀନ ଭାରତ ସହ ସମବଣ୍ଟନ କରି ପାରିବ । ଚୀନର ଅର୍ଥନୀତିଜ୍ଞମାନେ ହିସାବ କରି ଦେଖିଛନ୍ତି ଯେ ୧୯୯୯ ମସିହାରେ ଚୀନର ଅଧିକାରୀମାନେ କେନ୍ଦ୍ରସରକାରଙ୍କ ରାଜସ୍ୱରୁ ପ୍ରାୟ ୨୦ ପ୍ରତିଶତ ବାଟମାରଣା

କରି ନିଜ ତହବିଲକୁ ମୋଟା କରିଛନ୍ତି । ଏଥିସହିତ ଜଡ଼ିତ ଆଉ ଏକ ସମସ୍ୟା ହେଲା, ଚୀନର ଭିତ୍ତିଭୂମିର ବିକାଶରେ ବ୍ୟୟ ହେଉଥିବା ଅର୍ଥରାଶିର ଅସଦ୍‌ବ୍ୟବହାର ବା ପରିଚାଳନାଗତ ଅକ୍ଷମଣୀୟ ତ୍ରୁଟି ।

ପରନ୍ତୁ ଆନ୍ତର୍ଜାତିକ ପୁଞ୍ଜି ଲଗାଣକାରୀମାନଙ୍କ ପାଖରେ ଚୀନ ଓ ଭାରତରେ ପ୍ରଚଳିତ ଥିବା ଅର୍ଥନୈତିକ ଦୁର୍ନୀତିର ଚିତ୍ର କିନ୍ତୁ ଅଲଗା । ଚୀନରେ ଏହା ସୁଦୂରଭାବେ ବିଶ୍ୱାସ କରାଯାଇଥାଏ ଯେ ଦୁର୍ନୀତି କ୍ଷେତ୍ରରେ ବ୍ୟବହୃତ ହେଉଥିବା ପୁଞ୍ଜି ମାଧମରେ ପୁଞ୍ଜି ଲଗାଣକାରୀମାନେ ଅର୍ଥନୈତିକ ସୁଯୋଗକୁ ନିଜ ସପକ୍ଷରେ ଆଣି ପାରିଥାଆନ୍ତି ଓ ବଜାରର ଉଷ୍ମତାକୁ ସଠିକ୍ ଭାବେ ମାପି ଅର୍ଥନୈତିକ ଘୋଡ଼ା ବେପାରକୁ ମଧ ହାତରେ ଲଗାମ ଧରି ସମ୍ପୂର୍ଣ୍ଣ ରୂପେ ନିୟନ୍ତ୍ରିତ କରିଥାଆନ୍ତି । ଅପର ପକ୍ଷରେ ଭାରତରେ ଆପଣ ନିଜର କୌଣସି କାମ ସାଧନ ପାଇଁ ମଧସ୍ଥି ବା ଅଧିକାରୀଙ୍କୁ ଆବଶ୍ୟକୀୟ ହାତଗୁଞ୍ଜା ଅର୍ଥରାଶି ପ୍ରଦାନ କଲେ ମଧ ସେ ତାହା ଯଥାଶୀଘ୍ର ଚଳୁକରି ନିଜ ବାଟରେ ବାଟୋଇ ହୋଇଯାଆନ୍ତି ଓ ପରେ ଆପଣଙ୍କୁ ଆଡ଼ ଆଖିରେ ମଧ ଚାହିଁ ନ ଥାନ୍ତି । ହାତରେ ଛତା ବାଡ଼ି ଧରି ଗୋଡ଼ରେ ଜୋତା ଓ ମୁଣ୍ଡରେ ଟୋପି ମଡ଼େଇ ଅନ୍ୟ କୌଣସି ଏକ ଗ୍ରାହକର ସନ୍ଧାନରେ ସେମାନେ ପୁଣି ଘରୁ ଗୋଡ଼ କାଢ଼ନ୍ତି ଓ ସେ ଗ୍ରାହକର ଦୁର୍ଦ୍ଦଶା ମଧ ଠିକ୍ ସେହିପରି ହୋଇଥାଏ । ଅର୍ଥନୈତିକ ମଧସ୍ଥିମାନେ ଦିନ ପରେ ଦିନ ଗ୍ରାହକ ବଦଳେଇ ଚାଲିଥିବା ବେଳେ ବିଦେଶୀ ପୁଞ୍ଜି ଲଗାଣକାରୀମାନେ କେଉଁ ମଧସ୍ଥିର ଗୋଡ଼ହାତ ଧରି କାମ ହାସଲ କରିବେ ତାହା ଜାଣି ପାରନ୍ତି ନାହିଁ ଓ ଶେଷରେ ହତୋତ୍ସାହ ହୋଇ ଭାଙ୍ଗି ପଡ଼ନ୍ତି । ଯଦି ବା କୌଣସି ଗ୍ରାହକ ବା ଅଧିକାରୀ ତାଙ୍କୁ ସୁଫଳ ପ୍ରଦାନ କଲା, ତେବେ ଅନ୍ୟ ଜଣେ ଗ୍ରାହକ ବା ଅଧିକାରୀ ତାଙ୍କ କଳାକର୍ମରେ ପାଣି ଢାଳି ଦେଇ ପ୍ରକଳ୍ପକୁ ରସାତଳଗାମୀ କରିଦେଇପାରେ । ଏହି ଡର ଓ ଭୟ ଯୋଗୁଁ ବିଦେଶୀ ଅର୍ଥଲଗାଣକାରୀମାନେ ଭାରତରେ ପୁଞ୍ଜି ବିନିଯୋଗ କରିବାକୁ ପଛଘୁଞ୍ଚା ଦେଉଛନ୍ତି । ଦରମା ବ୍ୟତିରେକ ଅନ୍ୟର ଅର୍ଥକୁ ଚଳୁ କରି ପେଟ ପୋଷିବାକୁ ଆମର ଅର୍ଥନୈତିକ ମଧସ୍ଥି ବା ଅଧିକାରୀମାନେ ଅଧିକ ପସନ୍ଦ ମଣୁଥିବାରୁ ବିଦେଶୀ ଅର୍ଥ ଲଗାଣକାରୀମାନେ ପୁରାପୁରି ଫିଡ଼ିକି ଯାଉଛନ୍ତି ।

ଆଉ ଏକ ମୁଖ୍ୟ କାରଣ ହେଲା ଯେ ଦିନକୁ ଦିନ ଭାରତ ମାଟିରେ ଭିକ ମଗାଳୀମାନଙ୍କ ସଂଖ୍ୟାରେ ଆଶାତୀତ ଭାବେ ବୃଦ୍ଧି ହେଉଥିବାରୁ ଆନ୍ତର୍ଜାତିକ

ପୁଞ୍ଜି ଲଗାଣକାରୀମାନେ ଭାରତକୁ ଏକ 'ଭିକାରୀଙ୍କ ଦେଶ' ଭାବେ ଅଭିହିତ କରିଥାଆନ୍ତି ଓ ଭାରତରେ ଯେ ତାଙ୍କ ପାଇଁ ବା ତାଙ୍କ ଉତ୍ପାଦିତ ସାମଗ୍ରୀଗୁଡ଼ିକ ପାଇଁ ଏକ ସୁସ୍ଥ ବଜାର ଅଛି, ସେ ନେଇ ସେମାନେ ଯଥେଷ୍ଟ ସନ୍ଦିହାନ ଥାଆନ୍ତି । ଅର୍ଥନୀତିର ଏହି ପଶାଖେଳ ଭାରତକୁ ବଡ଼ ମହଙ୍ଗା ପଡୁଛି । ଭାରତ ପାଖରେ ଆଜି ଶକୁନି ପରି ଦକ୍ଷ ପଶା ଖେଳାଳୀ ଥିଲେ କଥାଟା ହୁଏତ ନିଆରା ହୋଇଥାଆନ୍ତା । ସୁଦୂର ବିସ୍ତାରିତ ଓ ହୁଏତ ହ୍ରାସ ପାଇବାର କୌଣସି ଆଶା ନ ଥିବା ଭାରତର ଦାରିଦ୍ର୍ୟର ଚିତ୍ର ବିଦେଶୀ ପୁଞ୍ଜି ଲଗାଣକାରୀମାନଙ୍କୁ ଅଧିକ ବ୍ୟଥିତ କରୁଛି । ଭାରତ ଯେ ପ୍ରକୃତରେ ଉପଭୋକ୍ତାମାନଙ୍କର ଏକ ପ୍ରକୃଷ୍ଟ କ୍ଷେତ୍ର ଏ ନେଇ ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଦ୍ୱିଧା ପ୍ରକାଶ କରିଥାନ୍ତି ।

ପରନ୍ତୁ ବିଦେଶୀ ପୁଞ୍ଜି ଲଗାଣକାରୀମାନେ ଯେଉଁମାନେ ବିଶ୍ୱାସ କରନ୍ତି ଯେ ଚୀନରେ ଦରିଦ୍ର ଲୋକମାନଙ୍କ ସଂଖ୍ୟା ଖୁବ୍ କମ୍, ସେମାନେ ଏହାର ସତ୍ୟାସତ୍ୟତା ଜାଣିବା ପାଇଁ ପରିସ୍ଥିତିକୁ ଅତି ନିକଟରୁ ନିଗୁଢ଼ ଭାବେ ନିରୀକ୍ଷଣ କରିଥାନ୍ତି । ପ୍ରଥମତଃ ବେଜିଂରେ ଥିବା ଶାସନ ବ୍ୟବସ୍ଥାର ପ୍ରଭୁତ୍ୱଧର୍ମୀ ଚରିତ୍ର ଚୀନର ବିଭିନ୍ନ ସହରରୁ ଦରିଦ୍ର ଓ ଲୋଫର ଜନସାଧାରଣମାନଙ୍କୁ ସହର ଛାଡ଼ି ଚାଲିଯାଇ ବିଭିନ୍ନ ଗାଁ ଗଣ୍ଡାରେ ବସବାସ କରିବା ପାଇଁ ନିର୍ଦ୍ଦେଶନାମା ଜାହିର କରିବାକୁ ସୁଯୋଗ ଦେଇଥାଏ, ଯେଉଁଠାରେ କି ସେମାନେ ଦୃଶ୍ୟପଟ୍ଟର ଆଢୁଆଳରେ ବଞ୍ଚିରହି ନିଜର ଦୈନନ୍ଦିନ ଗୁଜୁରାଣ ମେଣ୍ଟେଇ ପାରିବେ । ଆନ୍ତର୍ଜାତିକ ସଭାସମିତି ଓ ଦ୍ୱିପାକ୍ଷିକ ଆଲୋଚ଼ନାର ଅବ୍ୟବହିତ ପୂର୍ବରୁ ତଥା ବିଦେଶୀ ପୁଞ୍ଜି ଲଗାଣକାରୀ ଓ ପରିଦର୍ଶକମାନେ ବେଜିଂ ମାଟିରେ ପାଦ ଥାପିବା ପୂର୍ବରୁ ଦରିଦ୍ର ଜନସାଧାରଣମାନଙ୍କୁ ସହର ଛାଡ଼ି ଗାଁକୁ ଚାଲିଯିବାକୁ ପଡ଼ିଥାଏ । ଦ୍ୱିତୀୟତଃ ଯଦ୍ୟପି ଭାରତବର୍ଷ ଦିନ ପରେ ଦିନ ତା'ର ମୁଣ୍ଡ ପିଛା ଆୟ ପରିମାଣରେ ଉଚ୍ଚତର ଅଙ୍କରାଶିର ଅଧିକାରୀ ହୁଏ, ତଥାପି ଏଠାରେ ସଦାସର୍ବଦା ଅଗଣିତ ଦୁଃଖି ରଙ୍କି ଭିକାରୀମାନେ ବସବାସ କରିବେ; କାରଣ ଭାରତବର୍ଷ ଏକ ଭିକାରୀଙ୍କ ଦେଶ ବୋଲି ବିଶ୍ୱରେ ସର୍ବଜନବିଦିତ ଅଟେ । ଏହାର ମୁଖ୍ୟ କାରଣ ହେଲା ଦୁଇଟି ପ୍ରମୁଖ ଧର୍ମ - ବୌଦ୍ଧ ଧର୍ମ ଓ ଇସଲାମ ଧର୍ମ ଦରିଦ୍ର ଲୋକମାନଙ୍କୁ ଯଥାସମ୍ଭବ ସହାୟତା ପ୍ରଦାନ କରିବା ପାଇଁ ପ୍ରୋତ୍ସାହନ ଦେଇଥାଏ । ପ୍ରତିବଦଳରେ ଏହି ଦରିଦ୍ର ଲୋକମାନେ ଇସଲାମ ଓ ବୌଦ୍ଧ ଧର୍ମାବଲମ୍ବୀମାନଙ୍କୁ ଆବଶ୍ୟକ ପଡ଼ିଲେ ସହାୟତା କରି ସେହି ଧର୍ମମାନଙ୍କରେ ନିଜେ ମଧ ଦୀକ୍ଷିତ ହୋଇଯାଇ ଥାଆନ୍ତି ।

ଏହି ଧର୍ମାବଲମ୍ବୀ ଲୋକମାନଙ୍କ ମଧ୍ୟରେ ଭାରତୀୟମାନଙ୍କ ସଂଖ୍ୟା ଦିନକୁ ଦିନ ବୃଦ୍ଧି ଘଟୁଥିବାରୁ ଏହି ଲୋକମାନେ 'ଧର୍ମସଂସ୍ଥାପନାର୍ଥାୟ' କାର୍ଯ୍ୟକ୍ରମ ମାନ ହାତକୁ ନେଇ ଧର୍ମର ମହତ୍ ସେବା ମଧ୍ୟ ସଂପାଦନ କରିଥାଆନ୍ତି ।

ଭାରତ ମୁଖ୍ୟତ ଏକ ମୁକ୍ତ ରାଜନୈତିକ ସାମ୍ରାଜ୍ୟ ମଧ୍ୟରେ ଆଚଜାତ ହେଉଥିବା ବେଳେ ଏକ ରୁଦ୍ଧ ଅର୍ଥନୀତିର ସିନ୍ଦୁକ ଭିତରେ ମୁହଁମାଡ଼ି ପଡ଼ି ରହିଛି; ପରନ୍ତୁ ଚୀନ ଏକ ରୁଦ୍ଧ ରାଜନୈତିକ ସାମ୍ରାଜ୍ୟ ମଧ୍ୟରେ ଚଳ ପ୍ରଚଳ ହେଉଥିବା ବେଳେ ଅପେକ୍ଷାକୃତ ମୁକ୍ତ ଅର୍ଥନୀତିର ଲଗାମ ଧରି ଦୁଷ୍ଟ ଘୋଡ଼ା ପିଠିରେ ସବାର୍ ହୋଇଛି । ଏହି ତୁଳନାତ୍ମକ ପଟ୍ଟଭୂମିରେ ଚୀନ ତା'ର ସମସ୍ତ ବାଜି ମାରିନେଇ ଯାଉଛି, କାରଣ ଜଣେ ବିଦେଶୀ ପୁଞ୍ଜି ଲଗାଣକାରୀ ପାଇଁ ମୁକ୍ତ ଅର୍ଥନୀତି ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ । ସେହି କାରଣରୁ ବେଜିଂ ଅର୍ଥନୀତିର ପଶାପାଲିକୁ ନିଜ ଅକ୍ତିଆରରେ ରଖି ଗୋଟି ଗୁଡ଼ିକର ଚାଳନା ଠିକ୍ ଭାବେ ସମ୍ପାଦିତ କରୁଛି ଏବଂ ଶାସନାଧକ୍ଷ ଝୁ ରୋଙ୍ଗଜିଙ୍କ ପରି ବଳିଷ୍ଠ ମୁଖପାତ୍ରମାନଙ୍କୁ ବ୍ୟବହାର କରି ଚୀନ ତା'ର ଏକ ଯୁକ୍ତ-ପ୍ରତିଛବି ବିଶ୍ୱ ଅର୍ଥନୈତିକ ରଣାଙ୍ଗନରେ ପରିବେଷଣ କରିବାକୁ ସମ୍ପୂର୍ଣ୍ଣ ରୂପେ ସକ୍ଷମ ହୋଇ ପାରୁଛି । 'ଚୀନ ବ୍ୟବସାୟ ପାଇଁ ଯେ ଏକ ସମ୍ପୂର୍ଣ୍ଣ ଉନ୍ମୁକ୍ତ ପ୍ରକ୍ଷେତ୍ର' - ଏହା ଦିନ ପରେ ଦିନ ବିଶ୍ୱ ପୃଷ୍ଠଭୂମିରେ ସାବ୍ୟସ୍ତ ହୋଇ ଚାଲିଛି । ପରନ୍ତୁ ନୂଆଦିଲ୍ଲୀ ଅର୍ଥନୈତିକ ସଂସ୍କାରର ଚଲାପଥରେ ପାହୁଣ୍ଡେ ଆଗକୁ ଗଲେ ଦୁଇ ପାହୁଣ୍ଡ ପଛକୁ ଚାଲିଯାଉଥିବାରୁ ବିଦେଶୀ ଅର୍ଥଲଗାଣକାରୀଙ୍କ ମନରେ ଚୀନର ଠିକ୍ ଓଲଟା ଧାରଣା ଭାରତବର୍ଷ ପ୍ରତି ସୃଷ୍ଟି ହେଉଛି ।

ସମସ୍ତ ଘଟଣାଚକ୍ରକୁ ଖିନ୍‌ଭିନ୍ କରି ବିଶ୍ଳେଷଣ କଲେ ଆପଣ ଦେଖିବେ ଯେ ଚୀନର ମୁକ୍ତ ଅର୍ଥନୀତିର ମୂଳମନ୍ତ୍ର ତଥା ଚୀନୀୟ ନେତୃବୃନ୍ଦଙ୍କର ପାରଙ୍ଗମ ପଣିଆର ଗୁମର କଥାକୁ ଭାରତୀୟ ନେତାମାନେ ଠିକ୍‌ଭାବେ ବୁଝିପାରୁ ନାହାନ୍ତି । ଏକ ମୁକ୍ତ ତଥା ପ୍ରଚାରଧର୍ମୀ ଗଣମାଧ୍ୟମ ଭାରତ ସରକାରଙ୍କ ସମସ୍ତ ଛୋଟ ବଡ଼ ନୀତି ନିର୍ଦ୍ଧାରଣ ସମ୍ବନ୍ଧୀୟ ଘୋଷଣାନାମାକୁ ବିଶ୍ଳେଷଣ କରି ତା'ର ଯୁକ୍ତ ଓ ବିଯୁକ୍ତ ଭାବାର୍ଥକୁ ଜନସାଧାରଣଙ୍କ ପାଖରେ ଉପଯୁକ୍ତ ଭାବେ ପରିବେଷଣ କରିଥାଏ ଓ ଜନସାଧାରଣଙ୍କ ଠାରୁ ମଧ୍ୟ ସେମାନଙ୍କର ମତାମତ ଆହ୍ୱାନ କରିଥାଏ ।

ଚୀନ ଅତିମାତ୍ରାରେ ତା'ର ଅର୍ଥନୈତିକ ସଫଳତା ଓ ସୁଯୋଗର ପ୍ରତିଛବିକୁ ବିଶ୍ୱ ଦରବାରରେ ଉପସ୍ଥାପିତ କରୁଥିବାରୁ ସତେ ଯେପରି ଏହା ମନେହୁଏ ଯେ

'ଡିଡ୍-ଅନେଷ୍ଟି ଇଜ୍ ଦି ବେଷ୍ଟ ପଲିସି' ଅର୍ଥାତ୍ 'ଅଣ ସଚ୍ଚୋଟ ପଣିଆ ହିଁ ପ୍ରକୃଷ୍ଟ ନୀତି' ଓ ଏହି ନୀତି ଚୀନ ପାଇଁ ଠିକ୍ ଭାବେ ପ୍ରଯୁଜ୍ୟ । ପରନ୍ତୁ ଅବଶେଷରେ ପ୍ରଗତିର ମହାଦୌଡ଼ରେ ଭାରତ ତା'ର ଜିତାପଟ ନିଶ୍ଚୟ ହାସଲ କରିବ, କାରଣ ଭାରତୀୟମାନେ ଚୀନୀୟ ମାନଙ୍କଠାରୁ ଅଧିକ ଧୈର୍ଯ୍ୟଶୀଳ, କଷ୍ଟସହିଷ୍ଣୁ, ଅଭିଜ୍ଞତା ସମ୍ପନ୍ନ, ରୁଚିଶୀଳ ପରମ ପୁରୁଷ ଓ ସଫଳତାର ଚାବିକାଠି ଥରେ ତାଙ୍କ ହାତମୁଠାକୁ ଆସିଗଲେ ସେମାନେ ନଛୋଡ଼ ବନ୍ଧା ହୋଇ ସେଥିରେ ଜୋକ ପରି ଲାଗି ରହିବେ । ସମସ୍ୟାକୁ ନିଜ ଆଡ଼କୁ ଆଉଜେଇ ନେଇ ତା'ର ଗଭୀର ଅଧ୍ୟୟନ କରି ତହିଁରୁ ଶିକ୍ଷାଲାଭ କରିବା ଭାରତୀୟମାନଙ୍କର ଏକ ଦୁର୍ମୂଲ୍ୟ ଗୁଣ ଯାହା ତାଙ୍କୁ ସର୍ବଶେଷରେ ସଫଳତାର ଜୟମାଲ୍ୟ ପ୍ରଦାନ କରିବ । ସମସ୍ୟାର ଜଠରରୁ ଅଗ୍ନିତପ୍ତ ହୋଇ ମୁକୁଳି ଆସିବାର ଦୈବିକ ଗୁଣ ଭାରତୀୟମାନଙ୍କ ପାଖରେ ଅଛି, ଯାହା ତାଙ୍କୁ ଏକ ବିଶ୍ୱ ଅର୍ଥନୈତିକ ମହାଶକ୍ତି ଭାବେ ଦିନେ ନା ଦିନେ ପ୍ରକଟିତ କରିବ ।

ବେଜିଂ ତା' ବିରୁଦ୍ଧରେ ଚାଲିଥିବା ଦୀର୍ଘ ପଚାଶ ବର୍ଷର ଅପପ୍ରଚାର ଯାହାକି ଅଣବଜାରଧର୍ମୀ ଓ ଅଣଲାଭଦାୟକ ଭିତ୍ତିଭୂମି ଉପରେ ପର୍ଯ୍ୟବେଶିତ ଥିଲା, ତାକୁ ସମ୍ପୂର୍ଣ୍ଣ ବିପରୀତ ଦିଗରେ ପରିଚାଳିତ କରି ନୂତନ ବିକାଶଧର୍ମୀ ମୋଡ଼ ଓ ଦିଗ ଦର୍ଶନ ଦେବାରେ ସକ୍ଷମ ହୋଇପାରିଲା; ପରନ୍ତୁ ଭାରତବର୍ଷ ସମୟର ସୁଦୀର୍ଘ ଚାଦରକୁ ନିଜ ଉପରେ ଆପାଦ ମସ୍ତକ ଘୋଡ଼େଇ ହୋଇ ଘୁଙ୍ଗୁଡ଼ି ମାରି ନିଶ୍ଚିନ୍ତରେ ଶୋଇପଡ଼ିଛି । ଭାରତ ଆଜି ଚୀନର ଡେଙ୍ଗ ଝିଆଓପିଙ୍ଗ ପରି ଏକ ଦୁର୍ବାର ମହାକାଳ ନେତୃତ୍ୱ ଆଶା କରୁଛି ଯେ କି ଶତ ସହସ୍ର କଣ୍ଠରେ ନିଘୋଷିତ କରିବ ଯେ -'To be rich is Glorious' ଅର୍ଥାତ୍ 'ଧନୀ ହେବା ଏକ ପରମ ସୌଭାଗ୍ୟର ଘଟଣା', ତା'ହେଲେ ଯାଇ ଭାରତ ଅର୍ଥନୈତିକ ସଂସ୍କାର ବ୍ୟବସ୍ଥାକୁ ଅତ୍ୟନ୍ତ ଗୁରୁତର ସହ ବିବେଚନା କରିବ ଓ ତଦନୁଯାୟୀ ପ୍ରଗତିଧର୍ମୀ କାର୍ଯ୍ୟକ୍ରମମାନ ହାତକୁ ନେଇ ରାଷ୍ଟ୍ରୀୟ ଅଭିବୃଦ୍ଧିର ନାଡ଼ିକୁ ଠିକ୍ ଭାବେ ଚିହ୍ନି ଉପଯୁକ୍ତ ଉପଚାର ମଧ୍ୟ କରିପାରିବ । ଏହା ସଫଳ ହେଲେ ଭାରତ ପିଠିରେ ବସିଥିବା ଦାରିଦ୍ର୍ୟର କୀର୍ତ୍ତିମାନ ମୋହର ଧୀରେ ଧୀରେ ଲିଭିବାକୁ ଲାଗିବ ଓ ଯଥାର୍ଥରେ ଏକବିଂଶ ଶତାବ୍ଦୀ ଭାରତର ଶତାବ୍ଦୀ ହୋଇପାରିବ ।

ସମାଜ

ତା- ୧୩.୫.୨୦୦୨



# ଚୀନ ବିକାଶଶୀଳ ରାଷ୍ଟ୍ରମାନଙ୍କ ଅଜାତଶତ୍ରୁ ହୋଇ ରହିବ !

୨୦୦୧ ମସିହା ଡିସେମ୍ବର ମାସ ୧୧ ତାରିଖ ଦିନ ବିଶ୍ୱ ବାଣିଜ୍ୟ ସଂଗଠନକୁ ବିଧିବଦ୍ଧ ଭାବେ ଚୀନର ପ୍ରବେଶ ଘଟଣାଟି ବିଶ୍ୱ ଅର୍ଥନୀତି ଜଗତରେ ଯେଉଁ ମହାଭୂକମ୍ପନ ସୃଷ୍ଟି କରିଥିଲା, ତା' ପୂର୍ବରୁ କେବେବି ୧୪୨ଟି ସଦସ୍ୟ ରାଷ୍ଟ୍ରଙ୍କ ମଧ୍ୟରୁ କୌଣସି ଗୋଟିଏ ହେଲେ ବି ରାଷ୍ଟ୍ର ଏପରି ହଲଚ଼ଲ ସୃଷ୍ଟି କରିବାରେ ସକ୍ଷମ ହୋଇପାରି ନ ଥିଲେ । ଚୀନର ଉଚ୍ଚତର ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ଓ ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣର ଅମୁହାଁ ସୁଅ ପରିପ୍ରେକ୍ଷୀରେ ଏହା ସୁନିଶ୍ଚିତ, ସ୍ୱତସିଦ୍ଧ ଓ ବିଧି ନିର୍ଦ୍ଦିଷ୍ଟ ଥିଲା । ଏସବୁ ସତ୍ତ୍ୱେ ମଧ ବିଶ୍ୱର ସପ୍ତମ ବୃହତ୍ତମ ରପ୍ତାନିକାରୀ ଏବଂ ଅଷ୍ଟମ ବୃହତ୍ତମ ଆମଦାନୀକାରୀ ରାଷ୍ଟ୍ର ପଟ୍ଟଭୂମିରେ ଚୀନ ଆହୁରି ଆଶ୍ଚର୍ଯ୍ୟଜନକ ଚମତ୍କାରୀତା ଦେଖେଇବା କଥା ନୁହେଁ କି ?

ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନର ପ୍ରବେଶକୁ ନେଇ ଭାରତ ସମସ୍ତ ଘଟଣାକ୍ରମକୁ ଅତି ନିକଟରୁ ଏବଂ ଅତ୍ୟନ୍ତ ସାବଧାନ ଓ ଚତୁରତାର ସହ ପର୍ଯ୍ୟବେକ୍ଷଣ କରୁଛି । ଏହାର କାରଣ କେବଳ ନୁହେଁ ଯେ ଭାରତୀୟ ବଜାରରେ ଚୀନର ସାମଗ୍ରୀଗୁଡ଼ିକ ଅତ୍ୟନ୍ତ ଶସ୍ତା ଦରରେ ଛାଇ ହୋଇଗଲାଣି, ପରନ୍ତୁ ଏହାର ପ୍ରଭାବରେ ଭାରତ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ରମାନଙ୍କ ମଧ୍ୟରେ ଅର୍ଜନ କରିଥିବା ବୃହତ୍ତମ ବଜାରର ମାନ୍ୟତା ଜନିତ ସୁନାମ ନିଶ୍ଚିତ ରୂପେ ହରେଇ ବସିବ । ବହୁ ପର୍ଯ୍ୟାୟ ବାଣିଜ୍ୟିକ ବ୍ୟବସ୍ଥାରେ ଏହି କଷ୍ଟଲବ୍ଧ ସୁନାମ ହିଁ ଭାରତକୁ ଏକ ଅତ୍ୟନ୍ତ ଶକ୍ତିଶାଳୀ ମୂଳଚ଼ାଲ ଆସନରେ ଅଧିଷ୍ଠିତ କରାଇ ପାରିଥା'ନ୍ତା । ପରିସ୍ଥିତି ଆଜି ଏପରି ହୋଇଛି ଯେ ଭାରତର ଦୃଷ୍ଟିକୋଣକୁ ବିଶ୍ୱ ବାଣିଜ୍ୟ ସଂଗଠନରେ ସଠିକ୍ ଢଙ୍ଗରେ ପରିବେଷଣ କରିବାକୁ ହେଲେ ଭାରତକୁ ଆଉ ଟିକେ ଅଧିକ ଯୋର୍‌ରେ ପାଟିତୁଣ୍ଡ କରିବାକୁ ପଡ଼ିବ, ନଚ଼େତ୍ ଏହା ସଦସ୍ୟ ରାଷ୍ଟ୍ରମାନଙ୍କର କର୍ଣ୍ଣଗୋଚ଼ର ହେବା ଦୁରୂହ ବ୍ୟାପାର ହୋଇ ପଡ଼ିବ ।

ଅଧିକ ବାଚ଼ନିକ ହେବା ବ୍ୟତିରେକ ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନର ଯୋଗଦାନ ବିକାଶଶୀଳ ରାଷ୍ଟ୍ରମାନଙ୍କ ସର୍ବାଙ୍ଗୀନ ଉନ୍ନତି କଳ୍ପେ ଆଶାର କିରଣ ଉଜ୍ଜିବୀତ କରାଇ ପାରିବ କି ? ସର୍ବଦିଗବ୍ୟାପ୍ତ ବାଣିଜ୍ୟିକ ମୁଦ୍ଧାଗୁଡ଼ିକ କ୍ଷେତ୍ରରେ ସମସ୍ତ ବିକାଶଶୀଳ ରାଷ୍ଟ୍ରମାନଙ୍କୁ ଏକ ରଜ୍ଜୁରେ ଆବଦ୍ଧ କରି ଯଥାଯଥ ବିଚ଼ାର ବିମର୍ଷ ମାଧମରେ ଏକ ସର୍ବସମ୍ମତ ଗ୍ରହଣଯୋଗ୍ୟ ଉପସଂହାରରେ ଉପନୀତ ହେବା ପାଇଁ ଭାରତ ସରକାର ଦୀର୍ଘକାଳରୁ ନିଜର ପ୍ରଚ଼େଷ୍ଟା ଜାରୀ ରଖିଥିଲେ ମଧ ସଫଳତାର ମୁଖ ଦର୍ଶନ କରିବା ଏପର୍ଯ୍ୟନ୍ତ ସମ୍ଭବ ହୋଇପାରିନାହିଁ । ଭାରତର ଏହି ପ୍ରଚ଼େଷ୍ଟାରେ ଚୀନ ଏବେ ହାତ ମିଳେଇଲେ ହୁଏତ ବିକାଶଶୀଳ ରାଷ୍ଟ୍ରମାନଙ୍କ ହାତରେ ସଫଳତାର ମିଠା ଫଳ ଅଜାଡ଼ି ହୋଇ ପଡ଼ିବ ।

ବ୍ୟାପାର ବିଶେଷଜ୍ଞମାନେ ଏ ନେଇ ସନ୍ଦିହାନ ଥିଲା ଭଳି ମନେହୁଏ । କେତେକ କୁହନ୍ତି ଯେ ଭାରତ ଓ ଚୀନ ମଧରେ ଅନେକ କ୍ଷେତ୍ରରେ ସାମଞ୍ଜସ୍ୟ ରହିଛି । ବିଶ୍ୱ ବାଣିଜ୍ୟ ସଂଗଠନର ଭୂତପୂର୍ବ ଉପ ମହାନିର୍ଦ୍ଦେଶକ ଏବଂ ସଂପ୍ରତି ଇଣ୍ଡିଆନ କାଉନସିଲ୍ ଫର୍ ରିସର୍ଚ୍ଚ ଅନ୍ ଇଣ୍ଟରନ୍ୟାସନାଲ୍ ଇକୋନୋମିକ ରିଲେସନ୍ସର ପ୍ରଫେସର ଅନଓ୍ୱରଉଲ ହୋଦା କୁହନ୍ତି ଯେ ଭାରତ ଓ ଚୀନର ପ୍ରୋଫାଇଲ ଯଦିଓ ଗୁଣାତ୍ମକ ଦୃଷ୍ଟିକୋଣରୁ ଭିନ୍ନ, ହେଲେ ସୂଚ଼ୀପତ୍ରରେ ସେପରି କୌଣସି ତାରତମ୍ୟ ଥିବାପରି ପ୍ରତୀୟମାନ ହୁଏ ନାହିଁ । ଉଭୟ ଦେଶ ଶ୍ରମଭିତ୍ତିକ ଅର୍ଥନୀତି ଉପରେ ଦଣ୍ଡାୟମାନ । ଉଭୟ ଦେଶ ଟେକ୍ସଟାଇଲର ବିପୁଳ ରପ୍ତାନିକାରୀ ଏବଂ ପ୍ରଯୁକ୍ତି ବିଦ୍ୟାର ରପ୍ତାନି କ୍ଷେତ୍ରରେ ଭାରତର ଭାଗିଦାରୀ ଅତ୍ୟନ୍ତ ସ୍ୱଳ୍ପ ଏବଂ ଏପରିକି ଭାରତ ପରି ଚୀନ ମଧ ବିଶ୍ୱ ବାଣିଜ୍ୟ ସଂଗଠନରେ ଏକ ବିକାଶଶୀଳ ରାଷ୍ଟ୍ରବୋଲି ତା' ପିଠିରେ ମୋହର ଲାଗି ଯାଇଛି ।

କିନ୍ତୁ ଏଇଠି ହିଁ ଚୀନ ଓ ଭାରତ ମଧରେ ଥିବା ସାମଞ୍ଜସ୍ୟ କ୍ଷେତ୍ରରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ପ୍ରକୃତପକ୍ଷେ ଚୀନର ଆଭିଜାତ୍ୟ ଏକ ସ୍ପଷ୍ଟ ସଂଜ୍ଞାର ଚଉହଦୀ ମଧରେ ଆବଦ୍ଧ ହୋଇ ରହିପାରୁନାହିଁ । ବିଶ୍ୱ ବାଣିଜ୍ୟ ସଂଗଠନରୁ ଲାଭ କରିଥିବା ମୂଲଚ଼ାଲ ଚୀନକୁ ଏକ ବିକାଶଶୀଳ ଓ ବିକଶିତ ବିଶ୍ୱ ମଧରେ ଆଣି ଠିଆ କରାଇ ଦେଇଛି । ଏହା ବ୍ୟତିରେକ ବହୁବିଧ ପ୍ରମୁଖ ମୁଦ୍ଦାଗୁଡ଼ିକ କ୍ଷେତ୍ରରେ ଚୀନର ନେଗୋସିଏଟିଂ କଳା ଚାତୁର୍ଯ୍ୟ ମଧ ଏତେ ସ୍ପଷ୍ଟ ନୁହେଁ । ଯଦି ତାହା ହୁଏ, ତେବେ ଭାରତ ଅତି କମ୍‌ରେ ଆଂଶିକ ସହଯୋଗ ନିଶ୍ଚୟ କାମନା କରିବା ଉଚ଼ିତ । ନିରପେକ୍ଷ

ଏବଂ ବିକାଶଶୀଳ ରାଷ୍ଟ୍ରମାନଙ୍କ ପାଇଁ ଗବେଷଣା ଓ ସୂଚନା ବ୍ୟବସ୍ଥାର ପ୍ରଫେସର ଶ୍ରୀ ବିଶ୍ୱଜିତ ଧର କୁହନ୍ତି ଯେ - 'ପୁଞ୍ଜି ଲଗାଣ, ପ୍ରତିଯୋଗିତା ପଲିସି ଓ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ମୁଦ୍ଦାଗୁଡ଼ିକ ଉପରେ ଏଇ ସନ୍ଧିକ୍ଷଣରେ ଆମେ ଆଦୌ କହିପାରିବାନି ଯେ ଚୀନ ପ୍ରକୃତରେ କେଉଁ ମୂଳଚାଲ ଦୃଷ୍ଟିକୋଣକୁ ଆପଣେଇ ନେବ ବୋଲି ।'

ଘଟଣାଚକ୍ରର ଆବର୍ତ୍ତନରୁ ଏହା ସ୍ପଷ୍ଟ ପ୍ରତୀୟମାନ ହେଉଛି ଯେ ଯେଉଁ ମୁଦ୍ଦାଗୁଡ଼ିକ ଉପରେ ବିଶ୍ୱର ବୃହତ୍ତମ ଜନବହୁଳ ରାଷ୍ଟ୍ର ଚୀନ ଓ ଭାରତ ଏକାଭଳି ଆଭିମୁଖ୍ୟ ଗ୍ରହଣ କରିପାରିବେ, ସେଗୁଡ଼ିକର ସଂଖ୍ୟା ଏକାଭଳି ଆଭିମୁଖ୍ୟ ଗ୍ରହଣ ନ କରି ପାରିବାର ସଂଖ୍ୟାଠାରୁ ଢେର କମ୍ । ଭାରତୀୟ ଶିଳ୍ପମହାସଂଘର ନୀତି ନିର୍ଦ୍ଧାରଣ ସଂକ୍ରାନ୍ତୀୟ ବରିଷ୍ଠ ଉପଦେଷ୍ଟା ଶ୍ରୀ ଟି.କେ.ଭୌମିକ କୁହନ୍ତି ଯେ ଚୀନର ଅଙ୍ଗୀକାରବଦ୍ଧତାକୁ ଅବଲୋକନ କଲେ ଆପଣ ନିଶ୍ଚିତ ରୂପେ ହୃଦୟଙ୍ଗମ କରିବେ ଯେ ବିଶ୍ୱ ବାଣିଜ୍ୟ ସଂଗଠନର ବହୁ ସଦସ୍ୟ ରାଷ୍ଟ୍ର ଏପରି ଅଙ୍ଗୀକାରବଦ୍ଧତାର ଧାର ଧାରି ନ ଥା'ନ୍ତି । ଏହି ପୃଷ୍ଠଭୂମିରେ ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କ ଦ୍ୱାରା ଯେତେଶୀଘ୍ର ସମ୍ଭବ ଉଦାରୀକରଣ ପ୍ରକ୍ରିୟା ପ୍ରଚଳିତ ହେଉ - ଏହା ସତରେ ହିଁ ଚୀନ ଚାହେଁ । ଅପର ପକ୍ଷରେ ଭାରତ କେବେ କେଉଁଠି ଅଙ୍ଗୀକାରବଦ୍ଧତା ପ୍ରଦାନ କରିଥିବାର ନଜିର ନାହିଁ । ତେଣୁ ଆମେ ଆମର ଭବିଷ୍ୟତ ମୂଳଚାଲ କରିବାର କଳାରେ ଅତି ସତର୍କତା ଅବଲମ୍ବନ କରିବାକୁ ପଡ଼ିବ ।

ଆର୍ଥିକ ସେବା ଓ କୃଷି - ଏହି ଦୁଇଟିକୁ ଜ୍ୱଳନ୍ତ ଦୃଷ୍ଟାନ୍ତ ଭାବେ ନିଆଯାଇପାରେ । ଏହି ଦୁଇଟି କ୍ଷେତ୍ରରେ ଚୀନର ଦ୍ରୁତ ଅର୍ଥନୈତିକ ସଂସ୍କାର ପ୍ରତି ଥିବା ଅଙ୍ଗୀକାରବଦ୍ଧତା କେନ୍ଦ୍ରୀଭୂତ ହୋଇଥିବାର ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ । ବିଶ୍ୱ ବାଣିଜ୍ୟ ସଂଗଠନରେ ପ୍ରବେଶ ପୂର୍ବରୁ ବୀମା କ୍ଷେତ୍ରରେ ଚୀନ ଏତେ ପ୍ରଶସ୍ତ ଓ ଖୋଲା ନୀତିନିୟମର ସଡ଼କ ଦେଇ ଚାଲୁ ନ ଥିଲା । ଏହା ଥରକେ ଚାରୋଟି କିମ୍ବା ପାଞ୍ଚୋଟି ଲାଇସେନ୍ସ ପ୍ରଦାନ କରୁଥିଲା । ପରନ୍ତୁ ଡିସେମ୍ବର ୧୧ରେ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ରହେବାର ମୋହର ଲାଗିଗଲା ପରେ ଚୀନ 'ନ୍ୟୁୟର୍କ ଲାଇଫ୍'କୁ ଏକ ଲାଇସେନ୍ସ ପ୍ରଦାନ କଲା ଏବଂ ଘୋଷଣା କଲା ଯେ ବୀମା କ୍ଷେତ୍ର ଏରିକି ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାର ଅନ୍ତର୍ଭୁକ୍ତ ହୋଇ ମୁକୁଳା ପଣିଆକୁ ଆଦରି ନେଲା ।

ପରବର୍ତ୍ତୀ ପର୍ଯ୍ୟାୟରେ ବ୍ୟାଙ୍କିଙ୍ଗ ସେକ୍ଟର ସଂସ୍କାର ପ୍ରକ୍ରିୟାର ଲମ୍ବା ଧାଡ଼ିରେ ଠିଆ ହୋଇଛି, ଯେଉଁଠିକି ବିଦେଶୀ ଖେଳାଳୀମାନଙ୍କ ପ୍ରତିଯୋଗିତା ସୀମାବଦ୍ଧତାର ସମସ୍ତ ପାଚେରୀକୁ ଭାଙ୍ଗି ଚୂରମାର କରିଦେବ । ତା' ପଛକୁ ପାଇକାରୀ ଓ ଖୁଚୁରା ବେପାର ବାଣିଜ୍ୟ ଧାଡ଼ିରେ ଖୁଣ୍ଟି ପୋତି ଛିଡ଼ା ହୋଇଛି ।

ଅପର ପକ୍ଷରେ ଭାରତ ଏ ବର୍ଷ ବିଦେଶୀ ବ୍ୟାଙ୍କମାନଙ୍କର କେବଳ ମାତ୍ର ୧୨ଟି ଶାଖା ଖୋଲିବାକୁ ରାଜି ହୋଇଛି, ଯଦିଓ ଗତ ୨ ବର୍ଷରେ ଭାରତ ଏହି ଲକ୍ଷ୍ୟ ଅତିକ୍ରମ କରି ୧୬ଟି କିମ୍ବା ୧୭ଟି ବିଦେଶୀ ବ୍ୟାଙ୍କ ଖୋଲିବାକୁ ଲାଇସେନ୍ସ ଜାରୀ କରିସାରିଛି । ଅନ୍ୟାନ୍ୟ ସେବାକ୍ଷେତ୍ରମାନଙ୍କରେ ଭାରତ ସୀମିତ କାର୍ଯ୍ୟକ୍ରମ ପ୍ରତି ନଜର ହିଁ ଭରିଛି, ଯଦିଓ ବୃତ୍ତିଦାରୀମାନଙ୍କ ମୁକ୍ତ ଆଦାନପ୍ରଦାନ ପ୍ରକ୍ରିୟାକୁ ଆଗକୁ ଠେଲିନେଇ ଭାରତ ତା'ର କୋହଳ ମନୋଭାବକୁ ସ୍ପଷ୍ଟ ଜାହିର କରିଛି ।

ସେହିପରି କୃଷି କ୍ଷେତ୍ରରେ ଚୀନ ମୂଲ୍ୟରାଶିରେ ହ୍ରାସ ଘଟାଇ ୨୦୦୫ ମସିହା ସୁଦ୍ଧା ତାହା ୬ ପ୍ରତିଶତରୁ ୨୦ ପ୍ରତିଶତ ମଧ୍ୟରେ ରଖିବାକୁ କାର୍ଯ୍ୟକ୍ରମ ହାତକୁ ନେଇଛି । ଏହାଛଡ଼ା ଚୀନ ରପ୍ତାନି ସବ୍‌ସିଡ଼ି ଏବଂ ତା'ର କୃଷକମାନଙ୍କୁ ଦେଉଥିବା ସହଯୋଗାତ୍ମକ ଆର୍ଥିକ ଅନୁଦାନରେ ହ୍ରାସ ଘଟାଇବା ପାଇଁ ମଧ୍ୟ ରାଜି ହୋଇଛି । ଜେନେଭାରେ ଥିବା ବିଶ୍ୱ ବାଣିଜ୍ୟ ସଂଗଠନର ସଚିବାଳୟକୁ ଚୀନ ତା'ର ସମସ୍ତ ସେକ୍ଟରମାନଙ୍କରେ ପ୍ରଦାନ କରୁଥିବା ସବ୍‌ସିଡ଼ିର ଏକ ତାଲିକା ପ୍ରଦାନ କରିଛି । ଏହି ତାଲିକା ଭାରତୀୟ ନୀତି ନିର୍ଦ୍ଧାରକମାନଙ୍କ ଭାବନା ରାଜ୍ୟରେ ଝଡ଼ ସୃଷ୍ଟି କରିବା ପାଇଁ ଯଥେଷ୍ଟ ଖୋରାକ ପ୍ରଦାନ କରି ପାରିଛି । ଏହି ଯେ ଭାରତ ଓ ଚୀନ ସମ୍ମିଶ୍ରିତ ଭାବେ ରପ୍ତାନି ସବସିଡ଼ିର ଉଚ୍ଛେଦ ଓ ଅନ୍ତର୍ଦ୍ଦେଶୀୟ ସହଯୋଗରେ ହ୍ରାସ ଘଟେଇବା ପାଇଁ ୟୁରୋପିଆନ ୟୁନିଅନ ସହ ନେଗୋସିଏସନ କରିପାରିବେ ।

କିନ୍ତୁ ଶ୍ରୀ ଭୌମିକ କୁହନ୍ତି ଯେ ଭାରତର ନେଗୋସିଏଟିଂ କଳା ଚାତୁର୍ଯ୍ୟ ଅତ୍ୟନ୍ତ ଦୁର୍ବଳ, କାରଣ ବହୁ କୃଷିଜାତ ଦ୍ରବ୍ୟପାଇଁ ଦରଦାମ ନିର୍ଣ୍ଣୟ କରିବାରେ ଏହା ଉଚ୍ଚତର ସୋପାନକୁ ହିଁ ବରଣ କରିଛି । ଯଦି ଭାରତ ଚୀନ ସହ ଅଣ୍ଟାରେ ଅଣ୍ଟା ଭିଡ଼ି ଏକ ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ ୟୁରୋପୀୟ ୟୁନିଅନ ସବସିଡ଼ି ଉପରେ ସମ-ଦୃଷ୍ଟିକୋଣ ପୋଷଣ କରିବାକୁ ଚାହୁଁଥାଏ, ତେବେ ଭାରତଙ୍କୁ ପ୍ରଥମେ ପ୍ରତିବନ୍ଧକ କୃଷିଜାତ ଦ୍ରବ୍ୟଗୁଡ଼ିକର ଆମଦାନୀ ଉପରୁ ମୂଲ୍ୟହ୍ରାସ କରାଇବାକୁ ପଡ଼ିବ ।

ଭାରତ ପାଇଁ ଆଜି ସବୁଠାରୁ ବଡ଼ ଆଭିମୁଖ୍ୟ ହେଲା, ତା'ର ଶିଳ୍ପଜାତ ଦ୍ରବ୍ୟଗୁଡ଼ିକ ପାଇଁ ଉପଯୁକ୍ତ ବଜାରର ଉପଲବ୍‌ଧତା । ଚୀନ ତା'ର ଶିଳ୍ପଜାତ ଦ୍ରବ୍ୟଗୁଡ଼ିକ କ୍ଷେତ୍ରରେ ମାତ୍ରାଧିକ ଓ ତୀକ୍ଷ୍ଣ ମୂଲ୍ୟହ୍ରାସ କରାଇ ବଜାରର ନାଡ଼ିକୁ ନିଜ ଅକ୍ତିଆରକୁ ନେଇ ଆସିବାରେ ସକ୍ଷମ ହୋଇ ପାରିଲା ଓ ଏହା କରାଇବାରେ ଚୀନର ଦୃଢ଼ ପ୍ରତିଜ୍ଞତା ମଧ୍ୟ ସ୍ପଷ୍ଟଭାବେ ପ୍ରତିପାଦିତ ହୋଇପାରିଲା । ଅପର ପକ୍ଷରେ ଭାରତରୁ ଉତ୍ପାଦିତ ହେଉଥିବା ଶିଳ୍ପଜାତ ସାମଗ୍ରୀଗୁଡ଼ିକର ଦର ଏସୀୟ ରାଷ୍ଟ୍ରମାନଙ୍କର ହାରହାରି ଦରଠାରୁ ଏବେବି ଅଧିକ ଅଟେ । ଯାହାକିଛି ହେଲେ ବି ଚୀନ ତା'ର ବିଶାଳ ରପ୍ତାନି ଭିତ୍ତିକ ଶିଳ୍ପର ଉତ୍ତରୋତ୍ତର ଅଭିବୃଦ୍ଧି ପାଇଁ ତଥା ତା'ର ଶିଳ୍ପଜାତ ସାମଗ୍ରୀଗୁଡ଼ିକର ବିସ୍ତାରିତ ବଜାରକୁ ନିଜର ସମ୍ପୂର୍ଣ୍ଣ ନିୟନ୍ତ୍ରଣାଧିନ କରିବା ପାଇଁ ବିକଶିତ ରାଷ୍ଟ୍ରମାନଙ୍କର ପଟକୁ ଆଉଜେଇ ହୋଇ ପଡ଼ିବାକୁ ଅଧିକ ପସନ୍ଦ କରିବ ।

ଯଦି କୃଷି, ସେବା କ୍ଷେତ୍ର ତଥା ମୁକ୍ତ ବଜାରରେ ପ୍ରବେଶ ଅଧିକାର ପରି ବିଷୟବସ୍ତୁଗୁଡ଼ିକ ନେଗୋସିଏଟିଂ କ୍ରିୟାକଳାପରେ ସ୍ପଷ୍ଟ ତଫାତ୍ ଜାହିର କରିପାରୁଛନ୍ତି, ଆରପଟରେ ପରିବେଶ ଏକ ବିପରୀତ ସ୍ଥିତିଆଣି ଆମ ସାମନାରେ ଠିଆ କରାଇ ଦେଉଛି; ଯାହାକି ପ୍ରଗତିର ଆଦୌ ଏକ ଶୁଭ ଲକ୍ଷଣ ନୁହେଁ । ଭାରତ ତା'ର ଯୁକ୍ତିରେ ଦୃଢ଼ ନିଶ୍ଚିତ ଯେ ପରିବେଶ ଜନିତ ମୁଦ୍ଦାଗୁଡ଼ିକ ବେପାର ବଣିଜ ସହ ଯୋଡ଼ାଯାଇ ପାରିବ ନାହିଁ । ଘଟଣା ପ୍ରବାହର ନିର୍ଯ୍ୟାସକୁ ବିଶ୍ଳେଷଣ କରି ପ୍ରଫେସର ଧର୍ କୁହନ୍ତି ଯେ ଚୀନ କ୍ଷେତ୍ରରେ କେହି ଛାତିରେ ହାତ ଦେଇ କହି ପାରିବେ ନାହିଁ ଯେ ସେମାନେ ପରିବେଶଧର୍ମୀ କାର୍ଯ୍ୟକଳାପକୁ ଗୋଟାପଣ ଆବୋରି ନେଇଛନ୍ତି ବୋଲି । ତେଣୁ କିଛିଟା ସହଯୋଗ ଆଶା କରିବା ଆଦୌ ନିରର୍ଥକ ନୁହେଁ ।

ତା'ହେଲେ ବିଦେଶୀ ପୁଞ୍ଜିଲଗାଣ କ୍ଷେତ୍ରରେ ଚୀନର ଦୃଷ୍ଟିଭଙ୍ଗୀ କ'ଣ ? ପୁନଶ୍ଚ ଏହା ଏପର୍ଯ୍ୟନ୍ତ ସ୍ପଷ୍ଟ ଶବ୍ଦରେ ମଧ୍ୟ ଉଚ୍ଚାରଣ କରାଯାଇନାହିଁ । ପରନ୍ତୁ ଗୋଟିଏ କାରଣ ବିଚାରକୁ ନିଆଯାଇପାରେ, ତାହା ହେଲା - ଆମେରିକା ସହିତ ଚୀନର ବାଣିଜ୍ୟିକ କାରବାର, ଆମେରିକା ସହିତ ଭାରତର ବାଣିଜ୍ୟିକ କାରବାରର ପ୍ରାୟ ଚାରି ଗୁଣ ବୃହତ୍ତର ଅଟେ । ଏହି ପରିସ୍ଥିତି ଚୀନର ସ୍ଥିତିକୁ ବିଦେଶୀ ପୁଞ୍ଜି ଲଗାଣ କ୍ଷେତ୍ରରେ ପ୍ରଭାବିତ କରିପାରେ । ଉପରନ୍ତୁ ଚୀନର କୃତଜ୍ଞତାଭାବ ନିକିତିର

କଣ୍ଟାକୁ ବିକଶିତ ଦେଶମାନଙ୍କ ଆଡ଼କୁ ଟିକେ ଅଧିକ ଢଳେଇ ଦେବାର ସମସ୍ତ ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ ।

ତା'ହେଲେ ଚୀନ ଓ ଭାରତ ମଧ୍ୟରେ ଥିବା ସମ-ସ୍ୱାର୍ଥଜନିତ ପଏଣ୍ଟ ଗୁଡ଼ିକ କ'ଣ ହୋଇପାରେ ? ଉତ୍ତରରେ କୁହାଯାଇପାରେ ଯେ ଶ୍ରମ ହେଉଛି ନିଶ୍ଚିତ ରୂପେ ସେଥିରୁ ଗୋଟିଏ । ଠିକ୍ ପରିବେଶ କ୍ଷେତ୍ରପରି ବ୍ୟାପାର ଓ ଶ୍ରମ ଭିତରେ ମଧ୍ୟ କୌଣସି ଯୋଗସୂତ୍ରକୁ ଭାରତ ଲଗାତର ଭାବେ ବିରୋଧ କରି ଆସିଛି । କେନ୍ଦ୍ର ସରକାରଙ୍କ ବାଣିଜ୍ୟ ମନ୍ତ୍ରଣାଳୟର ଆବାସସ୍ଥଳ ଉଦ୍ୟୋଗ ଭବନର କର୍ମକର୍ତ୍ତାଙ୍କ ଠାରୁ ଆରମ୍ଭ କରି ବ୍ୟାପାର ବିଶେଷଜ୍ଞମାନଙ୍କ ପର୍ଯ୍ୟନ୍ତ ସମସ୍ତେ ବିଶ୍ୱାସ କରନ୍ତି ଯେ ବିଶ୍ୱ ବାଣିଜ୍ୟ ସଂଗଠନରେ ଏହି ମୁଦ୍ଦା ଯେତେବେଳେ ପୂନର୍ବାର ଉତ୍ଥାପନ ହେବ, ସେତେବେଳେ ଚୀନ ତା'ର ନିଶ୍ଚିତ ରୂପେ ବିରୋଧ କରିବ । କାରଣ ଯେହେତୁ ଚୀନ ତା'ର ଅନ୍ତର୍ଦ୍ଦେଶୀୟ ସଂସ୍କାର ପ୍ରକ୍ରିୟାକୁ ପ୍ରଖରତର ବେଗରେ ଧାବିତ କରାଇବା ପାଇଁ ସର୍ବଦା ବ୍ୟଗ୍ର ।

ବ୍ୟାପାର ସଂକ୍ରାନ୍ତୀୟ ବୌଦ୍ଧିକ ସମ୍ପତ୍ତି ମାଲିକାନା ସ୍ୱତ୍ୱ (ଟ୍ରିପ୍ସ) ହେଉଛି ଆଉ ଏକ ପ୍ରକ୍ଷେତ୍ର, ଯେଉଁଠିକି ଭାରତ ଚୀନଠାରୁ କିଛି ସହଯୋଗ କାମନା କରିପାରେ । ପ୍ରଫେସର ଧର୍ କୁହନ୍ତି ଯେ 'ଭାରତ ପରି ଚୀନରେ ମଧ୍ୟ ଔଷଧପତ୍ରର ଦରଦାମ୍ ମାତ୍ରାଧିକ, ଯାହାକୁ ନେଇ ସେମାନେ ବହୁ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଭାରତ ଯଦି ଟ୍ରିପ୍ସରେ ପୁନର୍ବାର ପରିବର୍ତ୍ତନ ଚାହେଁ, ତେବେ ଚୀନ ଭାରତର ଉପଯୋଗୀ ବନ୍ଧୁ ଭାବେ ସାବ୍ୟସ୍ତ ହୋଇପାରେ ।' 'ଆଣ୍ଟି ଡମ୍ପିଂ' କ୍ଷେତ୍ରରେ ମଧ୍ୟ ଠିକ୍ ସେହିପରି ଅବସ୍ଥା, ଯାହାକୁ ନେଇ ଉଭୟ ଚୀନ ଓ ଭାରତ ପ୍ରପୀଡ଼ିତ, ଯଦିଓ ଭାରତ ଏହି ଅସ୍ତ୍ରକୁ ଚୀନୀୟ ଆମଦାନୀ ବିରୁଦ୍ଧରେ ବାରମ୍ବାର ପ୍ରୟୋଗ କରି ଆସିଛି ।

ସର୍ବୋପରି ଏତିକି କୁହାଯାଇପାରେ ଯେ - ଚୀନ ଠାରୁ ଭାରତ ଏକ ସମ୍ପୂର୍ଣ୍ଣ ସହୃଦୟ ମନୋଭାବ ଓ ସହଯୋଗିତା କାମନା କରିବା ଭାରତ ପାଇଁ ଏକ ସମ୍ପୂର୍ଣ୍ଣ ଅଦରକାରୀ ଓ ନିରର୍ଥକ ପ୍ରଚେଷ୍ଟା ହେବ । ବହୁମୁଖୀ ବାଣିଜ୍ୟିକ ବ୍ୟବସ୍ଥା ଏହା ପ୍ରମାଣ କରିଛି ଯେ - 'କୌଣସି ରାଷ୍ଟ୍ର ସ୍ଥାୟୀ ମିତ୍ର ରାଷ୍ଟ୍ର ବା ସ୍ଥାୟୀ ଶତ୍ରୁ ରାଷ୍ଟ୍ର ନୁହନ୍ତି, କେବଳ ସ୍ଥାୟୀ ସ୍ୱାର୍ଥ ହିଁ ସବୁର କେନ୍ଦ୍ରବିନ୍ଦୁ ।'

ଶ୍ରୀ ହୋଦା ଭବିଷ୍ୟବାଣୀ ଶୁଣେଇ କୁହନ୍ତି ଯେ 'ଚୀନ ପରି ଦେଶମାନେ ପୂର୍ବରୁ ସ୍ଥିରୀକୃତ କରାଯାଇଥିବା ସହଯୋଗାତ୍ମକ ବନ୍ଧନକୁ ମାନିନେଇ ପ୍ରଗତିର ସଡ଼କରେ ବାଟୋଇ ହେବେ ନାହିଁ । ସେମାନେ ଅତ୍ୟନ୍ତ ଧୂତ ଓ ଚାଲାଖ । କେବଳ ଏକ ସୌଜନ୍ୟମୂଳକ ବନ୍ଧୁତ୍ୱ କୌଣସି ପ୍ରାକୃତିକ ସମାଧାନର ପଥ ଉନ୍ମୋଚନ କରିପାରିବ ନାହିଁ, ପରନ୍ତୁ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଯୋଗସୂତ୍ର ଅଧିକ ସମ୍ଭବପର ବୋଲି ପ୍ରତୀୟମାନ ହୋଇଥାଏ' ଏବଂ ଏହି ରଣ କୌଶଳର ପରିପ୍ରୟୋଗ କରି ଚୀନ ପ୍ରଗତିର ମହାଦୌଡ଼ରେ ସାମିଲ ହୋଇଛି । ଅର୍ଥନୀତି ବିଶାରଦମାନେ କୁହନ୍ତି ଯେ ବିଶ୍ୱ ବାଣିଜ୍ୟ ସଂଗଠନରେ ସଦସ୍ୟ ରାଷ୍ଟ୍ର ହୋଇ ସାରିଲାପରେ ଚୀନ ବିଭିନ୍ନ ସଦସ୍ୟ ରାଷ୍ଟ୍ରମାନଙ୍କଠାରୁ ମୁଦ୍ରା ଭିତ୍ତିକ ସହଯୋଗ ଲାଭ କରିବା ପାଇଁ ଅଣ୍ଟାଭିଡ଼ି ଦେଇ ଲାଗି ପଡ଼ିଛି ଏବଂ ପ୍ରକାରାନ୍ତରେ 'ଟ୍ରିକ୍ସ ଅଫ ଦି ଟ୍ରେଡ୍' ଅର୍ଥାତ୍ ବାଣିଜ୍ୟିକ କ୍ରୀଡ଼ାର ଗୁମର କଥା ମଧ୍ୟ ଧୀରେ ଧୀରେ ଶିଖିଯାଉଛି । ବିଗତ କେଇମାସ ମଧ୍ୟରେ ଚୀନରୁ ବହୁ ବାଣିଜ୍ୟିକ ପ୍ରତିନିଧିଦଳ ଭାରତ ଭ୍ରମଣରେ ଆସିଥିଲେ ମଧ୍ୟ ଭାରତରୁ ଏକାଧିକ ପ୍ରତିନିଧି ଦଳ ଚୀନ ପରିଭ୍ରମଣରେ ଯାଇନାହାନ୍ତି ।

ପ୍ରଫେସର ଧର୍ ମତ ବ୍ୟକ୍ତକରି କୁହନ୍ତି ଯେ - ଭାରତ ମଧ୍ୟ ଚୀନ ଅନୁରୂପ ମୁଦ୍ରାଭିତ୍ତିକ ସହଯୋଗିତା କାମନା କରିବା ଉଚିତ । ଭାରତ ଚୀନ ସହିତ ଯେତେଦୂର ସମ୍ଭବ ଭିନ୍ନ ଭିନ୍ନ ସ୍ତରରେ ଅଧିକରୁ ଅଧିକ ସହଯୋଗୀର ପୋଲ ନିର୍ମାଣ କରିବା ଉଚିତ ଏବଂ ତଦନୁଯାୟୀ ଏକ କର୍ମଚଞ୍ଚଳ କାର୍ଯ୍ୟନିର୍ଘଣ୍ଟ ମାନି ଚାଲିବା ଉଚିତ । ଭାରତ କେତେ ପରିମାଣରେ ଚୀନ ଠାରୁ ତା'ର ସହଯୋଗାତ୍ମକ ସାହଚର୍ଯ୍ୟର ପ୍ରସାରିତ ହସ୍ତ ଲାଭ କରିପାରିବ, ତାହା ତା'ର ଆଶାର ମିନାରରେ ପରିସ୍ଫୁଟନ ହେବା ବାଞ୍ଛନୀୟ । ଯଦି ଭାରତ ଏଥିରେ ଆଂଶିକ ଭାବେ ବି ସଫଳକାମୀ ହୁଏ, ତେବେ ବି ତା'ର ସ୍ୱର ବିଶ୍ୱ ବାଣିଜ୍ୟ ସଂଗଠନରେ ଅଧିକ ଯୋର୍‌ରେ ନିନାଦିତ ହେବ ।

**ସମାଜ**
**ତା- ୧୫.୪.୨୦୦୨**



# ଜଗତୀକରଣର ମହାପର୍ବରେ ଚୀନର ଅର୍ଥନୈତିକ ଅଲୌକିକତା

ୟୁନାଇଟେଡ୍ ଷ୍ଟେଟ୍‌ସ ଇନଭେଷ୍ଟମେଣ୍ଟ ବ୍ୟାଙ୍କ୍ ଲେହମ୍ୟାନ ବ୍ରଦର୍ସ ନିକଟ ଅତୀତରେ ଭବିଷ୍ୟବାଣୀ ଶୁଣେଇ କହିଛନ୍ତି ଯେ ଚୀନର ଅର୍ଥନୀତି ଆଗାମୀ ୨୦ ବର୍ଷ ମଧ୍ୟରେ ବର୍ଷକୁ ଛଅ ପ୍ରତିଶତ ହାରରେ ବୃଦ୍ଧି ପାଇବ ଏବଂ ୨୦୩୦ ମସିହା ସୁଦ୍ଧା ଚୀନ ବିଶ୍ୱର ୨ୟ ବୃହତ୍ତମ ଅର୍ଥନୈତିକ ମହାଶକ୍ତି ରୂପେ ଜନ ମାନସରେ ଉଦ୍‌ଭାସିତ ହେବ । ଏସିଆ ମହାଦେଶ ପାଇଁ ଅବସ୍ଥାପିତ ଲେହମ୍ୟାନ ବ୍ରଦର୍ସର ବରିଷ୍ଠ ଅର୍ଥନୀତିଜ୍ଞ ରବର୍ଟ ସୁବ୍ରାମଣ ଏହି ଭବିଷ୍ୟତ ବାଣୀ କରି ବିଶ୍ୱ ଅର୍ଥନୈତିକ ଜଗତରେ ଭୂକମ୍ପନ ସୃଷ୍ଟି କରିଦେଇଛନ୍ତି । ଏକ ପ୍ରାଥମିକ ହିସାବରୁ ଜଣାଯାଇଛି ଯେ ଚୀନର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ ୨୦୦୧ ମସିହାରେ ୭.୩ ପ୍ରତିଶତକୁ ବୃଦ୍ଧି ଘଟିଥିବା ବେଳେ ସରକାର ୨୦୦୧ରୁ ୨୦୦୫ ମସିହା ମଧ୍ୟରେ ବାର୍ଷିକ ଅଭିବୃଦ୍ଧି ହାର ୭ ପ୍ରତିଶତ ପହଞ୍ଚିବ ବୋଲି ଭବିଷ୍ୟବାଣୀ କରିଛନ୍ତି । ପୁନଶ୍ଚ ସୁବ୍ରାମଣ କୁହନ୍ତି ଯେ ଚୀନ ତା'ର ରାଷ୍ଟ୍ରୀୟ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ମଧ୍ୟ ତଦନୁଯାୟୀ ଜୋରଦାର ଭାବେ ଚାଲୁରଖିବା ଉଚିତ । ପୁନଶ୍ଚ ଚୀନ ତା'ର ରୁଗ୍ଣ ରାଷ୍ଟ୍ରୀୟ ସଂସ୍ଥାଗୁଡ଼ିକୁ ସହଯୋଗର ହାତ ବଢ଼େଇ ଲାଭଦାୟକ ସଂସ୍ଥାରେ ପରିଣତ କରିବା, ସହରୀକରଣ ପ୍ରକ୍ରିୟାକୁ ସଫଳଭାବେ ପରିଚାଳନା କରିବା, ସାମାଜିକ ନିରାପତ୍ତାକୁ ସୁଦୃଢ଼ କରିବା, ଦୁର୍ବଳ ଅର୍ଥନୈତିକ ସେକ୍ଟରଗୁଡ଼ିକର ପୁନରୁତ୍ଥାନ ଆଦି ନାନାଦି କାର୍ଯ୍ୟକ୍ରମ ହାତକୁ ନେଇ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ମଧ୍ୟ ନୂତନ ଆଭିମୁଖ୍ୟ ପ୍ରଦାନ କରିବା ଉଚିତ । ଷ୍ଟ୍ରକ୍‌ଚରାଲ୍ ରିଫର୍ମ ବା ଗଠନ କୈନ୍ଦ୍ରିକ ସଂସ୍କାର ପ୍ରକ୍ରିୟାକୁ କାର୍ଯ୍ୟକାରୀ କରାଇବାରେ ଅସଫଳତା ବାର୍ଷିକ ଅର୍ଥନୈତିକ ଅଭିବୃଦ୍ଧିର ହାରକୁ ମନ୍ଥର କରି ଦେଇଥାଏ, ଯାହାକି ୪ ପ୍ରତିଶତର ତଳକୁ ବି ଖସିଆସିଥାଏ । ପୁନଶ୍ଚ ଲେହମ୍ୟାନ୍

ବ୍ରଦର୍ସ କୁହନ୍ତି ଯେ ୨୦୦୨ ଓ ୨୦୦୩ ମସିହାରେ ଚୀନର ବାର୍ଷିକ ଅର୍ଥନୈତିକ ଅଭିବୃଦ୍ଧି ହାର ୭ ପ୍ରତିଶତରେ ପହଞ୍ଚିବାକୁ ହେଲେ ଚୀନର ମନେଟାରୀ ଓ ଫିସ୍କାଲ୍ ପଲିସି ଅତ୍ୟନ୍ତ accommodative ହେବା ବାଞ୍ଛନୀୟ । ଏସିଆ ମହାଦେଶ ପାଇଁ ଲେହମ୍ୟାନ ବ୍ରଦର୍ସଙ୍କ ମୁଖ୍ୟ ଅର୍ଥନୀତିଜ୍ଞ ପଲ୍ ସିୟାର୍ଡ଼ କୁହନ୍ତି ଯେ ଚୀନର ବଳିଷ୍ଠ ଅର୍ଥନୈତିକ ଅଭିବୃଦ୍ଧି ଏସିଆ ମହାଦେଶର ଅନ୍ୟ ରାଷ୍ଟ୍ରମାନଙ୍କ ପାଇଁ ଏକ ମହାବିପଦର ଦୁର୍ଗ ସମ୍ମୁଖରେ ଆଣି ଠିଆ କରେଇ ଦେଇପାରେ, ଯଦ୍ୱାରା ବାଣିଜ୍ୟିକ ପଶାପାଲିର ସମସ୍ତ ଗୋଟି ଚୀନ କରାୟତ୍ତ କରିବା ସଙ୍ଗେ ସଙ୍ଗେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗକୁ ଗୋଟାପଣ ଟାଣିନେଇ ନିଜର ପ୍ରତିପତ୍ତି ଜାହିର କରିବ, ଯାହାକି ଅନ୍ୟ ଏସୀୟ ରାଷ୍ଟ୍ରମାନଙ୍କର ଶିଳ୍ପ ବିକାଶର ପଥକୁ ମଧ୍ୟ ସମ୍ପୂର୍ଣ୍ଣ ରୂପେ ରୁଦ୍ଧ କରିଦେବ । ସ୍ୱଳ୍ପମିଆଦି ପରିପ୍ରେକ୍ଷୀରେ ଚୀନର ଅଭିବୃଦ୍ଧି ଅନ୍ୟାନ୍ୟ ଏସୀୟ ରାଷ୍ଟ୍ରମାନଙ୍କ ପାଇଁ ଏକ ଚ୍ୟାଲେଞ୍ଜ ହୋଇ ଦଣ୍ଡାୟମାନ ହେବ ।

ପଲ୍ ସିୟାର୍ଡ଼ ପୁନଶ୍ଚ କୁହନ୍ତି ଯେ ଏଭଳି ପରିସ୍ଥିତିରେ ଚୀନ ବ୍ୟତିରେକ ଅନ୍ୟାନ୍ୟ ଏସୀୟ ରାଷ୍ଟ୍ରମାନେ ଜ୍ଞାନାଶ୍ରୟୀ ଶିଳ୍ପ ଓ ସେବାମୂଳକ ଶିଳ୍ପ କ୍ଷେତ୍ରରେ ନିଜ ନିଜର ପ୍ରାଧାନ୍ୟ ଜାହିର୍ କରିବା ଉଚିତ ଓ ଚୀନକୁ ସ୍ୱଳ୍ପ ମୂଲ୍ୟଯୁକ୍ତ ମ୍ୟାନୁଫ୍ୟାକ୍ଚରିଂ ଶିଳ୍ପ କ୍ଷେତ୍ରରେ ନିଜର ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ଛାଡ଼ିଦେବା ଉଚିତ, ଯଦ୍ୱାରା ଅନ୍ୟ ଏସୀୟ ରାଷ୍ଟ୍ରମାନେ ଚୀନ ଦ୍ୱାରା ସୃଷ୍ଟ ବାଣିଜ୍ୟିକ ବିପଦର ଉପଯୁକ୍ତ ମୁକାବିଲା କରିପାରିବେ ।

ଏହି ସତର୍କ ଘଣ୍ଟିରୁ ଆମକୁ ଏହି ଶିକ୍ଷା ମିଳୁଛି ଯେ ୧୯୭୮ ମସିହାରେ ଚୀନରେ ଶୁଭାରମ୍ଭ ହୋଇଥିବା ସଂସ୍କାର ପ୍ରକ୍ରିୟା ଚୀନର ଅର୍ଥନୀତିକୁ ଏକ ଉଚ୍ଚତର ସୋପାନକୁ ଉନ୍ନୀତ କରି ପାରିଛି । ପରନ୍ତୁ ମନରେ ସ୍ୱତଃପ୍ରବୃତ୍ତ ପ୍ରଶ୍ନ ଉଠେ ଯେ ଚୀନ ସଂସ୍କାର ପ୍ରକ୍ରିୟାକୁ ଆପଣେଇ ନେଲା ଦିନଠୁଁ ଏତେ ଭଲ ଫଳ ଦେଖେଇ ପାରିଲା କିପରି ? ଅଥଚ୍ ଭାରତ ପ୍ରଗତିର ସାତ ପଛରେ ପଡ଼ି ରହି ଯାହା ଖାଲି ରଡ଼ି ପରେ ରଡ଼ି ଛାଡୁଛି । ଚାଲନ୍ତୁ, ଏ ପ୍ରଶ୍ନର ଉତ୍ତର ଖୋଜିବା ଅର୍ଥନୀତିର ଅଳିନ୍ଦରୁ ।

ଆଜି ସୁଦ୍ଧା ଚୀନର ସର୍ବସାଧାରଣ ଏହି ସହମତିରେ ପହଞ୍ଚିଛନ୍ତି ଯେ ୧୯୭୮ ମସିହାରୁ ଯେତେବେଳେ କମ୍ୟୁନିଷ୍ଟ ପାର୍ଟି ଚେୟାରମ୍ୟାନ ଡେଙ୍ଗଙ୍କ ରାଜୁତି କାଳରେ ଚୀନରେ ଏହି ସଂସ୍କାର ପ୍ରକ୍ରିୟାର ପ୍ରଚଳନ କରାଗଲା, ସେହି କାଳରୁ ଚୀନର

ଅର୍ଥନୈତିକ ଫଳାଫଳ ଏକ ବିରାଟ ଅଲୌକିକତାର ପ୍ରଦର୍ଶନ କରି ଚାଲିଛି; ଯାହାକି ପୂର୍ବ ଏସୀୟ ରାଷ୍ଟ୍ର ଯଥା - ସିଙ୍ଗାପୁର, ହଂକଂ, ତାଇୱାନ୍ ଓ ଦକ୍ଷିଣ କୋରିଆର ଅର୍ଥନୈତିକ ଅଲୌକିକତାକୁ ମଧ୍ୟ ବଳି ପଡ଼ିଲାଣି । ୧୯୭୮ ରୁ ୧୯୯୮, ଏହି ୨୦ ବର୍ଷ ମଧ୍ୟରେ ଚୀନର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି) ହାରାହାରି ୧୦ ପ୍ରତିଶତକୁ ଛୁଇଁ ପାରିଥିଲା । ଦାରିଦ୍ର୍ୟ ଦୂରୀକରଣରେ ଜଗତୀକରଣର ପ୍ରଭାବ ଅତ୍ୟନ୍ତ ଅଭିନନ୍ଦନୀୟ । ବିଶ୍ୱ ପୃଷ୍ଠଭୂମିରେ ମୁଣ୍ଡପିଛା ଦିନକୁ ୧ ଡଲାରରୁ କମ୍ ରୋଜଗାର କରୁଥିବା ବ୍ୟକ୍ତି ଜଣକୁ ଆନ୍ତର୍ଜାତିକ ଦାରିଦ୍ର୍ୟର ସୀମାରେଖା ତଳେ ଅଛି ବୋଲି ସାଧାରଣତଃ ବିବେଚନା କରାଯାଇଥାଏ । ଏହି ମାନଦଣ୍ଡ ପରିପ୍ରେକ୍ଷୀରେ ୧୯୮୫ ମସିହାର କ୍ରୟ ଶକ୍ତି ସ୍ତରକୁ ବିଚାରକୁ ନେଲେ ଆମେ ଦେଖିବା ଯେ ଚୀନରେ ଗ୍ରାମୀଣ ଦରିଦ୍ର ଲୋକଙ୍କ ସଂଖ୍ୟା ୧୯୭୮ ମସିହାରେ ୬୦ ପ୍ରତିଶତ ଥିବା ବେଳେ ୧୯୯୯ ମସିହା ବେଳକୁ ତହିଁରେ ହ୍ରାସ ଘଟି ୧୧.୫ ପ୍ରତିଶତରେ ପହଞ୍ଚି ପାରିଥିଲା । ଦିନକୁ ମୁଣ୍ଡପିଛା ଶୂନ ଦଶମିକ ସାତ ଡଲାର ରୋଜଗାରକୁ ସରକାରୀ ସ୍ତରରେ ଚୀନର ଦାରିଦ୍ର୍ୟ ସୀମାରେଖା ବୋଲି ଧରାଯାଇଥାଏ । ଦାରିଦ୍ର୍ୟର ଏହି ଗଣିତକୁ ବିଚାରକୁ ନେଲେ ଚୀନରେ ୧୯୭୮ ମସିହାରେ ୩୩.୫ ପ୍ରତିଶତ ଗ୍ରାମୀଣ ଜନତା ଦାରିଦ୍ର୍ୟର ସୀମାରେଖା ତଳେ ଥିବାବେଳେ ୧୯୯୯ ମସିହା ବେଳକୁ ତହିଁରେ ହ୍ରାସ ଘଟି ୧୧.୫ ପ୍ରତିଶତରେ ପହଞ୍ଚି ପାରିଥିଲା । ଦିନକୁ ମୁଣ୍ଡପିଛା ଶୂନ ଦଶମିକ ସାତ ଡଲାର ରୋଜଗାରକୁ ସରକାରୀ ସ୍ତରରେ ଚୀନର ଦାରିଦ୍ର୍ୟ ସୀମାରେଖା ବୋଲି ଧରାଯାଇଥାଏ । ଦାରିଦ୍ର୍ୟର ଏହି ଗଣିତକୁ ବିଚାରକୁ ନେଲେ ଚୀନରେ ୧୯୭୮ ମସିହାରେ ୩୩.୫ ପ୍ରତିଶତ ଗ୍ରାମୀଣ ଜନତା ଦାରିଦ୍ର୍ୟର ସୀମାରେଖା ତଳେ ଥିବା ବେଳେ ୧୯୯୯ ମସିହା ବେଳକୁ ତହିଁରେ ହ୍ରାସ ଘଟି ୪.୬ ପ୍ରତିଶତରେ ପହଞ୍ଚି ପାରିଥିଲା । ପରନ୍ତୁ ରୁଷରେ ଏହାର ଠିକ୍ ବିପରୀତ ଚିତ୍ର ଆପଣଙ୍କ ଦୃଷ୍ଟିଗୋଚର ହେବ । ରୁଷର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି) ନବେ ଦଶକରେ ୪୪ ପ୍ରତିଶତ ସ୍ତରକୁ ଖସି ଆସିଥିଲା ବେଳେ ଦାରିଦ୍ର୍ୟ ୨ ପ୍ରତିଶତରୁ ୫୦ ପ୍ରତିଶତକୁ ବୃଦ୍ଧି ଘଟିଥିଲା । ମୋଟ ନିଯୁକ୍ତିରେ କୃଷି ଶ୍ରମିକମାନଙ୍କର ଭାଗିଦାରୀ ୧୯୭୮ ମସିହାରେ ୭୦ ପ୍ରତିଶତରୁ ଉର୍ଦ୍ଧ୍ୱ ଥିଲାବେଳେ ୧୯୯୬ ମସିହା ବେଳକୁ ତହିଁରେ ହ୍ରାସ ଘଟି ପ୍ରାୟ ୫୦ ପ୍ରତିଶତକୁ ଖସି ଆସିଥିଲା ।

ବିଶ୍ୱ ବ୍ୟାଙ୍କ ଅନୁଯାୟୀ ଚୀନ ପରି ଷ୍ଟ୍ରକ୍‌ଚରାଲ୍ ଟ୍ରାନ୍ସଫରମେସନ୍ ବା ଗଠନମୂଳକ ପରିବର୍ତ୍ତନ ହାସଲ କରିବା ପାଇଁ ଆମେରିକାକୁ ୫୦ ବର୍ଷ ଲାଗିଥିଲା ବେଳେ ଜାପାନକୁ ୬୦ ବର୍ଷ ଲାଗିଥିଲା । ଚୀନରେ ଅର୍ଥନୈତିକ ସଂସ୍କାର ପରବର୍ତ୍ତୀ ସମୟରେ ସହର ଓ ମଫସଲ ମଧ୍ୟରେ ତଥା ଆଞ୍ଚଳିକ ତାରତମ୍ୟରେ ବୃଦ୍ଧି ପରିଲକ୍ଷିତ ହୋଇଥିବା ସତ୍ତ୍ୱେ ଅଭିବୃଦ୍ଧି ଜନିତ ଲାଭାଂଶ ବହୁଳଭାବେ ବାଣ୍ଟି ହୋଇଯାଇଥିଲା । ୧୯୭୮ ରୁ ୧୯୯୫ ମସିହା ମଧ୍ୟରେ ଚୀନର ୨୦ଟି ରାଜ୍ୟର ମୁଣ୍ଡପିଛା ଅଭିବୃଦ୍ଧି ହାର ବିଶ୍ୱର ଯେ କୌଣସି ରାଷ୍ଟ୍ରର ମୁଣ୍ଡପିଛା ଅଭିବୃଦ୍ଧି ହାର ଠାରୁ ଅଧିକ ଥିଲା । ବିଶ୍ୱ ବାଣିଜ୍ୟ କାରବାରରେ ଚୀନର ଭାଗିଦାରୀ ମାତ୍ର ୧ ପ୍ରତିଶତରୁ ୪ ପ୍ରତିଶତକୁ ଡେଇଁ ପଡ଼ିଲା ଏବଂ ବିଶ୍ୱ ବ୍ୟାଙ୍କ ଅନୁଯାୟୀ ୨୦୨୦ ମସିହା ସୁଦ୍ଧା ଏହା ୧୦ ପ୍ରତିଶତରେ ନିଶ୍ଚୟ ପହଞ୍ଚି ଯିବ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଶ୍ୱ ବାଣିଜ୍ୟ କାରବାରରେ ଭାରତର ଭାଗିଦାରୀ ମାତ୍ର ଶୂନ ଦଶମିକ ଛଅ ପ୍ରତିଶତ ଅଟେ । ଚୀନରେ ସିଧାସଳଖ ପୁଞ୍ଜି ଲଗାଣ ୧୯୭୮ ମସିହାରେ ଶୂନର ପାଖାପାଖି ଥିବାବେଳେ ୨୦୦୦ ମସିହା ବେଳକୁ ତହିଁରେ ବୃଦ୍ଧି ଘଟି ୪୦ ବିଲିୟନ ଡଲାରର ଉର୍ଦ୍ଧ୍ୱରେ ପହଞ୍ଚି ପାରିଥିଲା । ତୁଳନାତ୍ମକ ଭାବେ ବିଚାର କଲେ ଭାରତ ଏହି ସମୟରେ ମାତ୍ର ୨.୩ ବିଲିୟନ ଡଲାର ବିଦେଶୀ ପୁଞ୍ଜି ବିନିଯୋଗକୁ ଆକର୍ଷିତ କରି ପାରିଥିଲା । ଆପଣ ଚୀନର ସର୍ବଦିଗ ବ୍ୟାପ୍ତ ଅସାଧାରଣ ଅଭିବୃଦ୍ଧିକୁ ଯେ କୌଣସି କୋଣରୁ ଅବଲୋକନ କରନ୍ତୁ ନା କାହିଁକି ଚୀନର ଅର୍ଥନୈତିକ ଅଭିବୃଦ୍ଧି ନିଶ୍ଚିତ ରୂପେ ଆପଣଙ୍କୁ ସର୍ବାଙ୍ଗ ସୁନ୍ଦର ଓ ଅଲୌକିକ ଲାଗିବ ହିଁ ଲାଗିବ ।

ମନରେ ସ୍ୱତଃପ୍ରବୃତ୍ତ ପ୍ରଶ୍ନ ଉଠେ, ପ୍ରଗତିର ମହାଦୌଡ଼ରେ ଚୀନ ଏତେ ଗୁଡ଼ାଏ ସଫଳତାର ସ୍ୱର୍ଣ୍ଣ ପଦକ ହାସଲ କରି ପାରିଲା କିପରି ? ଅଥଚ ଭାରତ ପରି ଦେଶମାନେ ନିର୍ବାକ ନିଷ୍ପନ୍ଦ ହୋଇ ଖାଲି ଢଳଢଳ କରି ଚାହିଁ ରହିଛନ୍ତି କାହିଁକି ? ଅର୍ଥନୀତିର ଛକା ପଞ୍ଝା ଖେଳ ଭିତରେ ଭାରତ ପରି ଦେଶମାନେ ଅଣନିଶ୍ୱାସୀ ହୋଇଯିବେ ନାହିଁ ତ ? ପରମ ସୌଭାଗ୍ୟର ଗଡ଼ ଜିଣି ଲକ୍ଷ୍ମୀ ଠାକୁରାଣୀଙ୍କ କୃପା ଦୃଷ୍ଟି ଲାଭ କରିବା କେବଳ ଚୀନର ଭାଗ୍ୟରେ ଜୁଟୁଛି କାହିଁକି ? ଅଥଚ ମା' ଠାକୁରାଣୀଙ୍କ ନେତ ପୂଣ୍ୟଶ୍ଳୋକ ଆର୍ଯ୍ୟାବର୍ତ୍ତର ପବିତ୍ର ଧରିତ୍ରୀରେ ଦିନପରେ ଦିନ ସଗର୍ବେ ଫରଫର ହୋଇ ଉଡ଼ି ଚାଲିଛି । ନିମ୍ନଲିଖିତ କେତୋଟି ଉଦାହରଣ ଆମ ମନର ଶଙ୍କାକୁ ନିଶ୍ଚୟ ଦୂରେଇ ଦେବ ।

## (୧) ଚୀନ ବାହାରେ ଥିବା ଚୀନ ଦେଶର ନାଗରିକଙ୍କ ଚୀନର ସମୃଦ୍ଧିରେ ଅନବଦ୍ୟ ଭୂମିକା :

ଭାରତ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ଆବୋରି ନେବାର ଏକ ଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ପୂର୍ବରୁ ଚୀନ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାର ରାଜରାସ୍ତାରେ ବାଟୋଇ ହୋଇସାରିଥିଲା । ମୂଳରୁ ଚୀନ, ଦେଶ ବାହାରେ ଥିବା ଚୀନୀୟ ବାସିନ୍ଦାଙ୍କର ସାହାଯ୍ୟ ସହଯୋଗ ଅତିମାତ୍ରାରେ ପାଇ ପାରିଲା । ବିଶେଷ କରି ହଂକଂ ଓ ତାଇୱାନରେ ଥିବା ଚୀନୀୟ ବାସିନ୍ଦାମାନଙ୍କର ଅସାଧାରଣ ସାହାଯ୍ୟ ଚୀନର ଅର୍ଥନୀତିର ଗତିକୁ ନୂଆ ମୋଡ଼ ଦେଲା, ନୂଆ ରୂପ ଦେଲା, ନୂଆ ପରିଚୟ ଦେଲା । ବିଦେଶରେ ଥିବା ଚୀନୀୟ ବାସିନ୍ଦାମାନଙ୍କର ମୌଳିକ ଆର୍ଥିକ ସମ୍ବଳ, ପ୍ରଯୁକ୍ତି ବିଦ୍ୟାଜନିତ ଉତ୍କର୍ଷତା, ଶିଳ୍ପୋଦ୍ୟୋଗୀର ଦକ୍ଷତା, ବିପଣନ କଳା କୌଶଳ ଏବଂ ଆନ୍ତର୍ଜାତିକ ବାଣିଜ୍ୟିକ ଅଭିଜ୍ଞତା ତଥା ଚୀନରେ ଶସ୍ତାରେ ମିଳୁଥିବା ଜମିଜମା ତଥା ସ୍ୱଳ୍ପମୂଲ୍ୟ ଯୁକ୍ତ ଶୃଙ୍ଖଳିତ ଶ୍ରମ ଶକ୍ତିର ବହୁଳ ଉପଲବ୍ଧ ସବୁ ଏକା ସାଙ୍ଗରେ ମିଳିମିଶି ପରସ୍ପର ମଧ୍ୟରେ ଏକ ଉତ୍ତମ ଯୋଗସୂତ୍ର ସ୍ଥାପନା କରି ପାରିଲା । ଚୀନ ତା'ର ସମୁଦ୍ର ତଟ ପ୍ରଦେଶ ଗୁଡ଼ିକରେ ସ୍ପେସିଆଲାଇଜ୍ଡ଼ ଇକୋନୋମିକ ଯୋନ୍ ବା ଅତି ବିଶିଷ୍ଟ ଅର୍ଥନୈତିକ କ୍ଷେତ୍ରମାନ ସୃଷ୍ଟି କରି ହଂକଂ ଓ ତାଇୱାନରେ ଥିବା ତା'ର ପ୍ରଚଣ୍ଡ ଶ୍ରମ ନିର୍ଭରଶୀଳ ଉତ୍ପାଦନ କେନ୍ଦ୍ରଗୁଡ଼ିକୁ ସେଠାରେ ସ୍ଥାନାନ୍ତରିତ କଲା, ଯଦ୍ୱାରା ଚୀନରରପ୍ତାନି ବାଣିଜ୍ୟ ଅତ୍ୟନ୍ତ ଲାଭଜନକ ହୋଇପାରିଲା ।

ଚୀନକୁ ଆସୁଥିବା ସମୁଦାୟ ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣ ପରିମାଣର ୮୦ ପ୍ରତିଶତ ଚୀନ ବାହାରେ ଥିବା ଚୀନୀୟ ନାଗରିକମାନଙ୍କଠାରୁ ହିଁ ଆସିଥାଏ । ପ୍ରକାରାନ୍ତରେ ଭାରତ ବାହାରେ ଥିବା ନନ୍‌ରେସିଡେଣ୍ଟ ଇଣ୍ଡିଆନ୍‌ମାନେ ପ୍ରାୟତଃ ବୃତ୍ତିଜୀବୀ ଏବଂ ବେପାର ବାଣିଜ୍ୟ ଓ ଭାରତରେ ଶିଳ୍ପାୟନ ପାଇଁ ସେମାନେ ସେତେଟା ଆଗ୍ରହ ପ୍ରକାଶ କରି ନ ଥାନ୍ତି । ଅପରନ୍ତୁ ଏଭଳି କାର୍ଯ୍ୟକ୍ରମକୁ ରୂପାୟନ କରିବା ପାଇଁ ସେମାନଙ୍କ ହାତରେ ପୁଞ୍ଜି ମଧ୍ୟ ଯଥେଷ୍ଟ ନ ଥାଏ । ସେମାନେ ଭାରତୀୟ ବ୍ୟାଙ୍କମାନଙ୍କରେ ଅତ୍ୟଧିକ ସୁଧ ଲାଭକରି ତାଙ୍କ ପାଖରେ ଯାହାକିଛି ସଞ୍ଚୟ ଥିବା ଡଲାରକୁ Fixed deposit କରିବାକୁ ଅଧିକ ପସନ୍ଦ ମଣିଥାନ୍ତି । ଅଧିକ ବିପଦଶଙ୍କୁଳ Equity Marketରେ ପୁଞ୍ଜି ବିନିଯୋଗ କରିବାକୁ ମଧ୍ୟ ପଛଘୁଞ୍ଚା

ଦେଇଥାଆନ୍ତି । ନନ୍‌ରେସିଡେଣ୍ଟ ଇଣ୍ଡିଆନ୍‌ମାନଙ୍କର ଦୃଷ୍ଟିଭଙ୍ଗୀ ଅଧିକ କସମୋପଲିଟାନ୍ ହୋଇ ଥିବାରୁ ଥରେ ଭାରତ ଛାଡ଼ିଲା ପରେ ଭାରତ ମାଟିର ମାୟା ତାଙ୍କୁ ଆଉ ସେତେଟା ଆକର୍ଷିତ କରି ପାରୁନାହିଁ । ଭାରତୀୟତାର ଗର୍ବ ଖର୍ବ ହୋଇଯାଉଛି । ଭାରତ ମାଟିରେ ପୁଞ୍ଜି ବିନିଯୋଗ କରି ତହିଁରୁ ସୁନା ଫଳେଇ ସ୍ୱର୍ଣ୍ଣପ୍ରସୂ ରତ୍ନଗର୍ଭା ଧରିତ୍ରୀ ମାଆର ମାନ ମର୍ଯ୍ୟାଦାକୁ ଗଗନଚୁମ୍ବୀ ସଫଳତା ପ୍ରଦାନ କରିବାର ମୋହ ତାଙ୍କୁ ଆଉ ଆଉ ବାନ୍ଧି ରଖିପାରୁନାହିଁ । ଜନମ ନାଡ଼ି ଦି'ଖଣ୍ଡ ହୋଇଗଲା ପରେ ମା'ପୁଅଙ୍କ ସମ୍ପର୍କରେ ସତେ ଯେପରି ଗ୍ରହଣ ଲାଗିଯାଉଛି । ଭାରତୀୟତାର ଦ୍ୱାହି ଦେଇ ଭାରତ ବାହାରେ ନିଜର ଯଶ ଗୌରବକୁ ପ୍ରତିଷ୍ଠିତ କରି ଚାଲିଥିଲା ବେଳେ ଭାରତ ଆଡ଼କୁ ଆଡ଼ ଆଖିରେ ଫେରି ଚାହିଁବାକୁ ସେମାନେ କୁଣ୍ଠିତ ହେଉଛନ୍ତି । ଏହାହିଁ ହେଲା, ଆମର ସାଂପ୍ରତିକ ଚରିତ୍ରର ଜ୍ୱଳନ୍ତ ଛବି ଓ ଭାରତୀୟତାର ଉପଢୌକନ ।

## (୨) ଶ୍ରମଭିତ୍ତିକ ବଜାର ବ୍ୟବସ୍ଥା :

ପ୍ରକୃତରେ ଚୀନ ତା'ର ତଟବର୍ତ୍ତୀ ପ୍ରଦେଶ ମାନଙ୍କରେ ''ର' କ୍ୟାପିଟାଲିଜମ୍'' ବା କଞ୍ଚା ପୁଞ୍ଜିବାଦର ଧାରା ପ୍ରବର୍ତ୍ତନ କରିଥିଲା, ଯଦିଓ ଏହା ସର୍ବସାଧାରଣଙ୍କର ବିଶ୍ୱାସଭାଜନ ହୋଇପାରି ନ ଥିଲା । ଲେବର ୟୁନିଅନ ବା ଶ୍ରମ ସଂଗଠନଗୁଡ଼ିକ ଯଦିଓ ଚୀନରେ ଅନୁମତି ପାଇଥିଲା, ପରନ୍ତୁ ଏହା ପରିଚାଳନା କର୍ତ୍ତୃପକ୍ଷଙ୍କ ସହ ସମଭାବାପନ୍ନ ଓ ସହଯୋଗ ମୂଳକ ହୋଇ କାର୍ଯ୍ୟ କରୁଥିଲା । ପରନ୍ତୁ ଭାରତବର୍ଷ ପରି ଅଣ-କମ୍ୟୁନିଷ୍ଟ ଦେଶମାନଙ୍କରେ ଏହି ଶ୍ରମ ସଂଗଠନ ଗୁଡ଼ିକ ମୂଳଚାଲ ମନୋବୃତ୍ତି ରଖି ପରିଚାଳନା କର୍ତ୍ତୃପକ୍ଷଙ୍କ ସହ ବହୁ ବାଦ ବିସମ୍ବାଦରେ ଜଡ଼ିତ ହୋଇଯାଉଥିଲେ । ବିଶିଷ୍ଟ ଅର୍ଥନୈତିକ ପ୍ରକ୍ଷେତ୍ରମାନଙ୍କରେ କାର୍ଯ୍ୟରତ ମ୍ୟାନେଜରମାନଙ୍କୁ, ଶ୍ରମିକମାନଙ୍କୁ ଭଡ଼ାରେ ଆଣି କାମରେ ଲଗେଇବା ଓ ଦରକାର ପଡ଼ିଲେ ଗାଳି ଗୁଲଜ ଦେବା ପାଇଁ ଯଥେଷ୍ଟ କ୍ଷମତା ପ୍ରଦାନ କରାଯାଇଛି । ମାତ୍ରାଧିକ ଶ୍ରମିକ ବିଶେଷ କରି ମହିଳାମାନେ ଅସ୍ଥାୟୀ ଭାବେ ଗ୍ରାମୀଣ ଅଞ୍ଚଳରୁ ଯାଇ କାମ କରିଥାନ୍ତି ଏବଂ ସରକାରୀ ଉଦ୍ୟୋଗ ମାନଙ୍କରେ କାମ କରୁଥିବା କର୍ମଚାରୀମାନଙ୍କ ତୁଳନାରେ ସେମାନେ ସେଭଳି ସୁବିଧା ସୁଯୋଗ ଉପଭୋଗ କରି ନଥାନ୍ତି, ଯାହାକି ରପ୍ତାନି ଉତ୍ପାଦନର ଶ୍ରମ ମୂଲ୍ୟକୁ ଯଥେଷ୍ଟ ନିମ୍ନ ସ୍ତରରେ ରଖିଥାଏ । ଚୀନକୁ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ବାଟ ସଫା

କରିବାରେ ଏହା ଏକ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥାଏ । ପରନ୍ତୁ ଭାରତ ପରି ରାଷ୍ଟ୍ରମାନଙ୍କରେ ଯେଉଁଠି ଶ୍ରମିକମାନଙ୍କର ଦୈନନ୍ଦିନ ମଜୁରୀ ସ୍ୱଳ୍ପ, ସେଠାରେ ମଧ୍ୟ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗକୁ ସଠିକ୍ ଭାବେ ଆକର୍ଷିତ କରାଯାଇ ପାରୁନାହିଁ । ଏହାର ମୁଖ୍ୟ କାରଣ ହେଲା, ସେଠାରେ ନିରନ୍ତର ଶ୍ରମିକ ଅଶାନ୍ତି ଓ ଉଗ୍ର ଟ୍ରେଡ୍ ୟୁନିଅନ କାର୍ଯ୍ୟକ୍ରମ ଲାଗି ରହିଥିବାରୁ ବିଦେଶୀ ପୁଞ୍ଜି ଲଗାଣକାରୀମାନେ ସେସବୁ ଦେଶ ଆଡ଼କୁ ମୁହଁ ମୋଡ଼ି ଦେଉଛନ୍ତି । ଭାରତର ଦୁର୍ଭାଗ୍ୟ ଯେ ଏଭଳି ଦେଶମାନଙ୍କର ବ୍ରାକେଟ୍‌ରେ ଭାରତର ନାଁ ଯୋଡ଼ି ହୋଇଯାଇଛି ।

## (୩) ପ୍ରଶାସନ ଓ ରାଜନୈତିକ ବ୍ୟବସ୍ଥାର ଭୂମିକା :

୧୯୯୫ ରୁ ୨୦୦୦ ମସିହା ମଧ୍ୟରେ ଚୀନ ୨୧୦ ବିଲିୟନ ଡଲାରର ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଆକର୍ଷିତ କରି ପାରିଥିବା ବେଳେ ଏହି ସମୟ ମଧ୍ୟରେ ଭାରତ ମାତ୍ର ୧୪ ବିଲିୟନ ଡଲାରରୁ କମ୍ ପରିମାଣର ବୈଦେଶିକ ପୁଞ୍ଜି ଆକର୍ଷିତ କରି ପାରିଥିଲା । ଅନ୍ୟାନ୍ୟ ସୁବିଧା ସୁଯୋଗକୁ ଛାଡ଼ିଦେଲେ ମଧ୍ୟ ଚୀନ ଏକ ସୁସ୍ଥ ବାଣିଜ୍ୟିକ ବାତାବରଣର ଆବାସସ୍ଥଳୀ ବୋଲି ସାରା ବିଶ୍ୱରେ ଚହଳ ପଡ଼ିଯାଇଛି । ଏଠାରେ ଏକ ଉତ୍ତମ ଭିତ୍ତିଭୂମିର ଉପଲବ୍ଧ ହେବା ସଙ୍ଗେ ସଙ୍ଗେ ପଲିସି ନିର୍ଣ୍ଣୟ ପ୍ରକ୍ରିୟାରେ ସ୍ଥିରତା, ଯେ କୌଣସି ପ୍ରକଳ୍ପର ରୂପାୟନରେ ଦ୍ରୁତ ଗତିଶୀଳତା ଏବଂ ଅର୍ଥନୈତିକ ସଂସ୍କାର ପ୍ରତି ସରକାରଙ୍କ ଅଙ୍ଗୀକାରବଦ୍ଧତା ବର୍ହିଦେଶୀୟ ପୁଞ୍ଜି ଲଗାଣକାରୀଙ୍କ ପାଇଁ ପୁଷ ମାସର ବାତାବରଣ ସୃଷ୍ଟି କରିଥାଏ । ଚୀନରେ ମଧ୍ୟ ଭ୍ରଷ୍ଟାଚାର ରହିଛି, ହେଲେ ଥରେ 'କନ୍‌ସିଡ଼ରେସନ ଆମାଉଣ୍ଟ' ବା ହାତଗୁଞ୍ଜା ଅଙ୍କରାଶି ଭରଣା କରିଦେଲେ; ସବୁକାମ ଶୀଘ୍ର ଓ ସୁଚାରୁ ରୂପେ ସଂପାଦିତ ହୋଇଥାଏ । ପରନ୍ତୁ ଭାରତରେ ଏହାର ବ୍ୟତିକ୍ରମ ଦେଖା ଦେଉଥିବାରୁ ବିଦେଶୀ ପୁଞ୍ଜି ଲଗାଣକାରୀମାନେ ଫିଡ଼ିକି ଯାଉଛନ୍ତି ।

ଏକ ପାର୍ଟି ବିଶିଷ୍ଟ ରାଜନୈତିକ ଶାସନ ବ୍ୟବସ୍ଥା ରାଷ୍ଟ୍ରୀୟ ବିଧିବିଧାନ ଓ ପଲିସିର କ୍ରମାଗତତାକୁ ନିର୍ଦ୍ଧାରିତ କରିବା ସଙ୍ଗେ ସଙ୍ଗେ ଶିଳ୍ପାୟତନର ସଫଳ ପରୀକ୍ଷା ନିରୀକ୍ଷାକୁ ରାଷ୍ଟ୍ରର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପରିବର୍ଦ୍ଧିତ କରାଇବାରେ ମଧ୍ୟ ପ୍ରୋତ୍ସାହନ ଯୋଗାଇଥାଏ ଏବଂ ପଲିସିର ତୁରନ୍ତ ରୂପାୟନ ପାଇଁ ମଧ୍ୟ ଯଥାଯଥ ପଦକ୍ଷେପ ନେଇଥାଏ । ଏକ ସମୟରେ ଚୀନ ମଧ୍ୟ ବହୁ କଠିନ ଓ ସଂଘର୍ଷମୟ ପରିସ୍ଥିତିର ମୁକାବିଲା କରିଥିଲା ଏବଂ ବହୁ ବାଧାବିଘ୍ନ ଦେଇ ଗତି

କରି ଆଜିକାର ସମୟ ସହ ମୁହାଁମୁହିଁ ହୋଇଛି । ଆଜିର ସମୟ ସରଗରୁ ଆଶୀର୍ବାଦ ପରି ଆସି ଚୀନ ହାତରେ ଖସି ପଡ଼ିନାହିଁ, ଏହା ସମସ୍ତେ ମନେ ରଖିବା ଉଚିତ ।

ଚୀନର ନେତାମାନେ ମଧ ଅତୀତର ଭୁଲ୍‌ରୁ ଶିକ୍ଷା ଲାଭ କଲେ ଓ ତଦନୁଯାୟୀ ନିଜକୁ ସଜାଡ଼ି ନେଲେ । ୧୯୯୦ ଦଶକରେ ଅବିଭାଜିତ ସୋଭିଏଟ ୟୁନିଅନ ଏବଂ ପୂର୍ବ ୟୁରୋପରେ ପ୍ରଚଳିତ ଥିବା ବିଗ୍-ବ୍ୟାଙ୍ଗ ଆପ୍ରୋଚ୍‌କୁ ଅନ୍ଧ ପରି ଅନୁସରଣ ନ କରି ଚୀନର ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ଏକ ପର୍ଯ୍ୟାୟଭୁକ୍ତ କ୍ରମବିକାଶର ରାସ୍ତା ବାଛି ନେଲା, ଯାହାକି କମ୍ୟୁନିଷ୍ଟ ପାର୍ଟି ଚେୟାରମ୍ୟାନ ଡେଙ୍ଗଙ୍କ ଅତ୍ୟନ୍ତ ଆଦରଣୀୟ ଅଭିବ୍ୟକ୍ତି -'କ୍ରସିଂ ଦି ରିଭର ବାଇ ଟଚିଂ ଷ୍ଟୋନ୍ସ' ଅର୍ଥାତ୍ 'ନଦୀ ଗର୍ଭରେ ଥିବା ଶିଳା ଖଣ୍ଡଗୁଡ଼ିକୁ ପାଦରେ ସ୍ପର୍ଶ କରି କରି ନଦୀ ପାର ହୁଅ' ଉପରେ ଆଧାରିତ ଥିଲା । ତା'ର ସରଳ ଅର୍ଥ ହେଲା -'ନିଜ ଜୀବନର ଅଭିଜ୍ଞତାକୁ ଗୁରୁମାନି ଜୀବନ ବୈତରଣୀକୁ ପାରି ହୁଅ ।' ଚୀନରେ ପ୍ରଚଳିତ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଆଞ୍ଚଳିକ ଅଭିଜ୍ଞତାକୁ ପୁଞ୍ଜି କରି ଶୁଭାରମ୍ଭ କରାଯାଇଥିଲା । ଯେତେବେଳେ ଆଞ୍ଚଳିକ ସ୍ତରର ପରୀକ୍ଷା ନିରୀକ୍ଷା ସଫଳକାମୀ ହେଲା, ସେତେବେଳେ ତାହା ଅନ୍ୟାନ୍ୟ କ୍ଷେତ୍ରକୁ ସଂପ୍ରସାରିତ ହୋଇଥିଲା । ଚୀନରେ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ପ୍ରଥମେ କୃଷି କ୍ଷେତ୍ରରେ ପରିପ୍ରୟୋଗ ହେବା ପରେ ବହିଃ ବାଣିଜ୍ୟ ଓ ବହିଃ ପୁଞ୍ଜି ଲଗାଣ କ୍ଷେତ୍ରରେ ପରୀକ୍ଷିତ ହୋଇଥିଲା ଏବଂ ତା'ପରେ ଶିଳ୍ପ କ୍ଷେତ୍ରକୁ ଏହା ଅଭିବର୍ଦ୍ଧିତ ହୋଇଥିଲା ।

କୃଷି କ୍ଷେତ୍ରରେ ଘରୋଇ ସଂସ୍ଥାମାନଙ୍କର କ୍ରମାଗତ ଆଗ୍ରହ ଏବଂ କୃଷିଜାତ ଦ୍ରବ୍ୟଗୁଡ଼ିକର ଦରଦାମ୍ ସମ୍ପୂର୍ଣ୍ଣ ରୂପେ ବଜାର ନିୟନ୍ତ୍ରଣ କରୁଥିବାରୁ ଅଗଣିତ ଗରିବ ଗୁରୁବା ମାନଙ୍କ ପାଇଁ ତାହା ଆଶାତୀତ ସମୃଦ୍ଧି ଆଣିଦେଲା । ପୂର୍ବରୁ ମାଓ-ସେ-ତୁଙ୍ଗଙ୍କ ଶାସନ ସମୟରେ ପ୍ରଚଳିତ ହୋଇଥିବା ଜମିଜମା ସଂସ୍କାର ବ୍ୟବସ୍ଥା ବଡ଼ ବଡ଼ ଜମିଦାରଙ୍କୁ ଧ୍ୱଂସ କରିଦେଇଥିଲା । ତେଣୁ ଏହା କ୍ରମବର୍ଦ୍ଧମାନ ଗ୍ରାମୀଣ ରୋଜଗାରରୁ ଆଞ୍ଚଳିକ ଅର୍ଥନୈତିକ ମୂଳଦୁଆକୁ ମଜବୁତ କରିବା ସଙ୍ଗେ ସଙ୍ଗେ ମିଶ୍ରିତ ଫାର୍ମମାନଙ୍କରୁ ଅନାବଶ୍ୟକ ଶ୍ରମ ଶକ୍ତିକୁ ହଟେଇ ଦେଇ ସେମାନଙ୍କୁ ସ୍ୱଳ୍ପ ବେତନରେ ଶିଳ୍ପ ସଂସ୍ଥାମାନଙ୍କରେ ବିନିଯୋଗ କରାଇ ଏବଂ ଦୈନନ୍ଦିନ

ବ୍ୟବହାରଯୋଗ୍ୟ ଶିଳ୍ପଜାତ ଦ୍ରବ୍ୟଗୁଡ଼ିକର କ୍ରମବର୍ଦ୍ଧିଷ୍ଣୁ ବଜାର ଚାହିଦାରେ ବୃଦ୍ଧି ଘଟାଇ ଗ୍ରାମୀଣ ଶିଳ୍ପ ପ୍ରତିଷ୍ଠା ଓ ତାହାର ଅସାଧାରଣ ଅଭିବୃଦ୍ଧି ପାଇଁ ଆବଶ୍ୟକୀୟ ଭିତ୍ତିଭୂମି ଯୋଗେଇ ଦେଲା । ଏହି ଧାରାରେ ଚୀନରେ ପ୍ରାରମ୍ଭିକ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ଦିନକୁ ଦିନ ଦୃଢ଼ୀଭୂତ ହେବାକୁ ଲାଗିଲା ଏବଂ ଏହା ଏକ ବିରାଟ ରାଜନୈତିକ ପୃଷ୍ଠପୋଷକତାର ଭିତ୍ତିଭୂମି ପ୍ରତିଷ୍ଠା କଲା, ଯାହାକି ପୁନଃ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିପାରିଲା ।

ଠିକ୍ ସେହିପରି ଚୀନକୁ ବର୍ହିଦେଶୀୟ ପୁଞ୍ଜିର ସୁଅ ଛୁଟିବା ସଙ୍ଗେ ସଙ୍ଗେ ପ୍ରତିଯୋଗିତାମୂଳକ ବିଶ୍ୱବଜାର ପାଇଁ ରାଷ୍ଟ୍ରୀୟ ଉତ୍ପାଦନରେ ଅସାଧାରଣ ଅଭିବୃଦ୍ଧି ଘଟିଲା, ଯାହାକି ଚୀନକୁ ନୂତନ ଚିନ୍ତାଧାରା ଓ ପ୍ରଯୁକ୍ତି ବିଦ୍ୟା ସହ ପରିଚିତ କରାଇଲା ଏବଂ ବିଗତ ଦଶନ୍ଧିମାନଙ୍କରେ ସୃଷ୍ଟି ହୋଇଥିବା ରୁଦ୍ଧ ମାନସିକତାରେ ମଧ୍ୟ ପରିବର୍ତ୍ତନ ଆଣିଲା । ବିଦେଶର ଯେ କୌଣସି ଡିପାର୍ଟମେଣ୍ଟାଲ୍ ଷ୍ଟୋର୍‌ରେ ଜଣେ ଅପରିଚିତ ଦର୍ଶକ ନୂଆଁ କରି ପାଦ ଦେଲେ ଦେଖିବ ଯେ ସେଠାରେ ପ୍ରାୟ ସବୁ ଧରଣର ଚୀନ ପ୍ରସ୍ତୁତ ଇନୋଭେଟିଭ୍ ସାମଗ୍ରୀ ଭରପୁର ଅଛି ଏବଂ କଦ୍‌ବାୟ କ୍ୱଚିତ୍ କିଛି ପାରମ୍ପରିକ ଭାରତୀୟ ରପ୍ତାନି ସାମଗ୍ରୀ ବହୁକଷ୍ଟରେ ତା'ର ଅବା ଦୃଷ୍ଟିଗୋଚର ହେବ । ପ୍ରାରମ୍ଭରୁ ଚୀନ ସରକାରୀ କର୍ତ୍ତୃତ୍ୱାଧୀନ ଶିଳ୍ପ ସଂସ୍ଥାଗୁଡ଼ିକୁ ସଂସ୍କାର ପ୍ରକ୍ରିୟା ଅନ୍ତର୍ଭୁକ୍ତ କରିବା ପାଇଁ ଚେଷ୍ଟାକରି ନ ଥିଲା କିମ୍ବା ସେଗୁଡ଼ିକୁ ବେସରକାରୀ ଶିଳ୍ପ ସଂସ୍ଥାରେ ପରିବର୍ତ୍ତନ କରିବା ପାଇଁ ମଧ୍ୟ ଆଗଭର ନ ଥିଲା । ଚୀନର ନାଗରିକମାନେ ପ୍ରତିଯୋଗିତା ଉପରେ ଅଧିକ ଭରଷା ରଖିଥିଲେ । ପ୍ରତିଯୋଗିତାର ଫଳାଫଳ ଯେ ସେମାନଙ୍କୁ ସୁନା ମୁକୁଟ ପିନ୍ଧେଇବ, ସେ ନେଇ ସେମାନେ ଦୃଢ଼ ନିଶ୍ଚିତ ଥିଲେ । ନୂତନ ଶିଳ୍ପ ସଂସ୍ଥାମାନଙ୍କର ତତ୍‌କାଳ ଆର୍ବିଭାବ ଓ ଦ୍ରୁତ ଅଭିବୃଦ୍ଧି (ଯାହାକି ମୁଖ୍ୟତଃ ଏକାଧିକ ବ୍ୟକ୍ତି ବିଶେଷଙ୍କ ସାହଚର୍ଯ୍ୟ ଓ ମାଲିକାନା ସ୍ୱତ୍ତ୍ୱ ଉପରେ ଗଢ଼ି ଉଠିଥିଲା ଏବଂ ଆଉ କିଛି ସମ୍ପୂର୍ଣ୍ଣ ଘରୋଇ ଉଦ୍ୟୋଗ ଥିଲା) ସରକାରୀ କର୍ତ୍ତୃତ୍ୱାଧୀନ ଉଦ୍ୟୋଗଗୁଡ଼ିକ ଉପରେ ପ୍ରତିଯୋଗିତା ମୂଳକ ଚାପ ଲଦି ଦେଲା, ଯାହାକି ସେମାନଙ୍କୁ ସେମାନଙ୍କର କର୍ମଦକ୍ଷତା ବଢ଼େଇବା ପାଇଁ ସମ୍ପୂର୍ଣ୍ଣ ରୂପେ ବାଧ୍ୟ କଲା ।

ଚୀନ ସଂପ୍ରତି ବଡ଼ ବଡ଼ ସରକାରୀ କର୍ତ୍ତୃତ୍ୱାଧୀନ ଉଦ୍ୟୋଗଗୁଡ଼ିକୁ ଘରୋଇକରଣ କରିବାରେ ପ୍ରବଳ ମନ ଦେଇଛି । ଏହା ସମ୍ଭବ ହେଲା

ସେତିକିବେଳେ ଯେତେବେଳେ ଚୀନ ଦେଖିଲା ଯେ ସରକାରୀ ଉଦ୍ୟୋଗଗୁଡ଼ିକରୁ ବହିଷ୍କୃତ ଢ଼ରଦ୍‌ଗବ ତଥା ଅନାବଶ୍ୟକ କର୍ମଚାରୀମାନଙ୍କୁ ଘରୋଇ ଉଦ୍ୟୋଗଗୁଡ଼ିକ ଘରଜୋଇଁଆ କରି ପାଛୋଟି ନେବାକୁ ଆଗଭର ହେଉଛନ୍ତି । ଏ ସବୁ ସତ୍ତ୍ୱେ ମଧ୍ୟ ବିଶାଳକାୟ ସରକାରୀ କର୍ତ୍ତୃତ୍ୱାଧୀନ ଉଦ୍ୟୋଗଗୁଡ଼ିକ ସେମାନଙ୍କର ସାମାଜିକ ଓ ରାଜନୈତିକ ପଟ୍ଟଭୂମିରୁ ଅପସରି ଯାଉଥିବାରୁ ସେମାନଙ୍କର ଘରୋଇକରଣ ଚୀନର ନୀତିନିୟମ ନିର୍ଦ୍ଧାରକଙ୍କ ପାଇଁ ପ୍ରଚଣ୍ଡ ମୁଣ୍ଡବ୍ୟଥାର କାରଣ ହୋଇଛି ।

ସରକାରଙ୍କୁ ବିଭିନ୍ନ ସ୍ତରରେ ସଂସ୍କାର ପର୍ଯ୍ୟାୟଭୁକ୍ତ କରିବା ଚୀନ ସଂସ୍କାର ପ୍ରକ୍ରିୟାର ଆଉ ଏକ ଗୁରୁତ୍ୱପୂର୍ବ ଅଭିପ୍ରାୟ ଅଟେ । ଚୀନ ହେଉଛି ପୃଥିବୀର ଏକମାତ୍ର ରାଷ୍ଟ୍ର; ଯେଉଁଠାରେ ଶାସନ କଳ ନିୟନ୍ତ୍ରଣ କରୁଥିବା କମ୍ୟୁନିଷ୍ଟ ପାର୍ଟି, କୌଣସି ରାଜନୈତିକ ରାଷ୍ଟ୍ର ବିପ୍ଳବ ବିନା ସ୍ୱେଚ୍ଛାକୃତ ଭାବେ ତା'ର ସରକାରୀ ନୀତିଗତ ଆଦର୍ଶବାଦ ଯୋଜନାକୁ ବଜାରଭିତ୍ତିକ ତଥା ଘରୋଇ ସମ୍ପତ୍ତି ଅଧିକାରଭିତ୍ତିକ କଲା । ଭିଏତ୍‌ନାମ ହୁଏତ ଏପରି କାର୍ଯ୍ୟକ୍ରମରେ ପୃଥିବୀର ଦ୍ୱିତୀୟ ରାଷ୍ଟ୍ର ହୋଇପାରେ ।

ପରନ୍ତୁ କେତେକ ଅର୍ଥନୀତି ଗବେଷକ ଅନୁଭବ କରନ୍ତି ଯେ ଚୀନ ବହୁ କ୍ଷେତ୍ରରେ ତା'ର ସଂସ୍କାର ପ୍ରକ୍ରିୟାକୁ ସ୍ଥଗିତ ରଖି ସଂସ୍କାର ପ୍ରକ୍ରିୟାର ସାମାଜିକ ଓ ରାଜନୈତିକ ମୂଲ୍ୟକୁ ଗୁରୁତ୍ୱ ନ ଦେବାରୁ ସାଂପ୍ରତିକ ରାଷ୍ଟ୍ରୀୟ ଅଭିବୃଦ୍ଧିର ଗତି ଯେ କେତେଦୂର ତିଷ୍ଠି ରହି ପାରିବ, ତାହା କଳନା କରିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର ହୋଇପାରେ । ପରନ୍ତୁ ଏହା ଏକ ଭିନ୍ନ ବିଷୟବସ୍ତୁ ଓ ଏକ ଭିନ୍ନ ପଟ୍ଟଭୂମିରେ ପର୍ଯ୍ୟାଲୋଚିତ ହେବା ଆବଶ୍ୟକ ।

ସମାଜ

ତା- ୧୮.୩.୨୦୦୨



# ‘ଏକବିଂଶ ଶତାବ୍ଦୀ’ ଚୀନ ଓ ଭାରତର ଅଭୂତପୂର୍ବ ଅଭ୍ୟୁଦୟକୁ ଅବଲୋକନ କରିବ

ଏକବିଂଶ ଶତାବ୍ଦୀ ଦୁଇଟି ନୂତନ ବିଶ୍ୱ ଅର୍ଥନୈତିକ ମହାଶକ୍ତି ଯଥା- ଚୀନ ଓ ଭାରତ ଆବିର୍ଭାବକୁ ଅବଲୋକନ କରିବ ବୋଲି ଭବିଷ୍ୟବାଣୀ କରାଯାଇଛି । ୧୮୨୦ ମସିହାରେ ଭାରତ ଓ ଚୀନ ଉଭୟ ବିଶ୍ୱ ଜି.ଡ଼ି.ପି.ର ପ୍ରାୟ ୫୦ ପ୍ରତିଶତର ଭାଗିଦାରୀ ଥିଲେ । ଭାରତର ଭାଗିଦାରୀ ଶତକଡ଼ା ୧୬ ପ୍ରତିଶତ ଥିବାବେଳେ ଚୀନର ଭାଗିଦାରୀ ୩୨.୯ ପ୍ରତିଶତ ଥିଲା । ପରନ୍ତୁ ୧୯୭୩ ମସିହାରେ ଉଭୟ ଭାରତ ଓ ଚୀନ ବିଶ୍ୱ ଜି.ଡ଼ି.ପି.ର କେବଳ ମାତ୍ର ୭.୭ ପ୍ରତିଶତର ଭାଗିଦାରୀ ହୋଇ ପାରିଲେ । ଅଣପ୍ରଗତିମୂଳକ ଅର୍ଥନୈତିକ ବିଧି ବ୍ୟବସ୍ଥା ଓ ନାନାବିଧ ରାଜନୈତିକ ହଟଚ଼ମଟ ମଧ୍ୟରେ ବାନ୍ଧି ହୋଇଯାଇ ୧୮୨୦ ମସିହାର ଅର୍ଥନୈତିକ ମାନଚ଼ିତ୍ର ୧୯୭୩ ମସିହା ବେଳକୁ ସମ୍ପୂର୍ଣ୍ଣ ରୂପେ ଝାପ୍‌ସା ହୋଇଗଲା । ୧୯୭୮ ମସିହାରେ ଚୀନ ଅର୍ଥନୈତିକ ସଂସ୍କାର ବ୍ୟବସ୍ଥାକୁ ଆପଣେଇ ନେଲା ଓ ଏହାର ଠିକ୍ ୨୦ ବର୍ଷ ପରେ ଅର୍ଥାତ୍ ୧୯୯୮ ମସିହାରେ ଏକୁଟିଆ ଚୀନ ବିଶ୍ୱ ଜି.ଡ଼ି.ପି.ରେ ନିଜର ୧୧.୫ ପ୍ରତିଶତ ଅବଦାନ ଜାହିର ରଖିଲା, ପରନ୍ତୁ ଏହି ସମୟ ମଧ୍ୟରେ ଭାରତ କେବଳ ମାତ୍ର ୫ ପ୍ରତିଶତର ଅବଦାନ କରିପାରିଥିଲା ।

ଚୀନର ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ତନ୍ନତନ୍ନ ବିଶ୍ଳେଷଣ କରି ତା’ର ପ୍ରକୃତି ଓ ସୀମାରେଖାର ସଠିକ୍ ହୃଦୟଙ୍ଗମ ଓ ପର୍ଯ୍ୟାଲୋଚ଼ନା କରିବା ସଙ୍ଗେ ସଙ୍ଗେ ତଦ୍‌ଜନିତ ଫଳାଫଳର ଉପଯୁକ୍ତ ଅନୁଧ୍ୟାନ ଓ ଅନୁଭବ କରିବା, ସମ୍ଭାବ୍ୟ ଅର୍ଥନୈତିକ ଆପଦ ବିପଦ ଓ ବାଧାବିଘ୍ନର ନିର୍ଣ୍ଣୟ କରିବା ଓ ଏହାକୁ ଭାରତର ସାଂପ୍ରତିକ ସଂଘର୍ଷମୟ ପରିସ୍ଥିତି ଓ ଅଭିଜ୍ଞତା ସହ ତୁଳନାତ୍ମକ ଅଧ୍ୟୟନକୁ ବିଚ଼ାରକୁ ନିଆଯାଉ । ବିଶ୍ୱ ପୃଷ୍ଠଭୂମିରେ ଉଭୟ ଚୀନ ଓ ଭାରତ ପ୍ରବଳ ପରାକ୍ରମଶାଳୀ

ଅର୍ଥନୈତିକ ମହାଶକ୍ତି ରୂପେ ଉଦ୍‌ଭାସିତ ହେବା ପାଇଁ ପ୍ରଗତିର ମହାଦୌଡ଼ରେ କିପରି ନିଜକୁ ସାମିଲ କରୁଛନ୍ତି, ତା'ର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ, ପରୀକ୍ଷଣ ଓ ନିର୍ଦ୍ଧାରଣ ଆଜିର ମୁଖ୍ୟ ଆହ୍ୱାନ ।

## ଚୀନର ସଂକ୍ଷିପ୍ତ ଇତିହାସ :

ଚୀନର ଇତିହାସର ପୃଷ୍ଠାକୁ ଅବଲୋକନ କଲେ ଆମେ ଜାଣି ପାରିବା ଯେ ଅତୀତରେ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ବହୁ ଗୁରୁତ୍ୱପୂର୍ଣ୍ଣ ବିକାଶ ଚୀନରେ ସଂଗଠିତ ହୋଇଥିଲା । ପରନ୍ତୁ ପ୍ରକୃତ ଅର୍ଥନୈତିକ ସଂଗଠନର ଅଭାବ ଏବଂ ସେପରି କୌଣସି ଆକର୍ଷଣୀୟ ଇନ୍‌ସେନ୍‌ଟିଭ ପ୍ରଦାନର ବ୍ୟବସ୍ଥା ନ ଥିବାରୁ ଦିନ ପରେ ଦିନ ଚୀନର ଗୁରୁତ୍ୱ ହ୍ରାସ ପାଇବାକୁ ଲାଗିଲା । ୧୮୪୦ ମସିହାରୁ ୧୯୪୦ ମସିହା ମଧ୍ୟରେ ଚୀନର ଅର୍ଥନୀତି ଧ୍ୱସ୍ତ ବିଧ୍ୱସ୍ତ ହୋଇ ପଡ଼ିଲା ଏବଂ ଏହି ଅର୍ଥନୈତିକ ଦୁର୍ଗ ପତନ ପ୍ରକ୍ରିୟା ଚୀନରେ ବିଦେଶୀ ଶକ୍ତିମାନଙ୍କର ବାଣିଜ୍ୟିକ ସାମ୍ରାଜ୍ୟର ଡେଣା ମେଲାଇବାରେ ଅତ୍ୟନ୍ତ ସହାୟକ ହେଲା ଓ ତଦ୍‌ସହ ଠିକ୍ ସେଇ ସମୟରେ ଜାପାନର ଆକ୍ରମଣ (Invasion) ମଧ୍ୟ ନିଆଁରେ ଘିଅ ପକେଇଲା ପରି କାର୍ଯ୍ୟକଲା ।

୧୯୩୦ ଦଶକର ଶେଷାର୍ଦ୍ଧ ମାଓ-ସେ-ତୁଙ୍ଗଙ୍କ ଆବିର୍ଭାବ ଓ ଉତ୍ଥାନ ପ୍ରକ୍ରିୟାକୁ ଆଖି ପୂରେଇ ଦେଖିଲା । ସେ ବିଶ୍ୱାସ କରୁଥିଲେ ଯେ ଚୀନର ପ୍ରକୃତ ଶକ୍ତି ତା'ର ଗ୍ରାମୀଣ ଅଞ୍ଚଳ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଅଟେ । ଅର୍ଥନୈତିକ ପଲିସି କ୍ଷେତ୍ରରେ ମାଓ ସମ୍ପୂର୍ଣ୍ଣ ରୂପେ ଅସଫଳ ରହିଲେ । ଆଗକୁ ଆଗକୁ ମାଡ଼ି ଚାଲିବା ପାଇଁ ତାଙ୍କର ପ୍ରଚଣ୍ଡ ଉତ୍କଣ୍ଠା ତଥା ସାଂସ୍କୃତିକ ବିପ୍ଳବ ଚୀନର ଅର୍ଥନୈତିକ ଅଧୋଗତିର ବେଗକୁ ତ୍ୱରାନ୍ୱିତ କଲା, ଯଦ୍ୱାରା ରାଷ୍ଟ୍ରୀୟ ପୁଞ୍ଜିର ସଠିକ୍ ନିର୍ଦ୍ଧାରଣ ଓ ବଣ୍ଟନରେ ଘୋର ବ୍ୟତିକ୍ରମ ପରିଲକ୍ଷିତ ହେଲା । ଡେଙ୍ଗ ଜିଆ-ଓ-ପିଙ୍ଗ ଯେ କି ସାଂସ୍କୃତିକ ବିପ୍ଳବ ଚିନ୍ତାଧାରାର ବିରୋଧ କରୁଥିଲେ, ତାଙ୍କୁ ଦୂରଦୂରାନ୍ତର ଫାର୍ମ ହାଉସ୍ ମାନଙ୍କରେ କାମ କରିବାକୁ ପଠାଇ ଦିଆଗଲା ।

୧୯୭୬ ମସିହାରେ ମାଓ-ସେ-ତୁଙ୍ଗ ଦେହତ୍ୟାଗ କଲେ । ତା'ପରେ ଚେୟାରମ୍ୟାନ୍ ଡେ଼ଙ୍ଗ ଚୀନରେ ଅର୍ଥନୈତିକ ସଂସ୍କାର ବ୍ୟବସ୍ଥାର ପ୍ରଚଳନ ପାଇଁ ୧୯୭୮ ମସିହାରେ ନିର୍ଣ୍ଣୟ ନେଲେ । ଡେଙ୍ଗ ଭାରତ ପରି ଅର୍ଥନୀତିଜ୍ଞମାନଙ୍କ

ଦ୍ୱାରା କୌଣସି ରାଷ୍ଟ୍ରୀୟ ଅର୍ଥନୈତିକ ବ୍ଲୁପ୍ରିଣ୍ଟ ତିଆରି କରି ନ ଥିଲେ । ସେ ଚୀନରେ ଏକ ନିଛକ ଜୀବନଧର୍ମୀ ଉପାୟ ଅବଲମ୍ବନ ମାଧ୍ୟମରେ ବିଶେଷତଃ 'ଲର୍ଣ ବାଇ ଡୁଇଙ୍ଗ' ଅର୍ଥାତ୍ 'କାର୍ଯ୍ୟକରି ସେଥିରୁ ଶିକ୍ଷା ଲାଭ କର' ଉପାୟ ପରିପ୍ରୟୋଗ କରି ଅର୍ଥନୈତିକ ଉଦାରୀକରଣ ପ୍ରକ୍ରିୟାକୁ ଜାରି ରଖିଥିଲେ । ଅର୍ଥନୈତିକ ସଂସ୍କାରର ରାସ୍ତାକୁ ବହୁ ବିକାଶଶୀଳ ରାଷ୍ଟ୍ର ଯେଭଳି ଭାବେ ବାଛି ନେଇଥିଲେ, ଚୀନ ବାଛି ନେଇଥିବା ରାସ୍ତା କିନ୍ତୁ ତା' ଠାରୁ ଟିକେ ଭିନ୍ନ ଥିଲା; କାରଣ ସେ ସମୟରେ ଚୀନ କୌଣସି ଅର୍ଥନୈତିକ ଶଙ୍କଟ ଦେଇ ଗତିକରୁ ନ ଥିଲା । ତେଣୁ ଏହି ସଂସ୍କାର ପ୍ରକ୍ରିୟା ସ୍ଥିରତା ପ୍ରକ୍ରିୟାକୁ ଲକ୍ଷ୍ୟକୈନ୍ଦ୍ରିକ କରି ନ ଥିଲା । ଚୀନ ରାଷ୍ଟ୍ରର ସର୍ବାଙ୍ଗୀନ ଅଭିବୃଦ୍ଧିକୁ ତା'ର ଏକମାତ୍ର ଲକ୍ଷ୍ୟ ବୋଲି ବିବେଚନା କଲା ଏବଂ କୃଷିରୁ ହିଁ ଏହି ପ୍ରକ୍ରିୟାର ଶୁଭାରମ୍ଭ କଲା । ଅର୍ଥନୈତିକ ଉଦାରୀକରଣର ପ୍ରଣୟନ ସତ୍ତ୍ୱେ ମଧ୍ୟ ୧୯୮୯ର ଟିଆନାନ୍‌ମେନ୍ ଘଟଣା ପ୍ରମାଣ କରିଦେଲା ଯେ ପାର୍ଟିର ନେତୃତ୍ୱ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ସଂସ୍କାର ଆଣିବାରେ ସେପରି କୌଣସି ଆଗ୍ରହ ପ୍ରକାଶ କରୁନାହାନ୍ତି । ୧୯୯୨ ମସିହାରେ ଡେଙ୍ଗ୍ ଦକ୍ଷିଣ ଚୀନ ପରିଭ୍ରମଣରେ ଯାଇ ତାଙ୍କର ଅତ୍ୟନ୍ତ ଲୋକପ୍ରିୟ ଅଭିଭାଷଣ - 'To get rich is glorious' ଅର୍ଥାତ୍ 'ଧନୀ ହେବା ଏକ ଗୌରବମୟ ଘଟଣା' ପ୍ରଦାନ କରିଥିଲେ । ନବେ ଦଶକରେ ଚୀନର ଅସାଧାରଣ ଅଭିବୃଦ୍ଧି ଓ ଅଲୌକିକ ପ୍ରଗତି ସମଗ୍ର ବିଶ୍ୱବାସୀଙ୍କୁ ଚକିତ, ସ୍ତମ୍ଭିତ ଓ ବିମୋହିତ କରିଦେଲା । ଏହା କେବଳ ସମ୍ଭବ ହୋଇ ପାରିଲା ପାର୍ଟି ନେତୃବୃନ୍ଦଙ୍କ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ପ୍ରତି ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ ମନୋଭାବ ଓ ଅହେତୁକ ସମର୍ଥନ ପାଇଁ ।

## ଚୀନର ଅର୍ଥନୈତିକ ସାଫଲ୍ୟତା :

ବିଂଶ ଶତାବ୍ଦୀର ଶେଷ ଦୁଇ ଦଶକରେ ଚୀନ ତା'ର ସର୍ବାଙ୍ଗୀନ ରାଷ୍ଟ୍ରୀୟ ଅଭିବୃଦ୍ଧି ଜନିତ ସାଫଲ୍ୟତାର ଯେଉଁ ସ୍ୱାଦ ଚାଖିଲା, ନିମ୍ନରେ ବର୍ଣ୍ଣିତ କେତେକ ଉଦାହରଣରୁ ତାହା ଆହୁରି ସ୍ପଷ୍ଟଭାବେ ପ୍ରତୀୟମାନ ହୋଇଯିବ । ୧୯୭୮ ରୁ ୧୯୯୯ ମସିହା ଏହି ୨୧ ବର୍ଷ ମଧ୍ୟରେ ଚୀନରେ ମୁଣ୍ଡପିଛା ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି)ରେ ୩.୩ ଗୁଣ ବୃଦ୍ଧି ଘଟିଛି । ପୁନଶ୍ଚ ୧୯୭୮ ମସିହାରେ ଚୀନର ମୁଣ୍ଡପିଛା ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ ଭାରତର ମୁଣ୍ଡପିଛା

ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ ସହ ପ୍ରାୟ ସମାନ ହୋଇଥିଲା ବେଳେ ୧୯୯୯ ମସିହା ବେଳକୁ ଅର୍ଥନୈତିକ ଚିତ୍ର ସମ୍ପୂର୍ଣ୍ଣ ଓଲଟ ପାଲଟ ହୋଇଗଲା ଓ ଚୀନର ମୁଣ୍ଡପିଛା ଜି.ଡ଼ି.ପି ଭାରତର ମୁଣ୍ଡପିଛା ଜି.ଡ଼ି.ପି ଠାରୁ ୮୦ ପ୍ରତିଶତ ଅଧିକ ହୋଇଗଲା ।

ଚୀନର ଅର୍ଥନୈତିକ ଅଭିବୃଦ୍ଧି ପ୍ରକ୍ରିୟାକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଯଥା - ୧୯୭୮ ରୁ ୧୯୯୩ ମସିହା ପ୍ରଥମ ପର୍ଯ୍ୟାୟ ଓ ୧୯୯୪ ମସିହାରୁ ଆଜି ପର୍ଯ୍ୟନ୍ତ ଦ୍ୱିତୀୟ ପର୍ଯ୍ୟାୟ । ପ୍ରଥମ ପର୍ଯ୍ୟାୟ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାର ପ୍ରମୁଖ ରୂପରେଖ ଓ ଚରିତ୍ର ହେଲା ବହୁ ନନ୍-ଷ୍ଟେଟ୍ ଏଣ୍ଟରପ୍ରାଇଜସ୍ ବା ବେସରକାରୀ ସଂସ୍ଥାମାନଙ୍କ ଅଭ୍ୟୁଦୟ । ୧୯୭୮ରୁ ୧୯୯୩ ମସିହା ମଧ୍ୟରେ ଚୀନର ଜାତୀୟ ଅଭିବୃଦ୍ଧିରେ ଏହି ବେସରକାରୀ ସଂସ୍ଥାମାନଙ୍କର ଯୋଗଦାନ ଅଂଶ ୨୨ ପ୍ରତିଶତରୁ ୫୭ ପ୍ରତିଶତକୁ ବୃଦ୍ଧି ଘଟିଥିଲା । ଚୀନର ଗ୍ରାମୀଣ ସଂସ୍କାର ପ୍ରକ୍ରିୟାର ଦୁଇଟି ପ୍ରମୁଖ ଅସ୍ତ୍ର ହେଲା -

(୧) କୃଷିଜାତ ଦ୍ରବ୍ୟଗୁଡ଼ିକ ପାଇଁ ମୁକ୍ତ ବଜାରର ସୃଷ୍ଟି ଓ ଚୀନୀୟ ସମାଜର ଅଣସମ୍ମିଳିତ ବ୍ୟବସ୍ଥା । ଅଶି ଦଶକର ଶେଷାର୍ଦ୍ଧବେଳକୁ ପ୍ରାୟ ୬୦ ପ୍ରତିଶତ କୃଷିଜାତ ଦ୍ରବ୍ୟ ପ୍ରତିଯୋଗିତାମୂଳକ ବଜାରରେ ବିକ୍ରୀବଟା ହେବା ଆରମ୍ଭ ହୋଇଯାଇଥିଲା, ଯାହାକି ୧୯୭୮ ମସିହାରେ କେବଳ ମାତ୍ର ୮ ପ୍ରତିଶତ ଥିଲା । ୧୯୮୩ ମସିହା ବେଳକୁ The System of People's Communes ସମ୍ପୂର୍ଣ୍ଣ ରୂପେ ଉଚ୍ଛେଦ ହୋଇଯାଇଥିଲା ।

(୨) ପ୍ରଚଳିତ ସଂସ୍କାର ବ୍ୟବସ୍ଥାର ଦ୍ୱିତୀୟ ପର୍ଯ୍ୟାୟ ଥିଲା 'ଯୋଜନା ବ୍ୟବସ୍ଥା' ସ୍ଥାନରେ 'ବଜାର ବ୍ୟବସ୍ଥା'ର ପ୍ରଚଳନ । ଏହି ବଜାର ବ୍ୟବସ୍ଥାର ପ୍ରଚଳନ ଫଳରେ ଚୀନର ହାତମୁଠାକୁ ଆସିଥିବା କେତେକ ମୁଖ୍ୟ ଉପଲବ୍ଧତା ଏଠାରେ ପ୍ରଣିଧାନଯୋଗ୍ୟ । ଯଥା : ବୈଦେଶିକ ବିନିମୟ ମୁଦ୍ରାର ହାରରେ ସମ୍ମିଶ୍ରଣ ଓ କରେଣ୍ଟ ଆକାଉଣ୍ଟର ପରିବର୍ତ୍ତନଶୀଳତା; ଟିକସ ଓ ଆର୍ଥିକ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ; ମୁଦ୍ରାର କେନ୍ଦ୍ରୀକରଣ ଏବଂ ଅର୍ଥନୈତିକ ସଂସ୍କାର; ସରକାରୀ ବ୍ୟବସ୍ଥା ଉପରେ ଗୁରୁତ୍ୱ ପ୍ରଦାନ ନକରି ଘରୋଇ ସଂସ୍ଥା ଉପରେ ପ୍ରାଧାନ୍ୟ ଦେବା ସହିତ ସରକାରୀ ମାଲିକାନାରେ ଥିବା ସଂସ୍ଥାଗୁଡ଼ିକର ପୁନର୍ବିନ୍ୟାସ କରାଯିବା ଉଚିତ ।

ଚୀନରେ ମୁଦ୍ରାସ୍ଫୀତି ଏକ ଜଟିଳ ସମସ୍ୟାଭାବେ କେବେ ସାମନାରେ ଆସି ଉଭା ହୋଇନାହିଁ । କୃଷି କ୍ଷେତ୍ରରେ ଅଭୂତପୂର୍ବ ସଫଳତା ହାସଲ କରି ସାରିଲା ପରେ ଚୀନ ତା'ର ବାହ୍ୟ କ୍ଷେତ୍ରଗୁଡ଼ିକୁ ବେଶ ସଠିକ୍ ଢଙ୍ଗରେ ପରିଚାଳନା କଲା । ଚୀନ ତା'ର ଅନ୍ତର୍ଦ୍ଦେଶୀୟ ମୁଦ୍ରାକୁ ଦୀର୍ଘ ୨୧ ବର୍ଷ ଧରି ବାର୍ଷିକ ୮.୭ ପ୍ରତିଶତ ହାରରେ ମୂଲ୍ୟ ହ୍ରାସ କରାଇ ପାରିଥିବାରୁ ଚୀନ ତା'ର ବର୍ହି ବାଣିଜ୍ୟ ଓ ରପ୍ତାନି କାରବାରକୁ କ୍ରମାଗତ ଭାବେ ବୃଦ୍ଧିକରି ପାରିଲା ଏବଂ ବିଶ୍ୱ ପୃଷ୍ଠଭୂମିରେ ଏକ ସ୍ୱଳ୍ପ ମୂଲ୍ୟଭିତ୍ତିକ ଉତ୍ପାଦନ କେନ୍ଦ୍ରିକ ରାଷ୍ଟ୍ରଭାବେ ଉଦ୍‌ଭାସିତ ହେଲା । ବିଗତ ୨୧ ବର୍ଷ ମଧ୍ୟରେ ଚୀନର ରପ୍ତାନି ଓ ଆମଦାନୀ ପରିମାଣ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି.) ର ୧୧ ପ୍ରତିଶତରୁ ୪୩ ପ୍ରତିଶତକୁ ଅଭିବୃଦ୍ଧି ହୋଇପାରୁ ଥିବାରୁ ଚୀନ ଧୀରେ ଧୀରେ ବିଶ୍ୱରେ ନିଜର ଖୋଲାପଣିଆକୁ ମଧ୍ୟ ଅଧିକରୁ ଅଧିକ ଜାହିର କରିପାରିଲା ।

ଅପରପକ୍ଷରେ ଚୀନର 'କରେଣ୍ଟ ଆକାଉଣ୍ଟ' ମଧ୍ୟ ଉଦ୍‌ବୃତ୍ତ ଅଟେ, ଯାହାକି ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ରମାନଙ୍କର ଲକ୍ଷଣରେ ଆଦୌ ପରିଗୋଚର ହୁଏନାହିଁ । ବୈଦେଶିକ ବିନିମୟ ମୁଦ୍ରାର ଗଚ୍ଛିତ ପରିମାଣରେ ଅସାଧାରଣ ବୃଦ୍ଧି ହେତୁ ଚୀନ ତା'ର ବାର୍ଷିକ ଅଭିବୃଦ୍ଧି ହାରକୁ ଅଦ୍ଭୁତ ଭାବେ ୨୬ ପ୍ରତିଶତରେ ପହଞ୍ଚେଇ ପାରିଥିଲା । ଚୀନରେ ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜି ନିବେଶରେ ଅଧିକତମ ଅଭିବୃଦ୍ଧି ମୁଖ୍ୟତଃ ନବେ ଦଶକର ଶେଷାର୍ଦ୍ଧ ବେଳକୁ ହିଁ ଦୃଷ୍ଟିଗୋଚର ହୋଇଥିଲା ।

ଚୀନର ମୁଖ୍ୟ ଦୁର୍ବଳତା ଥିଲା, ଏହାର ଅର୍ଥନୈତିକ ବ୍ୟବସ୍ଥା ଏବଂ କ୍ରମାଗତ ଭାବେ କ୍ଷତିକରି ଚାଲିଥିବା ରାଷ୍ଟ୍ରାୟତ୍ତ ସଂସ୍ଥା । ଅସଂପାଦିତ ଋଣ (ନନ୍ ପର୍‌ଫର୍‌ମିଂ ଲୋନ୍) ଯାହା ମୋଟ ଆଭ୍ୟନ୍ତରୀଣ ଉତ୍ପାଦନର ୧୫.୫ ପ୍ରତିଶତ ଥିଲା, ତାହା ଆସ୍ସେଟ ମ୍ୟାନେଜମେଣ୍ଟ କମ୍ପାନୀ (ଏ.ଏମ.ସି) କୁ ସ୍ଥାନାନ୍ତରିତ କରାଯାଇଛି; ଯାହାକି Asset ର ବିକ୍ରୀବଟା ମାଧ୍ୟମରେ ସମାଧାନର ସୂତ୍ର ଖୋଜି ବାହାର କରିବ । ବ୍ରୁକିଂସ ଇନ୍‌ଷ୍ଟିଚ୍ୟୁସନ୍‌ର ନିକୋଲାସ ଲାର୍ଡ଼ି କୁହନ୍ତି ଯେ - ''ଏ.ଏମ.ସି. ମାନଙ୍କ କ୍ଷେତ୍ରରେ ନିଚ୍ଛକ ସତ ଓ ଗୁପ୍ତ ଘଟଣାଟି ହେଲା ଏହି ଯେ ସେମାନଙ୍କ ପାଖରେ ଆଦୌ କୌଣସି ପଇସା ପତ୍ର ନାହିଁ ।''

ପିପୁଲ୍ସ ବ୍ୟାଙ୍କ ଅଫ୍ ଚାଇନାର ଏକ ଏଷ୍ଟିମେଟ ଉଲ୍ଲେଖ କରିଛି ଯେ ବ୍ୟାଙ୍କିଙ୍ଗ ବ୍ୟବସ୍ଥାର ଅସଂପାଦିତ ଋଣର ପରିମାଣକୁ ଅଭିନିବିଷ୍ଟ କରିବା ପାଇଁ ପ୍ରାୟତଃ

ଜି.ଡ଼ି.ପି.ର ୩୦ ପ୍ରତିଶତ ପୁନଶ୍ଚ ଦରକାର ହୋଇପାରେ । ଶିଳ୍ପଜାତ ଦ୍ରବ୍ୟାଦିର ଉତ୍ପାଦନର ଏକ ତୃତୀୟାଂଶ, ଯାବତୀୟ ସମ୍ପତ୍ତିର ସମଷ୍ଟିର ଅର୍ଦ୍ଧେକ ଓ ସହରମାନଙ୍କରେ ନିଯୁକ୍ତିର ୬୫ ପ୍ରତିଶତ ରାଷ୍ଟ୍ରାୟତ୍ତ ସଂସ୍ଥାମାନଙ୍କରୁ ପ୍ରାୟତଃ ଉପଲବ୍ଧ ହୋଇଥାଏ । ରାଷ୍ଟ୍ରାୟତ୍ତ ସଂସ୍ଥାମାନଙ୍କର ଲାଭ ଓ ଟିକସ ନେଟ୍ କ୍ୟାପିଟାଲ ଷ୍ଟକ୍ ଓ ୱାର୍କିଂ କ୍ୟାପିଟାଲର ଏକ ୟୁନିଟ୍ ପାଇଁ ୧୯୭୮ ମସିହାରେ ୨୪.୨ ପ୍ରତିଶତ ଥିବା ବେଳେ ୧୯୯୦ରେ ୧୨.୪ ପ୍ରତିଶତ ଓ ୧୯୯୬ରେ ୬.୫ ପ୍ରତିଶତକୁ ଖସି ଆସିଥିଲା । ଚୀନ କ୍ଷେତ୍ରରେ ଏହା ହେଉଛି ଅତ୍ୟନ୍ତ ଗୁରୁତର ଦୁର୍ବଳତା । ବିତ୍ତୀୟ କ୍ଷେତ୍ରରେ ଦେଖାଦେଉଥିବା ସମସ୍ୟା କିପରି ଅର୍ଥନୈତିକ ପ୍ରଗତିର ଧାରାକୁ ବ୍ୟାହତ କରିଥାଏ ଓ ଦୀର୍ଘଦିନ ଧରି ତାକୁ କୌଣସି ପ୍ରକାରରେ ଘୋଷାରି ଘୋଷାରି ଟାଣି ନେଇ ଚାଲିଥାଏ - ଜାପାନ ତାହାର ଏକ ଜ୍ୱଳନ୍ତ ଉଦାହରଣ । ଅର୍ଥନୈତିକ ସଂସ୍କାର ପ୍ରକ୍ରିୟା ଉପରେ କରାଯାଉଥିବା କ୍ରମାନ୍ୱୟ ଗୁରୁତ୍ୱ ପ୍ରଦାନ ଉପରେ ଚୀନର ଅର୍ଥନୈତିକ ସାଫଲ୍ୟତାର ସ୍ଥାୟୀତ୍ୱତା ନିର୍ଭର କରୁଛି, ଯଦ୍ୱାରା ଗୁରୁତ୍ୱପୂର୍ଣ୍ଣ ସ୍ୱଳ୍ପମିଆଦି ମୂଲ୍ୟ ବଦଳରେ ଦୀର୍ଘମିଆଦି ଲାଭର ପଥ ପରିଷ୍କାର ହୋଇଯାଉଛି । ଫଳସ୍ୱରୂପ ଆଜି ଚୀନ ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କ ପାଇଁ ସାମାଜିକ ଓ ଅର୍ଥନୈତିକ ପ୍ରଗତିର ଏକ ମଡ଼େଲ ରୂପେ ଉଦ୍‌ଭାସିତ ହୋଇଛି ଓ ଦ୍ରୁତ ପରିବର୍ତ୍ତନଶୀଳ ବେଜିଂ ଓ ସାଂଘାଇର ଦିଗ୍‌ବଳୟ ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କର ପ୍ରଗତିର ଦିଗ୍‌ବଳୟକୁ ସଂପ୍ରସାରିତ କରିବା ପାଇଁ ଯଥେଷ୍ଟ ଖୋରାକ ଯୋଗେଇ ଦେଇ ଚାଲିଛି ।

**ସମାଜ**

**ତା- ୧୧.୨.୨୦୦୨**



# ପ୍ରଗତିର ମହାଦୌଡ଼ରେ ଚୀନ ଭାରତକୁ ଟପି ଆଗକୁ ଯାଇ ପାରିଲା କିପରି ?

ପନ୍ଦର ବର୍ଷର ଅକ୍ଳାନ୍ତ ପରିଶ୍ରମ, ଦୁଃସାଧ୍ୟ ରଣକୌଶଳର ପରିପ୍ରୟୋଗ ଓ ସଂଘର୍ଷମୟ ମୂଲଚାଲ ପରେ ଚୀନ ନଭେମ୍ବର ୧୧ ତାରିଖ ଦିନ ସଂଗଠିତ ହୋଇଯାଇଥିବା ଦୋହା ମନ୍ତ୍ରୀସ୍ତରୀୟ ସମ୍ମିଳନୀରେ ବିଶ୍ୱ ବାଣିଜ୍ୟ ସଂଗଠନର ପୂର୍ଣ୍ଣ ସଦସ୍ୟ ରାଷ୍ଟ୍ର ହେବାର ମାନ୍ୟତା ଲାଭ କରି ପାରିଲା । ଏହିଦିନ ଚୀନ ଏକ ପ୍ରୋଟୋକଲରେ ଦସ୍ତଖତ କରି ନିଜର ସ୍ୱୀକୃତି ପ୍ରଦାନ କଲା ଓ ନଭେମ୍ବର ୨୦ ତାରିଖ ଦିନ ବିଶ୍ୱ ବାଣିଜ୍ୟ ସଂଗଠନର ମହା ନିର୍ଦ୍ଦେଶକ ମାଇକେଲ୍ ମୁରେ ସମସ୍ତ ସଦସ୍ୟ ରାଷ୍ଟ୍ରମାନଙ୍କୁ ପତ୍ର ମାଧ୍ୟମରେ ଜଣେଇଦେଲେ ଯେ ଡିସେମ୍ବର ୧୧ ତାରିଖ ଦିନ ଏହି ପ୍ରୋଟୋକଲ କାର୍ଯ୍ୟକାରୀ ହେବ ଏବଂ ସେହିଦିନଠାରୁ ହିଁ ଚୀନ ବିଶ୍ୱ ବାଣିଜ୍ୟ ସଂଗଠନର ଏକ ଅଫିସିଆଲ ସଦସ୍ୟ ରାଷ୍ଟ୍ର ହେବ । ଅପେକ୍ଷାର ୩୦ ଦିନ ଅତିବାହିତ ହୋଇଯିବା ପରେ ୨୦୦୧ ମସିହା ଡିସେମ୍ବର ମାସ ୧୧ ତାରିଖ ମଙ୍ଗଳବାର ଦିନ ଚୀନର ଏହି ଦୁର୍ବାର ସ୍ୱପ୍ନ ଫଳବତୀ ହେଲା ଓ ବିଶ୍ୱ ବାଣିଜ୍ୟ ସଂଗଠନର ୧୪୩ ତମ ରାଷ୍ଟ୍ର ହୋଇ ଚୀନ ବିଶ୍ୱ ଦରବାରରେ ସମସ୍ତଙ୍କ ସମ୍ମୁଖରେ ଆସି ସଗର୍ବେ ଦଣ୍ଡାୟମାନ ହେଲା ।

ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ରହେବା ପାଇଁ ସ୍ଥିରିକୃତ ହୋଇଥିବା ନାନାବିଧ ନୀତି ନିୟମକୁ ମାନିନେଇ ଚୀନ ଆଗାମୀ କିଛି ବର୍ଷ ମଧ୍ୟରେ ଟେଲି-କମ୍ୟୁନିକେସନ, ବ୍ୟାଙ୍କିଂ, ଅଟୋମୋବାଇଲ, ଶକ୍ତିଉତ୍ପାଦନ, ଇନ୍ସୁରାନ୍ସ ଓ ବ୍ୟାପାର ବାଣିଜ୍ୟ ଆଦି ବ୍ୟତିରେକ ବହୁ ଶିଳ୍ପ ସଂସ୍ଥା ସ୍ଥାପନା କରିବାର ନିର୍ଭର ପ୍ରତିଶ୍ରୁତି ଦେଇଛି । ଚୀନ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହେବା ପରିପ୍ରେକ୍ଷୀରେ ଭାରତ ପାଇଁ ଏହା ମହଙ୍ଗା ପଡ଼ିବ କି ? ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନର ସଦସ୍ୟତା ଭାରତ ପାଇଁ ମୁଣ୍ଡବ୍ୟଥାର କାରଣ ହେବ କି ? ଭାରତୀୟ

ଅର୍ଥନୀତି ଉପରେ ଏହାର ସୁଦୂର ପ୍ରଭାବ ଅନୁଭୂତ ହେବ କି ? ନା ଭାରତ ପାଇଁ ଏହା ସତରେ ଆଶୀର୍ବାଦ ହେବ, ଶୁଭଙ୍କର ହେବ, ସୌଭାଗ୍ୟମୟ ହେବ ??

ବିଗତ ଦିନମାନଙ୍କରେ ଭାରତ ଓ ଚୀନ ମଧ୍ୟରେ କ୍ରମାଗତ ଭାବେ ବୃଦ୍ଧି ହେଉଥିବା ଅର୍ଥନୈତିକ ଓ ବାଣିଜ୍ୟିକ ସମ୍ପର୍କ ପରିପ୍ରେକ୍ଷୀରେ ଏହି ନୂଆ ଘଟଣାଟି ନିଃସନ୍ଦେହରେ ଭାରତୀୟ କୃଷିଜାତ ଦ୍ରବ୍ୟ, ରସାୟନ, ଫାର୍ମାସେଉଟିକାଲ୍ସ, ବ୍ୟାଙ୍କି ଓ ଇନ୍ସୁରାନ୍ସ ଆଦି କ୍ଷେତ୍ର ପାଇଁ ଚୀନର ବିଶାଳ ବଜାର ଉନ୍ମୁକ୍ତ କରିଦେବ । ପୁନଶ୍ଚ ଏହା ଫଳପ୍ରସୂ ହେବାକୁ ହେଲେ ଭାରତକୁ ବହୁ ଚ୍ୟାଲେଞ୍ଜ ଦେଇ ଗତି କରିବାକୁ ପଡ଼ିବ, ତେବେ ଯାଇଁ ଭାରତର ବଜାରରେ ସଂପ୍ରତି ଚୀନ ଉପଭୋଗ କରୁଥିବା ପ୍ରତିଯୋଗିତାମୂଳକ ସୁଯୋଗର ସମକକ୍ଷ ହେବା ଭାରତ ପାଇଁ ସମ୍ଭବପର ହୋଇପାରିବ । ଆଗରେ ଲମ୍ବା ସଡ଼କ, ଭାରତକୁ ବହୁ ରାସ୍ତା ଯିବାକୁ ବାକି ଅଛି । ସଠିକ୍ ଦିଗ ଓ ଷ୍ଟ୍ରାଟେଜୀ ନିର୍ଣ୍ଣୟ କରି ଭାରତ ତା'ର ବାଣିଜ୍ୟିକ ପଦକ୍ଷେପ ନେବା ଉଚିତ ।

ଡେରିରେ ଗୃହ ପ୍ରବେଶ କରିଥିଲେ ମଧ୍ୟ ଚୀନ ଆଜି ଭାରତ ଅପେକ୍ଷା ବିଶ୍ୱ ବାଣିଜ୍ୟ ସଂଗଠନର ଚ୍ୟାଲେଞ୍ଜକୁ ସମ୍ମୁଖୀନ ହେବା ପାଇଁ ଅପେକ୍ଷାକୃତ ଅଧିକତର ପ୍ରସ୍ତୁତ ଅଛି । ଚୀନ ପାଖରେ ବିଶ୍ୱ ସ୍ତରୀୟ ଭିତ୍ତିଭୂମି, ଏକ ସୁବୃହତ ସ୍ୱଳ୍ପ ମୂଲ୍ୟଭିତ୍ତିକ ଉତ୍ପାଦନଶୀଳ ମୂଳଦୁଆ, ଅତ୍ୟନ୍ତ ଯୋଗ୍ୟ ଓ କୁଶଳୀ ଶ୍ରମ ଶକ୍ତି, ପରିବର୍ତ୍ତନଶୀଳ ଶ୍ରମ ନୀତି ଓ ବିଶାଳ ରପ୍ତାନି ବାଣିଜ୍ୟ ପ୍ରକ୍ଷେତ୍ର ଥିବାର ସେ ଡିଣ୍ଡିମ ପିଟୁଛି । ବିଗତ ଦଶକରେ ଚୀନ ସିଧାସଳଖ ବିଦେଶୀ ପୁଞ୍ଜି ନିବେଶକୁ ଆଶାତୀତ ଭାବେ ଆକର୍ଷିତ କରି ପାରିଥିବାରୁ ବିଜୟ କେତନ ଫର ଫର ଉଡ଼ାଉଛି ।

ବହୁରାଷ୍ଟ୍ରୀୟ କମ୍ପାନୀମାନେ ଚୀନରେ ବିଗତ ଦଶକ ମଧ୍ୟରେ ୩୦୦ ବିଲିୟନ ଡଲାରରୁ ଉର୍ଦ୍ଧ୍ୱ ପୁଞ୍ଜି ବିନିଯୋଗ କରିଥିଲାବେଳେ ଭାରତରେ ମାତ୍ର ୧୮ ବିଲିୟନ ଡଲାରର ପୁଞ୍ଜି ବିନିଯୋଗ କରିଛନ୍ତି । ଅତ୍ୟନ୍ତ ମୂଲ୍ୟବାନ ବିଷୟଟି ହେଲା ଚୀନରେ ଯେଉଁ କ୍ରମବର୍ଦ୍ଧିଷ୍ଣୁ ସିଧାସଳଖ ବିଦେଶୀ ପୁଞ୍ଜି ନିବେଶ ହେଲା, ତହିଁର ଏକ ମୋଟା ଅଂଶ ଚୀନ ତା'ର ନିଜସ୍ୱ ଶିଳ୍ପ ସଂସ୍ଥାଗୁଡ଼ିକର ଆଧୁନିକୀକରଣରେ ବିନିଯୋଗ କଲା ଏବଂ ତହିଁରୁ ଉତ୍ପାଦିତ ସାମଗ୍ରୀଗୁଡ଼ିକୁ ରପ୍ତାନି ଭିତ୍ତିକ କରି ଗଢ଼ି ତୋଳିଲା । ପୁନଃ ରପ୍ତାନି ପାଇଁ ବିଦେଶୀ ସାମଗ୍ରୀଗୁଡ଼ିକର ଚୀନରେ ଉତ୍ପାଦନ

ସଂପ୍ରତି ଚୀନର ମୋଟ ରପ୍ତାନି କାରବାରର ଅର୍ଦ୍ଧେକ ଅଂଶ ମାଡ଼ି ବସି ସାରିଲାଣି ।

ନିର୍ମାଣ ଭିତ୍ତିକ ଶିଳ୍ପ ଓ ରପ୍ତାନି ଉପରେ ଚୀନର କ୍ରମାଗତ ଗୁରୁତ୍ୱ ପ୍ରଦାନକୁ ଧନ୍ୟବାଦ ନ ଦେଇ ରହି ହେଉନାହିଁ । ଚୀନର ମୋଟ ରପ୍ତାନି ପରିମାଣ ସଂପ୍ରତି ୨୫୯ ବିଲିୟନ ଡଲାରକୁ ଛୁଇଁ ପାରିଛି । କେବଳ ଆମେରିକାକୁ ଚୀନର ସାଂପ୍ରତିକ ରପ୍ତାନି ପରିମାଣ ୬୦ ବିଲିୟନ ଡଲାର ଯାହାକି ଭାରତ ଆମେରିକାକୁ କରୁଥିବା ମୋଟ ରପ୍ତାନି ପରିମାଣ ୬୦ ବିଲିୟନ ଡଲାରର ଦେଢ଼ଗୁଣ ଅଟେ । ରପ୍ତାନି ବାଣିଜ୍ୟ କ୍ଷେତ୍ରରେ ଏହି କ୍ରମାଗତ ଅଭିବୃଦ୍ଧି ଏବଂ ଲଗାତର ଭାବେ ଅଧିକ ସଂଚୟ ହାରର ଉପଲବ୍ଧ ଯୋଗୁଁ ଚୀନ ତା'ର ଯୌଗିକ ବାର୍ଷିକ ରାଷ୍ଟ୍ରୀୟ ଅଭିବୃଦ୍ଧି ହାରକୁ ବିଗତ ଦୁଇ ଦଶକ ମଧ୍ୟରେ ୮ ପ୍ରତିଶତରେ ରଖିବାକୁ ସକ୍ଷମ ହୋଇ ପାରିଛି ।

ପ୍ରଗତିର ମହାଦୌଡ଼ରେ ଚୀନ କିପରି ଭାରତକୁ ପଛରେ ପକେଇ ଦେଇ ଗତ ୨୦ ବର୍ଷ ହେଲା ଆଗକୁ ଆଗକୁ ବୀର ଦର୍ପରେ ମାଡ଼ି ଚାଲିଛି । ନିମ୍ନଲିଖିତ କେତୋଟି ପରିସଂଖ୍ୟାନରୁ ତାହା ସ୍ପଷ୍ଟ ପ୍ରତୀୟମାନ ହୋଇଯିବ । ଭାରତ ଓ ଚୀନର ଅର୍ଥନୈତିକ ଅଭିବୃଦ୍ଧିର ତୁଳନାତ୍ମକ ବିଶ୍ଳେଷଣ କଥାଟିକୁ ଆହୁରି ସ୍ପଷ୍ଟ କରିଦେବ ।

(୧) ଗତ କେତେବର୍ଷ ମଧ୍ୟରେ ଚୀନରେ ମୋଟ ସଞ୍ଚୟ ହାର ତା'ର ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନ (ଜି.ଡ଼ି.ପି) ର ୪୦ ପ୍ରତିଶତକୁ ଅତିକ୍ରାନ୍ତ କରିଯାଇଥିଲାବେଳେ ଭାରତରେ ଏହା ୨୦ ରୁ ୨୫ ପ୍ରତିଶତ ସ୍ତର ମଧ୍ୟରେ ସୀମିତ ଅଛି ।

(୨) ଚୀନର ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନ ୧୧୦୦ ବିଲିୟନ ଡଲାର ହୋଇଥିଲାବେଳେ ଭାରତର ୪୨୬ ବିଲିୟନ ଡଲାର ଏବଂ ଚୀନର ମୁଣ୍ଡପିଛା ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନ ୮୮୭ ଡଲାର ହୋଇଥିଲାବେଳେ ଭାରତର ୪୨୪ ଡଲାର ହୋଇ ପାରିଛି ।

(୩) ଚୀନ ବର୍ତ୍ତମାନ ପୃଥିବୀର ୧୦ଟି ବୃହତ୍ତମ ରପ୍ତାନିକାରୀ ରାଷ୍ଟ୍ରମାନଙ୍କ ମଧ୍ୟରୁ ଅନ୍ୟତମ ହୋଇପାରିଛି ଏବଂ ଏହା ୪୦ ବିଲିୟନ ଡଲାରର ଉଦ୍‌ବୃତ୍ତ ବାଣିଜ୍ୟ କାରବାର କରି ପାରିଛି ।

(୪) ଚୀନରେ ଉତ୍ପାଦିତ ସାମଗ୍ରୀ ଗୁଡ଼ିକର ରପ୍ତାନି ୧୯୭୯ ମସିହାରେ ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନର ୪ ପ୍ରତିଶତରୁ ବୃଦ୍ଧି ଘଟି ୧୯୯୯ ମସିହାରେ ତାହା ୧୮ ପ୍ରତିଶତରେ ପହଞ୍ଚି ପାରିଥିଲାବେଳେ ଭାରତ କ୍ଷେତ୍ରରେ ତାହା ୧୯୯୯-୨୦୦୦ ମସିହା ମଧ୍ୟରେ ୭.୧ ପ୍ରତିଶତରେ ପହଞ୍ଚି ପାରିଥିଲା ।

(୫) ଚୀନର ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନରେ ଶିଳ୍ପ ସଂସ୍ଥାମାନଙ୍କର ଅବଦାନ ୧୯୯୯ ମସିହା ସୁଦ୍ଧା ୫୦ ପ୍ରତିଶତକୁ ବୃଦ୍ଧି ପାଇପାରିଥିଲାବେଳେ ଭାରତବର୍ଷରେ ଏହା ବର୍ତ୍ତମାନ ପ୍ରାୟ ୨୩ ପ୍ରତିଶତର ପାଖାପାଖି ରହିଛି ।

(୬) ଚୀନ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ବର୍ଷକୁ ପ୍ରାୟ ୪୦ ବିଲିୟନ ଡଲାର ଆକର୍ଷିତ କରିପାରୁଥିବାବେଳେ ଭାରତ ମାତ୍ର ୩ ବିଲିୟନ ଡଲାରର ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଆକର୍ଷିତ କରିପାରୁଛି ।

(୭) ଚୀନର ବାର୍ଷିକ ରପ୍ତାନି ଜନିତ ଆୟ ଭାରତର ରପ୍ତାନି ଜନିତ ଆୟର ୬ ଗୁଣ ।

(୮) ଚୀନରେ ଗଚ୍ଛିତ ଥିବା ବୈଦେଶିକ ମୁଦ୍ରାର ପରିମାଣ ୧୬୦ ବିଲିୟନ ଡଲାର ହୋଇଥିଲାବେଳେ ଭାରତରେ ଗଚ୍ଛିତ ଥିବା ବୈଦେଶିକ ମୁଦ୍ରାର ପରିମାଣ ୪୬ ବିଲିୟନ ଡଲାର ଅଟେ ।

ବିଶ୍ୱବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହେବା ପରେ ଚୀନ ଏବେ ବିଶ୍ୱ ବଜାରରେ ନିଜର ଆଧିପତ୍ୟ ଜାହିର୍ କରି ତହିଁରୁ ଫାଇଦା ଉଠାଇବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟିତ ହେବ । ଚୀନ ସରକାର କରିଥିବା ଷ୍ଟଡ଼ି ରିପୋର୍ଟରୁ ଜଣାଯାଏ ଯେ ବିଶ୍ୱ ବାଣିଜ୍ୟ ସଂଗଠନରୁ ସଦସ୍ୟତା ଲାଭ କରିବା ପରେ ୨୦୧୦ ମସିହା ସୁଦ୍ଧା ଚୀନ ତା'ର ସାଂପ୍ରତିକ ବୈଦେଶିକ ବାଣିଜ୍ୟ କାରବାର ଜନିତ ଲବ୍ଧ ରାଶିକୁ ଦ୍ୱିଗୁଣିତ କରିବ, ଯଦ୍ୱାରା ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନ ବର୍ଷକୁ ୩-୫ ପ୍ରତିଶତ ବୃଦ୍ଧି ଘଟିବ; ଯାହାକି ଚୀନରେ ଅଗଣିତ ନୂଆ ଚାକିରି ସୃଷ୍ଟି କରିବାର ସୁଗମ ପଥ ଉନ୍ମୋଚନ କରିଦେବ । ପୁନଶ୍ଚ ଚୀନରେ ସିଧାସଳଖ ବିଦେଶୀ ପୁଞ୍ଜି ନିବେଶ ପରିମାଣରେ ତୀକ୍ଷ୍ଣ ବୃଦ୍ଧି ଘଟିବ, ଯେହେତୁ ଗୋଟିକ ପରେ ଗୋଟିଏ ବହୁ ରାଷ୍ଟ୍ରୀୟ କମ୍ପାନୀ ସେମାନଙ୍କର ନିର୍ମାଣଭିତ୍ତିକ ଶିଳ୍ପକୁ ଚୀନ ମାଟିରେ ସ୍ଥାପନା

କରିବାକୁ ଅତ୍ୟନ୍ତ ଆଗ୍ରହର ହୋଇ ପଡ଼ିବେ । ହଂକଂର କେତେକ ବ୍ୟାଙ୍କ ଭବିଷ୍ୟବାଣୀ ଶୁଣାଇ କହିଛନ୍ତି ଯେ ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନ ସଦସ୍ୟ ରାଷ୍ଟ୍ର ହୋଇପାରିଥିବା ଯୋଗୁଁ ୨୦୦୫ ମସିହା ସୁଦ୍ଧା ଚୀନରେ ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜି ନିବେଶର ପରିମାଣ ବର୍ଷକୁ ୧୦୦ ବିଲିୟନ ଡଲାର ହିସାବରେ ବୃଦ୍ଧି ଘଟିବ । ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନର ସଦସ୍ୟତାକୁ ନେଇ ଭାରତ ସେଥିରୁ କେତେଦୂର ଫାଇଦା ଉଠେଇ ପାରିବ ତାହା ସମ୍ପୂର୍ଣ୍ଣ ନିର୍ଭର କରିବ ଆଗାମୀ ୨-୩ ବର୍ଷ ମଧ୍ୟରେ ଚୀନ ସହ ଭାରତର ପ୍ରତିଯୋଗିତାମୂଳକ ଶକ୍ତିର ପ୍ରଦର୍ଶନ ତଥା ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ଭାରତ କେତେଦୂର ଆଗକୁ ଆଗକୁ ଠେଲିନେଇ ଯାଇ ପାରୁଛି । ଭାରତ ଓ ଚୀନ ଉଭୟ କେତେକ ସମାନ ସୁବିଧା ଉପଭୋଗ କରୁଛନ୍ତି ଯଥା - ବିଶାଳ ଓ କ୍ରମବର୍ଦ୍ଧମାନ ଅନ୍ତର୍ଦ୍ଦେଶୀୟ ବଜାର ଓ ସ୍ୱଳ୍ପମୂଲ୍ୟରେ ସୁଲଭ ଶ୍ରମ ଶକ୍ତିର ଉପଲବ୍ଧତା । ପରନ୍ତୁ ଏହା ସମସ୍ତଙ୍କୁ ଗୋଚର ଯେ ଭାରତର ଭିତ୍ତିଭୂମିର ଅବସ୍ଥା ଅତ୍ୟନ୍ତ ଦୟନୀୟ, ରପ୍ତାନିକାରୀମାନଙ୍କୁ କରାଯାଉଥିବା ଦେଣନେଣର ମୂଲ୍ୟ ଅତ୍ୟନ୍ତ ଅଧିକ, ଅନୁଷ୍ଠାନ ଭିତ୍ତିକ ସହଯୋଗ ପର୍ଯ୍ୟାପ୍ତ ନୁହେଁ ଏବଂ ସର୍ବୋପରି ଶ୍ରମ ନୀତି ମଧ୍ୟ ଅତି ପୁରୁଣା କାଳର, ତେଣୁ ପ୍ରଗତିର ଜୟମାଲ୍ୟ ଭାରତ ବକ୍ଷଦେଶ ମଣ୍ଡନ କରିପାରୁନାହିଁ ।

ଏଥିପାଇଁ ଆଶ୍ଚର୍ଯ୍ୟାନ୍ୱିତ ହେବାର କୌଣସି କାରଣ ନାହିଁ ଯେ ଚୀନ ସଂପ୍ରତି ଯେଉଁ ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜିନିବେଶ ଆକର୍ଷିତ କରି ପାରୁଛି, ଏପରିକି ତା'ର ଏକ ଅଂଶବିଶେଷକୁ ମଧ୍ୟ ଆକର୍ଷିତ କରି ପାରିବାର ଶକ୍ତି, ସାମର୍ଥ୍ୟ ଭାରତ ପାଖରେ ନାହିଁ । ୧୯୯୨-୯୩ ପରଠାରୁ କେନ୍ଦ୍ରରେ କ୍ରମାନ୍ୱୟ ଭାବେ ସ୍ଥାପିତ ହୋଇଥିବା ସରକାରମାନଙ୍କ ଦ୍ୱାରା କରାଯାଉଥିବା ଅନବରତ ପ୍ରଚେଷ୍ଟା ସତ୍ତ୍ୱେ ବିଗତ ୩ ବର୍ଷ ମଧ୍ୟରେ ବାର୍ଷିକ ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜିନିବେଶର ପରିମାଣ ୨.୫ ବିଲିୟନ ଡଲାରର ନିମ୍ନରେ ରହୁଅଛି, ଯଦ୍ୟପି ବାର୍ଷିକ ୧୦ ବିଲିୟନ ଡଲାରର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ଭାରତ ଓ ଚୀନ ମଧ୍ୟରେ ଦ୍ୱିପାକ୍ଷିକ ବାଣିଜ୍ୟ କାରବାର ୧୯୯୧ ମସିହାରେ ମାତ୍ର ୨୫୬ ମିଲିୟନ ଡଲାର ଥିବା ବେଳେ ୨୦୦୦ ମସିହା ବେଳକୁ ତହିଁରେ ବୃଦ୍ଧି ଘଟି ୨.୯୧ ବିଲିୟନ ଡଲାରରେ ପହଞ୍ଚି ପାରିଥିଲା । ଉଭୟ ଭାରତ ଓ ଚୀନ ଦେଶରେ ଥିବା ଅଗାଧ ପ୍ରାଚୁର୍ଯ୍ୟ ଦ୍ୱିପାକ୍ଷିକ ବାଣିଜ୍ୟ

କାରବାରକୁ ଆହୁରି ଉଚ୍ଚତର ସୋପାନକୁ ନ ନେଇଯିବ ବା କାହିଁକି ? ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନ ସଦସ୍ୟ ରାଷ୍ଟ୍ର ହୋଇଗଲା ପରେ ଉଭୟ ଦେଶ ମଧ୍ୟରେ ଅର୍ଥନୈତିକ ଓ ବାଣିଜ୍ୟିକ ସଂପର୍କ ଆହୁରି ଦୃଢ଼ୀଭୂତ ହେବ, ଯାହାକି ନାନାବିଧ ସୁଯୋଗ ଓ ସମ୍ଭାବନାର ପଥ ଉନ୍ମୋଚ଼ନ କରିଦେବ ।

ଆହୁରି ନିକଟରୁ କଥାଟିକୁ ଆଲୋଚ଼ନା କଲେ ଜଣାପଡ଼ିବ ଯେ ଭାରତୀୟ ରପ୍ତାନିକାରୀମାନଙ୍କ ପାଇଁ ଚୀନକୁ କାର୍ପାସ ବସ୍ତ୍ର, ସୋୟା, ଅତ୍ୟନ୍ତ ମୂଲ୍ୟବାନ ସମୁଦ୍ରଜାତ ଦ୍ରବ୍ୟ, ଖଣିଜ ପଦାର୍ଥ, ଗୃହ ନିର୍ମାଣ ସାମଗ୍ରୀ ଏବଂ ଫଳ ଓ ପନିପରିବା ରପ୍ତାନି ଅତ୍ୟନ୍ତ ଲାଭଦାୟକ ବ୍ୟାପାର ହେବ । ସୂଚ଼ନା ପ୍ରଯୁକ୍ତି ବିଦ୍ୟା, ବ୍ୟାଙ୍କିଂ ଓ ଇନ୍‌ସୁରାନ୍ସ ଆଦି କ୍ଷେତ୍ରରେ ମଧ୍ୟ ଉଭୟ ଦେଶ ମଧ୍ୟରେ ସହଯୋଗିତା ସୁଫଳ ଆଣି ଦେବ । ଚୀନର ବିଶ୍ୱ ବାଣିଜ୍ୟ ସଂଗଠନରେ ସଦସ୍ୟ ହେବା ପରିପ୍ରେକ୍ଷୀରେ ବେଜିଂରେ ଫେବୃୟାରୀ ୨୨ ତାରିଖ ୨୦୦୦ ମସିହାରେ ହୋଇଥିବା ଭାରତ-ଚୀନ ଦ୍ୱିପାକ୍ଷିକ ରାଜିନାମା ଅନୁଯାୟୀ ଚୀନ ଭାରତୀୟ ପଦାର୍ଥ ଓ ସେବା ପ୍ରକ୍ଷେତ୍ରଗୁଡ଼ିକ ପାଇଁ ନିଜର ବଜାର ଖୋଲି ଦେବା ପାଇଁ ସ୍ୱୀକୃତି ଦେଇଛି । ଭାରତରୁ ଆମ୍ବ, ଅନ୍ୟାନ୍ୟ ସଦ୍ୟ ଫଳ ଓ ପନିପରିବା ଚୀନକୁ ହେଉଥିବା ରପ୍ତାନି ଉପରେ ଲାଗୁଥିବା ସାଂପ୍ରତିକ କଟକଣାକୁ ସମୀକ୍ଷା କରିବାକୁ ଚୀନ ପ୍ରତିଶ୍ରୁତି ଦେଇଛି । ସେହିପରି ଫାର୍ମାସେଉଟିକାଲ୍ସ କ୍ଷେତ୍ରରେ ନାନାବିଧ ନୀତି ନିୟମ ଓ ଆଇନ କାନୁନକୁ କଡ଼ାକଡ଼ି ଭାବେ ପାଳନ କରି ଔଷଧ ପତ୍ରର ଆମଦାନୀ, ବଣ୍ଟନ୍, ବିକ୍ରୀବଟା ଓ ସେଗୁଡ଼ିକର ପଞ୍ଜୀକରଣ ପ୍ରତି ଯଥାଯଥ ଗୁରୁତ୍ୱ ଦେବାକୁ ଚୀନ ପକ୍ଷରୁ ଭାରତକୁ ନିର୍ଭର ଆଶ୍ୱାସନା ଓ ପ୍ରତିଶ୍ରୁତି ଦିଆଯାଇଛି ।

ଦୁର୍ଭାଗ୍ୟବଶତଃ ଏ ସମସ୍ତ ପ୍ରଚ଼େଷ୍ଟା ସତ୍ତ୍ୱେ ଭାରତୀୟ ଶିଳ୍ପ ସଂସ୍ଥାମାନେ ଭାରତରେ ଉତ୍ପାଦିତ ନାନାବିଧ ସାମଗ୍ରୀର ଚୀନକୁ ରପ୍ତାନି କରିବାର ସମ୍ଭାବ୍ୟ ସୁଯୋଗ ଅପେକ୍ଷା ଚୀନରେ ଉତ୍ପାଦିତ ପଦାର୍ଥଗୁଡ଼ିକର ଶସ୍ତା ଆମଦାନୀ ଓ ଭାରତୀୟ ବଜାରରେ ସେଗୁଡ଼ିକର ସୁଲଭ ଉପଲବ୍ଧତାର ସମ୍ଭାବନାକୁ ନେଇ ଅତ୍ୟନ୍ତ ଚିନ୍ତିତ ଓ ବ୍ୟଥିତ ହୋଇପଡ଼ିଛନ୍ତି । ଭାରତୀୟ ଶିଳ୍ପ ଓ ବଣିକ ମହାସଂଘ (ସି.ଆଇ.ଆଇ) ଚୀନରୁ ହେଉଥିବା ଶସ୍ତା ଆମଦାନୀ ଉପରେ କେନ୍ଦ୍ର ସରକାରଙ୍କ ସହ ଗତବର୍ଷ ସୁବିସ୍ତୃତ ଆଳାପ ଆଲୋଚ଼ାନ କରିଥିଲେ । ଚୀନରେ ଉତ୍ପାଦିତ

ବସ୍ତୁମାନ ଯଥା - ମୋଟର ଗାଡ଼ିର ଟାୟାର ଚକା, ସିମେଣ୍ଟ, ବୟନଜାତ ଦ୍ରବ୍ୟ, ଗୃହପୋଯୋଗୀ ନାନାବିଧ ଇଲେକ୍‌ଟ୍ରୋନିକ୍ ସାମଗ୍ରୀ, ପିଲାଙ୍କ ଖେଳନା ଓ ଅନ୍ୟାନ୍ୟ ବହୁ ନିତ୍ୟ ବ୍ୟବହାର୍ଯ୍ୟ ଗୃହୋପକରଣ, ଉଭୟ ସରକାରୀ ଓ ବେସରକାରୀ ସଂସ୍ଥା ମାଧ୍ୟମରେ କ୍ରମାଗତ ଭାବେ ଆମଦାନୀ କରାଯାଇ ଭାରତୀୟ ବଜାରକୁ କବ୍‌ଜା କରିବାକୁ ଯାଉଥିବାରୁ ସେମାନେ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଛନ୍ତି । ଭାରତରେ ଉତ୍ପାଦିତ ନାନାବିଧ ସାମଗ୍ରୀ ଶ୍ରୀଲଙ୍କା, ନେପାଳ, ବଙ୍ଗଳାଦେଶ, ମ୍ୟାନାମାର ଓ ବହୁ ଦକ୍ଷିଣ ପୂର୍ବ ଏସୀୟ ରାଷ୍ଟ୍ରମାନଙ୍କୁ ରପ୍ତାନି କରିବାରେ ଭାରତ ଚୀନ ଠାରୁ ଯେଉଁ କ୍ରମାଗତ ପ୍ରତିଯୋଗିତା ମୂଳକ ଆହ୍ୱାନର ସମ୍ମୁଖୀନ ହେଉଛି ସେ ବିଷୟରେ ମଧ୍ୟ ଏହି ରାଷ୍ଟ୍ରୀୟ ବୃତ୍ତିଗତ ସଂସ୍ଥାମାନେ ଚିନ୍ତିତ ଓ ବ୍ୟଥିତ ଅଛନ୍ତି ।

ଚୀନ ତରଫରୁ ହେଉଥିବା ବହୁବିଧ ଅସାଧୁ ପ୍ରତିଯୋଗିତାର ସଫଳ ମୁକାବିଲା କରିବା ସଙ୍ଗେ ସଙ୍ଗେ ସେ ସବୁର ସଠିକ ପ୍ରତିହତ କରିବା ପାଇଁ କେନ୍ଦ୍ର ବାଣିଜ୍ୟ ଓ ଶିଳ୍ପମନ୍ତ୍ରୀ ଶ୍ରୀ ମୁରାସୋଲି ମାରନ ଚୀନ ବିରୁଦ୍ଧରେ Anti Dumping Measures ଗୁଡ଼ିକର ବ୍ୟବହାର ପାଇଁ ଲବି ନ କରିବା ପାଇଁ ଭାରତୀୟ ଶିଳ୍ପ ସଂସ୍ଥାମାନଙ୍କୁ ଉପଦେଶ ଦେଇଛନ୍ତି । ସେ କୁହନ୍ତି ଯେ Anti Dumping ଏବଂ ଆନୁସଙ୍ଗିକ ଡ୍ୟୁଟିର ମହାନିର୍ଦ୍ଦେଶାଳୟ ଯେଉଁ ୯୩ଟି Anti Dumping କେସ୍ ହାତକୁ ନେଇଛନ୍ତି ତନ୍ମଧ୍ୟରୁ ୪୨ଟି କେସ୍ କେବଳ ଚୀନକୁ ହିଁ କେନ୍ଦ୍ରକରି । ସେ ଗୁରୁତ୍ୱ ଦେଇ କୁହନ୍ତି ଯେ ଏପରି କାର୍ଯ୍ୟକ୍ରମ ଚୀନରୁ ହେଉଥିବା ଶସ୍ତା ଆମଦାନୀର ପ୍ରତିହତ ପାଇଁ ସ୍ଥାୟୀ ପ୍ରତିକାରର କୌଣସି ବାଟ ନୁହେଁ । ବାଣିଜ୍ୟିକ ପ୍ରତିବନ୍ଧକର ପରିସରକୁ ସୁବିସ୍ତୃତ କରି ତହିଁରେ ନିଜପାଇଁ ଏକ ନିର୍ଭରଯୋଗ୍ୟ ଆଶ୍ରୟସ୍ଥଳ ଖୋଜିବା ଅପେକ୍ଷା ତୀବ୍ର ପ୍ରତିଯୋଗିତାମୂଳକ ଆହ୍ୱାନକୁ ଭାରତୀୟ ଉଦ୍ୟୋଗମାନେ କେତେଦୂର ଦୃଢ଼ଭାବେ ସମ୍ମୁଖୀନ ହୋଇପାରୁଛନ୍ତି, ତାହା ଉପରେ ସେମାନଙ୍କର ଭବିଷ୍ୟତ ସମ୍ପୂର୍ଣ୍ଣରୂପେ ନିର୍ଭର କରୁଛି ।

ଚୀନ ତରଫରୁ ଦେଖାଦେଇଥିବା ଏହି ବାଣିଜ୍ୟିକ ଡର ବରଂ ଆଜିର ଜଗତୀକରଣ ଯୁଗରେ ଭାରତୀୟ ଶିଳ୍ପ ସଂସ୍ଥାମାନଙ୍କର ସାଂପ୍ରତିକ ଦୁର୍ବଳତାର ମୁଖା ଖୋଲି ଦେଉଛି । ତେଣୁ ସମସ୍ୟାର ଜଡ଼କୁ ମର୍ମେ ମର୍ମେ ଅନୁଭବ କରି

ଭାରତୀୟ ଶିଳ୍ପସଂସ୍ଥାମାନଙ୍କୁ ବାଣିଜ୍ୟକ ପଶାପାଲିର ଏହି ତୀବ୍ର ପ୍ରତିଯୋଗିତାମୂଳକ ଖେଳରେ ଠିକ୍‌ଭାବେ ଗୋଟି ଚାଳନା କରିବାକୁ ପଡ଼ିବ ।

ଭାରତୀୟ ରପ୍ତାନି ଚାଙ୍ଗୁଡ଼ି ଯଦି ଦିନକୁ ଦିନ ତା'ର ଆକାରରେ ଛୋଟ ହୋଇ ଚାଲିଛି, ତା'ର କାରଣ ଖୋଜିବାକୁ ଆମକୁ ଆଉ ଏଣେ ତେଣେ ବୁଲି ବାଉଳିଆ ହେବାକୁ ପଡ଼ିବନି । ବିଶ୍ୱ ବଜାରରେ ଉପଲବ୍ଧ ହେଉଥିବା ପ୍ରାୟ ଅଧିକାଂଶ ଭାରତୀୟ ସାମଗ୍ରୀର ମୂଲ୍ୟ ଆକାଶଛୁଆଁ । କେବଳ ସଫ୍ଟୱେୟାର, ହୀରା ପଥର, ସ୍ୱଳ୍ପ ମୂଲ୍ୟର ଟେକ୍ସଟାଇଲ୍ସ ଏବଂ ଚମଡ଼ାଜାତ ଦ୍ରବ୍ୟ ବ୍ୟତିରେକ ପ୍ରାୟ ଆଉ ଏପରି କୌଣସି ପଦାର୍ଥ ନାହିଁ, ଯେଉଁଥିରେ କି ଭାରତ ପ୍ରତିଯୋଗିତାମୂଳକ ବୋଲି ନିଜକୁ ସାବ୍ୟସ୍ତ କରିପାରିବ । ପ୍ରକାରାନ୍ତରେ ଚୀନର ଶିଳ୍ପସଂସ୍ଥାମାନେ ଅତ୍ୟନ୍ତ ପ୍ରତିଯୋଗିତାମୂଳକ ହୋଇ ନିଜକୁ ଠିକ୍ ଢଙ୍ଗରେ ଗଢ଼ି ତୋଳିପାରିଛନ୍ତି ଏବଂ ଚୀନରେ ଉତ୍ପାଦିତ ହେଉଥିବା ସାମଗ୍ରୀଗୁଡ଼ିକ ପାଶ୍ଚାତ୍ୟ ବଜାରରେ ବେଶ୍ ଆଦୃତ ହୋଇପାରିଛି । ଧୀରେ ଧୀରେ ଚୀନ ସ୍ୱଳ୍ପମୂଲ୍ୟଯୁକ୍ତ ପଦାର୍ଥଗୁଡ଼ିକରୁ ଉଚ୍ଚମୂଲ୍ୟ ଯୁକ୍ତ ପଦାର୍ଥଗୁଡ଼ିକର ଉତ୍ପାଦନ ଆଡ଼କୁ ମନ ବଳାଉଛି ଓ ସେ ଦିଗରେ ଲକ୍ଷ୍ୟ ମଧ୍ୟ କେନ୍ଦ୍ରୀଭୂତ କରୁଛି । ପ୍ରକୃତରେ ଚୀନ ଆମେରିକାକୁ ଯାହାକିଛି ବି ରପ୍ତାନି କରୁଛି, ତା'ର ମାତ୍ର ଏକ କ୍ଷୁଦ୍ରାଦିକ୍ଷୁଦ୍ର ଅଂଶ ଭାରତକୁ ରପ୍ତାନି କରୁଛି । ଏପରିକି ଜାପାନ ବଜାରରେ ମଧ୍ୟ ଚୀନରୁ ଶସ୍ତାରେ ଆମଦାନୀ କରାଯାଉଥିବା ବହୁବିଧ ସମଗ୍ରୀ ପ୍ରଚୁର ପରିମାଣରେ ଉପଲବ୍ଧ ହେଲାଣି ଏବଂ ବଜାରର ଉଷ୍ମତାକୁ ମଧ୍ୟ ଜାପାନୀମାନେ ଧୀରେ ଧୀରେ ଅନୁଭବ କଲେଣି । ଏପରିକି ୨୦୦୦ ମସିହାରେ ଜାପାନ ସହିତ ଚୀନର ବଳକା ବ୍ୟାପାର କାରବାର ୨୫ ବିଲିୟନ ଡଲାର ଥିଲା ।

ଦିନପରେ ଦିନ ଚୀନରୁ ହେଉଥିବା କ୍ରମବର୍ଦ୍ଧିଷ୍ଣୁ ପ୍ରତିଯୋଗିତା ବହୁ ଭାରତୀୟ କମ୍ପାନୀଙ୍କ ଷ୍ଟ୍ରାଟେଜୀରେ ପରିବର୍ତ୍ତନ ଆଣିବାକୁ ଚାପ ପ୍ରୟୋଗ କଲା, ଯଦ୍ୱାରା ସେମାନେ ସେମାନଙ୍କର କେତେକ ଆବଶ୍ୟକତାକୁ ଚୀନରୁ ଉପଲବ୍ଧ କଲେ ଅବା ଚୀନ ମାଟିରେ ସେମାନଙ୍କର ଉତ୍ପାଦନ କେନ୍ଦ୍ରକୁ ସ୍ଥାପିତ କରିବାକୁ ଆଗଭର ହେଲେ । ଉଦାହରଣ ସ୍ୱରୂପ ବହୁ ଅନ୍ତର୍ଦ୍ଦେଶୀୟ 'ଟୁ ହୁଇଲର' ପ୍ରସ୍ତୁତକାରୀ କମ୍ପାନୀମାନେ ତାଙ୍କର ଆବଶ୍ୟକତାକୁ ଚୀନ ଦେଶରୁ ଭରଣା କଲେ । ଏପରିକି

ଟି.ଭି.ଏସ୍ ମୋଟର ମଧ୍ୟ ଚୀନରୁ ତା'ର ଆବଶ୍ୟକୀୟ ସରଞ୍ଜାମଗୁଡ଼ିକୁ ଆମଦାନୀ କରିବା ପାଇଁ ଏ ମଧ୍ୟରେ ନିର୍ଣ୍ଣୟ ନେଇ ସାରିଛି । ବଜାଜ ଅଟୋ ମଧ୍ୟ ଗିଅର ନ ଥିବା ସ୍କୁଟର ଚୀନରୁ ଆମଦାନୀ କରିବା ପାଇଁ ତା'ର ସ୍ଥିରିକୃତ ଯୋଜନାର ଘୋଷଣା କରିସାରିଛି ଏବଂ କାଇନେଟିକ ଗ୍ରୁପ ମଧ୍ୟ ୧୦୦ ସି.ସି ବିଶିଷ୍ଟ ସ୍କୁଟର ନୂଆ ଗାଡ଼ି ଶିଖାଳିମାନଙ୍କ ପାଇଁ ଚୀନରୁ ଆଣିବା ପାଇଁ ଯୋଜନା ହାତରେ ରଖିଛି । ଭିଡ଼ିଓକନ ଇଣ୍ଟରନ୍ୟାସନାଲ ଟେଲିଭଜିନ କମ୍ପାନୀ ଚୀନରେ ଏକ ସ୍ୱୟଂ ସମ୍ପୂର୍ଣ୍ଣ ତଥା ସମ୍ପୂର୍ଣ୍ଣ ମାଲିକାନା ସ୍ୱତ୍ୱ ବିଶିଷ୍ଟ ଏକ ରଙ୍ଗୀନ ଟେଲିଭିଜନ ତଥା ଇଣ୍ଟରନେଟ ସେବା ଉପଲବ୍ଧ ହୋଇପାରୁଥିବା ଟେଲିଭିଜନ ଉତ୍ପାଦନ କେନ୍ଦ୍ର ସ୍ଥାପନା କରୁଅଛି । ସେହିପରି J.K Tyre ମଧ୍ୟ ଚୀନରୁ ଟାୟାର ଖରିଦ କରି ତା'ର ନିଜସ୍ୱ ରପ୍ତାନି ଆବଶ୍ୟକତା ମେଣ୍ଟାଇବା ପାଇଁ ଆଗଭର ହୋଇଛି । ଏଲ୍.ଏମ୍ ଥାପର ଗ୍ରୁପ କମ୍ପାନୀର କ୍ରମ୍ପଟନ ଗ୍ରୀଭ୍ସ ଏବେ ଚୀନରୁ ବିୟରିଂ ଓ କାଷ୍ଟିଂ ଆଦି ଯନ୍ତ୍ରାଂଶର ଆମଦାନୀ କରୁଅଛି ଏବଂ ଚୀନରେ ଏକ Joint Venture କମ୍ପାନୀ କିମ୍ବା ଉତ୍ପାଦନ ୟୁନିଟ ସ୍ଥାପନା କରିବା, ଏହି ଦୁଇଟି ବିକଳ୍ପରୁ ଗୋଟିକୁ ଖୁବ୍ ଶୀଘ୍ର ଆଦରି ନେବ । ପୁନଶ୍ଚ ବିଶ୍ୱ ବାଣିଜ୍ୟ ସଂଗଠନର ପୂର୍ଣ୍ଣ ସଦସ୍ୟ ରାଷ୍ଟ୍ର ହୋଇସାରିଥିବାରୁ ଏ ପ୍ରକାର ସହଯୋଗାତ୍ମକ କାର୍ଯ୍ୟକଳାପରେ ଦିନକୁ ଦିନ ନିଶ୍ଚୟ ଆଖିଦୃଶିଆ ଉନ୍ନତି ପରିଦର୍ଶିତ ହେବ ।

ଏହା ଆଶା କରାଯାଏ ଯେ ଚୀନର ଅଭିଜ୍ଞତାରୁ ଭାରତ ନିଶ୍ଚୟ ମୂଲ୍ୟବାନ ଶିକ୍ଷା ଲାଭ କରିବ ଏବଂ ତଥାକଥିତ ଦ୍ୱିତୀୟ ପିଢ଼ିର ସଂସ୍କାର ପ୍ରକ୍ରିୟାକୁ ଭାରତ ଆହୁରି ଆଗକୁ ଆଗକୁ ଠେଲି ନେଇ ଚାଲିଯିବ ଏବଂ ତତ୍ ସଙ୍ଗେ ସଙ୍ଗେ ପ୍ରଥମ ଶ୍ରେଣୀର ସଂସ୍କାର ପ୍ରକ୍ରିୟାରେ ପଶିଆସିଥିବା ଗୁରୁତର ବିଭ୍ରାଟର ମଧ୍ୟ ଦୂରୀକରଣ କରିପାରିବ । ଯଦିଓ ଦୋହା ସମ୍ମିଳନୀରେ ଭାରତ କିଛି ଅଙ୍କ ଲାଭ କରି କେତେକ ବିବାଦମାନ ବିଷୟର ସମାଧାନ ପାଇଁ ହାତରେ କିଛି ସମୟ ପାଇ ପାରିଲା, ହେଲେ ସମ୍ପୂର୍ଣ୍ଣ ବିଶ୍ରାମ ପାଇଁ ଏବେ ବି ଭାରତର ସମୟ ଆସି ନାହିଁ ।

ଭିତ୍ତିଭୂମିର ଗୁଣାତ୍ମକମାନରେ ଅଭିବୃଦ୍ଧି, ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜି ନିବେଶକୁ ଆକୃଷ୍ଟ କରି ନିତ୍ୟ ନୂତନ ପ୍ରଯୁକ୍ତି ବିଦ୍ୟାର ପରିପ୍ରୟୋଗ ମାଧ୍ୟମରେ ଭାରତୀୟ କମ୍ପାନୀମାନଙ୍କର ରପ୍ତାନି ପ୍ରତିଯୋଗିତାରେ ଉନ୍ନତି, ଅତି ପୁରାତନ

ଅଣଗ୍ରହଣଯୋଗ୍ୟ ତଥା ଆବଶ୍ୟକୀୟ କ୍ଷମତାର ନିମ୍ନରେ ଥିବା ଉତ୍ପାଦନ ସଂସ୍ଥାଗୁଡ଼ିକୁ ବନ୍ଦ କରିଦେବା ଏବଂ ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡ଼ିକୁ ଘରୋଇ ଉଦ୍ୟୋଗରେ ପରିବର୍ତ୍ତନ କରିବା ଭଳି ବହୁ କଠିନ କାର୍ଯ୍ୟକ୍ରମ ହାତକୁ ନେବା ଆଜି ଭାରତ ପକ୍ଷରେ ଅତ୍ୟନ୍ତ ଜରୁରୀ ହୋଇ ପଡ଼ିଛି । ଅନ୍ୟାନ୍ୟ ମୁଦ୍ଦାଗୁଡ଼ିକ ଯାହାକି ଅତ୍ୟନ୍ତ ଜରୁରୀ ରାଷ୍ଟ୍ରୀୟ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ହେବା ଉଚିତ, ସେଗୁଡ଼ିକ ହେଲା- କୃଷି ଓ କ୍ଷୁଦ୍ରଶିଳ୍ପ ସଂସ୍ଥାମାନଙ୍କ କ୍ଷେତ୍ରରେ ସଂସ୍କାର ପ୍ରକ୍ରିୟାର ପରିପ୍ରୟୋଗ ।

କୃଷିଜାତ ଦ୍ରବ୍ୟଗୁଡ଼ିକର ରପ୍ତାନି କ୍ଷେତ୍ରରେ ଭାରତ ପ୍ରତିଯୋଗିତାମୂଳକ ଦକ୍ଷତାର ଯଥାର୍ଥ ଅଧିକାରୀ ହୋଇପାରିଥିଲେ ମଧ୍ୟ ସରକାରଙ୍କ ନୀତି ନିୟମର ଆବଶ୍ୟକୀୟ ସହଯୋଗ ବ୍ୟତିରେକ ସେ କ୍ଷେତ୍ରରେ ମଧ୍ୟ ପୂର୍ଣ୍ଣ ବିନିଯୋଗ ହୋଇପାରୁ ନାହିଁ । କ୍ଷୁଦ୍ର ଶିଳ୍ପ ସଂସ୍ଥାଗୁଡ଼ିକୁ ବିଚାରକୁ ନେଲେ ଜଣାଯିବ ଯେ ବିଶ୍ୱ ବାଣିଜ୍ୟ ସଂଗଠନର ମୁକ୍ତ ଆହ୍ୱାନକୁ ମୁହାଁମୁହିଁ ଜବାବ ଦେବା ପାଇଁ ଏହା ଆଜି ପର୍ଯ୍ୟନ୍ତ କୌଣସି ପ୍ରସ୍ତୁତି ପର୍ବ ଆରମ୍ଭ କରି ପାରିନାହିଁ । ଯେହେତୁ ଏହି ପ୍ରକ୍ଷେତ୍ରଟି ଦେଶର ପ୍ରାୟ ୩୦ ରୁ ୪୦ ପ୍ରତିଶତ ରପ୍ତାନି କାରବାରକୁ ମୋଟାମୋଟି ଭରଣା କରିଥାଏ, ତେଣୁ ଏହାର ଆଧୁନିକୀକରଣ ପାଇଁ ଉପଯୁକ୍ତ ଅନୁଷ୍ଠାନ ଭିତ୍ତିକ ସହଯୋଗ, ପ୍ରଯୁକ୍ତିବିଦ୍ୟାରେ ଗୁଣାତ୍ମକ ଅଭିବୃଦ୍ଧି ଓ ବଜାରର କ୍ରମାଗତ ବିକାଶ ଉପରେ ଆବଶ୍ୟକୀୟ ଗୁରୁତ୍ୱ ପ୍ରଦାନ କରିବା ରାଷ୍ଟ୍ରର ପଣ ହେବା ଉଚିତ ।

ସମାଜ

ତା- ୧୪.୧.୨୦୦୨



# ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ - ବିଶ୍ୱ ପୃଷ୍ଠଭୂମିରେ ଭାରତର ସ୍ଥାନ କେଉଁଠି ?

**ଦ**କ୍ଷିଣ ଏସୀୟ ରାଷ୍ଟ୍ରମାନଙ୍କ ମଧ୍ୟରେ ଯଦିଓ ଭାରତ ସର୍ବାଧିକ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗକୁ ଆକର୍ଷିତ କରିପାରିଛି, ପରନ୍ତୁ ଭାରତ ଚୀନ ଓ ହଂକଂର କାହିଁ କେତେ ପଛରେ ଏବେ ବି ପଡ଼ି ରହିଛି । ଯଦିଓ ଏବର୍ଷ ବିଶ୍ୱରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ମନ୍ଥରତାର ପଥ ଦେଇ ଗତିକରିବାର ଭବିଷ୍ୟବାଣୀ କରାଯାଇଛି, ତା' ସତ୍ତ୍ୱେ ବି ଚୀନ ଓ ହଂକଂ ଉଭୟ ମିଳିମିଶି ୫୦ ଗୁଣ ଅଧିକ ପୁଞ୍ଜି ବିନିଯୋଗ କରି ପାରିଛନ୍ତି । ଚୀନ ୪୦.୭୭ ବିଲିୟନ ଡଲାରର ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଆକର୍ଷିତ କରି ପାରିଥିବା ବେଳେ ହଂକଂ ୬୪.୪୫ ବିଲିୟନ ଡଲାରର ପୁଞ୍ଜି ବିନିଯୋଗ ଆକର୍ଷିତ କରିପାରିଛି । ଉଭୟ ଚୀନ ଓ ହଂକଂ ୨୦୦୦ ମସିହାରେ ମିଳିମିଶି ୧୦୫.୨୨ ବିଲିୟନ ଡଲାରର ପୁଞ୍ଜି ବିନିଯୋଗ ଆକର୍ଷିତ କରି ପାରିଥିବା ବେଳେ ଏହି ସମୟ ମଧ୍ୟରେ ଭାରତ ମାତ୍ର ୨.୩ ବିଲିୟନ ଡଲାରର ପୁଞ୍ଜି ବିନିଯୋଗ ଆକର୍ଷିତ କରି ପାରିଛି । ସେପ୍ଟେମ୍ବର ୧୮ ତାରିଖରେ ୟୁନାଇଟେଡ଼ ନେସନ୍ସ କନ୍‌ଫରଏନ୍ସ ଅନ୍ ଟ୍ରେଡ଼୍ ଯାଣ୍ଡ ଡେଭଲପ୍‌ମେଣ୍ଟ ଅର୍ଥାତ୍ ମିଳିତ ଜାତିସଂଘର ବାଣିଜ୍ୟ ଓ ବିକାଶ ସମ୍ବନ୍ଧୀୟ କନଫରଏନ୍ସ (ଅଙ୍କଟାଡ଼୍) ପ୍ରକାଶ କରିଥିବା ତା'ର ବିଶ୍ୱ ପୁଞ୍ଜି ବିନିଯୋଗ ରିପୋର୍ଟ ୨୦୦୧ରେ ଏହି ତଥ୍ୟ ପ୍ରଦାନ କରିଛି ।

ଏହି ରିପୋର୍ଟ ଉଲ୍ଲେଖ କରିଛି ଯେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଯାହାକି ୧୮ ପ୍ରତିଶତ ହାରରେ ବୃଦ୍ଧି ପାଇ ୨୦୦୦ ମସିହାରେ ସର୍ବାଧିକ ରେକର୍ଡ଼ ସୃଷ୍ଟି କରି ୧.୩ ଟ୍ରିଲିୟନ ଡଲାରରେ ପହଞ୍ଚି ପାରିଥିଲା, ତାହା ୨୦୦୧ ମସିହାରେ ହ୍ରାସ ପାଇବାର ସମ୍ଭାବନା ଯଥେଷ୍ଟ ଅଧିକ । ପୁଞ୍ଜି ବିନିଯୋଗରେ ଉଭୟ ଗତବର୍ଷର ଅଭିବୃଦ୍ଧି ଓ ଏ ବର୍ଷର ହ୍ରାସ ପରିମାଣର ମୁଖ୍ୟ କାରଣ ହେଲା ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ

ଥିବା ବଡ଼ ବଡ଼ କମ୍ପାନୀମାନଙ୍କ ମଧ୍ୟରେ ହେଉଥିବା ସୀମାପାର ମିଶ୍ରଣ ଓ ଅଧିଗ୍ରହଣ କାର୍ଯ୍ୟକଳାପ ଯାହାର ପ୍ରଭାବ ବିଶ୍ୱ ପୃଷ୍ଠଭୂମିରେ ସର୍ବୋତ୍ତଭାବେ ଅନୁଭୂତ ହୋଇଥାଏ । ପୁନଶ୍ଚ ବିଶ୍ୱପୃଷ୍ଠଭୂମିରେ ଦେଖାଦେଇଥିବା ଅର୍ଥନୈତିକ ଶିଥିଳତା ଏହି ହ୍ରାସ ଉପରେ ଗୁରୁତର ପ୍ରଭାବ ପକାଇ ପାରିଛି ।

୧୯୯୫ ରୁ ୨୦୦୦ ମସିହା ମଧ୍ୟରେ ହଂକଂ (ସେତେବେଳକାର ଚୀନ) ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ୯୩୭.୬୮ ପ୍ରତିଶତ ଅଭିବୃଦ୍ଧି ହାର ହାସଲ କରି ୬୪.୪୫ ବିଲିୟନ ଡଲାରର ପୁଞ୍ଜି ଲଗାଣ ଆକର୍ଷିତ କରିପାରିଥିବା ବେଳେ ୧୯୯୫ ମସିହାରେ ତାହା ୬.୨୧ ବିଲିୟନ ଡଲାର ଥିଲା । ଅପରପକ୍ଷରେ ଚୀନ ଏହି ସମୟ ମଧ୍ୟରେ ୧୪ ପ୍ରତିଶତ ଅଭିବୃଦ୍ଧି ହାର ହାସଲ କରି ୨୦୦୦ ମସିହାରେ ୪୦.୭୭ ବିଲିୟନ ଡଲାର ପୁଞ୍ଜି ଆକର୍ଷିତ କରିଥିଲା ବେଳେ ୧୯୯୫ ମସିହାରେ ୩୫.୮୫ ବିଲିୟନ ଡଲାରର ପୁଞ୍ଜି ଆକର୍ଷିତ କରିପାରିଥିଲା ।

ଜାତିସଂଘର ବିଶ୍ୱ ପୁଞ୍ଜି ବିନିଯୋଗ ରିପୋର୍ଟ-୨୦୦୧ ସ୍ୱତନ୍ତ୍ରଭାବେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ଚୀନର ବିଶେଷ ଆଗ୍ରହ ଉପରେ ଗୁରୁତ୍ୱ ପ୍ରଦାନ କରିଛି ଏବଂ ଏଥିରେ ଉଲ୍ଲେଖ କରିଛି ଯେ ବିଶ୍ୱର 'ଫରଚ୍ୟୁନ-୫୦୦' କମ୍ପାନୀମାନଙ୍କ ମଧ୍ୟରୁ ପ୍ରାୟ ୪୦୦ଟି କମ୍ପାନୀ ଚୀନରେ ୨୦୦୦ଟି ଶିଳ୍ପ ପ୍ରକଳ୍ପର ସ୍ଥାପନାରେ ପୁଞ୍ଜି ବିନିଯୋଗ କରିଛନ୍ତି । ପୁନଶ୍ଚ ଏହି ରିପୋର୍ଟ ଉଲ୍ଲେଖ କରିଛି ଯେ ଚୀନରେ ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ପ୍ରଭୂତ ବିକାଶ ଫଳରେ ଏହା ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପ୍ରକ୍ରିୟାକୁ ଗଭୀର ଭାବେ ଉତ୍ସାହିତ କରୁଛି । ଫଳସ୍ୱରୂପ ପୃଥିବୀର ବଡ଼ ବଡ଼ ସ୍ୱନାମଧନ୍ୟ ବହୁ ରାଷ୍ଟ୍ରୀୟ କମ୍ପାନୀ ଯଥା -ମାଇକ୍ରୋସଫ୍ଟ, ଆଇ.ବି.ଏମ୍, ଜି.ଏମ, ମୋଟୋରୋଲା, ଲ୍ୟୁମେଣ୍ଟ-ବେଲ୍, ସାମସଙ୍ଗ, ଜି.ଇ, ନରଟେଲ୍, ସିମେନ୍ସ, ନୋକିଆ ଓ ଇନ୍‌ଟେଲ ଆଦି ଚୀନରେ ୧୦୦ରୁ ଉର୍ଦ୍ଧ୍ୱ ଗବେଷଣା ଓ ଉନ୍ନୟନ କେନ୍ଦ୍ର ସ୍ଥାପନା କରିଛନ୍ତି । ଏହି ଗବେଷଣା କେନ୍ଦ୍ରରୁ ଉପଲବ୍ଧ ବୈଷୟିକ ଜ୍ଞାନ କୌଶଳର ପରିପ୍ରୟୋଗ ମାଧ୍ୟମରେ ଚୀନରେ ଉତ୍ପାଦିତ ବହୁବିଧ ହାଇ-ଟେକ୍ ସାମଗ୍ରୀଗୁଡ଼ିକ ବିଶ୍ୱ ବଜାରରେ ଅସାଧାରଣ ଭାବେ ଆଦୃତ ହୋଇପାରିଛି ।

ପ୍ରଖ୍ୟାତ ହାରଭାର୍ଡ୍ ଅର୍ଥନୀତିଜ୍ଞ ଜେଫ୍ରେ ସ୍ୟାକ୍ସ କୁହନ୍ତି ଯେ, ଭାରତବର୍ଷରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ପରିମାଣରେ ଅତ୍ୟନ୍ତ ସ୍ୱଳ୍ପତା ବାଜପେୟୀ ସରକାର ପାଇଁ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଚିନ୍ତାର ବିଷୟ ହେବା ଉଚିତ ଏବଂ ଉପଯୁକ୍ତ ନୀତି ନିୟମର ପ୍ରଣୟନ ମାଧ୍ୟମରେ ଆବଶ୍ୟକୀୟ ସଂସ୍କାର ଅଣାଯାଇ ଅର୍ଥନୀତିକୁ ରାଷ୍ଟ୍ରୀୟ ପ୍ରଗତି ସହ ଅଙ୍ଗାଙ୍ଗୀଭାବେ ଯୋଡ଼ା ଯିବା ଏକାନ୍ତ ଆବଶ୍ୟକ । ଉଭୟ ଭାରତ ଓ ଚୀନ ଏସୀୟ ରାଷ୍ଟ୍ର ହୋଇ ମଧ୍ୟ ଚୀନର ଏତେ ପଛରେ ଭାରତ ପଡ଼ି ରହିବା ପ୍ରମାଣ କରୁଛି ଯେ ଭାରତର ନୀତି ନିୟମ ପ୍ରଣୟନରେ କେଉଁଠି ନା କେଉଁଠି ନିଶ୍ଚୟ କିଛିଟା ଅସଜଡ଼ା ରହିଯାଉଛି, ଯାହାକି ଭାରତର ଅର୍ଥନୈତିକ ପ୍ରଗତିରେ ମୁଖ୍ୟ ପ୍ରତିବନ୍ଧକ ସାଜୁଛି । ଫଳସ୍ୱରୂପ ଭାରତ ବିଶ୍ୱ ବଜାରର ଏକ ପ୍ରମୁଖ ଭାଗର ଅଂଶୀଦାର ହୋଇ ପାରୁନାହିଁ ଏବଂ ଭାରତର କେକ୍ ଚୀନ ଖାଇ ଯାଉଛି । ଯେଉଁ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଭାରତକୁ ଆସିବା କଥା ତାହା ଚୀନ ଆଡ଼କୁ ଚାଲିଯାଉଛି ଓ ଭାରତ ଆକାଶକୁ ଖାଲି ଆଁ କରି ଚାହିଁ ରହିଛି । ଅର୍ଥନୀତିଜ୍ଞ ଜେଫ୍ରେ ସ୍ୟାକ୍ସ ପୁନଶ୍ଚ କୁହନ୍ତି ଯେ ରାଷ୍ଟ୍ରୀୟ ନୀତି ନିୟମ ପ୍ରଣୟନରେ ଦୁର୍ବଳତା, ମହାରାଷ୍ଟ୍ରର ଏନ୍‌ରନ୍ ପ୍ରକଳ୍ପକୁ ନେଇ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଭିଡ଼ା ଓଟରା ଓ ମନାନ୍ତର, ପବ୍ଲିକ୍ ସେକ୍ଟର କମ୍ପାନୀଗୁଡ଼ିକୁ ପ୍ରାଇଭେଟ ସେକ୍ଟର କମ୍ପାନୀ କରିବାର ପ୍ରକ୍ରିୟାରେ ଅସାଧୁତା ଅବଲମ୍ବନ ଓ ତହିଁରେ ଅସ୍ୱଚ୍ଛତାର ପ୍ରତିଫଳନ ଓ ଦେଶସାରା ଅସଂଖ୍ୟ ଗ୍ରାହକମାନଙ୍କୁ ମାଗଣାରେ ବିଦ୍ୟୁତ୍ ଶକ୍ତି ଯୋଗେଇ ଦେବା ଭଳି ନାନବିଧ କାରଣ ଭାରତବର୍ଷରେ ବୈଦେଶିକ ପୁଞ୍ଜି ନିବେଶକୁ ପ୍ରୋତ୍ସାହିତ କରିପାରୁ ନାହିଁ ।

୨୦୦୦ ମସିହାରେ ଚୀନରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ପରିମାଣ ୪୦ ବିଲିୟନ ଡଲାର ଥିଲା ଏବଂ ବିଶ୍ୱବାଣିଜ୍ୟ ସଂଗଠନରେ ଚୀନର ସଦସ୍ୟତାକୁ ନେଇ ବିଭିନ୍ନ ସ୍ତରରେ ହୋଇଥିବା ବୁଝାମଣା ପରିପ୍ରେକ୍ଷୀରେ ବେଜିଂ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର କେତେକ ନିୟମାବଳୀରେ ମଧ୍ୟ ଆବଶ୍ୟକୀୟ ପରିବର୍ତ୍ତନ ଆଣିଲା । ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଚୀନର ଅର୍ଥନୀତିରେ ପ୍ରମୁଖ ଭୂମିକା ଗ୍ରହଣ କଲେ ଏବଂ ଫଳସ୍ୱରୂପ ସର୍ବମୋଟ କର୍ପୋରେଟ ଟିକସ ରେଭେନ୍ୟୁର ୧୮ ପ୍ରତିଶତ (୨୭ ବିଲିୟନ ଡଲାର) ଏହି କମ୍ପାନୀମାନେ ୨୦୦୦ ମସିହାରେ ଚୀନକୁ ଭରଣା କଲେ ।

ତା'ହେଲେ ହଂକଂ କାହିଁକି ପୁଞ୍ଜି ଲଗାଣକାରୀଙ୍କ ପ୍ରିୟତମା ହୋଇପାରିଲା ? ନୀତି ନିୟମର ସ୍ୱଚ୍ଛତା ଓ ମୁକୁଳା ପଣିଆ ନା ସହାୟକ ଭିତ୍ତିଭୂମିର ଯଥାଯଥ ଉପଲବ୍ଧତା ଯାହାଫଳରେ କି ପୁଞ୍ଜି ଲଗାଣକାରୀମାନେ ବିନିଯୋଗ କରୁଥିବା ଅର୍ଥ ଉପଯୁକ୍ତ ଭାବେ ସେମାନଙ୍କ ପାଖକୁ ପୁଣି ଫେରିଆସିବାର ନିଷ୍କଣ୍ଟକ ତଥା ସୁଗମ ପଥ ପାଇପାରିଲେ ? ଚୀନରେ ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣ ପାଇଁ ବର୍ହିଦେଶୀୟ ପୁଞ୍ଜି ଲଗାଣକାରୀଙ୍କୁ ହେଉଥିବା 'ପୁଞ୍ଜି ଲଗାଣ ଜ୍ୱର'ର ଅଭିଜ୍ଞତା ଯାହା ଚୀନ ହାସଲ କରି ପାରିଛି, ତାହା ଭାରତ କେବେ ହାସଲ କରି ପାରିବ କି ?

ବିକଶିତ ଦେଶମାନେ ହିଁ ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣକାରୀମାନଙ୍କ ପାଇଁ ମୁଖ୍ୟ ଲକ୍ଷ୍ୟସ୍ଥଳୀ ଭାବେ ପରିଗଣିତ ହୋଇଥାଆନ୍ତି, ଯାହାକି ବିଶ୍ୱର ସମୁଦାୟ ସିଧାସଳଖ ପୁଞ୍ଜି ଲଗାଣ ପରିମାଣର ଚାରିଭାଗରୁ ତିନିଭାଗର ମୋଟାମୋଟି ଭାଗିଦାରୀ ହୋଇଥାଆନ୍ତି । ସୀମାପାର ଆନ୍ତଃ-କର୍ପୋରେସନ ମିଶ୍ରଣ ଓ ଅଧିଗ୍ରହଣ କାର୍ଯ୍ୟକଳାପ ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣ ପାଇଁ ମୁଖ୍ୟ ପ୍ରେରଣାର ଉତ୍ସ ଅନ୍ତସ୍ରୋତ ଭାବେ କାର୍ଯ୍ୟ କରିଥାଏ ଏବଂ ଏହି କାର୍ଯ୍ୟକଳାପ ଏବେ ବି ବିକଶିତ ରାଷ୍ଟ୍ରମାନଙ୍କ ମଧ୍ୟରେ ସୀମିତ ରହିଛି ।

ଫଳସ୍ୱରୂପ ବିକଶିତ ଦେଶମାନଙ୍କରେ ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣ ପରିମାଣ ୨୧ ପ୍ରତିଶତକୁ ବୃଦ୍ଧି ପାଇ ପ୍ରାୟ ୧ ଟ୍ରିଲିୟନ ଡଲାରରେ ପହଞ୍ଚିପାରିଲା । ଏପରିକି ବିକଶିତ ଦେଶମାନଙ୍କ ମଧ୍ୟରେ କେବଳ ୟୁରୋପୀୟ ୟୁନିୟନ, ଆମେରିକା ଓ ଜାପାନ ୨୦୦୦ ମସିହାରେ ବିଶ୍ୱ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପରିମାଣର ୭୧ ପ୍ରତିଶତ ଆକର୍ଷିତ କରିପାରିଥିବାବେଳେ ୮୨ ପ୍ରତିଶତ ସେମାନେ ଅନ୍ୟ ରାଷ୍ଟ୍ରମାନଙ୍କରେ ପୁଞ୍ଜି ବିନିଯୋଗ କରିପାରିଥିଲେ । ଆମେରିକା ସର୍ବାଦୌଭାବେ ସିଧାସଳଖ ବିଦେଶୀ ପୁଞ୍ଜି ନିବେଶ ଲାଭ କରିବା କ୍ଷେତ୍ରରେ ବିଶ୍ୱର ଏକ ନମ୍ବର ରାଷ୍ଟ୍ରର ମାନ୍ୟତା ଲାଭ କରି ପାରିଛି । ୨୦୦୦ ମସିହାରୁ ଆମେରିକାକୁ ସିଧାସଳଖ ବିଦେଶୀ ପୁଞ୍ଜି ନିବେଶ ୨୮୧ ବିଲିୟନ ଡଲାର ହୋଇଥିବା ବେଳେ ଆମେରିକା ଅନ୍ୟ ଦେଶରେ ୧୩୨ ବିଲିୟନ ଡଲାରର ପୁଞ୍ଜି ସିଧାସଳଖ ବିନିଯୋଗ କରି ପାରିଛି ।

୨୦୦୦ ମସିହାରେ ବିକାଶଶୀଳ ରାଷ୍ଟ୍ରମାନଙ୍କୁ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ପରିମାଣରେ ବୃଦ୍ଧି ଘଟି ୨୪୦ ବିଲିୟନ ଡଲାରରେ ପହଞ୍ଚି ପାରିଥିଲା । ପରନ୍ତୁ ବିଶ୍ୱ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପରିମାଣରେ ବିକାଶଶୀଳ ରାଷ୍ଟ୍ରମାନଙ୍କର ଭାଗିଦାରୀର ମାତ୍ରା କ୍ରମାଗତ ଭାବେ ଦ୍ୱିତୀୟ ବର୍ଷ ପାଇଁ ମଧ୍ୟ ହ୍ରାସ ପାଇ ୧୯ ପ୍ରତିଶତରେ ପହଞ୍ଚିଥିଲା, ଯାହାକି ୧୯୯୪ ମସିହାରେ ସର୍ବାଧିକ ୪୧ ପ୍ରତିଶତର ସ୍ତରକୁ ଛୁଇଁ ପାରିଥିଲା । ପୁନଶ୍ଚ ୨୦୦୦ ମସିହାରେ ବିକାଶଶୀଳ ଏସିଆ ମହାଦେଶର ରାଷ୍ଟ୍ରମାନଙ୍କୁ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପରିମାଣରେ ସର୍ବାଧିକ ବୃଦ୍ଧି ଘଟି ୧୪୩ ବିଲିୟନ ଡଲାର ରେକର୍ଡ଼ ସ୍ତରରେ ପହଞ୍ଚି ପାରିଥିଲାବେଳେ ବିକାଶଶୀଳ ଏସିଆ ମହାଦେଶର ରାଷ୍ଟ୍ରମାନଙ୍କରୁ ଅନ୍ୟାନ୍ୟ ଦେଶମାନଙ୍କୁ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ପରିମାଣରେ ମଧ୍ୟ ବୃଦ୍ଧି ଘଟି ୮୫ ବିଲିୟନ ଡଲାର ରେକର୍ଡ଼ ସ୍ତରକୁ ଛୁଇଁ ପାରିଥିଲା । ଏସିଆ ରାଷ୍ଟ୍ରମାନଙ୍କରେ ୧୪୩ ବିଲିୟନ ଡଲାରର ରେକର୍ଡ଼ ପୁଞ୍ଜି ବିନିଯୋଗ ହଂକଂ ଓ ଚୀନରେ ଅଭୂତପର୍ବ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ସୁଯୋଗ ଓ ସମ୍ଭାବନା ପାଇଁ ସମ୍ଭବ ହୋଇପାରିଲା, ଯାହାକି ୧୯୯୯ ମସିହା ତୁଳନାରେ ୪୪ ପ୍ରତିଶତ ଅଭିବୃଦ୍ଧିର ଦ୍ୱାର ଉନ୍ମୁକ୍ତ କରି ପାରିଲା ।

୨୦୦୦ ମସିହାରେ କେନ୍ଦ୍ରୀୟ ଓ ପୂର୍ବ ୟୁରୋପୀୟ ରାଷ୍ଟ୍ରମାନଙ୍କୁ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗରେ ରେକର୍ଡ଼ ପରିମାଣର ବୃଦ୍ଧି ଘଟି ୨୭ ବିଲିୟନ ଡଲାରରେ ପହଞ୍ଚି ପାରିଥିଲା । ଦକ୍ଷିଣ ଆଫ୍ରିକା ସହିତ ଆଫ୍ରିକା ମହାଦେଶର ରାଷ୍ଟ୍ରମାନଙ୍କୁ ୨୦୦୦ ମସିହାରେ ହୋଇଥିବା ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ୧୦.୫ ବିଲିୟନ ଡଲାରରୁ ୯.୧ ବିଲିୟନ ଡଲାରକୁ ହ୍ରାସ ପାଇଥିଲା ଏବଂ ଫଳତଃ ବିଶ୍ୱ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପରିମାଣର ଭାଗିଦାରୀରେ ଆଫ୍ରିକା ମହାଦେଶର ଅଂଶ ଏକ ପ୍ରତିଶତର ତଳକୁ ବି ଖସି ଆସିଲା ।

'ବିଶ୍ୱ ପୁଞ୍ଜି ବିନିଯୋଗ ରିପୋର୍ଟ-୨୦୦୧' ପ୍ରକାଶ କରିଛି ଯେ ୨୦୦୦ ମସିହାରେ ଭାରତ ଉପମହାଦେଶର ସର୍ବାଧିକ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଆକର୍ଷିତ କରି ୨.୩ ବିଲିୟନ ଡଲାର ହାସଲ କରିପାରିଛି । ଏହି ରିପୋର୍ଟରେ ପୁନଶ୍ଚ ଉଲ୍ଲେଖ ଅଛି ଯେ କେବଳ ଏକମାତ୍ର ଭାରତୀୟ କମ୍ପାନୀ ରିଲାଏନ୍ସ ଇଣ୍ଡଷ୍ଟ୍ରିଜ୍

ଲିମିଟେଡ଼ ବିକାଶଶୀଳ ଅର୍ଥନୈତିକ ରାଷ୍ଟ୍ର ସମୁହର ୫୦ଟି ସର୍ବବୃହତ୍ ଟ୍ରାନ୍ସ ନ୍ୟାସନାଲ କମ୍ପାନୀ (ଟି.ଏନ.ସି) ମଧ୍ୟରେ ସ୍ଥାନ ପାଇଛି । ଏହି କମ୍ପାନୀ ଟ୍ରାନ୍ସ ନ୍ୟାସନାଲିଟି ଇଣ୍ଡେକ୍ସ (ଟି.ଏନ.ଆଇ)ରେ ୪୭ତମ ହାସଲ କରି ପାରିଛି । ଏହି ଇଣ୍ଡେକ୍ସ ବା ମାପକାଠି ନିର୍ଣ୍ଣୟ ହୋଇଥାଏ ସେହି କମ୍ପାନୀର ବିଦେଶୀ ଆସବାସ ପତ୍ର ବନାମ ସମୁଦାୟ ଆସବାସ ପତ୍ର, ବିଦେଶରେ ବିକ୍ରୀବଟା ବନାମ ସମୁଦାୟ ବିକ୍ରୀବଟା ଏବଂ ବିଦେଶରେ ନିଯୁକ୍ତି ବନାମ ସମୁଦାୟ ନିଯୁକ୍ତିର ହାରାହାରିକୁ ଭିତ୍ତିକରି । ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ଭାରତର ସଫଳତା ୧୯୯୯ ମସିହା ଅପେକ୍ଷା ୨୦୦୦ ମସିହାରେ ସାମାନ୍ୟ ଭଲ ଥିଲା ବୋଲି ପ୍ରତୀୟମାନ ହୁଏ । ୧୯୯୯ ମସିହାରେ ଏହା ୨.୨ ବିଲିୟନ ଡଲାର ଥିଲା ବୋଲି ଏହି ରିପୋର୍ଟ ଉଲ୍ଲେଖ କରିଛି ।

ନବେ ଦଶକର ଦ୍ୱିତୀୟାର୍ଦ୍ଧରେ ଲାଟିନ୍ ଆମେରିକା ଓ କାରିବିଆନ୍ ରାଷ୍ଟ୍ରମାନଙ୍କୁ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗର ପରିମାଣରେ ହ୍ରାସ ପରିଲକ୍ଷିତ ହୋଇଥିଲା ବେଳେ ୨୦୦୦ ମସିହାରେ ଏହା ପୁନଶ୍ଚ ୨୨ ପ୍ରତିଶତ ହ୍ରାସ ପାଇ ୮୬ ବିଲିୟନ ଡଲାରରେ ପହଞ୍ଚିଥିଲା । ୪୯ଟି ସର୍ବନ୍ନ୍ୟୁନ ବିକଶିତ ରାଷ୍ଟ୍ରସମୂହ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଆକର୍ଷିତ କରିବାରେ ଏତେଟା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରି ନ ଥିଲେ ଏବଂ ୨୦୦୦ ମସିହାରେ ଏହି ରାଷ୍ଟ୍ରମାନେ ବିଶ୍ୱ ସିଧାସଳଖ ପୁଞ୍ଜି ନିବେଶ ପରିମାଣର ମାତ୍ର ୦.୩ ପ୍ରତିଶତର ଭାଗିଦାରୀ ହୋଇ ପାରିଥିଲା ।

ମିଳିତ ଜାତିସଂଘ ବାଣିଜ୍ୟ ଓ ବିକାଶ ସମ୍ବନ୍ଧୀୟ କନଫରଏନ୍ସ (ଅଙ୍କଟାଡ଼) ଅନୁଯାୟୀ ୨୦୦୦ ମସିହା ଓ ୧୯୮୫ ମସିହା ମଧ୍ୟରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଦୃଶ୍ୟପଟ୍ଟରେ ତୁଳନାତ୍ମକ ବିଶ୍ଳେଷଣ କଲେ ଏହା ଜଣାପଡ଼େ ଯେ ୧୯୮୫ ମସିହା ଅପେକ୍ଷା ୨୦୦୦ ମସିହାରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ବହୁ ପରିମାଣରେ ବହୁ ଅଧିକ ରାଷ୍ଟ୍ରମାନଙ୍କ ଦ୍ୱାରା ଉପଲବ୍ଧ ହୋଇପାରିଛି । ୨୦୦୦ ମସିହାରେ ୨୪ଟି ବିକାଶଶୀଳ ରାଷ୍ଟ୍ର ସହିତ ୪୫ରୁ ଅଧିକ ରାଷ୍ଟ୍ର ୧୦ ବିଲିୟନ ଡଲାରର ବିଦେଶୀ ପୁଞ୍ଜି ସଂରକ୍ଷଣ କରି ରଖିଥିବାବେଳେ ୧୯୮୫ ମସିହାରେ ମାତ୍ର ୭ଟି ବିକାଶଶୀଳ ରାଷ୍ଟ୍ରସହିତ ୧୭ଟି ରାଷ୍ଟ୍ର ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଉପଲବ୍ଧ କରି ପାରିଥିଲେ । ପୁଞ୍ଜିର ବର୍ହିବିନିଯୋଗ ବା

ବର୍ହିସ୍ରୋତ କ୍ଷେତ୍ରରେ ୨୦୦୦ ମସିହାରେ ୧୦ ବିଲିୟନ ଡଲାରର ମୁଦ୍ରା ରାଶି ସଞ୍ଚୟ କରି ରଖି ପାରିଥିବା ରାଷ୍ଟ୍ରମାନଙ୍କ ସଂଖ୍ୟା ସେହି ସମୟ ମଧ୍ୟରେ ୧୦ ରୁ ୩୩କୁ ବୃଦ୍ଧି ଘଟିଥିଲା । ଏବେ ଏଥିରେ ଏକାଧିକ ବିକାଶଶୀଳ ରାଷ୍ଟ୍ର ଅନ୍ତର୍ଭୁକ୍ତ ଥିଲାବେଳେ ୧୯୮୫ ମସିହାରେ ବିକାଶଶୀଳ ରାଷ୍ଟ୍ରମାନଙ୍କର ସଂଖ୍ୟା ମାତ୍ର ୮ରେ ସୀମିତ ଥିଲା ।

ପୁଞ୍ଜି ଲଗାଣକୁ ହିସାବକୁ ନେଲେ ଦେଖାଯିବ ଯେ ହାରହାରି ବର୍ଷକୁ ଏକ ବିଲିୟନ ଡଲାରର ପୁଞ୍ଜି ଉପଲବ୍ଧ କରୁଥିବା ରାଷ୍ଟ୍ରମାନଙ୍କ ସଂଖ୍ୟା ୧୯୮୫ରେ ୧୭ ଥିବାବେଳେ ୨୦୦୦ ମସିହାରେ ତହିଁ ବୃଦ୍ଧି ଘଟି ୫୧ରେ ପହଞ୍ଚି ପାରିଛି । ୧୯୮୫ ମସିହାରେ ୧ ବିଲିୟନ ଡଲାରର ପୁଞ୍ଜି ଉପଲବ୍ଧ କରୁଥିବା ୧୭ଟି ରାଷ୍ଟ୍ରଙ୍କ ମଧ୍ୟରୁ ୬ଟି ରାଷ୍ଟ୍ର ବିକାଶଶୀଳ ରାଷ୍ଟ୍ର ଥିବାବେଳେ ୨୦୦୦ ମସିହାରେ ୧ ବିଲିୟନ ଡଲାରର ପୁଞ୍ଜି ଉପଲବ୍ଧ କରୁଥିବା ୫୧ଟି ରାଷ୍ଟ୍ରମଧ୍ୟରୁ ୨୩ଟି ବିକାଶଶୀଳ ରାଷ୍ଟ୍ରଥିଲେ । ପୁଞ୍ଜିର ବର୍ହିବିନିଯୋଗ କ୍ଷେତ୍ରରେ ୧୧ଟି ବିକାଶଶୀଳ ରାଷ୍ଟ୍ର ଅନ୍ତର୍ଭୁକ୍ତ ଥିବା ସମୁଦାୟ ୩୩ଟି ରାଷ୍ଟ୍ର ୨୦୦୦ ମସିହାରେ ୧ ବିଲିୟନ ଡଲାରରୁ ଊର୍ଦ୍ଧ୍ୱ ପୁଞ୍ଜି ବିନିଯୋଗ କରି ପାରିଥିଲାବେଳେ ୧୯୮୫ ମସିହାରେ ଗୋଟିଏ ମାତ୍ର ବିକାଶଶୀଳ ରାଷ୍ଟ୍ରକୁ ନେଇ ୧୩ଟି ରାଷ୍ଟ୍ର ଏହି ଏହି ସ୍ତରରେ ପହଞ୍ଚି ପାରିଥିଲେ ।

୧୯୯୯ ମସିହାରେ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀ ପୃଥିବୀର ସର୍ବବୃହତ୍ ଟ୍ରାନ୍ସ-ନ୍ୟାସ୍‌ନାଲ୍ କମ୍ପାନୀ ରୂପେ ବିଶ୍ୱବିଦିତ ଥିଲା । ପ୍ରଥମଥର ପାଇଁ ବିକାଶଶୀଳ ରାଷ୍ଟ୍ରମାନଙ୍କ ମଧ୍ୟରୁ ତିନୋଟି କମ୍ପାନୀ ଯଥା : ହଟ୍‌ଚ୍ଚିସୋମ ହ୍ୱାମପୋଆ, ପେଟ୍ରୋଲେଅସ୍ ଡେ ଭେନେଜୁଆଲା ଓ ମେକ୍ସିକୋର ସେମେକ୍ସ ସଂପ୍ରତି ବିଶ୍ୱର ସର୍ବବୃହତ୍ ଟ୍ରାନ୍ସ ନ୍ୟାସନାଲ କମ୍ପାନୀର ମର୍ଯ୍ୟାଦା ଲାଭ କରି ପାରିଛି । ବିକାଶଶୀଳ ରାଷ୍ଟ୍ରମାନଙ୍କ ମଧ୍ୟରୁ ୫୦ଟି ସର୍ବବୃହତ୍ ଟ୍ରାନ୍ସ ନ୍ୟାସନାଲ୍ କମ୍ପାନୀ ବିଚାରକୁ ନେଲେ ତନ୍ମଧ୍ୟରୁ ସର୍ବଶ୍ରେଷ୍ଠ କମ୍ପାନୀଟି ପୃଥିବୀର ସର୍ବବୃହତ୍ ୧୦୦ଟି ଟ୍ରାନ୍ସ ନ୍ୟାସନାଲ କମ୍ପାନୀ ମଧ୍ୟରୁ କ୍ଷୁଦ୍ରାତିକ୍ଷୁଦ୍ର କମ୍ପାନୀଟି ସହ ଆକାରରେ ତୁଳନୀୟ । ଏହି ୫୦ଟି ସର୍ବବୃହତ୍ ଟ୍ରାନ୍ସ ନ୍ୟାସନାଲ କମ୍ପାନୀ ଏସିଆ, ଲାଟିନ୍ ଆମେରିକା ଓ ଦକ୍ଷିଣ ଆଫ୍ରିକାର ୧୩ଟି ନୂତନ ଶିଳ୍ପ ସମୃଦ୍ଧ ଅର୍ଥନୈତିକ ରାଷ୍ଟ୍ରର ପରିସରଭୁକ୍ତ ଅଟନ୍ତି ।

ଅଙ୍କଟାଡ଼ କୁହେ ଯେ ବିଗତ ୧୦ ବର୍ଷ ଭିତରେ ବିଶ୍ୱ ଉତ୍ପାଦନ କ୍ଷେତ୍ରରେ ସେବାକ୍ଷେତ୍ରଟି ବିଶେଷ ପ୍ରାଧାନ୍ୟ ଲାଭ କରିପାରିଛି, କାରଣ ଏହି କ୍ଷେତ୍ରଟି ନିକଟ ଅତୀତରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପାଇଁ ସରଳୀକରଣ ହୋଇଛି । ୧୯୯୯ ମସିହାରେ ବିକଶିତ ଓ ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଅନ୍ତର୍ମୁଖୀ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ଗଚ୍ଛିତ ପରିମାଣରେ ଯଥାକ୍ରମେ ଅର୍ଦ୍ଧକରୁ ଅର୍ଦ୍ଧେକ ଏବଂ ଏକ ତୃତୀୟାଂଶ ସେବାକ୍ଷେତ୍ର ଯୋଗୁଁ ହିଁ ସମ୍ଭବ ହୋଇ ପାରିଥିଲା ।

ଅଙ୍କଟାଡ଼ ହିସାବ କରି ଦେଖିଛି ଯେ ୧୯୯୧ ମସିହାରୁ ୨୦୦୦ ମସିହା ମଧ୍ୟରେ ଜାତୀୟ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ୧୧୮୫ଟି ନିୟନ୍ତ୍ରୀତ ପରିବର୍ତ୍ତନ (ରେଗୁଲାଟୋରୀ ଚେଞ୍ଜେସ୍) ପ୍ରବର୍ତ୍ତନ କରାଯାଇଛି ଓ ତନ୍ମଧ୍ୟରୁ ୧୧୨୧ଟି କ୍ଷେତ୍ରରେ (୯୫ ପ୍ରତିଶତ) ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପାଇଁ ଆହୁରି ଅଧିକ ସୁସ୍ଥ ବାତାବରଣ ସୃଷ୍ଟି ପାଇଁ ଉଦ୍ଦିଷ୍ଟ ଥିଲା । କେବଳ ଗତ ବର୍ଷରେ ପୃଥିବୀର ୬୯ଟି ରାଷ୍ଟ୍ର ୧୫୦ଟି ନିୟନ୍ତ୍ରୀତ ପରିବର୍ତ୍ତନ କରିଥିଲେ ଓ ତନ୍ମଧ୍ୟରୁ ୧୪୭ଟି (୯୮ ପ୍ରତିଶତ) ବିଦେଶୀ ଅର୍ଥ ଲଗାଣକାରୀଙ୍କ ପାଇଁ ଅତ୍ୟନ୍ତ ଲାଭଦାୟକ ଥିଲା ।

ନବେ ଦଶକରେ ବାଇ-ଲାଟରାଲ୍ ଇନଭେଷ୍ଟମେଣ୍ଟ ଟ୍ରିଟିଜ୍ ବା ଦ୍ୱୈତ ପୁଞ୍ଜି ବିନିଯୋଗ ରାଜିନାମାରେ ଆଶାତୀତ ଭାବେ ବୃଦ୍ଧି ଘଟିଥିଲା ଏବଂ ୨୦୦୦ ମସିହାର ଶେଷ ବେଳକୁ ଏହି ସଂଖ୍ୟାରେ ବୃଦ୍ଧି ଘଟି ତାହା ୧୯୪୧ରେ ପହଞ୍ଚି ପାରିଥିଲା ।

ସମାଜ
ତା- ୨୪.୧୨.୨୦୦୧



# ସେପ୍ଟେମ୍ବର-୧୧ 'କଳା ମଙ୍ଗଳବାର'ର ପରବର୍ତ୍ତୀ ଘଟଣା ପ୍ରବାହ ଭାରତୀୟ ଅର୍ଥନୀତିକୁ ପ୍ରଭାବିତ କରିବ !

**ସେ**ପ୍ଟେମ୍ବର ୧୧,୨୦୦୧ ମଙ୍ଗଳବାର ସକାଳ ୮.୪୮ ମିନିଟରେ ନ୍ୟୁୟର୍କସ୍ଥ ୱାର୍ଲ୍ଡ ଟ୍ରେଡ୍ ସେଣ୍ଟରର ନର୍ଥ ଟାୱାରର ୮୦ତମ ମହଲାରେ ଆମେରିକାନ୍ ଫ୍ଲାଇଟ୍-୧୧ ଓ ୯.୦୩ ମିନିଟରେ ସାଉଥ ଟାୱାରର ୬୦ତମ ମହଲାରେ ୟୁନାଇଟେଡ଼ ଫ୍ଲାଇଟ-୧୭୫ର ପ୍ରଚଣ୍ଡ ଉଗ୍ରବାଦୀ ଆକ୍ରମଣ ଫଳରେ ଗଗନଚୁମ୍ବୀ ଏହି ଜମଜ ଅଟ୍ଟାଳିକା ଦ୍ୱୟ ଯଥାକ୍ରମେ ୧ ଘଣ୍ଟା ୪୦ ମିନିଟ ଓ ଏକ ଘଣ୍ଟା ଦୁଇ ମିନିଟ ମଧ୍ୟରେ ଧରାଶାୟୀ ହୋଇଗଲା । ଘଣ୍ଟାକୁ ୨୦୦ ମାଇଲ ବେଗର ପ୍ରଚଣ୍ଡ ଝଡ଼ବାତ୍ୟା ଓ ଯେ କୌଣସି ମହଲାରେ ୧୦୦ ଯାତ୍ରୀ ବିଶିଷ୍ଟ ଉଡ଼ାଜାହାଜର ମହାଧକ୍କାକୁ ସହ୍ୟ କରିବାର ମହାସାମର୍ଥ୍ୟ ରଖିଥିବା ଏହି ଜମଜ ଅଟ୍ଟାଳିକାଦ୍ୱୟ ଚାହୁଁ ଚାହୁଁ ଧ୍ୱଂସ ସ୍ତୁପରେ ପରିଣତ ହୋଇଗଲା । ହଜାର ହଜାର ଲୋକଙ୍କର ଜୀବନ ଦୀପ ମୁହୂର୍ତ୍ତକ ମଧ୍ୟରେ ନିର୍ବାପିତ ହୋଇଗଲା । ଆତଙ୍କର କଳା ବାଦଲ ସମଗ୍ର ଆମେରିକାରେ ଛାଇ ହୋଇଗଲା । ଉଗ୍ରବାଦର ବିଭତ୍ସ ରୂପ ସାଙ୍ଗକୁ ଅଗ୍ନିର ଲେଲିହାନ ଶୀଖା ବିଶ୍ୱ ବାଣିଜ୍ୟ କେନ୍ଦ୍ରକୁ ତା'ର ବିଶାଳ ଗର୍ଭରେ ସ୍ୱାହା କରିଦେଲା । ସମଗ୍ର ବିଶ୍ୱ ଚକିତ ଓ ସ୍ତମ୍ଭିତ ହୋଇଗଲା । ତା' ପରବର୍ତ୍ତୀ ଘଟଣାକ୍ରମକୁ ବିଶ୍ୱବାସୀ ଅଙ୍ଗେ ଲିଭେଇ ଚାଲିଛନ୍ତି । ଯୁଦ୍ଧର ଘନଘଟା ମଧ୍ୟରେ ଆମେ ଶାନ୍ତି କପୋତଟିର ବାଟକୁ ଚାହିଁ ରହିଛେ ।

ବିଶ୍ୱ ବାଣିଜ୍ୟ କେନ୍ଦ୍ର ଉପରେ ହୋଇଥିବା ଉଗ୍ରବାଦୀ ଆକ୍ରମଣର ପ୍ରଭାବ ନିଶ୍ଚିତ ରୂପେ ବିଶ୍ୱ ଅର୍ଥନୀତିକୁ ପ୍ରଭାବିତ କରିବ ବୋଲି ଅର୍ଥନୀତିଜ୍ଞମାନେ ଭବିଷ୍ୟବାଣୀ ଶୁଣେଇ ଦେଲେଣି । ମିଳିତ ଜାତିସଂଘର ଏକ ସଦ୍ୟ ପ୍ରକାଶିତ ରିପୋର୍ଟ ଉଲ୍ଲେଖ କରିଛି ଯେ ସେପ୍ଟେମ୍ବର-୧୧ର ଘଟଣାକ୍ରମ ବିଶ୍ୱ ଅର୍ଥନୀତିକୁ

ସମ୍ପୂର୍ଣ୍ଣ ରୂପେ ଓଲଟ ପାଲଟ କରିଦେବ, ଯାହାକି ଦୀର୍ଘସୂତ୍ରୀ ଅଭିବୃଦ୍ଧିକୁ ଦାରୁଣ ଭାବେ ପ୍ରତିହତ କରିବ । ପୂର୍ବ ଓ ଦକ୍ଷିଣ ଏସିଆର ଉନ୍ନତଶୀଳ ରାଷ୍ଟ୍ରମାନେ ଏହି ଘଟଣାବହୁଳ ଘନଘଟା ଦ୍ୱାରା ବହୁଳଭାବେ ପ୍ରଭାବିତ ହେବେ ବୋଲି ଭବିଷ୍ୟବାଣୀ କରାଯାଇଛି ଏବଂ ମିଳିତ ଜାତିସଂଘ ଏହି ବର୍ଷ ରାଷ୍ଟ୍ରୀୟ ସମ୍ଭାବ୍ୟ ଅଭିବୃଦ୍ଧି ହାର ୪.୧ ପ୍ରତିଶତରୁ ୧.୩ ପ୍ରତିଶତକୁ ହ୍ରାସ ପାଇବ ବୋଲି ସଂଶୋଧନ କରିଛନ୍ତି । ଆଫ୍ରିକାରେ ଅଭିବୃଦ୍ଧି ହାର ୪.୩ ପ୍ରତିଶତରୁ ୩.୦ ପ୍ରତିଶତ ଏବଂ ଲାଟିନ୍ ଆମେରିକାରେ ୩.୧ ପ୍ରତିଶତରୁ ୦.୮ ପ୍ରତିଶତକୁ ହ୍ରାସ ପାଇବାର ଯଥେଷ୍ଟ ଆଶା କରାଯାଉଛି । ପଶ୍ଚିମ ଏସୀୟ ରାଷ୍ଟ୍ରମାନଙ୍କର ଅଭିବୃଦ୍ଧି ହାର ୧.୯ ପ୍ରତିଶତ ହେବ ବୋଲି ସମ୍ଭାବନା କରାଯାଉଛି, ଯାହାକି ପୂର୍ବରୁ ୨.୬ ପ୍ରତିଶତ ହେବ ବୋଲି ଭବିଷ୍ୟବାଣୀ କରାଯାଇଥିଲା ।

ପରନ୍ତୁ, ମଜା କଥାଟି ହେଲା ଚୀନ ସାଂପ୍ରତିକ ଘଟଣାକ୍ରମ ଦ୍ୱାରା ପ୍ରାୟ ପ୍ରଭାବିତ ହେବ ନାହିଁ ବୋଲି ଆଶା କରାଯାଉଛି ଏବଂ ତା'ର ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ମଧ୍ୟ ୭.୫ ପ୍ରତିଶତରେ ରହିବ, ଯାହାକି ଆମେରିକା ଉପରେ ସେପ୍ଟେମ୍ବର-୧୧ର ଆକ୍ରମଣ ପୂର୍ବରୁ ମଧ୍ୟ ସେହି ଭବିଷ୍ୟବାଣୀ କରାଯାଇଥିଲା । ଜାତିସଂଘର ଏହି ସଦ୍ୟ ପ୍ରକାଶିତ ରିପୋର୍ଟ ବିଶ୍ୱର ସର୍ବ ବୃହତ୍ ଅର୍ଥନୀତି ସମୃଦ୍ଧ ରାଷ୍ଟ୍ର ଆମେରିକାର ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ମାତ୍ର ୧ ପ୍ରତିଶତ ହିସାବରେ ବୃଦ୍ଧି ଘଟିବ ବୋଲି ଉଲ୍ଲେଖ କରିଛି, ଯାହାକି ପୂର୍ବରୁ ୧.୮ ପ୍ରତିଶତ ହେବ ବୋଲି ଭବିଷ୍ୟବାଣୀ କରାଯାଇଥିଲା । ଅର୍ଥାତ୍ ଆମେରିକା ୨୦୦୧-୨୦୦୨ ଆର୍ଥିକ ବର୍ଷର ଦ୍ୱିତୀୟାର୍ଦ୍ଧରେ ଏକ ବିଯୁକ୍ତ ଅଭିବୃଦ୍ଧି ହାରର ସାମ୍ନାସାମ୍ନି ହେବ ବୋଲି ଏହି ରିପୋର୍ଟରେ ସ୍ପଷ୍ଟ ଉଲ୍ଲେଖ ଅଛି ।

ଜାତିସଂଘର ଏହି ରିପୋର୍ଟ ଅନୁଯାୟୀ ୟୁରୋପୀୟ ରାଷ୍ଟ୍ର ସମୂହର ଅଭିବୃଦ୍ଧି ହାର ୨.୭ ପ୍ରତିଶତରୁ ୧.୮ ପ୍ରତିଶତକୁ ଖସି ଆସିବା ନିଶ୍ଚିତ । ପୁନଶ୍ଚ ଜାପାନର ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ମଧ୍ୟ ୦.୭ ପ୍ରତିଶତରୁ ୦.୫ ପ୍ରତିଶତକୁ ଖସି ଆସିବ ବୋଲି ଏଥିରେ ସ୍ପଷ୍ଟ କରି ଦିଆଯାଇଛି ।

ଏପରି ଏକ ଜଟିଳ ପରିସ୍ଥିତିରେ ଭାରତୀୟ ଅର୍ଥନୀତିର ଭାଗ୍ୟକୁ ନେଇ ନାନାଦି ଭୟ ଓ ଆଶଙ୍କା ମନ ଭିତରେ ଜମାଟ ବାନ୍ଧୁଛି । ଏହି ସମସ୍ୟା ଆହୁରି

ଜଟିଳତର ହୋଇଯାଉଛି ଏଇଥିପାଇଁ ଯେ ଏହି ଉଗ୍ରବାଦୀ ଆକ୍ରମଣର ଠିକ୍ ଗୋଟାଏ ସପ୍ତାହ ପୂର୍ବରୁ ଭାରତ ତା'ର ଅର୍ଥନୀତିର ବିଷର୍ଣ୍ଣ ବଦନ ଅବଲୋକନ କରିବାକୁ ପ୍ରସ୍ତୁତ ରହୁ ବୋଲି ଚେତାବନୀ ପାଇଥିଲା । ଏହି ଚେତାବନୀର କାରଣ ଥିଲା ଯେ ଆମେରିକା ଭାରତର ସର୍ବଶ୍ରେଷ୍ଠ ବାଣିଜ୍ୟିକ ବନ୍ଧୁ ଥିବା ସଙ୍ଗେ ସଙ୍ଗେ ସର୍ବବୃହତ୍ ବିଦେଶୀ ପ୍ରତ୍ୟକ୍ଷ ପୁଞ୍ଜି ବିନିଯୋଗକାରୀ ରାଷ୍ଟ୍ର ମଧ୍ୟ ଅଟେ ।

ପରନ୍ତୁ, ଭାରତୀୟ ପୃଷ୍ଠଭୂମିରେ 'ଏକ ଅର୍ଥନୈତିକ ବିପର୍ଯ୍ୟସ୍ତତା ଆଡ଼କୁ ଆମେ ଯେ ଅଣନିଶ୍ୱାସୀ ହୋଇ ଧାଇଁ ଚାଲିଛେ' - ଏହା ଭାବିବା ସେତେଟା ଯୁକ୍ତିଯୁକ୍ତ ଓ ସମୀଚୀନ ହେଉନାହିଁ । ଏହି ଚିନ୍ତାଧାରା ଅତ୍ୟନ୍ତ ମାତ୍ରାଧିକ ବୋଲି ପ୍ରତୀୟମାନ ହୋଇଥାଏ । ଭାରତ ଆମେରିକାର ଅର୍ଥନୀତି ସହ ସେଭଳି ଓତଃପ୍ରୋତ ଭାବେ ଜଡ଼ିତ ନୁହେଁ କିମ୍ୱା ଭାରତର ଅର୍ଥନୀତି ମଧ୍ୟ ସମ୍ପୂର୍ଣ୍ଣ ରପ୍ତାନିଭିତ୍ତିକ ନୁହେଁ, ଯଦିଓ ଆମେରିକା ଭାରତର ସର୍ବବୃହତ୍ ରପ୍ତାନି ଲକ୍ଷ୍ୟସ୍ଥଳ ଅଟେ । ଭାରତର ରପ୍ତାନି ବାଣିଜ୍ୟର ୨୨ ପ୍ରତିଶତରୁ ଅଧିକ କେବଳ ଆମେରିକାକୁ ହିଁ ରପ୍ତାନି ହୋଇଥାଏ । ପରନ୍ତୁ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି) ସହିତ ଭାରତର ରପ୍ତାନି ମାତ୍ରା, ମାତ୍ର ୯ ପ୍ରତିଶତ ଥିଲା ବେଳେ ଦକ୍ଷିଣ କୋରିଆ ଓ ଥାଇଲାଣ୍ଡ କ୍ଷେତ୍ରରେ ଏହା ଯଥାକ୍ରମେ ୪୫ ଓ ୬୬ ପ୍ରତିଶତ ଅଟେ ଯେତେବେଳେ କି ଏହି ଦୁଇରାଷ୍ଟ୍ର ମୁଖ୍ୟତଃ ଆମେରିକାକୁ ହିଁ ରପ୍ତାନି କରିଥାନ୍ତି । ଏହି ବିଶ୍ଳେଷଣରୁ ଆମେ ଏହାହିଁ ବୁଝିଥାଉ ଯେ ଭାରତୀୟ ଅର୍ଥନୀତି ତୁଳନାତ୍ମକ ଭାବେ ଆମେରିକାର ବିପର୍ଯ୍ୟସ୍ତ ଅର୍ଥନୀତିକୁ ଏତେଟା ଖୋଲା ନୁହେଁ, ଯାହାକି ଉଗ୍ରବାଦୀ ଆକ୍ରମଣର ପରବର୍ତ୍ତୀ ପର୍ଯ୍ୟାୟ ଦ୍ୱାରା ପ୍ରଭାବିତ ହେବ ।

ଭାରତରୁ ଆମେରିକାକୁ କରାଯାଉଥିବା ରପ୍ତାନିର ସେକ୍ଟର ଅନୁଯାୟୀ ବିଶ୍ଳେଷଣ କଲେ ଏହା ମନେହୁଏ ଯେ ଆମେରିକାକୁ ଭାରତର ରପ୍ତାନି ବାଣିଜ୍ୟ ନେଇ ମନ ଭିତରେ ସୃଷ୍ଟି ହେଉଥିବା ଭୟ ଓ ଆଶଙ୍କା ବିଗତ ଦେଢ଼ ବର୍ଷ ହେଲା ଆମେରିକା ଭୋଗୁଥିବା ଅର୍ଥନୈତିକ ଶିଥିଳତା ଅପେକ୍ଷା ଉଗ୍ରବାଦର ପରବର୍ତ୍ତୀ ସାଂପ୍ରତିକ ଶଙ୍କାଗ୍ରସ୍ତ ଆମେରିକା ସହ ଅଧିକ ଭାବେ ଜଡ଼ିତ । ଭୟ ଓ ଆଶଙ୍କାର ପ୍ରଭାବ ସାଧାରଣତଃ କ୍ଷଣସ୍ଥାୟୀ ହୋଇଥାଏ, ଯାହାକି କୌଣସି ଦୀର୍ଘମିଆଦି ପ୍ରଭାବ ଅନୁଭୂତ ହେବାକୁ ପ୍ରାୟ ଦେଇ ନ ଥାଏ । ଏହି 'କଳା ମଙ୍ଗଳବାର'ର

ପ୍ରଭାବ ଆମେରିକାର ଅର୍ଥନୀତିକୁ ନିଃସନ୍ଦେହରେ ପ୍ରଭାବିତ କରିବ, ଯାହାକି ପୁନଶ୍ଚ ଅର୍ଥନୈତିକ ଶିଥିଳତା ଭିତରକୁ ଆମେରିକାକୁ ଠେଲି ନେଇ ଚାଲିଯିବ । ହେଲେ ଆମେରିକାକୁ ଭାରତର ରପ୍ତାନି ବାଣିଜ୍ୟର ଢାଞ୍ଚା ଏବଂ ତା' ଉପରେ ଆମେରିକାର ନିର୍ଭରଶୀଳତାକୁ ଲକ୍ଷ୍ୟ କଲେ ଏହା ପ୍ରତୀୟମାନ ହୁଏ ଯେ ଆମେରିକାରେ ଉଗ୍ରବାଦୀ ଆକ୍ରମଣର ପରବର୍ତ୍ତୀ ଘଟଣାକ୍ରମ ଭାରତର ରପ୍ତାନି ବାଣିଜ୍ୟକୁ ଯେ ବ୍ୟଥିତ, ବିଗଳିତ, ବ୍ୟତିବ୍ୟସ୍ତ ଓ ବିପର୍ଯ୍ୟସ୍ତ କରିବ - ଏହାର ଯୁକ୍ତିଯୁକ୍ତତା ପ୍ରମାଣ କରିବା ଅତ୍ୟନ୍ତ କଷ୍ଟସାଧ ବ୍ୟାପାର ହୋଇ ପଡୁଛି ।

ଆମେରିକାର ଆମଦାନୀ ବଜାରରେ ଭାରତର ଅବଦାନ ମାତ୍ର ସ୍ୱଳ୍ପାତିସ୍ୱଳ୍ପ ତିନି ପ୍ରତିଶତ । ଯଦିଓ ବର୍ତ୍ତମାନ ଆମେରିକାରେ ଖାଉଟୀମାନଙ୍କର ଖର୍ଚ୍ଚ-ବାର୍ଚ୍ଚ ସାଂପ୍ରତିକ ପରିସ୍ଥିତିରେ ପ୍ରଭାବିତ ହେବା ନିଶ୍ଚିତ, ପରନ୍ତୁ ଆମେରିକାକୁ ଭାରତର ରପ୍ତାନି ବାଣିଜ୍ୟ କାରବାର ସେଭଳି ବଡ଼ ଧରଣର ପରିବର୍ତ୍ତନର ସ୍ୱାଦ ଚାଖିବ ନାହିଁ ବୋଲି ଅର୍ଥନୀତିଜ୍ଞମାନେ ମତପୋଷଣ କରୁଛନ୍ତି । ଆମେରିକା ଉପରେ ଭାରତର ରପ୍ତାନି କାରବାରର ପ୍ରଭାବ ଯେ ନ୍ୟୁନତମ, ଏହା ଆହୁରି ସ୍ପଷ୍ଟ ଭାବେ ପ୍ରମାଣିତ ହୋଇଯାଏ ସେତିକିବେଳେ, ଯେତେବେଳେ ଦେଖାଯିବ ଭାରତରୁ ଆମେରିକାକୁ ରପ୍ତାନି ହେଉଥିବା ପଣ୍ୟ ଦ୍ରବ୍ୟ ଯଥା : ରେଡ଼ିମେଡ଼ ପୋଷାକ ପତ୍ର, କପାସୂତା ଓ କପଡ଼ା ଆଦିରେ ସାଧାରଣ ମାତ୍ରା ଅପେକ୍ଷା ଅଧିକତର ଅଭିବୃଦ୍ଧି ପରିଲକ୍ଷିତ ହୋଇଛି । ଯଦିଓ ଆମେରିକାରେ ଆତଙ୍କବାଦୀ ଆକ୍ରମଣର ପରବର୍ତ୍ତୀ ପର୍ଯ୍ୟାୟରେ ଗ୍ରୀଷ୍ମବସ୍ତ୍ରର ଭାରତୀୟ ରପ୍ତାନିକାରୀମାନେ କିଛିଟା ଅସୁବିଧାର ସମ୍ମୁଖୀନ ହେବେ, ହେଲେ ସେଭଳି ପରିସ୍ଥିତି ଦୀର୍ଘସ୍ଥାୟୀ ହେବାର ସମ୍ଭାବନା କ୍ଷୀଣ । ପରନ୍ତୁ ଆମେରିକାକୁ ରତ୍ନ ଓ ସୁନାରୂପା ବିଶେଷ କରି ହୀରା ଆଦି ଗହଣା ପତ୍ରର ରପ୍ତାନିରେ ସେପ୍ଟେମ୍ବର-୧୧ 'କଳା ମଙ୍ଗଳବାର' ପରବର୍ତ୍ତୀ ସାଂପ୍ରତିକ ପରିସ୍ଥିତିର ପ୍ରଭାବ ଅନୁଭୂତ ହେବ ବୋଲି ଆଶା କରାଯାଏ । ଠିକ୍ ସେହିପରି ଆଉ ଗୋଟିଏ କ୍ଷେତ୍ର ଯାହା ବିଶେଷ ଭାବେ ପ୍ରଭାବିତ ହେବବୋଲି ମନେହୁଏ ତାହା ହେଲା ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣ । ଫରେନ୍ ଇନ୍‌ଷ୍ଟିଚ୍ୟୁସନାଲ ଇନଭେସଟର୍ସ ବା ବିଦେଶୀ ଅନୁଷ୍ଠାନ ଭିତ୍ତିକ ପୁଞ୍ଜିଲଗାଣକାରୀମାନେ ଯେଉଁମାନେ କି ପ୍ରାୟତଃ

ଆମେରିକାର ବାସିନ୍ଦା ଅଟନ୍ତି, ଭାରତରେ ଯେଉଁ ପରିମାଣରେ ପୁଞ୍ଜି ବିନିଯୋଗ କରୁଥିଲେ ସେଥିରେ ହ୍ରାସ ପରିଲକ୍ଷିତ ହେବ ବୋଲି ମନେ କରାଯାଏ ଏବଂ କିଣାକଟା ଅପେକ୍ଷା ବିକ୍ରୀବଟା ଉପରେ ଅଧିକ ଧ୍ୟାନ କେନ୍ଦ୍ରୀଭୂତ ହେବ । ଭାରତରେ ସିଧାସଳଖ ବିଦେଶୀ ପୁଞ୍ଜି ଲଗାଣ କ୍ଷେତ୍ରରେ ଆମେରିକା ଏବେ ପ୍ରଥମ ସ୍ଥାନରେ ଅଛି । ପରନ୍ତୁ ସାଂପ୍ରତିକ ପରିସ୍ଥିତିର ଘନଘଟା ଓ କୁହେଳୀକା ମଧ୍ୟରେ ଏହି ପୁଞ୍ଜି ଲଗାଣ ସ୍ଥିର ହୋଇଯିବ ବୋଲି ଆଶା କରାଯାଉଛି । ପୁନଶ୍ଚ ଭାରତରେ ଆମେରିକାର ପୁଞ୍ଜି ଲଗାଣ ପ୍ରାୟ ବିଶେଷ ଭାବେ ମୋରିସସ୍ ଦେଶ ମାଧ୍ୟମରେ ହୋଇଥାଏ ଯେ କି ଆମେରିକା ପରେ ଭାରତରେ ଦ୍ୱିତୀୟ ବୃହତ୍ତମ ପୁଞ୍ଜି ବିନିଯୋଗକାରୀ ରାଷ୍ଟ୍ର ଅଟେ । ମୋରିସସ୍ ଓ ଭାରତ ମଧ୍ୟରେ ହୋଇଥିବା ବିଶେଷ ଟିକସ ରାଜିନାମା ଯୋଗୁଁ ଏହା ସମ୍ଭବପର ହୋଇପାରିଛି । ସେଇଥିପାଇଁ ଚାରିଆଡ଼େ ଏକ ଭୟ ଓ ଆଶଙ୍କାର ବାଦଲ ଘେରି ରହିଛି ଯେ ବିଶ୍ୱ ବାଣିଜ୍ୟ କେନ୍ଦ୍ରରେ ଘଟିଯାଇଥିବା ଘଟଣାକ୍ରମର ପରବର୍ତ୍ତୀ ଅଧ୍ୟାୟରେ ଭାରତରେ ଆମେରିକାର ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗରେ ଗ୍ରହଣ ଲାଗିଯିବନି ତ ?

ଘଟଣା ବିନ୍ୟାସର ନିର୍ଯ୍ୟାସ ଓ ବିଶ୍ଳେଷଣ ଯଦିଓ ଉପସ୍ଥାପନା କରୁଛି ଯେ ଭାରତରେ ଆମେରିକା ହିଁ ସର୍ବବୃହତ୍ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗକାରୀ ରାଷ୍ଟ୍ର; ପରନ୍ତୁ ଏହା କେବଳ କାଗଜ କଲମରେ । ଆମେରିକା ମଂଜୁର କରିଥିବା ସମୁଦାୟ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପରିମାଣର ମାତ୍ର ୨୦ ପ୍ରତିଶତ ଭାରତ ଏ ପର୍ଯ୍ୟନ୍ତ ପାଇ ପାରିଛି । ୧୯୯୧ ମସିହା ପରଠାରୁ ଅର୍ଥାତ୍ ଯେଉଁ ବର୍ଷରୁ ଭାରତ ମୁକ୍ତ ଅର୍ଥନୀତିର ପଥକୁ ବାଛି ନେଇଥିଲା, ସେହି ବର୍ଷରୁ ୨୦୦୦ ମସିହା ମଧ୍ୟରେ ଯଦିଓ ଭାରତରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ବାବଦରେ ୫୦,୩୭୪ କୋଟି ଟଙ୍କା ଆମେରିକା ଦ୍ୱାରା ମଂଜୁର ହୋଇଥିଲା, ପରନ୍ତୁ ଏ ପର୍ଯ୍ୟନ୍ତ ମାତ୍ର ୧୦,୫୦୦ କୋଟି ଟଙ୍କାର ପ୍ରକୃତ ପୁଞ୍ଜି ବିନିଯୋଗ ହୋଇଛି ।

ପରନ୍ତୁ ଏହି ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ପରିମାଣର ଏକ ବୃହତ୍ ଅଂଶ ଦେଶରେ ଶକ୍ତି ଉତ୍ପାଦନ କ୍ଷେତ୍ରରେ ବିନିଯୋଗ ପାଇଁ ଉଦ୍ଦିଷ୍ଟ ଥିଲା । ନିକଟ

ଅତୀତରେ 'ଏନ୍‌ରନ୍' ଓ ମହାରାଷ୍ଟ୍ର ସରକାରଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ଗୋଳମାଳିଆ ପରିସ୍ଥିତି ଯୋଗୁଁ ଆମେରିକାର ଶକ୍ତି ଉତ୍ପାଦନକାରୀ କମ୍ପାନୀମାନେ ଭାରତରେ ପୁଞ୍ଜି ବିନିଯୋଗ କରିବା ପାଇଁ ପଛଘୁଞ୍ଚା ଦେଉଛନ୍ତି । ଉପରୋକ୍ତ ଘଟଣାବଳୀରୁ ଏହା ପ୍ରତୀୟମାନ ହୁଏ ଯେ ଆମେରିକାର ଭାରତରେ ସିଧାସଳଖ ବିଦେଶୀ ପୁଞ୍ଜି ବିନିଯୋଗ ବାତାବରଣରେ ଏ ଯେଉଁ ଅନିଶ୍ଚିତତା ଦେଖାଦେଇଛି, ତାହା ଭାରତର ପ୍ରକୃତ ଅର୍ଥନୈତିକ ଅଭିବୃଦ୍ଧି ପ୍ରକ୍ରିୟାରେ ପ୍ରତିବନ୍ଧକ ହୋଇ ଠିଆ ହେବାରେ ଏକ ଗୌଣ ଭୂମିକା ମାତ୍ର ସମ୍ପାଦନ କରିବ ।

ପରନ୍ତୁ ଦୁଇଟି କ୍ଷେତ୍ରରେ ଭାରତ ଦାରୁଣ ଧକ୍କା ଖାଇବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ତାହାହେଲା ସଫ୍ଟୱେୟାର ରପ୍ତାନି ଓ ତୈଳ ଆମଦାନୀ । ଭାରତ ବର୍ଷକୁ ୬ ବିଲିୟନ ଡଲାର ମୂଲ୍ୟର ସଫ୍ଟୱେୟାର ବିଭିନ୍ନ ଦେଶକୁ ରପ୍ତାନି କରିଥାଏ, ଯାହାର ଶତକଡ଼ା ୬୦ ଭାଗ କେବଳ ଆମେରିକାକୁ ହିଁ ଯାଇଥାଏ । ସେପ୍ଟେମ୍ବର-୧୧ର ବହୁ ପୂର୍ବରୁ ଆମେରିକାରେ ଦେଖାଦେଇଥିବା ଅର୍ଥନୈତିକ ଶିଥିଳତା ଯୋଗୁଁ ସଫ୍ଟୱେୟାର ରପ୍ତାନିର ପରିମାଣରେ ଆଶାତୀତ ହ୍ରାସ ପରିଲକ୍ଷିତ ହୋଇଥିଲା । ଏବେ ଏହି କ୍ଷେତ୍ରଟି ପୁନଶ୍ଚ ବିଶେଷଭାବେ ପ୍ରଭାବିତ ହେବାର ଆଶଙ୍କା କରାଯାଉଛି, ଯାହାକି ଆଦୌ ନିରାଧାର ନୁହେଁ ।

ଦେଶରେ ଆବଶ୍ୟକ ହେଉଥିବା ଅଶୋଧିତ ତୈଳର ୭୦ ପ୍ରତିଶତରୁ ଅଧିକ ପୃଥିବୀର ବିଭିନ୍ନ ତୈଳ ରପ୍ତାନିକାରୀ ରାଷ୍ଟ୍ରମାନଙ୍କଠାରୁ ଆମଦାନୀ କରାଯାଇଥାଏ । ସରକାରୀ ହିସାବରୁ ଜଣାଯାଇଛି ଯେ ଏକ ବ୍ୟାରେଲ ତେଲ ପିଛା ଯଦି ଏକ ଡଲାର ମୂଲ୍ୟ ବୃଦ୍ଧି ଘଟେ, ତେବେ ଭାରତକୁ ୩୬୦୦ କୋଟି ଟଙ୍କା ଅଧିକା ଅର୍ଥରାଶି ବହନ କରିବାକୁ ପଡ଼ିବ । ଗତବର୍ଷ ଭାରତ ତୈଳ ଓ ତୈଳଜାତ ପଦାର୍ଥ ଗୁଡ଼ିକର ଆମଦାନୀ ପାଇଁ ୧୫.୬ ବିଲିୟନ ଡଲାର ଅର୍ଥରାଶି ବ୍ୟୟ କରିଥିଲା । ତୈଳ ଆମଦାନୀ ଜନିତ ବ୍ୟୟ ଭାରତ ଉପରେ କେତେବଡ଼ ବୋଝ ହେବ, ତାହା ଏବେଠୁଁ ଆକଳନ କରିବା ଅତ୍ୟନ୍ତ କଷ୍ଟକର ହେବ । ଅର୍ଗାନାଇଜେସନ ଅଫ୍ ପେଟ୍ରୋଲିୟମ ଏକ୍ସପୋର୍ଟିଂ କଣ୍ଟ୍ରିଜ (ଓପେକ୍) ରାଷ୍ଟ୍ର ସମୂହ ମଧ୍ୟରୁ ସାଉଦି ଆରବିଆ ଏବଂ କୁଏତ୍ ଆମେରିକାର ମିତ୍ର ରାଷ୍ଟ୍ର

ଅଟନ୍ତି ଏବଂ ସେମାନେ ତୈଳ ଦର ସ୍ଥିର ରଖିବା ପାଇଁ ଯେ କୌଣସି ପରିସ୍ଥିତିରେ ଯେ କୌଣସି ମୂଲ୍ୟ ଦେଇ ମଧ୍ୟ ଆମେରିକାର ସମସ୍ତ ତୈଳ ଆବଶ୍ୟକତା ପୂରଣ କରିବାକୁ ପ୍ରସ୍ତୁତ । ପୃଥିବୀରେ ଆମେରିକା ହିଁ ସର୍ବାଧିକ ତୈଳ ଆମଦାନୀକାରୀ ରାଷ୍ଟ୍ର ଅଟେ । ପ୍ରତିବର୍ଷ ବିଶ୍ୱ ତୈଳ ରପ୍ତାନିର ଏକ ଚତୁର୍ଥାଂଶ ଆମେରିକାକୁ ହିଁ ଯାଇଥାଏ । ଆମେରିକାର ଅର୍ଥନୀତିରେ ଶିଥିଳତା ଏବଂ ବିମାନ ଚଳାଚଳ ସଂଖ୍ୟାରେ ଭବିଷ୍ୟତରେ କରାଯାଉଥିବା ହ୍ରାସ, ଯାହାକି ଆମେରିକାର ସମୁଦାୟ ତୈଳ ବ୍ୟୟ ପରିମାଣର ୧୦ ଭାଗ ଖର୍ଚ୍ଚ କରିଥାଏ, ମିଳିମିଶି ଆମେରିକାରେ ତୈଳର ଚାହିଦାକୁ ପ୍ରଭାବିତ କରିବେ । ପୁନଶ୍ଚ ଅଭିଜ୍ଞତା, ପେଟ୍ରୋଲିୟମ ରପ୍ତାନିକାରୀ ରାଷ୍ଟ୍ରସଂଘ (ଓପେକ୍)କୁ ଶିକ୍ଷା ଦେଇଛି ଯେ ତୈଳ ରପ୍ତାନି ଜନିତ କୌଣସି ଆଘାତ ଦ୍ୱାରା କେବଳ ଯେ ତୈଳ ଆମଦାନୀକାରୀ ରାଷ୍ଟ୍ରମାନେ ପ୍ରଭାବିତ ହୋଇଥାଆନ୍ତି ତାହା ନୁହେଁ, ବରଂ ତୈଳ ରପ୍ତାନିକାରୀ ରାଷ୍ଟ୍ରମାନେ ମଧ୍ୟ ସମଦଶା ଭୋଗିଥାଆନ୍ତି ।

ଆମେରିକା ଉପରେ ହୋଇଥିବା ସେପ୍ଟେମ୍ବର-୧୧ର ଦାରୁଣ ଉଗ୍ରବାଦୀ ଆକ୍ରମଣ ଭାରତ ପାଇଁ ପ୍ରକାରାନ୍ତରେ ପରୋକ୍ଷ ଲାଭ ଆଣିଦେବ ବୋଲି ଆଶା କରାଯାଉଛି । ଏହି ପରିସ୍ଥିତି ଆମେରିକା ସହ ଭାରତର ବନ୍ଧୁତ୍ୱକୁ ସୁଦୃଢ଼ କରିବ, ଯାହାକି ୩ ବର୍ଷ ତଳେ ପୋଖରାନ୍ ପରମାଣୁ ବୋମା ବିସ୍ଫୋରଣ ଯୋଗୁଁ କଳୁଷିତ ହୋଇଥିଲା । ଭାରତ ଉପରେ ଲାଗୁ ହୋଇଥିବା ଆର୍ଥିକ ପ୍ରତିବନ୍ଧକଗୁଡ଼ିକୁ ଉଠେଇ ନେଇ ଆମେରିକା ଏବେ ଭାରତ ଆଡ଼କୁ ଏକ ମଧୁମୟ ସମ୍ପର୍କର ହାତ ପ୍ରସାରଣ କରିଛି । ଭବିଷ୍ୟତର ଘଟଣାକ୍ରମ ଏ ସମ୍ପର୍କର ବୁନିୟାଦକୁ ଆର୍ଥିକ ଦୃଷ୍ଟିକୋଣରୁ କେତେଦୂର ମଜବୁତ କରିପାରୁଛି - ତାହା ସମୟ ହିଁ କହିବ ।

ସମାଜ

ତା- ୧୯.୧୧.୨୦୦୧



# ଜ୍ଞାନାଶ୍ରୟୀ ଅର୍ଥନୀତି

ଅଶୀ ଦଶକରେ ଜାପାନ ଓ ୟୁରୋପର ଅର୍ଥନୀତି ଆମେରିକାର ଅର୍ଥନୀତିକୁ ପ୍ରାୟ ପଛରେ ପକେଇ ଦେଇଥିଲା ବେଳେ, ନବେ ଦଶକରେ କ'ଣ ଏମିତି ହେଲା ଯେ ଚକ ପୁଣି ଓଲଟା ଘୂରିଗଲା ଓ ଆମେରିକାର ଅର୍ଥନୀତି ଅନ୍ୟ ସମସ୍ତ ଦେଶକୁ ପଛରେ ପକେଇ ଦେଇ ହଠାତ୍ ଦ୍ରୁତ ଗତିରେ ଆଗକୁ ମାଡ଼ି ଚାଲିଲା । ଏ ନେଇ ଅର୍ଥନୀତି ସହ ଜଡ଼ିତ ଉତ୍ତରକୁ ଆପଣ ଭୁଲି ଯାଆନ୍ତୁ । ମୂଳ କାରଣଟି ହେଲା ସଂସ୍କୃତି ।

ଆମେରିକା ହେଉଛି ପୃଥିବୀର ଏକମାତ୍ର ଦେଶ ଯେଉଁଠାରେ କି ଗୋରାଲୋକଙ୍କ ମାତ୍ରାଧିକ ସଂଖ୍ୟା ଧୀରେ ଧୀରେ ହ୍ରାସ ପାଇ ଚାଲିଛି ଓ କୃଷ୍ଣକାୟ ବ୍ୟକ୍ତିମାନେ ଅତ୍ୟନ୍ତ ସହଜରେ ସେମାନଙ୍କ ସ୍ଥାନ ପୂରଣ କରି ଚାଲିଛନ୍ତି । ଆମେରିକାରେ ଏହି ପରିବର୍ତ୍ତନ ପ୍ରକ୍ରିୟା କେବଳ ସାଂସ୍କୃତିକ ବିଶ୍ୱାସକୁ ଆଧାର କରି ହିଁ ଗଢ଼ି ତୋଳୁଛି ଓ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ପୃଥିବୀର ସର୍ବୋତ୍ତମ ଓ ଉଜ୍ଜ୍ୱଳମୟ ପ୍ରତିଭାକୁ ଚିହ୍ନଟ କରି ରାଷ୍ଟ୍ରର ସର୍ବବୃହତ୍ କର୍ପୋରେସନଠାରୁ ଆରମ୍ଭ କରି ସିଲିକନ ଭ୍ୟାଲି ପର୍ଯ୍ୟନ୍ତ ସବୁଠି ମୁଖ୍ୟ ଅଧିକାରୀ ଭାବେ ପ୍ରତିଷ୍ଠିତ କରାଉଛି । ଫଳତଃ ଆମେରିକା ତା'ର ପ୍ରତିଦ୍ୱନ୍ଦୀ ରାଷ୍ଟ୍ରମାନଙ୍କଠାରୁ ନିଜର ରାଷ୍ଟ୍ରୀୟ ଉତ୍ପାଦକତାକୁ ଉର୍ଦ୍ଧ୍ୱରେ ରଖିପାରିଛି ।

ଜ୍ଞାନାଶ୍ରୟୀ ଅର୍ଥନୀତି (Knowledge Economy) ର ଅଭ୍ୟୁଦୟ ଫଳରେ ସୂଚନା ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଏସିଆ ମହାଦେଶର ନାଗରିକମାନେ ଅଭୂତପୂର୍ବ ସଫଳତା ହାସଲ କଲେ ଓ ଏହି ସଫଳତାକୁ ଘଟଣା ପ୍ରବାହର ଏକ ସମ୍ପୂର୍ଣ୍ଣ ସଂଯୋଗ ବୋଲି କୁହାଯାଇ ନ ପାରେ । ଭାରତ ସମେତ ବହୁଦେଶ ଏବେ ଚିନ୍ତିତ ଯେ ଦେଶୀୟ ମାଟିରେ ବିଦେଶୀ ଇମିଗ୍ରାଣ୍ଟମାନଙ୍କ ଭିଡ଼ ସେମାନଙ୍କ ସାଂସ୍କୃତିକ ପରିଚୟ ଉପରେ କୁଠାରଘାତ କରିବ ନାହିଁ ତ ? ପରନ୍ତୁ ଆମେରିକା ଏକ ବଡ଼ ବ୍ୟତିକ୍ରମ । ଆମେରିକାର ପ୍ରାକ୍ତନ ରାଷ୍ଟ୍ରପତି ବିଲ୍ କ୍ଲିଣ୍ଟନ ଗତବର୍ଷ ତାଙ୍କ 'ଷ୍ଟେଟ ଅଫ୍ ଦି ୟୁନିଅନ' ବାର୍ତ୍ତାରେ ଘୋଷଣା କରିଥିଲେ ଯେ ଆଗାମୀ ୧୦ ବର୍ଷ ମଧ୍ୟରେ କାଲିଫର୍ଣ୍ଣିଆ ଓ ଆଗାମୀ

୫୦ ବର୍ଷ ଭିତରେ ସମ୍ପୂର୍ଣ୍ଣ ଆମେରିକା ଅଣଶ୍ୱେତାଙ୍ଗ ଅଧିବାସୀମାନଙ୍କ ସଂଖ୍ୟା ଗରିଷ୍ଠତା ହୋଇଯିବ । ଅନ୍ୟ କୌଣସି ଦେଶ ହୋଇଥିଲେ ଏପରି ଏକ ଘୋଷଣାନାମା ବା ଭବିଷ୍ୟବାଣୀ ସେ ଦେଶରେ ଏକ ରାଜନୈତିକ ଝଡ଼ ସୃଷ୍ଟି କରିଥା'ନ୍ତା । ପରନ୍ତୁ ରାଷ୍ଟ୍ରପତି କ୍ଲିଣ୍ଟନ ଏପରି ଏକ ପରିବର୍ତ୍ତନକୁ ରାଷ୍ଟ୍ରୀୟ ଶକ୍ତିର ଏକ ମୁଖ୍ୟ ସ୍ରୋତ ବୋଲି ବିବେଚନା କଲେ ଓ ଆମେରିକା ବିଶ୍ୱ ଦରବାରରେ ଉପସ୍ଥାପିତ କରୁଥିବା ସାଂସ୍କୃତିକ ବିଭେଦତାକୁ ନେଇ ସେ ମଧ୍ୟ ଗର୍ବ ଅନୁଭବ କଲେ ।

ପରନ୍ତୁ ସମସ୍ତ ଆମେରିକୀୟ କ୍ଲିଣ୍ଟନଙ୍କ ଏହି ଚିନ୍ତାଧାରା ସହ ସହମତ ନୁହନ୍ତି । ବର୍ଣ୍ଣଗତ ବୈଷମ୍ୟ ଓ ଭେଦଭାବ ଏବେ ବି ଆମେରିକୀୟ ନାଡ଼ିରେ ପ୍ରବାହିତ ହେଉଛି । ପରନ୍ତୁ ମୋଟାମୋଟି ଭାବେ ବିଦେଶୀ ଇମିଗ୍ରାଣ୍ଟମାନଙ୍କୁ ଆମେରିକା ସ୍ୱାଗତ କରୁଛି ଓ ରାଷ୍ଟ୍ରୀୟ ଅଭିବୃଦ୍ଧିରେ ସେମାନଙ୍କ ଅବଦାନକୁ ମଧ୍ୟ ଯଥାଯଥ ସମ୍ମାନ ଜଣାଉଛି । ଇମିଗ୍ରାଣ୍ଟମାନଙ୍କୁ ନେଇ ଆମେରିକାରେ ହେଉଥିବା ଜନସଂଖ୍ୟା ବୃଦ୍ଧି ଆମେରିକାର ଜନମାନବ ମଧ୍ୟରେ ସେପରି କୌଣସି ଅହଂଭାବ ସୃଷ୍ଟି କରୁନାହିଁ କିମ୍ବା ତତ୍‌ଜନିତ କୌଣସି ରାଜନୈତିକ ଝଡ଼ର ମଧ୍ୟ ସୂତ୍ରପାତ ହେଉନାହିଁ ।

ପରନ୍ତୁ ଯଦିଓ ଆମେରିକାରେ ଆଜି ବର୍ଣ୍ଣବୈଷମ୍ୟ ଏକ ଗୋଳମାଳିଆ ଓ ବିଭ୍ରାନ୍ତିକର ବିଷୟବସ୍ତୁ ହୋଇ ରହିଛି, ହେଲେ ଏହା ଇମିଗ୍ରେସନ ସଂକ୍ରାନ୍ତୀୟ ଯୁକ୍ତିତର୍କରେ ନିଜର ପ୍ରାଧାନ୍ୟ ଜାହିର କରିପାରୁନାହିଁ । କୌଣସି ବାଦ ବିବାଦକୁ ପ୍ରଶ୍ରୟ ନ ଦେଇ ଏକ ଅଣଶ୍ୱେତାଙ୍ଗ ସଂଖ୍ୟାଗରିଷ୍ଠତା ରାଷ୍ଟ୍ର ଆଡ଼କୁ ଆମେରିକା ଧୀରେ ଧୀରେ ଗତି କରି ଚାଲିଛି । ଏହା ଆମେରିକାର ସାଂସ୍କୃତିକ ବିଶ୍ୱାସ ଓ ଆଶ୍ଚର୍ଯ୍ୟଜନକ ଅସାଧାରଣ ଖୋଲାପଣିଆକୁ ସ୍ପଷ୍ଟ ଜାହିର କରୁଛି । ଏହା ହିଁ ଆମେରିକାର ସାଂପ୍ରତିକ ଅର୍ଥନୈତିକ ସଫଳତାର ମୁଖ୍ୟ କାରଣ ଅଟେ । ୧୯୯୯ ମସିହାର ଶେଷ ତିନି ମାସରେ ଆମେରିକାର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି) ୭.୩ ପ୍ରତିଶତ ଥିଲାବେଳେ ବିଗତ କିଛିବର୍ଷ ମାନଙ୍କରେ ଏହା ହାରାହାରି ୪ ପ୍ରତିଶତକୁ ଖସି ଆସିଛି । ନିଃସନ୍ଦେହରେ ବିଶ୍ୱ ଅର୍ଥନୀତିରେ ଶିଥିଳତା ସହିତ ଆମେରିକାର ଅର୍ଥନୀତିରେ ଏ ବର୍ଷ ଶିଥିଳତା ଦେଖା ଦେଇଛି । ପରନ୍ତୁ ଏବେ ବି ଆମେରିକା ବିଶ୍ୱ ଅର୍ଥନୈତିକ ମହାଶକ୍ତି (ଇକୋନୋମିକ୍ ସୁପର ପାୱାର) ରୂପେ ଦୃଢ଼ ଦଣ୍ଡାୟମାନ ଅଛି ।

ଆମେରିକା ପାଖରେ କି ଯାଦୁମନ୍ତ୍ର ଅଛି ଯେ, ଯାହା ୟୁରୋପ ଓ ଜାପାନକୁ ଅଜଣା ? ଆମେରିକା ଯାହା କରି ପାରୁଛି ତାହା ୟୁରୋପ ଓ ଜାପାନ କରିପାରୁନାହାନ୍ତି

କାହିଁକି ? ଏ ପ୍ରଶ୍ନର ସିଧାସଳଖ ଉତ୍ତର ହେଲା- ଅର୍ଥନୈତିକ କିମ୍ବା ବୈଷୟିକ । ଅର୍ଥନୀତିଜ୍ଞମାନେ ଆମେରିକାର ସଫଳତା ପାଇଁ ନୂତନ ଜ୍ଞାନାଶ୍ରୟୀ ଅର୍ଥନୀତି (ନଲେଜ୍ ଇକୋନୋମି)ର ଅବଦାନକୁ ଭୂୟସୀ ପ୍ରଶଂସା କରୁଛନ୍ତି । ପୁନଶ୍ଚ ଆମେରିକାର ଇନୋଭେଟିଭ୍ ମାନସିକତା, ନମନୀୟତା (ଫ୍ଲେକ୍ସିବିଲିଟି) ତଥା ଦ୍ରୁତ ଅଭିବୃଦ୍ଧିଶୀଳ ଉତ୍ପାଦକତା ରାଷ୍ଟ୍ରର ସଫଳତା ପାଇଁ ମୁଖ୍ୟତଃ ଦାୟୀ ବୋଲି ଅର୍ଥନୀତିଜ୍ଞମାନେ ମୁକ୍ତ କଣ୍ଠରେ ସ୍ୱୀକାର କରୁଛନ୍ତି । ଏହା ସତ ନୁହେଁ କି ? ଆମେରିକା ସଦାସର୍ବଦା ଜ୍ଞାନରେ ନେତା, ସଦାସର୍ବଦା ଅତ୍ୟନ୍ତ ଇନୋଭେଟିଭ ରାଷ୍ଟ୍ରବୋଲି ଜନମାନସରେ ବିଦିତ । ଏ ସବୁ ସତ୍ତ୍ୱେ ସତୁରୀ ଓ ଅଶୀ ଦଶକରେ ଆମେରିକା ଅନ୍ୟ ଉନ୍ନତ ରାଷ୍ଟ୍ରମାନଙ୍କ ଦ୍ୱାରା ଓଭରଟେକେନ୍ ହୋଇଯାଇଥିଲା ପରି ପ୍ରତୀୟମାନ ହୁଏ ନାହିଁକି ?

ସୂଚନା ପ୍ରଯୁକ୍ତି ବିଦ୍ୟା, ଫାର୍ମାସେଉଟିକାଲ୍ସ ଓ ମନୋରଞ୍ଜନ କ୍ଷେତ୍ରରେ ଆମେରିକାର ନେତୃତ୍ୱକୁ ନେଇ ଆଜି ଚାରିଆଡ଼େ ହୁଲ୍‌ସ୍ଥୁଲ ପଡ଼ିଛି । ପରନ୍ତୁ କମ୍ପ୍ୟୁଟର (ଉଭୟ ହାର୍ଡ୍‌ୱେୟାର ଓ ସଫ୍ଟ୍‌ୱେୟାର) ଓ ଟେଲିକମ୍ୟୁନିକେସନ କ୍ଷେତ୍ରରେ ଆମେରିକା ସଦାସର୍ବଦା ବିଶ୍ୱ ନେତୃତ୍ୱ ଜାହିର କରି ଆସିଛି । ମର୍କ, ଫାଇଜର ଓ ୱାର୍ଣ୍ଣର ଦୀର୍ଘଦିନ ଧରି ବିଶ୍ୱର ଅଗ୍ରଣୀ ଔଷଧପତ୍ର ପ୍ରସ୍ତୁତକର୍ତ୍ତା ଭାବେ ପ୍ରତିଷ୍ଠିତ । ହଲିଉଡ଼ର ସିନେମା ଓ ଦୂରଦର୍ଶନ କାର୍ଯ୍ୟକ୍ରମ ଦୀର୍ଘଦିନ ଧରି ଅତ୍ୟନ୍ତ ମନୋରଞ୍ଜନଧର୍ମୀ କାର୍ଯ୍ୟକ୍ରମରୂପେ ବିଶ୍ୱରେ ଚର୍ଚ୍ଚିତ ଓ ଅଭିନନ୍ଦିତ । ଏସବୁ ସତ୍ତ୍ୱେ ଆମେରିକା ସତୁରୀ ଓ ଅଶୀ ଦଶକରେ ଅପେକ୍ଷାକୃତ ଭାବେ ଅଧୋପତନ ଆଡ଼କୁ ମୁହାଁଇଥିଲା କାହିଁକି ?

ନବେ ଦଶକ ତା'ହେଲେ କ'ଣ ଏମିତି ଗୋଟାଏ ପରିବର୍ତ୍ତନ ଆଣିଲା ଯେ ଆମେରିକାର କାୟାକଳ୍ପ ସମ୍ପୂର୍ଣ୍ଣରୂପେ ବଦଳିଗଲା । ସଂସ୍କୃତିରେ ଅସାଧାରଣ ପରିବର୍ତ୍ତନ ହିଁ ଏ ପ୍ରଶ୍ନର ପ୍ରକୃଷ୍ଟ ଉତ୍ତର ହେବ ବୋଲି ରାଷ୍ଟ୍ର ଦର୍ଶକ (ନେସନ୍ ୱାଚ଼ର୍ସ) ମାନେ ମତ୍ପୋଷଣ କରୁଛନ୍ତି । ନବେ ଦଶକର ଆଗମନ ପର୍ଯ୍ୟନ୍ତ ଆମେରିକାର ସମାଜ ବ୍ୟବସ୍ଥା ଅଣ-ଶ୍ୱେତାଙ୍ଗମାନଙ୍କ ପାଇଁ କର୍ପୋରେଟ ଟପ ବ୍ରାସ୍ ପଦ ପଦବୀ ଅଳଙ୍କୃତ କରିବା ଆକାଶ କଇଁଆ ଚିଲିକା ମାଛ ପରି ଅତ୍ୟନ୍ତ ପରାଭବ ଥିଲା, ସତେ ଯେପରି ଏକ କ୍ଷଣଭଙ୍ଗୁର କାଚ଼ର ପ୍ରାଚ଼ୀର ସେମାନଙ୍କ ସମ୍ମୁଖରେ ଠିଆ କରାଇ ଦିଆଯାଇଛି । ଖୁବ୍ ଶୀଘ୍ର ଭାରତ ଓ ଚୀନ ଦେଶର ଅଧିବାସୀମାନେ ଆମେରିକାରେ ନାନାଦି ଗବେଷଣା ଓ ଉନ୍ନୟନ ବିଭାଗ, ଚିକିତ୍ସାଳୟ, ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟମାନଙ୍କରେ ବହୁ ଉଚ୍ଚ ପଦ ପଦବୀ ଲାଭ କରି ପାରିଲେ । ପରନ୍ତୁ

ବଡ଼ ବଡ଼ କର୍ପୋରେଟ ପଦ ପଦବୀ ସର୍ବତ୍ର କେବଳ ଶ୍ୱେତାଙ୍ଗମାନଙ୍କ ଦ୍ୱାରା ହିଁ ପୂରଣ ହେଲା । ଶେଷରେ ନବେ ଦଶକରେ ସେହି ମଣିଷଗଢ଼ା କ୍ଷଣଭଙ୍ଗୁର କାଚ଼ର ପ୍ରାଚ଼ୀର ଭାଙ୍ଗି ଚୂରମାର ହୋଇଗଲା । ଆମେରିକାରେ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଯୋଗ୍ୟତା ଭିତ୍ତିରେ ସମସ୍ତେ ବିଭିନ୍ନ ପଦବୀର ଶୀର୍ଷସ୍ତରେ ପହଞ୍ଚି ପାରିଲେ ।

'ନାସିର୍' ନାମଟି କେବଳ ଇଜିପ୍ଟର ଜଣେ ପ୍ରାକ୍ତନ ରାଷ୍ଟ୍ରପତିଙ୍କ ନାମ ହୋଇ ଆଉ ରହିନାହିଁ । ଏହା 'ଫୋର୍ଡ଼' ସଂସ୍ଥାର ମୁଖ୍ୟଙ୍କ ନାମ ସହ ମଧ୍ୟ ଯୋଡ଼ି ହୋଇଯାଇଛି । ପୃଥିବୀର ସର୍ବବୃହତ୍ ଏୟାର ଲାଇନ୍ସ-ୟୁନାଇଟେଡ଼ ଏୟାର ଲାଇନ୍ସର ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ (ସି.ଇ.ଓ) ରୋନୋ ଦତ୍ତ ଜଣେ ଭାରତୀୟ । ୟୁ.ଏସ୍.ଏୟାର ଲାଇନ୍ସର ମୁଖ୍ୟ ରାକେଶ ଗଙ୍ଗୱାଲ ମଧ୍ୟ ଜଣେ ଭାରତୀୟ । ପୃଥିବୀର ସର୍ବବୃହତ୍ ମ୍ୟାନେଜମେଣ୍ଟ କନସଲଟ୍ୟାନ୍ସି ଅର୍ଗାନାଇଜେସନ୍ 'ମ୍ୟାକ୍ କିନ୍‌ସେ'ର ମୁଖ୍ୟ ରଜତ ଗୁପ୍ତା ମଧ୍ୟ ଜଣେ ଭାରତୀୟ । ସିଲିକନ ଭ୍ୟାଲିରେ କାର୍ଯ୍ୟରତ ପ୍ରାୟ ଅର୍ଦ୍ଧାଧିକ ବୈଷୟିକ ମାନବ ସମ୍ବଳ କେବଳ ଭାରତ ଓ ଚୀନର ଅଧିବାସୀ ଅଟନ୍ତି ।

ଏପରି ଏକ ଚିତ୍ର ୟୁରୋପରେ ସମ୍ପୂର୍ଣ୍ଣ ରୂପେ ଅସମ୍ଭବ ହୋଇଥାଆନ୍ତା । ଏହି ଶତାବ୍ଦୀର ପ୍ରାରମ୍ଭରେ ଆମେରିକାରେ ମଧ୍ୟ ଏପରି ଏ ଚିତ୍ର ଅଙ୍କାଯାଇ ପାରି ନ ଥା'ନ୍ତା । ପରନ୍ତୁ ଆଜି ଏହା ଏକ ନିଛକ ସତ୍ୟ ଘଟଣା । ଏହି ଅତ୍ୟନ୍ତ ଅସାଧାରଣ ସାଂସ୍କୃତିକ ସଫଳତା ଅର୍ଥନୈତିକ ସଫଳତାକୁ ଉଜ୍ଜୀବିତ କଲା । ଫଳତଃ ଆଜି ଆମେରିକାରେ ଅଣଶ୍ୱେତାଙ୍ଗମାନେ ଶ୍ୱେତାଙ୍ଗମାନଙ୍କ ଠାରୁ ସଂଖ୍ୟାଗରିଷ୍ଠ ହୋଇଗଲେଣି । ଜନସଂଖ୍ୟାରେ ଏହି ପରିବର୍ତ୍ତନର ବ୍ୟତିକ୍ରମକୁ ଆମେରିକା ନିଜ ସପକ୍ଷରେ ନେଇ ପାରିଛି ଓ ତଦନୁଯାୟୀ ପ୍ରଯୁକ୍ତିବିଦ୍ୟା ଓ ଅର୍ଥନୀତିକୁ ସଠିକ୍ ରାସ୍ତାରେ ପରିଚ଼ାଳିତ କରିପାରିଛି । ପୃଥିବୀର କୌଣସି ରାଷ୍ଟ୍ର ଆମେରିକା ସମ୍ମୁଖୀନ ହେଉଥିବା ଏପରି ଏକ ପରିସ୍ଥିତିର ନିକଟତର ମଧ୍ୟ ହୋଇପାରି ନାହାନ୍ତି । ତେଣୁ ଆମେ ଆଶା କରିବା ଉଚ଼ିତ ଯେ ଆମେରିକା ତା'ର ନେତୃତ୍ୱକୁ ସୁଦୂର ପ୍ରସାରିତ କରିବା ସଙ୍ଗେ ସଙ୍ଗେ ଅର୍ଥନୀତିକୁ ମଧ୍ୟ ବଳବତ୍ତର କରୁ ।

ଆମେରିକା କୁଶଳୀ ଇମିଗ୍ରାଣ୍ଟମାନଙ୍କ ସଂଖ୍ୟାରେ ପ୍ରାୟ ଦୁଇଗୁଣ ବୃଦ୍ଧି କରାଇ H-1B ଭିସାରେ ଆମେରିକାରେ ପ୍ରବେଶ କରିବା ପାଇଁ ଏହି ସଂଖ୍ୟାକୁ ଦୁଇଲକ୍ଷ କରିଦେଇଛି । ସାଂପ୍ରତିକ ଅର୍ଥନୈତିକ ଶିଥିଳତା ପରିସ୍ଥିତିରେ ଏହି କୋଟା ପୂରଣ

ନ ହେବାର ଯଥେଷ୍ଟ ସମ୍ଭାବନା ରହିଛି । କିନ୍ତୁ ପ୍ରକୃତ ଘଟଣାଟି ହେଲା ସାଂସ୍କୃତିକ ଇଚ୍ଛାଶକ୍ତି ମାଧ୍ୟମରେ ବିଦେଶୀ ନାଗରିକମାନଙ୍କୁ ଆମେରିକାର ଜନମାନବ ଭିତରେ ଗ୍ରହଣ କରିନେବା । ଆମେରିକାର ଏହି ପରିସ୍ଥିତି ସହ ପ୍ରତିଯୋଗିତା କରିବା ପାଇଁ ଜର୍ମାନ ଚାନ୍‌ସେଲର ସ୍ରୋଏଡ଼ର ଦେଶର ସଫ୍ଟୱେୟାର ଶିଳ୍ପର ବିକାଶ ପାଇଁ ବୈଦେଶିକ ବୃତ୍ତିଧାରୀମାନଙ୍କୁ ୩୦ ହଜାର ଭିସା ପ୍ରଦାନ କରିବାକୁ ପ୍ରସ୍ତାବ କଲେ । ହଠାତ୍ କ୍ରିଶ୍ଚିୟାନ୍ ଡେମୋକ୍ରାଟମାନେ ବିଦ୍ରୋହ କରି ଉଠିଲେ ଯେ ଏହା ଭାରତୀୟ ବୃତ୍ତିଧାରୀମାନଙ୍କୁ ଜର୍ମାନୀ ମାଟିରେ ଜର୍ମାନୀମାନଙ୍କ ତୁଳନାରେ ଅଧିକ ସୁବିଧା ସୁଯୋଗର ଦ୍ୱାର ଖୋଲିଦେବ । ପରନ୍ତୁ ଆମେରିକାରେ ଏଚ୍-ୱାନ୍-ବି ଭିସା ମାଧ୍ୟମରେ ଭାରତୀୟ ବୃତ୍ତିଧାରୀମାନଙ୍କ ପ୍ରବେଶ ତୁଳନାତ୍ମକ ଭାବେ ସେପରି କୌଣସି ବିଦ୍ରୋହର ସୂତ୍ରପାତ କରି ନ ଥିଲା । ଆମେରିକା ଓ ଜର୍ମାନୀ ମଧ୍ୟରେ ଥିବା ଏହି ସାଂସ୍କୃତିକ ବିଭେଦତା ଅର୍ଥନୈତିକ ବିଭେଦତାର ରୂପରେଖ ନେଲା ।

ଏ ନେଇ ଏକ ମଜା ଗପଟିଏ କହୁଛି । ଥରେ ୧୯୯୮ ମସିହାରେ ଜଣେ ଆମେରିକୀୟ ଓ ଜଣେ ଜାପାନ ଅଧିବାସୀ ଭବିଷ୍ୟତ ନେଇ ପରସ୍ପର ମଧ୍ୟରେ ବାର୍ତ୍ତାଳାପ କରୁଥିଲେ । ଜାପାନ ଦେଶର ନାଗରିକ ଜଣକ କହିଲେ ଯେ ଆମେରିକା ସହ ତୀବ୍ର ପ୍ରତିଯୋଗିତା ଜାରୀ ରଖି ଜାପାନ ଦିନ ପରେ ଦିନ ପାହାଚ୍ ପରେ ପାହାଚ୍ ଅତିକ୍ରାନ୍ତ କରି ପ୍ରଗତି ପଥରେ ଆଗେଇ ଚାଲିଛି ଏବଂ ଏହା ହିଁ ବିଧି ନିର୍ଦ୍ଦିଷ୍ଟ । ସେ ପୁନଶ୍ଚ ଭବିଷ୍ୟବାଣୀ ଶୁଣାଇ କହିଲେ ଯେ କୋରିଆ, ସିଙ୍ଗାପୁର ଓ ଅନ୍ୟାନ୍ୟ ବହୁ ଏସୀୟ ରାଷ୍ଟ୍ର ଆମେରିକାକୁ ପଛରେ ପକେଇ ଦେଇ ପ୍ରଗତିର ରାଜରାସ୍ତାରେ ବୀର ଦର୍ପରେ ଆଗକୁ ଆଗକୁ ମାଡ଼ି ଚାଲିବେ । ଏ ଦିନ ଦେଖିବାକୁ ଆଉ ବେଶୀ ଡେରି ନାହିଁ । ସେ ପୁନଶ୍ଚ କହି ଉଠିଲେ ଯେ ଏକ ବିଂଶ ଶତାବ୍ଦୀ ଏସୀୟମାନଙ୍କ ଶତାବ୍ଦୀ ହେବ । ଜାପାନ ନାଗରିକଙ୍କ କଥାଗୁଡ଼ିକୁ ଆମେରିକୀୟ ଭଦ୍ରଲୋକ ଜଣକ ଧୈର୍ଯ୍ୟର ସହିତ ମୁଣ୍ଡ ଟୁଙ୍ଗାରି ଶୁଣୁଥାଆନ୍ତି । ସେ ହଠାତ୍ କହି ଉଠିଲେ, ଏହା କସ୍ମିନକାଳେ ସମ୍ଭବ ହେବ ନାହିଁ; ଆଉ ମନେ ରଖନ୍ତୁ - 'ଆମ ଏସୀୟ ନାଗରିକମାନେ ଆପଣଙ୍କ ଏସୀୟ ନାଗରିକମାନଙ୍କୁ ସଦାସର୍ବଦା ପରାସ୍ତ କରିଦେବେ (Our Asians will always beat your Asians)' ଏବଂ ଏହାହିଁ ବିଧି ନିର୍ଦ୍ଦିଷ୍ଟ ।

ସାପ୍ତାହିକ 'ସମାଜ'
ତା- ୩.୧୦.୨୦୦୧



# ଭାରତର ସାଂପ୍ରତିକ ଅର୍ଥନୈତିକ ଶିଥିଳତା ନୂତନ ବିଶ୍ୱ ପ୍ରତିଯୋଗିତାର ଦ୍ୱାର ଉନ୍ମୁକ୍ତ କରିବ

ଭାରତୀୟ ଅର୍ଥନୀତିର ସାଂପ୍ରତିକ ମାନ୍ଦା ଅବସ୍ଥା ରାଷ୍ଟ୍ରୀୟ ପ୍ରଗତିର ଦ୍ୱାରଦେଶକୁ ଠକ୍ ଠକ୍ କରିବା ଆରମ୍ଭ କଲାଣି । ନିକଟ ଅତୀତର ସରକାରୀ ପରିସଂଖ୍ୟାନରୁ ଜଣାଯାଏ ଯେ, ୨୦୦୦-୨୦୦୧ ଆର୍ଥିକ ବର୍ଷରେ ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି)ର ଅଭିବୃଦ୍ଧି ହାର ୫.୨ ପ୍ରତିଶତ ଥିଲାବେଳେ ୧୯୯୯-୨୦୦୦ ଆର୍ଥିକ ବର୍ଷରେ ଏହା ୬.୪ ପ୍ରତିଶତ ଥିଲା । ଅଳ୍ପ କିଛି ସେକ୍ଟରକୁ ବାଦଦେଇ ପ୍ରାୟ ଆଉ ସବୁ ସେକ୍ଟର ରାଷ୍ଟ୍ରୀୟ ଅର୍ଥନୈତିକ ଅଧୋଗତିକୁ ଆଖି ପୁରେଇ ଦେଖିଛନ୍ତି ଓ ଅଙ୍ଗେ ଲିଭେଇଛନ୍ତି ମଧ୍ୟ । ଏହି ଗାଣିତିକ ହିସାବ ନିକାସ ରୁଗ୍ଣ ଅର୍ଥନୀତିର ପରିଚାୟକ ବୋଲି ସ୍ପଷ୍ଟ ହୋଇଯାଉଛି । ସବୁଠୁଁ ବଳି ବେଶୀ ଦୁଃଖଦ ଘଟଣାଟି ହେଲା ୧୯୯୬-୯୭ ଆର୍ଥିକ ବର୍ଷରେ ଜି.ଡ଼ି.ପି ୭.୮ ପ୍ରତିଶତ ଉଚ୍ଚତମ ସୋପାନରେ ପହଞ୍ଚିଥିଲେ ମଧ୍ୟ ସେହି ବର୍ଷଠାରୁ ବାର୍ଷିକ ଅଭିବୃଦ୍ଧି ହାର ୪.୮ ରୁ ୬.୬ ପ୍ରତିଶତ ମଧ୍ୟରେ ଦୋଳାୟମାନ ହେଉଛି । ଯେପର୍ଯ୍ୟନ୍ତ ଭାରତବର୍ଷର ଜି.ଡ଼ି.ପି. ଆଗାମୀ ୧୦ ବର୍ଷ ଓ ତଦୂର୍ଦ୍ଧ୍ୱ ସମୟ ପାଇଁ ମୁଣ୍ଡ ପିଛା ବର୍ଷକୁ ଅତି କମ୍‌ରେ ୭ ପ୍ରତିଶତ ଅଭିବୃଦ୍ଧି ହାର ହାସଲ ନ କରିଛି, ସେ ପର୍ଯ୍ୟନ୍ତ ଦେଶରୁ ଗଣ ଦାରିଦ୍ର୍ୟର ମୂଳୋତ୍ପାଟନ ସମ୍ପୂର୍ଣ୍ଣରୂପେ ଅସମ୍ଭବ ହୋଇ ରହିବ । ସେହି ଅଭିବୃଦ୍ଧି ହାରରେ ମୁଣ୍ଡପିଛା ରୋଜଗାର ପ୍ରତି ୧୦ ବର୍ଷରେ ଦୁଇଗୁଣ ବୃଦ୍ଧି ପାଇବ ।

ତେବେ ସମସ୍ୟାର ଜଡ଼ କେଉଁଠି ରହୁଛି ? ଦେଶରେ କ'ଣ ଜ୍ଞାନୀ ଗୁଣୀ ଓ ବୁଦ୍ଧିଜୀବୀଙ୍କ ଦୁର୍ଭିକ୍ଷ ପଡ଼ିଲା କି ? ପାର୍ଲାମେଣ୍ଟାରୀ ଗଣତନ୍ତ୍ର କ'ଣ ଏଥିପାଇଁ ଦାୟୀ ? ଏହା କ'ଣ ପୁରାତନ ଅର୍ଥନୈତିକ ଢାଞ୍ଚାକୁ ଜାବୁଡ଼ି ଧରି ବାଟ ଚାଲିବାର ଫଳ ? ନା ପ୍ରକୃତରେ ଏହା ସରକାରୀ କଳର ଜଡ଼ତା ବା ସ୍ଥାଣୁତାର ପରିଣାମ ? ଉତ୍ତର ଏତେ ସହଜସାଧ୍ୟ ନୁହେଁ ବରଂ ଅତ୍ୟନ୍ତ ଜଟିଳ । ଦେଶରେ ଜ୍ଞାନୀ ଗୁଣୀ ଓ ବୁଦ୍ଧିଜୀବୀଙ୍କର ଆଦୌ ଅଭାବ ନାହିଁ କହିଲେ ଚଳେ । ବିଶେଷ କରି ଅର୍ଥନୀତି କ୍ଷେତ୍ରରେ କେବଳ

ଟିକିଏ ମାତ୍ର ସିଂହାବଲୋକନ କଲେ ଆପଣ ଦେଖିବେ ଯେ ଅନ୍ତର୍ଦ୍ଦେଶୀୟ ଅଗ୍ରଣୀ ବିଶ୍ୱବିଦ୍ୟାଳୟ ଗୁଡ଼ିକର ଅର୍ଥନୀତି ବିଭାଗ ଅବା ଆନ୍ତର୍ଜାତିକ ଅର୍ଥନୀତି ପ୍ରତିଷ୍ଠାନଗୁଡ଼ିକରେ ଭାରତୀୟ ବଂଶୋଦ୍ଭବ ସ୍ୱନାମଧନ୍ୟ ଅର୍ଥନୀତି ବିଶାରଦ ଓ ବିଶେଷଜ୍ଞମାନେ ସୁପ୍ରତିଷ୍ଠିତ ଅଛନ୍ତି ।

ତା'ହେଲେ ସମସ୍ୟାର ଜଡ଼ କ'ଣ ଗଣତନ୍ତ୍ର ? ଏହାର ଉତ୍ତର ହୁଏତ ନାଁ ? ଶାସନ ଗାଦିର ପ୍ରକାର ଭେଦ ବା ଢାଞ୍ଚା ସହ ଅର୍ଥନୈତିକ ଅଭିବୃଦ୍ଧିର ସେପରି କୌଣସି ଆବଶ୍ୟକୀୟ ସମ୍ପର୍କ ନାହିଁ କହିଲେ ଚଳେ । ଗଣତାନ୍ତ୍ରିକ ବ୍ୟବସ୍ଥା ବ୍ୟକ୍ତି ସ୍ୱାଧୀନତାର ଗ୍ୟାରେଣ୍ଟି ପ୍ରଦାନ କରିଥାଏ, ହେଲେ ଅର୍ଥନୈତିକ ଅଭିବୃଦ୍ଧି, ଅର୍ଥନୈତିକ ସ୍ୱାଧୀନତା ଦ୍ୱାରା ସେବା ଭାଜନ ହୋଇ ଏକ ପ୍ରତିଯୋଗିତାମୂଳକ ବଜାର ଅର୍ଥନୀତି ଦ୍ୱାରା ପରିପୁଷ୍ଟ ହୋଇଥାଏ । ପ୍ରଭୁତ୍ୱପୂର୍ଣ୍ଣ (ଅଥରିଟାରିଆନ୍) ଶାସନ ବ୍ୟବସ୍ଥା ନିଶ୍ଚିତ ରୂପେ ପୂର୍ବ ଏସିଆରେ ଉଦାହରଣ ମୂଳକ ଅଭିବୃଦ୍ଧି ହାର ଆଣି ଦେଇଥିବା ବେଳେ ଲାଟିନ୍ ଆମେରିକା ଓ ଆଫ୍ରିକାରେ ନିରୁତ୍ସାହଜନକ ଅର୍ଥନୈତିକ ଫଳାଫଳ ପ୍ରଦାନ କରିଥିଲା । ଗଣତାନ୍ତ୍ରୀକ ରାଷ୍ଟ୍ର ଯେଉଁଠି ନେତୃତ୍ୱ ସର୍ବସାଧାରଣଙ୍କ ସର୍ବାଙ୍ଗୀନ ମଙ୍ଗଳକଳ୍ପେ ସଦାସର୍ବଦା ଉତ୍ସର୍ଗୀକୃତ, ସେଠାରେ ମଧ୍ୟ ଆଶାଜନକ ଅର୍ଥନୈତିକ ଅଭିବୃଦ୍ଧି ହାସଲ କରାଯାଇ ପାରିବ । ଏହାହିଁ ଏକ ଉଲ୍ଲେଖଯୋଗ୍ୟ ପାର୍ଥକ୍ୟ । ଭାରତପରି ପ୍ରତିଯୋଗିତାମୂଳକ ଭୋଟ ରାଜନୀତିର ଆବର୍ତ୍ତ ମଧ୍ୟରେ ଘୁରିବୁଲୁଥିବା ଗଣତାନ୍ତ୍ରୀକ ବ୍ୟବସ୍ଥା ଅର୍ଥନୈତିକ ସଂସ୍କାର କାର୍ଯ୍ୟକ୍ରମକୁ ଆପଣେଇ ନେଇ ପ୍ରଗତିର ପଥରେ ବୀର ଦର୍ପରେ ମାଡ଼ି ଚାଲିବାରେ ବହୁ ଘାତ ପ୍ରତିଘାତ ଓ ଉତ୍‌ଥାନ ପତନର ସମ୍ମୁଖୀନ ହେଉଥିଲେ ମଧ୍ୟ ଏହି ରାସ୍ତା ଯେ ଉଜ୍ଜ୍ୱଳମୟ ଭବିଷ୍ୟତର ଏକମାତ୍ର କର୍ଣ୍ଣଧାର - ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଭାରତବର୍ଷର ଆର୍ଥିକ ଦୁରାବସ୍ଥାର ଅଙ୍କ କଷି କଷି ଆପଣ ଯେତେବେଳେ ପଛୁଆ ହିସାବ କରି ବସିବେ, ସେତେବେଳେ ଆପଣ ଦେଖିବେ ଯେ ୧୯୯୧ ମସିହାରେ ପାଳନ କରଯାଇଥିବା ଅର୍ଥନୈତିକ ସଂସ୍କାର ବ୍ୟବସ୍ଥାର ପୂର୍ବବର୍ତ୍ତୀ ପର୍ଯ୍ୟାୟର ଅର୍ଥନୈତିକ ଅଭିବୃଦ୍ଧି ଜନିତ କାର୍ଯ୍ୟପନ୍ଥା ଅତିମାତ୍ରାରେ ସ୍ୱାର୍ଥାନ୍ଧ ପରିସ୍ଥିତି ଦ୍ୱାରା କବଳିତ ଥିଲା; ଯାହାକି ଅର୍ଥନୀତିକୁ ସୁରକ୍ଷାର ବଳୟ ଦେଇ ବିଶ୍ୱବଜାରରୁ ଦୂରେଇ ରଖିଲା ଏବଂ ଅର୍ଥନୀତିରେ କେବଳ ରାଷ୍ଟ୍ର ହିଁ ପ୍ରମୁଖ ଭୂମିକା ଗ୍ରହଣ କରି ଶିଳ୍ପ ସମୃଦ୍ଧିକୁ ପ୍ରୋତ୍ସାହିତ କଲା । ଏହା 'ଲାଇସେନ୍ସ-ପରମିଟ-କୋଟା-ରାଜତ୍ୱ'ର

ନିୟନ୍ତ୍ରଣ ଦ୍ୱାରା ପରିଚାଳିତ ହେଲା, ଯାହାକି ସମାଜର ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଯଥା : ଅମଲାତନ୍ତ୍ରୀ, ବୁଦ୍ଧିଜୀବୀ, ଶ୍ରମିକ ସଂଗଠନ ଓ ବ୍ୟବସାୟୀଙ୍କୁ ହିଁ ଉପକୃତ କଲା ଓ ଦେଶର ଅର୍ଦ୍ଧାଧିକ ଜନସାଧାରଣ ଅସାଧାରଣ ଦାରିଦ୍ର୍ୟର ନିର୍ମମ କଷାଘାତ ଖାଇ ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ପ୍ରପୀଡ଼ିତ ହୋଇ ଚାଲିଲେ ଓ ସର୍ବଶେଷରେ ଏହା ହଁ ତାଙ୍କର ଭାଗ୍ୟଲେଖ ବୋଲି ଧରିନେଲେ । ଅତ୍ୟଧିକ ଲାଭବାନ ହେଉଥିବା ପୂର୍ବର କେତେକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ସାଂପ୍ରତିକ ଅର୍ଥନୈତିକ ଉଦାରୀକରଣ ପ୍ରକ୍ରିୟାର ତେଜସ୍ୱିୟ ଶକ୍ତିପୁଞ୍ଜ ପାଖରେ ଭୟରେ ତଳକୁ ମୁଣ୍ଡ ପୋତିଦେଲେଣି ଓ ସେମାନଙ୍କର ସ୍ଥିତି ମଧ୍ୟ ଦୋଦୁଲ୍ୟମାନ ହେବାକୁ ବସିଲାଣି । ତଥାପି ଏଇମାନେ ହେଉଛନ୍ତି ସେହି ଗୋଷ୍ଠୀର ଲୋକ, ଯେଉଁମାନେ କି ସଦାସର୍ବଦା କହି ବୁଲୁଥିଲେ - 'ଉଭୟ ଅର୍ଥନୈତିକ ଓ ବାଣିଜ୍ୟିକ ଉଦାରୀକରଣ ପ୍ରକ୍ରିୟା ଗରିବଗୁରୁବା ଓ ମଲିମୁଣ୍ଡିଆଙ୍କ ପାଇଁ କାଳ ହେବ ।'

ଏହା ଅତ୍ୟନ୍ତ ଦୁଃଖ, ଗ୍ଲାନି, ଲଜ୍ଜା ଓ କ୍ଷୋଭର ବିଷୟ ଯେ ଲାଇସେନ୍ସ - ପରମିଟ କୋଟା - ରାଜତ୍ୱ ଭାରତବର୍ଷକୁ ସର୍ବାଧିକ ଗରିବୀ ରେଖା ତଳେ ବଞ୍ଚୁଥିବା ମଣିଷଙ୍କର ଦେଶ ବୋଲି ବିଶ୍ୱଦରବାରରେ ଉପସ୍ଥାପିତ କଲା । ଏହି ଅକଥନୀୟ, ଅବର୍ଣ୍ଣନୀୟ, ଅଶୋଭନୀୟ, ଅଶ୍ରବଣୀୟ ସଜ୍ଞା ଭାରତର ଅଗଣିତ ଦୀନ ଦୁଃଖି ଗରିବ ଲୋକଙ୍କ ଭାଗ୍ୟ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଗଲା । ଘରୋଇକରଣ ଓ ଉଦାରୀକରଣ ବିରୁଦ୍ଧରେ ପବ୍ଲିକ୍ ସେକ୍ଟର ଓ ଶୃଙ୍ଖଳିତ ଘରୋଇ ଉଦ୍ୟୋଗମାନଙ୍କରେ କର୍ମରତ ସମ୍ଭ୍ରାନ୍ତ ଶ୍ରେଣୀଭୁକ୍ତ ଶ୍ରମିକମାନଙ୍କର ବିଗତ ଦିନିକିଆ ଧର୍ମଘଟ ଖଟିଖିଆ, ମଲିମୁଣ୍ଡିଆ, ଦୀନ ଦରିଦ୍ର ଶ୍ରେଣୀଭୁକ୍ତ ଜନସାଧାରଣଙ୍କର ରାଜନୈତିକ ନିରବତାର ଏକ ଜ୍ୱଳନ୍ତ ଉଦାହରଣ । ଦିବଂଗତ ପ୍ରଫେସର ପି.ସି.ମହାଲାନବିସ ବହୁଦିନ ପୂର୍ବେ ଆଙ୍ଗୁଳି ନିର୍ଦ୍ଦେଶ କରି ଚିହ୍ନେଇ ଦେଇଥିଲେ ଯେ ଆଇନ କାନୁନ, ଯାହାକି ବିଶ୍ୱରେ ଶ୍ରମିକମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ସଦାସର୍ବଦା ସୁରକ୍ଷା ପ୍ରଦାନ କରିଥାଏ- ଯଦିଓ ଏକ ସଂକୀର୍ଣ୍ଣ ଚିନ୍ତାଧାରା ଉପରେ ପର୍ଯ୍ୟବେଶିତ ହେଲେ ଏହି ସଂମ୍ଭ୍ରାନ୍ତପଣିଆକୁ ଏହା ନିଜର ଅନ୍ତର୍ଗତ ମଧ୍ୟ କରିନେଇଥାଏ ।

ଯଦି ପ୍ରକୃତରେ ଭାରତର ଅର୍ଥନୈତିକ ନୀତି ନିୟମ ନିର୍ଦ୍ଧାରକ ଓ ଦିଗ୍‌ଦର୍ଶକମାନେ ଦେଶର ଦୀନ ଦୁଃଖି ଓ ଦରିଦ୍ର ଜନସାଧାରଣଙ୍କ ଆଖିରୁ ତାଙ୍କ ତତଲା ଲୁହ ଟୋପାକ ପୋଛି ଦେବାକୁ ଚାହୁଁଥାନ୍ତି, ତେବେ ସେମାନେ ଚୀନ ଦେଶ ଆଡ଼କୁ ଟିକେ ସେମାନଙ୍କର

ଦୃଷ୍ଟି ନିକ୍ଷେପ କରନ୍ତୁ । ଅତ୍ୟନ୍ତ ଘୃଣ୍ୟ ତଥା ସମ୍ପୂର୍ଣ୍ଣଭାବେ ଭ୍ରଷ୍ଟାଚାରରେ ନିମଗ୍ନିତ ରାଜନୈତିକ ବ୍ୟବସ୍ଥାର ଅକ୍ଟୋପସ୍ ଭିତରେ ଛନ୍ଦି ହୋଇ ପଡ଼ିଯାଇ ଛଟପଟ ହେଉଥିବା ଗୋଟାଏ ରାଷ୍ଟ୍ର ଦାରିଦ୍ର୍ୟର ମହାବ୍ୟାଧିରୁ କିପରି ନିଜକୁ ମୁକୁଳାଇ ପାରିଲା ତଥା ଅର୍ଥନୈତିକ ପ୍ରଗତିର ଶଗଡ଼ ଗୁଳାରେ ଜାତିର ନନ୍ଦିଘୋଷ ରଥକୁ କିପରି ବୀର ଦର୍ପରେ ଟାଣିନେଇ ପାରିଲା, ତାହା ଆଜି ସମଗ୍ର ବିଶ୍ୱକୁ ଚକିତ ଓ ସ୍ତମ୍ଭିତ କରିଛି ।

୧୯୮୦ ମସିହାରୁ ଚୀନ ଦେଶର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନ (ଜି.ଡ଼ି.ପି) ୧୦.୫ ପ୍ରତିଶତ ହାରରେ ବାର୍ଷିକ ଅଭିବୃଦ୍ଧି ହାସଲ କରି ଚାଲିଛି, ଯାହାକି ଭାରତର ଅଭିବୃଦ୍ଧି ହାରର ପ୍ରାୟ ୨ ଗୁଣ । ସାମ୍ୟବାଦର ଧର୍ମ ଓ ଗୁଣାବଳୀକୁ ମୁକ୍ତ କଣ୍ଠରେ ଗାନ କରି ଚୀନ ବଜାର ମଧ୍ୟକୁ ତା'ର ଲମ୍ବା ଦୌଡ଼ ଲଗେଇ ଚାଲିଛି । ପଣ୍ୟଭିତ୍ତିକ ଇନ୍‌ସେନ୍‌ଟିଭର ପ୍ରତିବନ୍ଧକରେ ଅମଲାତନ୍ତ୍ରର ନାଲିଫିତାର କବର ମଧ୍ୟରୁ ଅର୍ଥନୀତିକୁ ମୁକୁଳାଇବା ଦ୍ୱାରା ହିଁ ଚୀନ ଆଜି ନାଟକୀୟଭାବେ ତା'ର ଅର୍ଥନୈତିକ ଅଭିବୃଦ୍ଧି ହାସଲ କରିଚାଲିଛି ।

କେବଳ ନାନାବିଧ ନିୟନ୍ତ୍ରଣର ନାଗଫାଶକୁ କାଟିଦେଇ ଯେ ଚୀନ ଆଜି ତା'ର ଅସାଧାରଣ ରାଷ୍ଟ୍ରୀୟ ଅଭିବୃଦ୍ଧି ହାର ହାସଲ କରି ପାରିଛି -ଠିକ୍ ତାହା ନୁହେଁ । ପ୍ରାଥମିକ ଶିକ୍ଷା ଓ ଭିତ୍ତିଭୂମିର ଉନ୍ନତି ପାଇଁ ମଧ୍ୟ ଚୀନ ଅତ୍ୟନ୍ତ ବୁଦ୍ଧିମତ୍ତାର ସହ ବହୁଳ ପରିମାଣର ପୁଞ୍ଜି ବିନିଯୋଗ କରିଛି ଏବଂ ବର୍ହିଦେଶୀୟ ସିଧାସଳଖ ପୁଞ୍ଜି ଲଗାଣ (ଫରେନ ଡାଇରେକ୍ଟ ଇନଭେଷ୍ଟମେଣ୍ଟ)କୁ ମଧ୍ୟ ଯଥେଷ୍ଟ ପ୍ରୋତ୍ସାହିତ କରିଛି । ଭାରତ ଏ ସବୁ କାର୍ଯ୍ୟକ୍ରମରେ ବହୁ ପଛରେ ପଡ଼ିଛି । ଭାରତର ସାମାଜିକ ମାନଦଣ୍ଡ ସବ୍-ସାହାରା ଆଫ୍ରିକୀୟ ରାଷ୍ଟ୍ରମାନଙ୍କ ତୁଳନାରେ ଅପେକ୍ଷାକୃତ ସାମାନ୍ୟ ଭଲ କହିଲେ ଚଳେ । ପରନ୍ତୁ ରାଷ୍ଟ୍ରୀୟ ଭିତ୍ତିଭୂମି ଅତ୍ୟନ୍ତ ପୁରାତନ ଓ ଆବଶ୍ୟକତା ଠାରୁ ଯଥେଷ୍ଟ କମ୍ ଏବଂ ସବୁଠାରୁ ବଳି ବଡ଼ ଦୁଃଖର କଥା ଏହିଯେ ଭାରତରେ ଥାଇଲାଣ୍ଡ ଅପେକ୍ଷା ମଧ୍ୟ କମ୍ ବର୍ହିଦେଶୀୟ ପୁଞ୍ଜି ବିନିଯୋଗ ହୋଇଥାଏ ।

ତଥାପି ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଭାରତର ଅର୍ଥନୀତି ପରିଚାଳକମାନେ ନୀରବଦ୍ରଷ୍ଟା ହୋଇ ଏଭଳି ଅର୍ଥନୈତିକ ବିଶ୍ଳେଷଣକୁ ଆବଶ୍ୟକୀୟ ଗୁରୁତ୍ୱ ପ୍ରଦାନ କରୁ ନାହାନ୍ତି କିପରି ? ଭାରତର ଦାରିଦ୍ର୍ୟ ଜର୍ଜରିତ ଅର୍ଥନୈତିକ ଫଳାଫଳକୁ ସେମାନେ ଅପ୍ରାସଂଗିକ, ଅଯୌକ୍ତିକ ତର୍କ ସହ ତୁଳନା କରିବାକୁ ଅଣ୍ଟା ଭିଡ଼ି ଦେଇ ଆଗଭର ହୋଇଆସନ୍ତି । ସେମାନେ ଯୁକ୍ତି ବାଢ଼ନ୍ତି ଯେ ଚୀନର ରାଷ୍ଟ୍ରୀୟ ଅଭିବୃଦ୍ଧି ହାର

ପରିଶେଷରେ କିନ୍ତୁ କ୍ରମାଗତ ଧାରା (Sustainability)କୁ ବଞ୍ଚାଇ ରଖି ପାରିବ ନାହିଁ । ପୂର୍ବ ଏସୀୟ ଅର୍ଥନୈତିକ ସଂକଟରୁ ଭାରତ ଉଦ୍ଧାର ପାଇ ପାରିଲା । ତା'ର ପ୍ରଧାନ କାରଣ ହେଲା, ଭାରତ ଅତ୍ୟନ୍ତ ଚତୁରତା ଓ ବୁଦ୍ଧିମତ୍ତାର ସହ 'ଧିର ଅର୍ଥନୈତିକ ଉଦାରୀକରଣ' ପ୍ରକ୍ରିୟାକୁ ଆଦରି ନେଇ ବାଟ ଚାଲିଲା । ଭାରତ ଜାଣିଥିଲା ଯେ ଅର୍ଥନୈତିକ ଉଦାରୀକରଣ ପ୍ରକ୍ରିୟାର ରାଜରାସ୍ତାରେ କ୍ଷିପ୍ରଗତିରେ ଧାବମାନ ହେଲେ, ଭାରତୀୟ ସମାଜ ବ୍ୟବସ୍ଥାରେ ଦାରୁଣ ଅସମାନତା ମୁଣ୍ଡ ଟେକିବ ଓ ତହିଁର ମୁକାବିଲା କରିବା ଭାରତ ପାଇଁ କାଠିକର ପାଠ ହେବ । ଦୁର୍ଭାଗ୍ୟବସତଃ, ଏ ସମସ୍ତ ଯୁକ୍ତିତର୍କ ଓ ବାଦାନୁବାଦ ଅସତ୍ୟର ବୁନିୟାଦ ଉପରେ ଦଣ୍ଡାୟମାନ ଥିଲା, ଯାହାର ଗଭୀରତା ଥିଲା ପାତାଳଭେଦୀ । ଅବଶ୍ୟ ଚୀନର ଦୁଇଅଙ୍କ ବିଶିଷ୍ଟ ଅଭିବୃଦ୍ଧି ହାର ଯେ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଏହି କ୍ରମାଗତ ଧାରାକୁ ବଜେଇ ରଖି ପାରିବ, ତା'ର କିଛି ଗ୍ୟାରେଣ୍ଟି ନାହିଁ । ଅତିକମ୍‌ରେ ଆଗାମୀ ୧୦ ବର୍ଷ ପାଇଁ ଭାରତ ଚୀନର ଏହି ଦୁଇଅଙ୍କ ବିଶିଷ୍ଟ ସଂଖ୍ୟାର ପାଖାପାଖି ଇଲାକାରେ ପହଞ୍ଚିପାରିବାର ଧୃଷ୍ଟତା କରିପାରିବ କି ?

ପୂର୍ବ ଏସିଆର ଅର୍ଥନୈତିକ ଶିଥିଳତାକୁ ନେଇ ଯାବତୀୟ ଯୁକ୍ତିତର୍କ ଏକ ଧୂଆଁବାଣ ବା ଗୁଜବ ଛଡ଼ା ଆଉ କିଛି ନୁହେଁ । ଅର୍ଥନୈତିକ ବିପର୍ଯ୍ୟୟର ବୀଜ ଅର୍ଥନୈତିକ ଉଦାରୀକରଣ ପ୍ରକ୍ରିୟାରୁ ଯେତିକି ପରିମାଣର ଅଙ୍କୁରୋଦଗମ ହୋଇନାହିଁ, ତା'ଠାରୁ ଅଧିକ ପରିମାଣରେ ହୋଇଛି ଅର୍ଥନୈତିକ ଗୁଇନ୍ଦାଗିରି ପାଇଁ ଆବଶ୍ୟକ ହେଉଥିବା ସଫଳ ପ୍ରକ୍ରିୟାର ଗୁରୁତର ଅଭାବ ଯୋଗୁଁ ।

ସର୍ବଶେଷରେ ଏତିକି କୁହାଯାଇପାରେ ଯେ ଚୀନରେ ଅର୍ଥନୈତିକ ଅସମାନତା ଅପେକ୍ଷାକୃତ ଭାବେ ବୃଦ୍ଧି ଘଟିଛି ଏବଂ ଏହା ମଧ୍ୟ ସତ୍ୟ ଯେ ସମାଜର ପ୍ରାୟ ସବୁ ସ୍ତରର ଜନସାଧାରଣ ଅର୍ଥନୀତିରୁ ପୂର୍ଣ୍ଣମାତ୍ରାରେ ଲାଭବାନ ହୋଇଛନ୍ତି । 'ତେଣୁ ଅର୍ଥନୈତିକ ଉଦାରୀକରଣ ପ୍ରକ୍ରିୟା ଅସମାନତାର ଅଭିବୃଦ୍ଧିର ମୁଖ୍ୟ କାରଣ' - ଏହି ଉକ୍ତିଟି ଆଦୌ ଗ୍ରହଣଯୋଗ୍ୟ ହୋଇପାରୁନାହିଁ । ସର୍ବୋପରି ଭାରତବର୍ଷରେ ଦୀର୍ଘ ୪୦ ବର୍ଷ ଧରି ପ୍ରଚଳିତ ଥିବା ଅର୍ଥନୈତିକ ନିୟନ୍ତ୍ରଣ ବ୍ୟବସ୍ଥା ଦେଶର ସାମାଜିକ ଓ ଅର୍ଥନୈତିକ ଅସମାନତାର ଦୃଢ଼ ପ୍ରାଚୀରକୁ ଭାଙ୍ଗି ଦେଇ ପାରିଲା କି ?

ସୂଚନା ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଭାରତ ସଗର୍ବେ ମୁଣ୍ଡଟେକି ଠିଆ ହୋଇ ବିଶ୍ୱସଫଳତାର ବହୁବାଜି ହାସଲ କରି ପାରିଥିଲେ ମଧ୍ୟ ଅତ୍ୟନ୍ତ ଗତିଶୀଳ ଓ ଦ୍ରୁତ ଅଭିବୃଦ୍ଧିମୂଳକ ଅର୍ଥନୈତିକ ବ୍ୟବସ୍ଥାକୁ ଯେ ପର୍ଯ୍ୟନ୍ତ ଖୋଲା ମନରେ ଆଦରି ନେଇ

ପାରିନାହିଁ, ସେ ପର୍ଯ୍ୟନ୍ତ ବିଶ୍ୱପୃଷ୍ଠଭୂମି କଥା ତ ଛାଡ଼ନ୍ତୁ, ଏକ ପ୍ରବଳ ପରାକ୍ରମୀ ଏସୀୟ ମହାଶକ୍ତିଭାବେ ଗ୍ରହଣଯୋଗ୍ୟ ହେବା ଭାରତ ପାଇଁ କାଠିକର ପାଠ ହୋଇପଡ଼ିବ । ଆମେରିକା ସହ ଭାରତର ସହୃଦୟ ବନ୍ଧୁତ୍ୱର ଅର୍ଥ ଏ ନୁହେଁ ଯେ ଆମେରିକାରେ ଭାରତକୁ ଏକ ମହାଶକ୍ତି ରୂପେ ପରିଗଣିତ କରାଯାଉଛି, ଯାହାକି ଚୀନର କ୍ରମାଗତ ଅଭିବର୍ଦ୍ଧନକୁ ପ୍ରତିରୋଧ କରିପାରିବାର ଆବଶ୍ୟକୀୟ ଶକ୍ତି ରଖିଛି ।

ଭାରତ ଆଜି ଅର୍ଥନୈତିକ ଶିଥିଳତାର ନାଗଫାଶ ଭିତରେ ପଡ଼ି ଯାହାଖାଲି ଛଟପଟ ହେଉଛି, ହନ୍ତସନ୍ତ ହେଉଛି, ହଇରାଣ ହରକତ ହେଉଛି । ଏହି ଶିଥିଳତା ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାକୁ ଗ୍ରହଣ କରି ନେବାରେ ଅନିଚ୍ଛା ତଥା ଶାସନ କଳର ଅଣବିକାଶଧର୍ମୀ ପ୍ରବୃତ୍ତିର ଫଳାଫଳ ବୋଲି ଅର୍ଥନୀତିଜ୍ଞମାନେ ଦୃଢ଼ଯୁକ୍ତି ବାଢ଼ନ୍ତି । ଆମେ ଯଦି ଏ ପରିସ୍ଥିତିର ଏବେ ଦୃଢ଼ ମୁକାବିଲା ନ କରିବା, ତେବେ ସଭ୍ୟତାର ଅଳିଆ କୁଣ୍ଡ ଭିତରେ ପଡ଼ି ରହିବା ଓ ପ୍ରଗତିର ରାଜରାସ୍ତାରେ ପଥିକ ହେବାର ସୌଭାଗ୍ୟରୁ ଆମେ ଚିରଦିନ ପାଇଁ ବଞ୍ଚିତ ହୋଇରହିବା । ଏହି ଅର୍ଥନୈତିକ ଶିଥିଳତାର କାରଣ ହେଲା ପୁଞ୍ଜି ଲଗାଣ କ୍ଷେତ୍ରରେ ସାଧାରଣତଃ ବହୁଳ ଅଭାବ ବିଶେଷ କରି ପବ୍ଲିକ୍ ଇନଭେଷ୍ଟମେଣ୍ଟ କ୍ଷେତ୍ରରେ ଏବଂ ପରିସ୍ଥିତିରେ ସେ ପର୍ଯ୍ୟନ୍ତ କୌଣସି ପରିବର୍ତ୍ତନ ହେବ ନାହିଁ ଯେ ପର୍ଯ୍ୟନ୍ତ ଆମେ ଆମର ବିତ୍ତୀୟ ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନ ନ ଆଣିଛେ ।

ଇନଭେଷ୍ଟମେଣ୍ଟ ଯାଣ୍ଡ କ୍ରେଡ଼ିଟ ରେଟିଂ ଆଜେନ୍ସି (ଆଇ.ସି.ଆର.ଏ) ସହ ସଂପୃକ୍ତ ସ୍ୱାଧୀନ ଅର୍ଥନୀତିଜ୍ଞମାନେ ଆଶା ପ୍ରକାଶ କରିଛନ୍ତି ଯେ ଯଦି ଭାରତୀୟ ଶାସନ ବ୍ୟବସ୍ଥାରେ କୌଣସି ପରିବର୍ତ୍ତନ ନ ହୁଏ, ତେବେ ଆଗାମୀ ୨୦୦୨ - ୨୦୦୩ ଆର୍ଥିକ ବର୍ଷରେ ଭାରତୀୟ ଅର୍ଥନୀତିରେ ବଳିଷ୍ଠ ଅଭିବୃଦ୍ଧି ପରିଲକ୍ଷିତ ହେବ । ହେଲେ ଅର୍ଥମନ୍ତ୍ରୀ ଶ୍ରୀ ଯଶୋବନ୍ତ ସିହ୍ନା ଆଶା କରନ୍ତି ଯେ ଭାରତୀୟ ଅର୍ଥନୀତିରେ ଦେଖାଦେଇଥିବା ସାଂପ୍ରତିକ ଶିଥିଳତା ଚଳିତ ଆର୍ଥିକ ବର୍ଷର ବାକିଥିବା ମାସ ଗୁଡ଼ିକ ମଧ୍ୟରେ ପରିବର୍ତ୍ତନର ସ୍ୱାଦ ଚାଖିବ । ଏହି ଦୁଇ ଚିନ୍ତାଧାରା ଭିତରେ ଥିବା ଅମେଳ ପରିସ୍ଥିତିରେ ଗୋଳିଆ ପାଣି ସୃଷ୍ଟିକରୁଛି । ଆଇ.ସି.ଆର.ଏ ସାଂପ୍ରତିକ ଅର୍ଥନୈତିକ ଶିଥିଳତା ପରିସ୍ଥିତିକୁ ତନ୍ନ ତନ୍ନ ବିଶ୍ଳେଷଣ କରି ମତ ଦେଇଛି ଯେ ୨୦୦୧-୨୦୦୨ ଆର୍ଥିକ ବର୍ଷରେ ଜାତୀୟ ଅଭିବୃଦ୍ଧି ହାର ୫.୫ରୁ ୬ ପ୍ରତିଶତ ମଧ୍ୟରେ ହିଁ ସୀମିତ ରହିବ ଓ ତା'ର ଉର୍ଦ୍ଧ୍ୱକୁ ଯିବା ଅତ୍ୟନ୍ତ ଦୁରୂହ ବ୍ୟାପାର ହୋଇପଡ଼ିବ । ପୁନଶ୍ଚ

ଆଇ.ସି.ଆର.ଏ ଏହି ଅଭିବୃଦ୍ଧି ଲକ୍ଷ୍ୟ ହାରରେ ଏକ ଅଙ୍କୁଶ ଲଗାଇ ଦେଇ କହୁଛି ଯେ ଏହା କେବଳ ସମ୍ଭବ ହେବ, ଯଦି ରାଷ୍ଟ୍ରୀୟ ଅଭିବୃଦ୍ଧି ପ୍ରକ୍ରିୟା କ୍ରମାଗତ ଊର୍ଦ୍ଧ୍ୱମୁଖୀ ହୁଏ ଏବଂ ଆମେରିକାର ଅର୍ଥନୈତିକ ଶିଥିଳତା ପରିସ୍ଥିତିରେ ମଧ୍ୟ ଅଗ୍ରଗତି ପରିଲକ୍ଷିତ ହେବା ସମ୍ଭବପର ହୁଏ । ସମୟାନୁକ୍ରମେ ଏହି ଦୁଇଟି ମୁଖ୍ୟ ପ୍ରତିବନ୍ଧକ ଯଦି ସାମନାରୁ ଧୀରେ ଧୀରେ ଅପସରି ଯାଆନ୍ତି, ତେବେ ରାଷ୍ଟ୍ରୀୟ ଅଭିବୃଦ୍ଧି ହାରରେ ପରିବର୍ତ୍ତନ ଆଶା କରିବା ହୁଏତ ଭୁଲ୍ ହେବ ନାହିଁ । ତେଣୁ ୨୦୦୨-୨୦୦୩ ଆର୍ଥିକ ବର୍ଷକୁ ଏକ ନିତ୍ୟ ନୂତନ ରୂପରେ ଦେଖିବା ପାଇଁ ଆମ ମନରେ ଥିବା ଆଶା ଆକାଂକ୍ଷା ନିରର୍ଥକ ହେବ ନାହିଁ ।

ଏବେ ବି ସମୟ ବେଶୀ ଡେରି ହୋଇନି । ନେଡ଼ି ଗୁଡ଼ କହୁଣୀକୁ ବୋହିଯିବା ପୂର୍ବରୁ ଉଚିତ ପଦକ୍ଷେପ ଗ୍ରହଣ କରି ଅର୍ଥନୈତିକ ସ୍ଥାଣୁତାର ସଠିକ୍ ମୁକାବିଲା କରାଯାଇ ପାରିବ । ଯଦି ଭାରତର ଅର୍ଥନୈତିକ ପରିଚାଳକମାନେ ବ୍ରେକ୍‌ଲଗା ସଂସ୍କାର ପ୍ରକ୍ରିୟାକୁ ପୁନଃ କାର୍ଯ୍ୟକ୍ଷମ କରାଇପାରନ୍ତି ଅବା ବହୁଳ ଅନ୍ତର୍ଦ୍ଦେଶୀୟ ଓ ଆମଦାନୀ ପ୍ରତିଯୋଗିତା ପାଇଁ ଅର୍ଥନୀତିକୁ ଉନ୍ମୁକ୍ତ କରି ଦିଅନ୍ତି ଅବା ଭାରତ ଭିତରେ ମୁକ୍ତ ବାଣିଜ୍ୟ କାରବାର କରିବା ପାଇଁ ଅନ୍ତର୍ଦ୍ଦେଶୀୟ ପ୍ରତିରୋଧକୁ ସମ୍ପୂର୍ଣ୍ଣ ହଟେଇ ଦେଇ ଭାରତକୁ ପ୍ରକୃତରେ ଏକ ସର୍ବସାଧାରଣ ବଜାରରେ ପରିବର୍ତ୍ତନ କରାଇ ପାରନ୍ତି ଅବା ଶ୍ରମ ଓ ଦେବାଳିଆ ଜନିତ ଆଇନ କାନୁନକୁ ପୂର୍ଣ୍ଣମାତ୍ରାରେ ସଂସ୍କାର କରି ପାରନ୍ତି ଅବା ପବ୍ଲିକ ସେକ୍ଟର ପ୍ରତିଷ୍ଠାନଗୁଡ଼ିକୁ ଘରୋଇ କରଣ କରିପାରନ୍ତି ଅବା ନାନାଦି ଆର୍ଥିକ କ୍ରିୟାକଳାପକୁ ଏକତ୍ରୀକରଣ କରିପାରନ୍ତି ଅବା ନାନାବିଧ ଟିକସ ବ୍ୟବସ୍ଥାରେ ସଂସ୍କାର ଆଣି ପାରନ୍ତି ଅବା ପ୍ରାଥମିକ ଶିକ୍ଷା ଓ ସ୍ୱାସ୍ଥ୍ୟରକ୍ଷା କ୍ଷେତ୍ରରେ ଯଥେଷ୍ଟ ଅର୍ଥ ଲଗାଣ ପାଇଁ ଗ୍ୟାରେଣ୍ଟି ପ୍ରଦାନ କରନ୍ତି ଏବଂ ଶେଷରେ କିନ୍ତୁ ସର୍ବଶେଷରେ ନୁହେଁ ଆବଶ୍ୟକୀୟ ସାମାଜିକ ନିରାପତ୍ତା ନେଟୱାର୍କର ସୃଷ୍ଟି କରିପାରନ୍ତି; ତେବେ ଅର୍ଥନୈତିକ ଦୃଷ୍ଟିକୋଣରୁ ଭାରତ ଯେ କାହିଁକି ଏକ ସର୍ବଗୁଣ ସମ୍ପନ୍ନ, ସମୃଦ୍ଧ, ଶକ୍ତିଶାଳୀ ଓ ସଫଳକାମୀ ରାଷ୍ଟ୍ର ହୋଇ ନ ପାରିବ ସେ ନେଇ ସନ୍ଦେହ କରିବାର କୌଣସି ଅବକାଶ ରହିବ ନାହିଁ ।

ସମାଜ

ତା- ୧୭.୯.୨୦୦୧



# ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନର ସଦସ୍ୟତା; ଭାରତ ପାଇଁ ମୁଣ୍ଡବ୍ୟଥାର କାରଣ ହେବ କି ?

ଆଗାମୀ ବର୍ଷ ଚୀନ ବିଶ୍ୱବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇଯିବା ପରେ ଭାରତବର୍ଷରେ ବର୍ହିଦେଶୀୟ ସିଧାସଳଖ ପୁଞ୍ଜି ଲଗାଣର ଉଜ୍ଜ୍ୱଳମୟ ଭବିଷ୍ୟତରେ ଗ୍ରହଣ ଲାଗିଯିବାର ଭୟ ଓ ଆଶଙ୍କା କରାଗଲାଣି । ଅର୍ଥନୀତି ବିଶ୍ଲେଷଣକାରୀମାନେ ଡରିଲେଣି ଯେ ଚୀନ ଯେ କି ବର୍ଷକୁ ୪୦ ବିଲିୟନ ଡଲାରର ବର୍ହିଦେଶୀୟ ସିଧାସଳଖ ପୁଞ୍ଜି ଲଗାଣ କ୍ଷେତ୍ରରେ ଏସିଆ ମହାଦେଶରେ ଏବେ ପ୍ରଥମ ସ୍ଥାନ ଅଧିକାର କରିଛି, ବିଶ୍ୱ ବାଣିଜ୍ୟ ସଙ୍ଗଠନର ସଦସ୍ୟ ହୋଇଯିବା ପରେ ଭାରତ ପାଇଁ ଏକ ବଡ଼ ସମସ୍ୟା ଓ ବିପଦ ହୋଇ ଠିଆହେବ ।

ପରନ୍ତୁ ଆମେରିକା ଯେ କି ବର୍ହିଦେଶୀୟ ସିଧାସଳଖ ପୁଞ୍ଜି ଲଗାଣ କ୍ଷେତ୍ରରେ ଭାରତବର୍ଷରେ ପ୍ରଥମ ସ୍ଥାନ ଅଧିକାର କରିବା ସଙ୍ଗେ ସଙ୍ଗେ ଚୀନରେ ତୃତୀୟ ସ୍ଥାନ ଅଧିକାର କରିଛି ଭାରତର ଗୌରବାଦିତ୍ୟ ବୈଭବ ଓ କାଳଜୟୀ ଐଶ୍ୱର୍ଯ୍ୟରେ ଅତ୍ୟନ୍ତ ବିମୋହିତ ହୋଇ ବର୍ହିଦେଶୀୟ ପୁଞ୍ଜି ଲଗାଣରେ ଭାରତବର୍ଷ ଯେ ଏକ ଉତ୍ତମ ପୃଷ୍ଠଭୂମି ତାହା ଶତମୁଖରେ ପ୍ରଶଂସା କରୁଛି । ଏହି ତଥ୍ୟ ନିକଟ ଅତୀତରେ ଆମେରିକାର ଚାମ୍ବର ଅଫ୍ କମର୍ସ ଓ ଆନ୍ତର୍ଜାତୀୟ ପରାମର୍ଶଦାତା ମ୍ୟାକ୍ କିନ୍‌ସେଙ୍କ ଦ୍ୱାରା କରାଯାଇଥିବା ଏକ ଷ୍ଟଡ଼ି ରିପୋର୍ଟରୁ ଉପଲବ୍ଧ ହୋଇଛି । ଏହି ଷ୍ଟଡ଼ି ଅନୁଯାୟୀ ଭାରତ ଆଗାମୀ ୫ ବର୍ଷ ମଧ୍ୟରେ ବର୍ଷକୁ ୨୦ ବିଲିୟନ ଡଲାର ହିସାବରେ ସର୍ବମୋଟ ୧୦୦ ବିଲିୟନ ଡଲାରର ବର୍ହିଦେଶୀୟ ସିଧାସଳଖ ପୁଞ୍ଜି ଲଗାଣ ପାଇଁ ଏକ ସର୍ବୋତ୍ତମ ରାଷ୍ଟ୍ରଭାବେ ବିଶ୍ୱ ଦରବାରେ ନିଜକୁ ପ୍ରତିପାଦିତ କରିପାରିଛି, ଯାହାକି ୨୦୦୦ ମସିହାରେ ମାତ୍ର ୮.୬ ବିଲିୟନ ଡଲାର ଥିଲା ।

ଥରେ ଚୀନ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇଗଲା ପରେ ତା' ପରବର୍ତ୍ତୀ ଘଟଣାକ୍ରମର ସମ୍ଭାବ୍ୟ ରୂପରେଖକୁ ବିଶ୍ଲେଷଣ କଲେ ଜଣାଯାଏ ଯେ ଉଭୟ ସୁଯୋଗ ଓ ସମ୍ଭାବନାର କାଳଚକ୍ର ଭାରତ ପାଇଁ ଅପେକ୍ଷା କରି ବସିଛି । ନିଶ୍ଚିତ ରୂପେ ଚୀନ ଆଜି ଏସିଆ ମହାଦେଶରେ ସର୍ବାଧିକ ବର୍ହିଦେଶୀୟ ପୁଞ୍ଜି ଉପଲବ୍ଧ କରୁଛି । ପରନ୍ତୁ ଥରେ ଚୀନ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇଗଲେ, ଏହି ଚିତ୍ର ଆଖିକୁ ଧୀରେ ଧୀରେ ଝାପ୍‌ସା ଦେଖାଯିବ ଏବଂ ହୁଏତ ନାନାବିଧ ସମସ୍ୟାର ଚକ୍ରବ୍ୟୁହରେ ପଡ଼ି ଏହି ହିସାବ ନିକାସର ଧାରାରେ ପରିବର୍ତ୍ତନ ଯେ ନ ଆସିବ; କିଏ କହିବ ? ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟତା ବର୍ହିଦେଶୀୟ ପୁଞ୍ଜି ଲଗାଣର ପ୍ରତିବନ୍ଧକ ହୋଇ ଚୀନ ଆଗରେ ଠିଆ ନ ହେବ ବା କାହିଁକି ?

ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇସାରିଲା ପରେ ବର୍ହିଦେଶୀୟ ପୁଞ୍ଜି ଲଗାଣ କ୍ଷେତ୍ରରେ ତିନୋଟି ମୁଖ୍ୟ ପ୍ରତିବନ୍ଧକ ଚୀନ ସମ୍ମୁଖରେ ଆସି ଠିଆ ହେବ । ଯଥା : ଉତ୍ପାଦିତ ସାମଗ୍ରୀର ମୂଲ୍ୟରେ ହ୍ରାସ, ଅନ୍ତର୍ଦ୍ଦେଶୀୟ ମାନୁଫ୍ୟାକ୍‌ଚରିଂ ସେକ୍ଟରଗୁଡ଼ିକରେ ଛକା ପଞ୍ଝା ପ୍ରତିଯୋଗିତା ଓ ଗୋଟାଏ ଧକ୍କାରେ ନାନାବିଧ ସର୍ଭିସ ସେକ୍ଟରଗୁଡ଼ିକର ବନ୍ଦ କବାଟକୁ ହଠାତ୍ ଖୋଲି ନ ଦେଇ ସେଗୁଡ଼ିକୁ ଧୀରେ ଧୀରେ ଖୋଲିବା, ଯାହାକି ସଂପ୍ରତି ବର୍ହିଦେଶୀୟ ପୁଞ୍ଜି ଲଗାଣ ପାଇଁ ଏକ ନିଷିଦ୍ଧ ଅଞ୍ଚଳ ବୋଲି ଘୋଷିତ ହୋଇଛି ।

ଆଜି ପର୍ଯ୍ୟନ୍ତ ଚୀନରେ ପ୍ରବର୍ତ୍ତିତ ଥିବା ଉଦାରୀକରଣ ପ୍ରକ୍ରିୟା ବର୍ହିଦେଶୀୟ ପୁଞ୍ଜିଲଗାଣକାରୀଙ୍କୁ ଆକର୍ଷିତ କରୁଥିଲା । ପରନ୍ତୁ ଏହା କେବଳ ମାନୁଫ୍ୟାକ୍‌ଚରିଂ ସେକ୍ଟର ମଧ୍ୟରେ ସୀମିତ ଥିଲା । ଏତଦ୍ ବ୍ୟତୀତ ହଂକଂ ସହିତ ଥିବା ନିକଟତର ଭୌଗୋଳିକ ସମ୍ପର୍କ ଓ ସଂପ୍ରସାରିତ ଭିତ୍ତିଭୂମିର ଦ୍ରୁତ ଅଭିବୃଦ୍ଧି ଯୋଗୁଁ ଚୀନର ମାନୁଫ୍ୟାକ୍‌ଚରିଂ ସେକ୍ଟରଗୁଡ଼ିକୁ ବର୍ହିଦେଶୀୟ ପୁଞ୍ଜି ଲଗାଣ ବିଶେଷଭାବେ ପ୍ରୋତ୍ସାହିତ କଲା । ବିଶ୍ୱର ପ୍ରାୟ ସମସ୍ତ ମୁଖ୍ୟ ଫରଚ୍ୟୁନ-୫୦୦ କମ୍ପାନୀ ଚୀନରେ ପୁଞ୍ଜି ଲଗାଣ କରିଛନ୍ତି । ତନ୍ମଧ୍ୟରୁ ଆମେରିକାର ୨୧ଟି, ଜାପାନର ୧୯ଟି କମ୍ପାନୀ ଚୀନର ମାନୁଫ୍ୟାକ୍‌ଚରିଂ ସେକ୍ଟରଗୁଡ଼ିକରେ ପୁଞ୍ଜି ଲଗାଣ କରିଛନ୍ତି । ଆଶାତୀତ ବର୍ହିଦେଶୀୟ ପୁଞ୍ଜି ଲଗାଣ ଚୀନରେ ଆଭ୍ୟନ୍ତରୀଣ ପ୍ରତିଯୋଗିତାର ଦ୍ୱାର

ଖୋଲିଦେଲା, ଯଦ୍ୱାରା ଚୀନରେ ଉତ୍ପାଦିତ ନାନାବିଧ ସାମଗ୍ରୀର ଉଦ୍‌ବୃତ୍ତତା ବୃଦ୍ଧି ପାଇଲା । ଏହା କେତେକ ସାମଗ୍ରୀର ବିକ୍ରୀବଟାରେ ମଧ୍ୟ ପ୍ରତିବନ୍ଧକ ସୃଷ୍ଟି କଲା । ଉଦାହରଣ ସ୍ୱରୂପ, କୋକାକୋଲା କମ୍ପାନୀ ଆମେରିକା ଅପେକ୍ଷା ଚୀନରେ ତା'ର ବଜାରକୁ ସଂପ୍ରସାରିତ କରିବା ପାଇଁ ନାନାବିଧ ପ୍ରୋତ୍ସାହନମୂଳକ ଯୋଜନା ହାତକୁ ନେବା ସଙ୍ଗେ ସଙ୍ଗେ ବିପଣନ କ୍ଷେତ୍ରରେ ମଧ୍ୟ ଆବଶ୍ୟକ ଗୁରୁତ୍ୱ ପ୍ରଦାନ କରି ବହୁଳ ପୁଞ୍ଜି ବିନିଯୋଗ କରୁଛି ।

ପୁନଶ୍ଚ ଅର୍ଥନୈତିକ ସଂସ୍କାର ପ୍ରକ୍ରିୟାର ଦୁଇ ଦଶନ୍ଧି ଅତିବାହିତ ହୋଇଯିବା ପରେ ମଧ୍ୟ ଚୀନର ଅନ୍ତର୍ଦ୍ଦେଶୀୟ ଶିଳ୍ପୋଦ୍ୟୋଗୀମାନେ ସେମାନଙ୍କର ଉତ୍ପାଦକତାକୁ ବହୁଗୁଣ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ପ୍ରତିଯୋଗିତାକୁ ମଧ୍ୟ ଅଧିକ ତୀକ୍ଷ୍ଣ କଲେ ଯଦ୍ୱାରା ସେମାନେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ସହ ପ୍ରତିଯୋଗିତାରେ ଯୋରଦାର ଭାଗନେଇ ପାରିଲେ । ଶ୍ରମିକ ଓ ଶ୍ରମ ନିର୍ଭରଶୀଳ ସାମଗ୍ରୀଗୁଡ଼ିକ କ୍ଷେତ୍ରରେ ଏହା ବିଶେଷଭାବେ ଫଳପ୍ରଦ ହେଲା । ପ୍ରାୟ ଏକ ଦଶନ୍ଧି ପୂର୍ବରୁ ଚୀନ ଦେଶର କୌଣସି ଶିଳ୍ପୋଦ୍ୟୋଗୀ ବିଦେଶୀ ଚାପର ବଶବର୍ତ୍ତୀ ହୋଇ ତିଷ୍ଠି ରହିବା କାଠିକର ପାଠ ଥିଲା ବେଳେ ଏବେ ସେମାନେ ବର୍ହିଦେଶୀୟ ଚ୍ୟାଲେଞ୍ଜକୁ ସମ୍ମାନର ମୁଦ୍ଦା ଭାବେ ଗ୍ରହଣ କରି ତା'ର ସିଧାସଳଖ ସମ୍ମୁଖୀନ ହେଉଛନ୍ତି ।

ଥରେ ଚୀନ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇଗଲା ପରେ ଉତ୍ପାଦିତ ସାମଗ୍ରୀରେ ମୂଲ୍ୟ ହ୍ରାସ ବ୍ୟତିରେକ ଅଜଣା ପ୍ରତିବନ୍ଧକ ଏବଂ ଅଦୃଶ୍ୟମାନ ସବ୍‌ସିଡ଼ି ଅନ୍ତର୍ଦ୍ଦେଶୀୟ ବଜାରର ଆକର୍ଷଣକୁ ହ୍ରାସ କରାଇବ । ଏହା ବିଦେଶୀ ପୁଞ୍ଜି ଲଗାଣକାରୀମାନଙ୍କ ପାଇଁ ଏକ ଅଣଆକର୍ଷଣୀୟ ପରିସ୍ଥିତି ଠିଆ କରାଇବ, ଯେଉଁମାନେ କି ଶସ୍ତା ଶ୍ରମ ମୂଲ୍ୟ ବଦଳରେ ରପ୍ତାନି କାରବାରରେ ସଦା ବ୍ୟସ୍ତ ରହୁଥିଲେ ।

ଏଭଳି ଏକ ପୃଷ୍ଠଭୂମିରେ ଚୀନ ଥରେ ବିଶ୍ୱବାଣିଜ୍ୟ ସଙ୍ଗଠନର ସଦସ୍ୟରାଷ୍ଟ୍ର ହୋଇଯିବା ପରେ ଭାରତବର୍ଷରେ ବର୍ହିଦେଶୀୟ ସିଧାସଳଖ ପୁଞ୍ଜି ଲଗାଣ କ୍ଷେତ୍ରରେ ବହୁଚର୍ଚ୍ଚିତ ଆଶଙ୍କା ନିରାଧାର ବୋଲି ପ୍ରତୀୟମାନ ହୁଏ, କାରଣ ଭାରତବର୍ଷରେ ମାନୁଫ୍ୟାକଚ଼ରିଂ ସେକ୍ଟରଗୁଡ଼ିକ ପୁଞ୍ଜିଲଗାଣ ପାଇଁ ଏକ ବିଶାଳ ପ୍ରକ୍ଷେତ୍ର ପ୍ରଦାନ କରିଥାନ୍ତି । ଚୀନରେ ଶିଳ୍ପ କ୍ଷେତ୍ରରୁ ଉପଲବ୍ଧ ଫଳାଫଳର ପ୍ରାୟ ଏକ ତୃତୀୟାଂଶ

ଏବଂ ଶିଳ୍ପ କ୍ଷେତ୍ରରେ ପୁଞ୍ଜି ବିନିଯୋଗ ପରିମାଣର ଏକ ପଞ୍ଚମାଂଶ ବର୍ହିଦେଶୀୟ ପୁଞ୍ଜି ବିନିଯୋଗ ଦ୍ୱାରା ଭରଣା ହୋଇଥାଏ । କିନ୍ତୁ ଭାରତବର୍ଷରେ ବର୍ହିଦେଶୀୟ ପୁଞ୍ଜି କଦବାୟ କ୍ୱଚିଦ୍ କୌଣସି ଘରୋଇ ଉଦ୍ୟୋଗରେ ଅବା ବିନିଯୋଗ ହେଉଥିବ । ଚୀନ ଦେଶରେ ବର୍ହିଦେଶୀୟ ପୁଞ୍ଜି ଲଗାଣ ହୋଇ ପରିଚ଼ାଳିତ ହେଉଥିବା ଉଦ୍ୟୋଗମାନଙ୍କ ଦ୍ୱାରା ସର୍ଭିସ ସେକ୍ଟରଗୁଡ଼ିକୁ ପ୍ରକୃତରୂପେ ଆଶାନୁରୂପ ବ୍ୟବହାର କରାଯାଇ ପାରିନାହିଁ ।

ବିଶ୍ୱ ବାଣିଜ୍ୟ ସଙ୍ଗଠନର ସଦସ୍ୟ ରାଷ୍ଟ୍ର ହେବାପାଇଁ ଦରକାର ହେଉଥିବା ଆବଶ୍ୟକୀୟ ଯୋଗ୍ୟତା ହାସଲ କରିବା ପାଇଁ ଚୀନ ତା'ର ସର୍ଭିସ ସେକ୍ଟରଗୁଡ଼ିକୁ ଉନ୍ମୁକ୍ତ କରିଦେବା ପାଇଁ ଅଙ୍ଗୀକାରବଦ୍ଧ ହୋଇଛି । ଏହି ସର୍ଭିସ ସେକ୍ଟରଗୁଡ଼ିକ ଚୀନର ମୋଟ ଅନ୍ତର୍ଦ୍ଦେଶୀୟ ଉତ୍ପାଦନ (ଜି.ଡ଼ି.ପି)ର ଏକ ତୃତୀୟାଂଶ ଭରଣା କରିଥାନ୍ତି । ଚୀନରେ ଏହି ସବୁ କ୍ଷେତ୍ରରେ ପୁଞ୍ଜି ବିନିଯୋଗ କରିବା ପାଇଁ ଲାଭଦାୟକ ବିଭାଗଗୁଡ଼ିକ ହେଲା ଅର୍ଥ ଯଥା : ବ୍ୟାଙ୍କିଂ ସେବା ଓ ଇନସୁରାନ୍ସ; ବଣ୍ଟନ ଯଥା : ପାଇକାରୀ ଓ ଖାଉଟୀ ବ୍ୟାପାର; ଆନୁସଙ୍ଗିକ ସେବା ଯଥା : ଓୟାର ହାଉସିଂ, ପ୍ୟାକେଜିଂ, ବିଜ୍ଞାପନ ଓ ତୁରନ୍ତ ସେବା; ସୂଚ଼ନା ପ୍ରଯୁକ୍ତି ଜନୀତ ସେବା; ଦୂର ସଞ୍ଚାର, ବୃତ୍ତିଗତ ସେବା ଯଥା : ଆକାଉଣ୍ଟାନ୍ସି, ପରିଚ଼ାଳନାଗତ ପରାମର୍ଶ ଓ ଆଇନଗତ ସେବା, ଟୁରିଜିମ୍; ଚଳଚ଼ିତ୍ର ଏବଂ ଦୃଶ୍ୟ ଶ୍ରାବ୍ୟ ବଣ୍ଟନ ବ୍ୟବସ୍ଥା (Audio-Visual Distribution) ।

ସର୍ଭିସ ସେକ୍ଟରଗୁଡ଼ିକର ଉନ୍ମୁକ୍ତତା ଚୀନରେ ବର୍ହିଦେଶୀୟ ପୁଞ୍ଜି ଲଗାଣକୁ ବହୁ ଗୁଣରେ ବୃଦ୍ଧି କରାଇବାର ଆଶା କରାଯାଉଛି । ପରନ୍ତୁ ଚୀନ ଥରେ ବିଶ୍ୱବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇଗଲା ପରେ ଏହି ଆଶା କେତେଦୂର ଫଳବତୀ ହୋଇପାରିବ, ତା'ନେଇ ମନରେ ବହୁ ଆଶଙ୍କା ବସା ବାନ୍ଧୁଛି । ଅର୍ଥନୀତିଜ୍ଞମାନେ ଯୁକ୍ତି ବାଢ଼ନ୍ତି ଯେ ଅତ୍ୟନ୍ତ ନିକଟ ଭବିଷ୍ୟତରେ ଚୀନରେ ବର୍ହିଦେଶୀୟ ପୁଞ୍ଜି ଲଗାଣରେ ଆଶାତୀତ ବୃଦ୍ଧି ସମ୍ଭବପର ନୁହେଁ । କାରଣ ନାନାବିଧ ନିୟନ୍ତ୍ରଣ ବ୍ୟବସ୍ଥା ସହ ଖାପ ଖୁଆଇ ଶାସନ କଳକୁ ସୁବନ୍ଦୋବସ୍ତ ଓ ସରଳୀକରଣ କରି ସର୍ଭିସ ସେକ୍ଟରମାନଙ୍କରେ ବର୍ହିଦେଶୀୟ ପୁଞ୍ଜି ଲଗାଣକୁ ଆବଶ୍ୟକୀୟ ପ୍ରୋତ୍ସାହନ ଦେବାକୁ ଚୀନକୁ କମ୍ ସେ କମ୍ ୫ ବର୍ଷ ସମୟ ନିଶ୍ଚୟ ଲାଗିବ ।

ଉଦାହରଣ ସ୍ୱରୂପ, ଚୀନ ଦୂର ସଞ୍ଚାର କ୍ଷେତ୍ରରେ ବର୍ହିଦେଶୀୟ ପୁଞ୍ଜି ଲଗାଣ କରେ ନାହିଁ । ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ର ହୋଇଯିବା ପରେ ବେଜିଂ ମୌଳିକ ଦୂର ସଞ୍ଚାର ରାଜିନାମା (Basic Telecommunication Agreement)କୁ ପାଳନ କରିବାକୁ ସହମତି ପ୍ରକାଶ କରିଛି । ମୌଳିକ ଦୂରସଞ୍ଚାର ରାଜିନାମା ଅନୁଯାୟୀ ବିଶ୍ୱ ବାଣିଜ୍ୟ ସଂଗଠନର ସଦସ୍ୟ ରାଷ୍ଟ୍ରମାନେ ଛଅଗୋଟି ପ୍ରତିଯୋଗିତାମୂଳକ ନିୟନ୍ତ୍ରଣ ବ୍ୟବସ୍ଥାକୁ ମାନି ଚଳିବା ନିତାନ୍ତ ଦରକାର । ଯଥା : ପ୍ରତିଯୋଗିତାମୂଳକ ସୁରକ୍ଷା, ଆନ୍ତଃସଂଯୋଗ ଏବଂ ଜନସାଧାରଣଙ୍କ ପାଖରେ ଲାଇସେନସିଂ ନିୟମାବଳୀର ଉପଲବ୍ଧ ଆଦି । ସଂପ୍ରତି ଚୀନର ଦୂରସଞ୍ଚାର କ୍ଷେତ୍ର ଏହି ଛଅଟି ନିୟନ୍ତ୍ରଣ ବ୍ୟବସ୍ଥାରୁ କୌଣସି ଗୋଟିଏ ହେଲେ ବ୍ୟବସ୍ଥାକୁ ବି ମାନି ଚଳୁନାହିଁ । ଫଳତଃ ସାଂପ୍ରତିକ ନିୟନ୍ତ୍ରଣ ବିଧିବିଧାନ ଓ ମୌଳିକ ଦୂରସଞ୍ଚାର ରାଜିନାମାର ସର୍ତ୍ତଗୁଡ଼ିକ ମଧ୍ୟରେ ଏକ ବଡ଼ ଧରଣର ପାର୍ଥକ୍ୟ ପରିଲକ୍ଷିତ ହେଉଛି । ଏହି ପାର୍ଥକ୍ୟ ଦୂରସଞ୍ଚାର କ୍ଷେତ୍ରରେ ଚୀନରେ ବର୍ହିଦେଶୀୟ ପୁଞ୍ଜି ଲଗାଣ ପରିପ୍ରେକ୍ଷୀରେ ଏକ ବଡ଼ ଧରଣର ପ୍ରତିବନ୍ଧକ ହୋଇ ଠିଆହେବ ।

ଏହାର ଅର୍ଥ ନୁହେଁ ଯେ ଭାରତ ନାହିରେ ତେଲ ଦେଇ ନିଘୋଡ଼ ନିଦରେ ଶୋଇପଡ଼ିବ । ସୁଦୂର ପ୍ରସାରୀ ଭବିଷ୍ୟତକୁ ଆଖି ଆଗରେ ରଖି ଭାରତ ତା'ର କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିବା ଉଚ୍‌ିତ । କେତେବେଳେ ଅବା ନାଟକୀୟ ଭଙ୍ଗୀରେ ସମୟ ନୂଆ ମୋଡ଼ ନ ନେବ - ତା' କିଏ କହିବ ? ଏହି ଚ୍ୟାଲେଞ୍ଜର ସମ୍ମୁଖୀନ ହେବାପାଇଁ ଭାରତ ତା'ର ପ୍ରଚେଷ୍ଟାକୁ ବଳବତ୍ତର ରଖିବା ଉଚ୍‌ିତ ଏବଂ ଏ କ୍ଷେତ୍ରରେ ଚୀନର ଅଭିଜ୍ଞତା ହୁଏତ କୌଣସି ଉଚ୍‌ିତ ଶିକ୍ଷା ପ୍ରଦାନ କରିପାରେ । ଉଦାରୀକରଣର ପ୍ରଭାବକୁ ମୁକାବିଲା କରିବା ପାଇଁ ଚୀନ ତା'ର ଅନ୍ତର୍ଦ୍ଦେଶୀୟ ଶିଳ୍ପଗୁଡ଼ିକୁ ବଳଶାଳୀ କରି ଗଢ଼ି ତୋଳିବାର ଆବଶ୍ୟକତାକୁ ଅନୁଭବ କଲାଣି ।

ପ୍ରଥମ ପଦକ୍ଷେପ ସ୍ୱରୂପ ଏହା ଶିଳ୍ପ କ୍ଷେତ୍ରରେ ଷ୍ଟ୍ରକ୍‌ଚରାଲ ରିଫର୍ମକୁ ପରିପ୍ରୟୋଗ କରିବା ପାଇଁ ସ୍ଥିରୀକୃତ କଲା ଏବଂ ଅଟୋମୋବାଇଲ୍ ଓ ଇଲେକ୍‌ଟ୍ରୋନିକ୍ ଶିଳ୍ପ କ୍ଷେତ୍ରରେ ତା'ର ଦୃଷ୍ଟିକୁ ବିଶେଷଭାବେ ସନ୍ନିବେଶିତ କଲା ।

୧୯୪୪ ମସିହାରେ ଅଟୋମୋବାଇଲ ଶିଳ୍ପ ପାଇଁ ଚୀନ ତା'ର ଶିଳ୍ପନୀତି ପ୍ରଣୟନ କଲା ଏବଂ ଇଲେକ୍‌ଟ୍ରୋନିକ ଶିଳ୍ପର ବିକାଶ ପାଇଁ ବିଶାଳ ଔଦ୍ୟୋଗିକ

ଯୋଜନାକୁ ରୂପରେଖ ଦେଲା । ଏହି ଦୁଇଟି କାର୍ଯ୍ୟକ୍ରମର ମୁଖ୍ୟ ଆଭିମୁଖ୍ୟ ଥିଲା ଏକାଧିକ ବିଖଣ୍ଡିତ ଶିଳ୍ପାନୁଷ୍ଠାନଗୁଡ଼ିକୁ ଏକତ୍ରିତ କରାଇ କେତେକ ବିଶାଳ କର୍ପୋରେଟ ବଡ଼ି ସୃଷ୍ଟି କରିବା, ଯଦ୍ୱାରା ଉତ୍ପାଦନ ଓ ଉତ୍ପାଦକତାରେ ବୃଦ୍ଧି ସମ୍ଭବପର ହୋଇପାରିବ । ଏହି ଷ୍ଟ୍ରାଟେଜୀର ଫଳ ହେଲା ଆଜି ଚୀନର ଏକମାତ୍ର TV କମ୍ପାନୀ ଭାରତର ସମସ୍ତ TV କମ୍ପାନୀରେ ଉତ୍ପାଦିତ ହେଉଥିବା TV ସେଟ୍ ଗୁଡ଼ିକର ମୋଟ ସଂଖ୍ୟାଠାରୁ ଅଧିକ ସଂଖ୍ୟକ TV ସେଟ ତିଆରି କରୁଛି ।

ଷ୍ଟ୍ରକଚର୍‌ଆଲ ରିଫର୍ମ ସହିତ ପ୍ରଯୁକ୍ତି ବିଦ୍ୟାର ହସ୍ତାନ୍ତର ଓ ଶିଳ୍ପଜାତ ପଦାର୍ଥର ଉତ୍ପାଦନରେ ଅଭିବୃଦ୍ଧି ପାଇଁ ପ୍ରୋତ୍ସାହନ ଦେବାରେ ଚୀନ ଇନ୍‌ସେନଟିଭ ମଧ ପ୍ରଦାନ କଲା । ୧୯୯୮ ମସିହାରେ ଚୀନ ଇନସେନ୍‌ଟିଭର ପରିମାଣରେ ଆବଶ୍ୟକୀୟ ବୃଦ୍ଧି କରି ରାଷ୍ଟ୍ରୀୟ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମକୁ ଯଥେଷ୍ଟ ପ୍ରୋତ୍ସାହନ ପ୍ରଦାନ କଲା । ଏ ସମସ୍ତ କାର୍ଯ୍ୟକ୍ରମ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକୁ ଚୀନରେ ସେମାନଙ୍କର ପ୍ରକଳ୍ପ ପ୍ରତିଷ୍ଠା କରିବାକୁ ବାଟ ଖୋଲିଦେଲା । ଏହି ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ପ୍ରଯୁକ୍ତି ବିଦ୍ୟାର ଉତ୍ତରୋତ୍ତର ଉନ୍ନତି ପାଇଁ ଚୀନରେ ମୁଖ୍ୟ ଭୂମିକା ଗ୍ରହଣ କଲେ ଓ ଚୀନକୁ ଏକ ଟେକ୍ନୋଲୋଜି ସମୃଦ୍ଧ ରାଷ୍ଟ୍ର ଭାବେ ବିଶ୍ୱ ବୁକୁରେ ଠିଆ କରାଇଲେ । ସେ ପର୍ଯ୍ୟନ୍ତ ବହିର୍ଦେଶୀୟ ପୁଞ୍ଜି ଲଗାଣ କେବଳ ଛୋଟ ଛୋଟ ଓ ମଧମ ଧରଣର ପ୍ରକ୍ରିୟାକରଣ ଶିଳ୍ପ (ପ୍ରୋସେସିଂ ଇଣ୍ଡଷ୍ଟ୍ରି) କ୍ଷେତ୍ରରେ ସୀମାବଦ୍ଧ ଥିଲା, ଯାହାକି ପ୍ରାୟ ଶ୍ରମ ନିର୍ଭରଶୀଳ ଥିଲା ଓ ସେଠାରେ ପ୍ରଯୁକ୍ତିବିଦ୍ୟାର ବିକାଶ ପାଇଁ କ୍ଷେତ୍ର ଅତ୍ୟନ୍ତ ସୀମିତ ଥିଲା ।

ଅପର ପଟରେ ଯଦିଓ ଭାରତ ମୁକ୍ତ ଅର୍ଥନୀତିର ପଥକୁ ବାଛିନେଲା ହେଲେ ବିଶ୍ୱ ବଜାରରେ ନିଜର ପ୍ରତିଷ୍ଠା ଜାହିର କରିବା ପାଇଁ ଘନ ଘନ ପରିବର୍ତ୍ତନଶୀଳ ପ୍ରତିଯୋଗିତା ମୂଳକ ପରିସ୍ଥିତିର ସଫଳ ମୁକାବିଲା କରି ସଠିକ୍ ଭାବେ ରାସ୍ତା ଆଡ଼େଇ ଆଗକୁ ଯାଇପାରୁନାହିଁ କାହିଁକି ? ରାଜନୀତିଧର୍ମୀ ଶିଳ୍ପନୀତିରେ ଆବଶ୍ୟକୀୟ ପରିବର୍ତ୍ତନ ନ ହେଲା ପର୍ଯ୍ୟନ୍ତ ଭାରତ ଏପରି ଛକା ପଞ୍ଝା ପରିସ୍ଥିତି ଭିତରେ ଗତି କରି ଚାଲିଥିବ । କ୍ଷୁଦ୍ର ଶିଳ୍ପ କ୍ଷେତ୍ରରେ ସେହି ଚିରାଚରିତ ସଂରକ୍ଷଣ ବ୍ୟବସ୍ଥା ଏବେ ବି ଚାଲୁ ରହିଛି । ସେହପରି ଅନ୍ୟାନ୍ୟ ବହୁକିଛି ସମସ୍ୟାର ଘେରି ଜାଲରେ ଭାରତ ମଧ ପଡ଼ିରହିଛି ।

ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନର ସଦସ୍ୟତାକୁ ନେଇ ଚୀନ ଦେଶରେ ଏବେ ବହୁ ଆଶାର ମୀନାର ଗଢ଼ି ତୋଳୁଛି । ଏହା ଦ୍ୱାରା ଚୀନର ନାଗରିକମାନେ ଅତ୍ୟନ୍ତ ଶୃଙ୍ଖଳିତ ନୀତିନିୟମ ପାଳନକାରୀ ହେବା ସଙ୍ଗେ ସଙ୍ଗେ ସେମାନଙ୍କର କାର୍ଯ୍ୟକଳାପ, ବ୍ୟବହାର, ଚାଲିଚଳନ ଓ ହାବଭାବରେ ସ୍ୱଚ୍ଛତାର ମହକ ଫୁଟି ଉଠିବ । ବିଶ୍ୱ ବାଣିଜ୍ୟ କାରବାରରେ ଚୀନର ସେୟାର ସଂପ୍ରତି ୩.୯ ପ୍ରତିଶତ ହୋଇଥିଲା ବେଳେ ଏହା ବିଶ୍ୱର ସପ୍ତମ ବୃହତ୍ତମ ରପ୍ତାନିକାରୀ ରାଷ୍ଟ୍ରର ମାନ୍ୟତା ଲାଭ କରି ପାରିଛି ଓ ବର୍ହିଦେଶୀୟ ବ୍ୟବସାୟରେ ମାତ୍ରାଧିକ ବାଣିଜ୍ୟିକ ସାଧୁତା ପରିଲକ୍ଷିତ ହେବାର ମଧ୍ୟ ଯଥେଷ୍ଟ ଆଶା କରାଯାଉଛି । ଚୀନର ନାଗରିକମାନେ ପୁନଶ୍ଚ ଆଶା କରନ୍ତି ଯେ ଆନ୍ତଃରାଷ୍ଟ୍ରୀୟ ବାଣିଜ୍ୟିକ ରାଜିନାମାଗୁଡ଼ିକ ଏଣିକି ଅତ୍ୟନ୍ତ ସାଧୁତା ଓ ସ୍ୱଚ୍ଛତାର ବାତାବରଣ ମଧ୍ୟରେ ପାଳନ କରାଯିବ ଓ ବ୍ୟବସାୟୀକ ସର୍ତ୍ତଗୁଡ଼ିକ ବିଶ୍ୱ ବାଣିଜ୍ୟ ସଂଗଠନର ନିୟମାବଳୀାନୁଯାୟୀ କାର୍ଯ୍ୟକାରୀ ହେବ । ୨୦୦୮ ମସିହାରେ ଅଲମ୍ପିକ କ୍ରୀଡ଼ା ପାଇଁ ଚୀନ ଦେଶକୁ ମନୋନୀତ କରାଯାଇଥିବାରୁ ବିଶ୍ୱରେ ଏକ ଆଶା ସଞ୍ଚାର ହୋଇଛି ଯେ ଚୀନର ନେତୃତ୍ୱ ରାଷ୍ଟ୍ରକୈନ୍ଦ୍ରିକ ସଶକ୍ତିକରଣ ପ୍ରକ୍ରିୟାକୁ କାଣ୍ଟଛାଣ୍ଟ କରି ମାନବ ଅଧିକାର ଓ ବ୍ୟକ୍ତି ସ୍ୱାଧୀନତାକୁ ଯଥାଯଥ ସମ୍ମାନ ପ୍ରଦାନ କରିବାକୁ ଆଗଭର ହେବ ।

ଭାରତ ପାଇଁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଶିକ୍ଷା ପାଇବାର ବେଳ ଯେ କି ବିଶ୍ୱ ବାଣିଜ୍ୟ ସଂଗଠନରେ ଚୀନ ଦେଶର ସଦସ୍ୟତା ପାଇଁ ହଁ ଭରିଥିଲା । ବିଶ୍ୱ ବାଣିଜ୍ୟ କାରବାରରେ ଭାରତର ସେୟାର ନାମକୁ ମାତ୍ର ୦.୬ ପ୍ରତିଶତ ହୋଇଥିବାବେଳେ ବିଶ୍ୱ ବାଣିଜ୍ୟ ସଂଗଠନରେ ଭାରତର ସେପରି କୌଣସି ପ୍ରଭାବ ପରିଲକ୍ଷିତ ହେବା ମନେ ହେଉ ନାହିଁ । ଚୀନର ଅଭିବୃଦ୍ଧି ବିଶ୍ୱ ପୃଷ୍ଠଭୂମିରେ ଅନ୍ୟ ଏକ ଗୋଲାର୍ଦ୍ଧ ସୃଷ୍ଟି କରିବ, ଯାହାକି ଭାରତ ପାଇଁ ଶୁଭଙ୍କର ହେବ ବୋଲି ଆଶା କରିବା ମଧ୍ୟ ସମୀଚୀନ ହେଉନାହିଁ । ନୂଆଦିଲ୍ଲୀ ପାଇଁ ଏହା ଏକ ମୁଖ୍ୟ ଚ୍ୟାଲେଞ୍ଜ ହେବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଧରିତ୍ରୀ

ତା- ୨୯.୯.୨୦୦୧



# ଦେଶରେ ପ୍ରଯୁକ୍ତି ବିଦ୍ୟାର ବିକାଶ ସତ୍ୱେ ଅର୍ଥନୈତିକ ଅଭିବୃଦ୍ଧି ହାର ଶିଥିଳ

'ବଜାରର ସର୍ବଦିଗ ଚାପକୁ ଆଖି ଆଗରେ ରଖି ପ୍ରଯୁକ୍ତି ବିଦ୍ୟା ସୃଷ୍ଟି ହୋଇଥାଏ, କିନ୍ତୁ ମଳି ମୁଣ୍ଡିଆ ଗରିବ ବାପୁଡ଼ାଙ୍କ ଚାହିଦାକୁ ଆଖି ଆଗରେ ରଖି ନୁହେଁ ।' ବିଶ୍ୱ ପ୍ରଯୁକ୍ତି ବିଦ୍ୟାର ସର୍ବାଙ୍ଗୀନ ଉନ୍ନତି କକ୍ଷେ ଜାତିସଂଘର ସର୍ବଶେଷ 'ହ୍ୟୁମାନ ଡେଭଲପମେଣ୍ଟ ରିପୋର୍ଟ' ବହୁଳ ଭାବରେ ତା'ର ଦୃଷ୍ଟି ସନ୍ନିବେଶିତ କରିଛି । ପ୍ରଯୁକ୍ତି ବିଦ୍ୟା ସୃଷ୍ଟ ସଂଶୟ, ଆବିଷ୍କାର ଓ ଉନ୍ନୟନ ଧର୍ମୀ ବୈଷୟିକ ସଂସ୍କୃତି ଏବଂ ପ୍ରଯୁକ୍ତି ବିଦ୍ୟାକୁ ନେଇ ଧନୀ ଓ ଗରିବ ରାଷ୍ଟ୍ର ମଧ୍ୟରେ ସୃଷ୍ଟି ହୋଇଥିବା ବିଭେଦକୁ କିପରି ସଂକୋଚନ କରାଯାଇ ପାରିବ - ହ୍ୟୁମାନ ଡେଭଲପମେଣ୍ଟ ରିପୋର୍ଟ ଏ ନେଇ ସବିଶେଷ ପର୍ଯ୍ୟାଲୋଚନା କରିଛି । ବୈଷୟିକ କଳା କୌଶଳ ଜନିତ କ୍ଷମତା ଓ ସାଧନ କିପରି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ମହା ବିଭେଦତାର ପାଚେରୀ ଠିଆ କରାଉଛି, ତାହା ଏଠାରେ ପ୍ରଣିଧାନ ଯୋଗ୍ୟ ।

୧୯୯୮ ମସିହା ଏପ୍ରିଲ ମାସରେ 'ଅର୍ଗାନାଇଜେସନ୍ ଫର୍ ଇକୋନୋମିକ୍ କୋପରେସନ୍ ଯାଣ୍ଡ ଡେଭଲପମେଣ୍ଟ' (ଓ.ଇ.ସି.ଡ଼ି) ରାଷ୍ଟ୍ରମାନେ (୩୦ଟି ରାଷ୍ଟ୍ର) ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ୫୨୦ ବିଲିୟନ ଡଲାର ଅର୍ଥରାଶି ବିନିଯୋଗ କରିଥିଲେ, ଯାହାକି ମୁଖ୍ୟତଃ ବିଭିନ୍ନ ଘରୋଇ ଉଦ୍ୟୋଗମାନଙ୍କ ଦ୍ୱାରା ଆର୍ଥିକ ଅନୁଦାନ ଭିତ୍ତିକ ଥିଲା । ଆପଣ ଜାଣି ନିଶ୍ଚିତ ରୂପେ ଆଶ୍ଚର୍ଯ୍ୟ ହେବେ ଯେ ଏହି ଅର୍ଥରାଶି ୩୦ଟି ଦରିଦ୍ରତମ ରାଷ୍ଟ୍ର ସମୂହର ସମ୍ମିଳିତ ଆର୍ଥିକ output ଠାରୁ ଯଥେଷ୍ଟ ଅଧିକ ଥିଲା । ୧୯୯୨ ମସିହରେ ସମଗ୍ର ବିଶ୍ୱରେ ସ୍ୱାସ୍ଥ୍ୟ ଗବେଷଣା କ୍ଷେତ୍ରରେ ହୋଇଥିବା ପୁଞ୍ଜି ଲଗାଣର ୧୦ ପ୍ରତିଶତରୁ ବି କମ୍ ଅର୍ଥରାଶି ବିଶ୍ୱର ୯୦ ପ୍ରତିଶତ ସ୍ୱାସ୍ଥ୍ୟଗତ ସମସ୍ୟାର ମୁକାବିଲା କରିବାକୁ ସକ୍ଷମ ହୋଇପାରିଥିଲା । କେବଳ ମାତ୍ର ଶୂନ ଦଶମିକ ଦୁଇ ଆଠ (୦.୨୮) ପ୍ରତିଶତ ଅର୍ଥରାଶି ନିମୋନିଆ ଓ ଡାଇରିଆ ଭଳି ରୋଗର ଗବେଷଣାରେ ବିନିଯୋଗ ହୋଇଥିଲା, ଯାହାକି ବିଶ୍ୱର ୧୧ ପ୍ରତିଶତ

ସ୍ୱାସ୍ଥ୍ୟଗତ ସମସ୍ୟାର ମୁକାବିଲା କରିବାକୁ ସମର୍ଥ ହୋଇପାରିଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଉଚ୍ଚତର ମାନବୀୟ ଅଭିବୃଦ୍ଧି ଉଚ୍ଚତର ବୈଷୟିକ ସାମର୍ଥ୍ୟର ଆଦୌ ଏକ ସିଧାସଳଖ ସମୀକରଣ ନୁହେଁ ।

## ଅସମାନତାର ସ୍ୱଷ୍ଟଚିତ୍ର :

ଥେରାପି ଉପରେ ୯୫ ହଜାର ଗବେଷଣା ପ୍ରବନ୍ଧ ମଧ୍ୟରୁ କେବଳ ମାତ୍ର ୧୮୨ଟି ପ୍ରବନ୍ଧ ଗ୍ରୀଷ୍ମମଣ୍ଡଳୀୟ (ଟ୍ରୋପିକାଲ) ରୋଗ ଉପରେ ପର୍ଯ୍ୟବେଶିତ । ସେହିପରି ୧୯୭୫ ମସିହାରୁ ୧୯୯୬ ମସିହା ମଧ୍ୟରେ ସମଗ୍ର ବିଶ୍ୱରେ ପ୍ରଚଳିତ ୧୨୨୩ଟି ନୂଆ ଔଷଧ ମଧ୍ୟରୁ କେବଳ ମାତ୍ର ୧୩ଟି ଔଷଧ ଗ୍ରୀଷ୍ମମଣ୍ଡଳୀୟ ରୋଗଗୁଡ଼ିକର ଚିକିତ୍ସା ପାଇଁ ଉଦ୍ଦିଷ୍ଟ ଥିଲା । ଶକ୍ତି ସମ୍ବନ୍ଧୀୟ ଗବେଷଣା ଓ ଉନ୍ନୟନ ପାଇଁ ବିଶ୍ୱର ପ୍ରାୟ ୯୫ ପ୍ରତିଶତ ସରକାରୀ ଅନୁଦାନ ଓ.ଇ.ସି.ଡ଼ି. ରାଷ୍ଟ୍ରମାନଙ୍କରେ ବିନିଯୋଗ ହୋଇଥିଲା ବେଳେ ଅତ୍ୟନ୍ତ ସ୍ୱଳ୍ପ ଅର୍ଥରାଶି ଅଣପାରମ୍ପରିକ ଶକ୍ତି ଉତ୍ସ ସଂକ୍ରାନ୍ତୀୟ ଗବେଷଣା ଓ ଉନ୍ନୟନରେ ବିନିଯୋଗ ହୋଇଥିଲା, ଯାହାର ଆବଶ୍ୟକତା ବିକାଶଶୀଳ ରାଷ୍ଟ୍ରମାନଙ୍କ ପାଇଁ ଅତ୍ୟନ୍ତ ଜରୁରୀ ଅଟେ । ଇଣ୍ଟରନେଟ ବ୍ୟବହାର କ୍ଷେତ୍ରରେ ଦୃଶ୍ୟପଟ ମଧ୍ୟ ଠିକ୍ ସେହିପରି । ପୁରାତନ ଆବିଷ୍କାର ଓ ଉଦ୍ଭାବନର diffusion ପ୍ରକ୍ରିୟାରେ ପରିଦୃଷ୍ଟ ହେଉଥିବା ଅସମାନତାର ରୂପରେଖ ମଧ୍ୟ ତଦ୍ରୂପ । ଉଦାହରଣ ସ୍ୱରୂପ ବିଦ୍ୟୁତ୍ ଶକ୍ତିର ଉଦ୍ଭାବନ ଓ ତଦ୍‌ଜନିତ ସରବରାହ ପ୍ରକ୍ରିୟା ସୃଷ୍ଟ ସମସ୍ୟା । ୧୮୩୧ ମସିହାରେ ବିଦ୍ୟୁତ୍ ଶକ୍ତିର ଉଦ୍ଭାବନ ହୋଇଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ବିଶ୍ୱର ଏକ ତୃତୀୟାଂଶ ଜନସାଧାରଣ ଏହି ବିଦ୍ୟୁତ୍ ଶକ୍ତିର ବ୍ୟବହାରରୁ ବଞ୍ଚିତ ହୋଇ ରହିଛନ୍ତି । ଦକ୍ଷିଣ ଏସିଆ ଓ ସବ୍-ସାହାରାନ୍ ଆଫ୍ରିକାରେ ବିଦ୍ୟୁତ୍ ଶକ୍ତିର ବ୍ୟବହାର ଓ.ଇ.ସି.ଡ଼ି ରାଷ୍ଟ୍ରମାନଙ୍କରେ ବ୍ୟବହୃତ ବିଦ୍ୟୁତ୍ ଶକ୍ତିର ଏକ ଦଶମାଂଶରୁ ମଧ୍ୟ କମ୍ ଅଟେ ।

ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସଂକ୍ରାନ୍ତୀୟ ଗବେଷଣାର ଚିତ୍ର ମଧ୍ୟ ଉପରୋକ୍ତ ଧାରାରୁ ବିଚ୍ୟୁତ ନୁହେଁ । ଓ.ଇ.ସି.ଡ଼ି. ରାଷ୍ଟ୍ରମାନେ ବିଶ୍ୱର ମାତ୍ର ୧୪ ପ୍ରତିଶତ ଜନସଂଖ୍ୟାର ଭାଗିଦାରୀ ହୋଇଥିଲାବେଳେ ୧୯୯୮ ମସିହାରେ ସମଗ୍ର ବିଶ୍ୱରେ ପଞ୍ଜୀକରଣ ହୋଇଥିବା ୮ ଲକ୍ଷ ୩୬ ହଜାର ପେଟେଣ୍ଟ ମଧ୍ୟରୁ ୮୬ ପ୍ରତିଶତ ଓ ୪ ଲକ୍ଷ ୩୭ ହଜାର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ସଂକ୍ରାନ୍ତୀୟ ପବ୍ଲିକେଶନ୍ସ ମଧ୍ୟରୁ ୮୫ ପ୍ରତିଶତର ଭାଗିଦାରୀ ଥିଲା ।

ଓ.ଇ.ସି.ଡ଼ି ରାଷ୍ଟ୍ରମାନେ ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ସେମାନଙ୍କର ରାଷ୍ଟ୍ରୀୟ ଅଭିବୃଦ୍ଧି ହାର (ଜି.ଡ଼ି.ପି)ର ୨.୪ ପ୍ରତିଶତ ଖର୍ଚ୍ଚ କରୁଥିବାବେଳେ ଦକ୍ଷିଣ ଏସୀୟ ରାଷ୍ଟ୍ରମାନେ ସେମାନଙ୍କର ରାଷ୍ଟ୍ରୀୟ ଅଭିବୃଦ୍ଧି ହାରର ୦.୬ ପ୍ରତିଶତ ଖର୍ଚ୍ଚ କରିଥାନ୍ତି । ଏଥିରୁ ଏହି ସିଦ୍ଧାନ୍ତରେ ଆମେ ଉପନୀତ ହୋଇପାରିବା ଯେ ନୂତନ ପ୍ରଯୁକ୍ତି ବିଦ୍ୟା ଓ ଉଚ୍ଚମୂଲ୍ୟ ଓ ମାନ ସମ୍ପନ୍ନ ବସ୍ତୁଗୁଡ଼ିକର ସୃଷ୍ଟି ସମ୍ଭବତଃ ଓ.ଇ.ସି.ଡ଼ି ରାଷ୍ଟ୍ରମାନଙ୍କରେ ଯେଭଳି ଭାବେ ହୋଇପାରୁଛି, ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କରେ ତାହା ସେଭଳି ଭାବେ ହୋଇପାରୁନାହିଁ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ହେଉଥିବା ଅସାଧାରଣ ବୈଜ୍ଞାନିକ କଳା ନୈପୁଣ୍ୟର ଏହା ଏକ ପ୍ରାକୃତିକ ଉପସଂହାର, ଯାହାକି ବିଶ୍ୱରେ ପ୍ରଥମଥର ପାଇଁ ୟୁରୋପ ମହାଦେଶରେ ହିଁ ସମ୍ଭବପର ହୋଇ ପାରିଥିଲା । ପୁନଶ୍ଚ ସେଠାରେ ସଂଗଠିତ ହୋଇଥିବା ସାମାଜିକ ବିପ୍ଳବ ବୈଜ୍ଞାନିକ କ୍ରିୟାକଳାପର ଜଡ଼କୁ ଆହୁରି ମଜଭୁତ କଲା । ଉପରୋକ୍ତ କାରଣ ଦ୍ୱୟରୁ ୟୁରୋପ ମହାଦେଶ ବିଶ୍ୱରେ ତା'ର ନିଜର ଏକ ସ୍ୱତନ୍ତ୍ର ଆସନ ସଂରକ୍ଷଣ କରି ରଖିପାରିଲା । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସଂକ୍ରାନ୍ତୀୟ ଗବେଷଣାର ମଙ୍ଗକୁ ନିଜେ ନିୟନ୍ତ୍ରିତ କଲା ।

ନୂତନ ଶିଳ୍ପସମୃଦ୍ଧ ରାଷ୍ଟ୍ର ବା ରାଷ୍ଟ୍ରଗୋଷ୍ଠୀ ଯଥା : ଦକ୍ଷିଣ କୋରିଆ, ହଂକଂ, ତାଇୱାନ, ସିଙ୍ଗାପୁର ଓ ମାଲେସିଆ ଆଦି ରାଷ୍ଟ୍ରମାନେ ଯେଉଁମାନେ କି ବିଜ୍ଞାନ ଓ ବୈଷୟିକ ଶିକ୍ଷା ତଥା ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ଲଗାତାର ଭାବେ ଯଥେଷ୍ଟ ପୁଞ୍ଜି ବିନିଯୋଗ କରି ଚାଲିଛନ୍ତି, ସେମାନଙ୍କ ଦ୍ୱାରା ଏହି ଅସମାନତା ପ୍ରକ୍ରିୟା ଧୀରେ ଧୀରେ ଓ ପର୍ଯ୍ୟାୟକ୍ରମେ ସୁଧୁରି ଚାଲିଛି । ୧୯୮୭ରୁ ୧୯୯୭ ମସିହା ମଧ୍ୟରେ ଦକ୍ଷିଣ କୋରିଆ ତା'ର ରାଷ୍ଟ୍ରୀୟ ଅଭିବୃଦ୍ଧି ହାରର ୨.୮ ପ୍ରତିଶତ ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ବ୍ୟୟ କରୁଥିଲା ବେଳେ ୧୯୮୦ରୁ ୧୯୯୭ ମଧ୍ୟରେ ଉଚ୍ଚଶିକ୍ଷା ପ୍ରତିଷ୍ଠାନମାନଙ୍କରେ ଛାତ୍ରମାନଙ୍କର ନାମଲେଖା ୧୫ ପ୍ରତିଶତରୁ ୬୮ ପ୍ରତିଶତକୁ ବୃଦ୍ଧି ଘଟିଥିଲା । ଏହି ନାମଲେଖାର ୩୪ ପ୍ରତିଶତ କେବଳ ବିଜ୍ଞାନର ବିଭିନ୍ନ ବିଭାଗ ଓ ଗଣିତ ଶାସ୍ତ୍ରରେ ହିଁ ଥିଲା । ଶିକ୍ଷାଦାନର ମାନ ଏଠାରେ ଅତ୍ୟନ୍ତ ଉଚ୍ଚକୋଟୀର ଏବଂ ଏପରିକି ଯେଉଁ ରାଷ୍ଟ୍ରମାନେ ଜୀବନ ଧାରଣ ମାନରେ ଦକ୍ଷିଣ କୋରିଆ ଠାରୁ ଅପେକ୍ଷାକୃତ ଉତ୍କୃଷ୍ଟତର, ସେମାନେ ମଧ୍ୟ ଦକ୍ଷିଣ କୋରିଆର ଅଭୂତପୂର୍ବ ସଫଳତାକୁ ଅତ୍ୟନ୍ତ ବିସ୍ମିତ ନୟନରେ ଚାହିଁ ହତବାକ୍ ହୋଇଯାଉଛନ୍ତି ।

'ହ୍ୟୁମାନ ଡେଭଲପମେଣ୍ଟ ରିପୋର୍ଟ' ପୁନଶ୍ଚ ମୁକ୍ତ କଣ୍ଠରେ ସ୍ୱୀକାର କରିଛି ଯେ ବିଶ୍ୱ ଅର୍ଥନୀତି ପ୍ରଯୁକ୍ତି ବିଦ୍ୟାଭିତ୍ତିକ ଇନୋଭେସନ କାର୍ଯ୍ୟକଳାପ ସହିତ ଜଡ଼ିତ

ଥିବା ନେତୃସ୍ଥାନୀୟ ବ୍ୟକ୍ତିବିଶେଷ ଓ ମାଲିକମାନଙ୍କୁ ସସମ୍ମାନେ ସମ୍ବର୍ଦ୍ଧିତ କରୁଛି । ଯଦି କୌଣସି ରାଷ୍ଟ୍ର ତା'ର ମୌଳିକ ଶାସନ ବ୍ୟବସ୍ଥାକୁ ଠିକଣା ବାଟରେ ପରିଚାଳିତ କରି ନ ପାରିଲା ଅଥବା ସମୃଦ୍ଧିର ରାଜରାସ୍ତାରେ ଗତି କରୁ କରୁ ଗୋଡ଼ ଖସି ଯାଇ ବିରାଟ ଗର୍ତ୍ତ ମଧ୍ୟରେ ପଡ଼ି ଛଟପଟ ହେଲା, ତେବେ ତାକୁ ଅତ୍ୟନ୍ତ କଠିନ ପରିଶ୍ରମ କରି ନଷ୍ଟ କରିଥିବା ସମୟତକ ଫେରେଇ ଆଣି ସମୃଦ୍ଧିର ରାଜପଥରେ ପୁଣି ପଥିକ ହେବାକୁ ପଡ଼ିବ । ଉଦାହରଣ ସ୍ୱରୂପ ଆମେରିକାରେ ମୁଣ୍ଡପିଛା ହାରାହାରି ମାସିକ ରୋଜଗାରର ୧.୨ ପ୍ରତିଶତ ମାସିକ ଇଣ୍ଟରନେଟ ଫିସ୍ ଦେବାକୁ ପଡ଼ିଥାଏ, ପରନ୍ତୁ ମାଦାଗାସକାରରେ ଏହା ୬୧୪ ପ୍ରତିଶତ, ନେପାଳରେ ୨୭୮ ପ୍ରତିଶତ ଏବଂ ବଙ୍ଗଳା ଦେଶରେ ୧୯୧ ପ୍ରତିଶତ ଅଟେ ।

## ଚଉହଦି ବିକାଶ :

ଅଭିବୃଦ୍ଧିର ହାର ଜ୍ୟାମିତିକ ଧାରାକୁ ଅନୁସରଣ କରିଥାଏ । ଅଭିବୃଦ୍ଧି ଯେତେ ଅଧିକ ହେବ, ସମୃଦ୍ଧିର ପରବର୍ତ୍ତୀ ପାହାଚ଼ ଆରୋହଣ କରିବା ପ୍ରକ୍ରିୟା ମଧ୍ୟ ସେତିକି କ୍ଷିପ୍ରତର ହେବ । ୨୦୦୧ ମସିହାରେ ପ୍ରତି ସେକେଣ୍ଡରେ ଗୋଟିଏ Cable ମାଧ୍ୟମରେ ଅସଂଖ୍ୟ ସୂଚ଼ନା ପଠାଯାଇ ପାରୁଛି, ଯାହାକି ୧୯୯୭ ମସିହାରେ ଇଣ୍ଟରନେଟ୍ ମାଧ୍ୟମରେ ପୂରା ଗୋଟିଏ ମାସ ଲାଗୁଥିଲା । ଆଉ ଏକ ଅଭୂତପୂର୍ବ ସାଫଲ୍ୟ ହେଲା ନାଟକୀୟ ଭାବେ 'ମୂଲ୍ୟ'ରେ ବହୁପରିମାଣରେ ହ୍ରାସ ପରିଲକ୍ଷିତ ହେବା । ଉଦାହରଣ ସ୍ୱରୂପ ଏକ ଟ୍ରିଲିୟନ ବିଟ୍ସ ସୂଚ଼ନାର ପ୍ରେରଣ ବୋଷ୍ଟନରୁ ଲସ୍ଆଞ୍ଜେଲେସକୁ ୧୯୭୦ ମସିହାରେ ଦେଢ଼ ଲକ୍ଷ ଆମେରିକୀୟ ଡଲାର୍ ପଡୁଥିବା ବେଳେ ଆଜି ତାହା ମାତ୍ର ୧୨ ସେଣ୍ଟସ୍, ୧୯୩୦ ମସିହାରେ ନ୍ୟୁୟର୍କରୁ ଲଣ୍ଡନକୁ ତିନିମିନିଟ୍ ଫୋନ୍ କଲ୍ ପାଇଁ ୩୦୦ ଆମେରିକୀୟ ଡଲାର (ଆଜିର ମୂଲ୍ୟ ହାରରେ) ପଡୁଥିବା ବେଳେ ଆଜି ତାହା ୨୦ ସେଣ୍ଟସରୁ ବି କମ୍ ଅଟେ । ୪୦ ପୃଷ୍ଠାର ଏକ ଦସ୍ତାବିଜ ଚିଲିରୁ କେନିଆକୁ ଇ-ମେଲ୍ କରିବା ପାଇଁ ଆଜି ୧୦ ସେଣ୍ଟସରୁ ବି କମ୍ ପଡୁଛି ।

ଉପରେ ବର୍ଣ୍ଣିତ ଚିତ୍ତାକର୍ଷୀୟ ଚିତ୍ର ପରିପ୍ରେକ୍ଷୀରେ ଆଜି ଭାରତ ଆସି କେଉଁଠି ଠିଆ ହୋଇଛି କହିପାରିବେ ? ଉତ୍ତରରେ ଆମେ ଏତିକି କହିପାରିବା ଯେ ଭାରତ ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ରମାନଙ୍କ ପରି ଆଜି ପରିଧିର ବହିର୍ଭାଗରେ ଘୂର୍ଣ୍ଣାୟମାନ । 'ଟେକ୍ନୋଲୋଜି ଆଚିଭମେଣ୍ଟ ଇଣ୍ଡେକ୍ସ'ରେ ଭାରତ ସଗୌରବେ ପଛ ଆସନ ଅଳଂକୃତ କରିଛି । ଦକ୍ଷିଣ କୋରିଆ, ସିଙ୍ଗାପୁର ଓ ଇଜରାଏଲ୍ ମଧ୍ୟ ଏହି ତାଲିକାରେ ଭାରତକୁ ପଛରେ ପକେଇ ଦେଇଛନ୍ତି ।

ଆମ ସମସ୍ତଙ୍କ ପାଇଁ ଏହା ଏକ ଖୁସିର ଖବର ଯେ ଭାରତର ଭାଗ୍ୟାକାଶର ଏକମାତ୍ର ଉଜ୍ଜ୍ୱଳ ଜ୍ୟୋତିଷ୍କ ହେଲା - 'ସୂଚନା ଓ ପ୍ରଯୁକ୍ତି ବିଦ୍ୟା', ଯାହାକି ଭାରତର ଗୌରବକୁ ଦିଗ୍‌ବିଦିକେ ପରିପ୍ରକାଶ କରୁଛି । ବାଙ୍ଗାଲୋର ସହର ହିଁ ଏହି ଅଭୂତପୂର୍ବ ଗୌରବର ପୂର୍ଣ୍ଣ ହକ୍‌ଦାର । ପୃଥିବୀର ୪୬ଟି ପ୍ରଯୁକ୍ତି ବିଦ୍ୟା କୈନ୍ଦ୍ରିକ ଇନୋଭେସନ କେନ୍ଦ୍ର ମଧ୍ୟରୁ ବାଙ୍ଗାଲୋରକୁ ୧୧ତମ ସ୍ଥାନର ମାନ୍ୟତା ମିଳିଛି । ଗୁଣାତ୍ମକ ମାନଦଣ୍ଡ ପରିପ୍ରେକ୍ଷୀରେ ବାଙ୍ଗାଲୋରକୁ ୧୩ ମାର୍କ ମିଳିଥିବାବେଳେ ଅଷ୍ଟିନ୍, ସାନଫ୍ରାନ୍‌ସିସ୍‌କୋ ଓ ତାଇପେଇ ସହର ମଧ୍ୟ ସେଇ ଏକା ନମ୍ବର ପାଇଛନ୍ତି । 'ହାଇ-ଟେକ୍‌ନୋଲୋଜି'ର ରପ୍ତାନି ସମଗ୍ର ରପ୍ତାନି କାରବାରର ମାତ୍ର ୫ ପ୍ରତିଶତ ହୋଇଥିଲାବେଳେ ସଫ୍ଟୱେୟାର ରପ୍ତାନି ୧୯୯୦ ମସିହାରେ ୧୫୦ ମିଲିୟନ ଡଲାର ଥିବାବେଳେ ୧୯୯୯ ମସିହାରେ ୪ ବିଲିୟନ ଡଲାର ଥିଲା । ଭାରତରେ ପ୍ରଯୁକ୍ତି ବିଦ୍ୟାଭିତ୍ତିକ ସଫଳତା ଅତ୍ୟନ୍ତ ଗୌଣ । ନାନାବିଧ କାରଣକୁ ଏଥିପାଇଁ ମଧ୍ୟ ଦାୟୀ କରାଯାଇପାରେ । ଏହା ଅନ୍ୟାନ୍ୟ ହ୍ୟୁମାନ ଡେଭେଲପମେଣ୍ଟ ଫ୍ୟାକ୍ଟର ସହ ଜଡ଼ିତ; ଯଥା : ଶିକ୍ଷାର ସୀମିତ ସଂପ୍ରସାରଣ, ବିଜ୍ଞାନ ଓ ବୈଷୟିକ ଶିକ୍ଷା କ୍ଷେତ୍ରରେ ମୁଣ୍ଡପିଛା ଅତ୍ୟନ୍ତ ସ୍ୱଳ୍ପ ଅର୍ଥଲଗାଣ ଏବଂ ଗବେଷଣା ଓ ଉନ୍ନୟନ କ୍ଷେତ୍ରରେ ଘରୋଇ ଉଦ୍ୟୋଗ ଓ ସରକାରୀ ଅର୍ଥଲଗାଣର ସ୍ୱଳ୍ପତା । ଏହିସବୁ କାରଣମାନ ମିଳିମିଶି ଭାରତର ସର୍ବାଙ୍ଗୀନ ଉନ୍ନତି ପଥରେ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି, ଯଦ୍ୱାରା ରାଷ୍ଟ୍ରୀୟ ଅର୍ଥନୈତିକ ଅଭିବୃଦ୍ଧିର ଫାଟକ ଉନ୍ମୋଚନ ହେବାରେ ବହୁ ବିଳମ୍ବ ପରିଲକ୍ଷିତ ହେଉଛି । ରାଷ୍ଟ୍ରୀୟ ଅର୍ଥନୈତିକ ଅଭିବୃଦ୍ଧିରେ ଏହି ଶିଥିଳତା ଭାରତର ପ୍ରଯୁକ୍ତି ବିଦ୍ୟା କୈନ୍ଦ୍ରିକ ବିକାଶ ସହ ଓତପ୍ରୋତଃ ଭାବେ ଜଡ଼ିତ ହୋଇଥିବାରୁ ପ୍ରଯୁକ୍ତି ବିଦ୍ୟା ତା'ର ପ୍ରକୃଷ୍ଟ ରୂପ ସମାଜ ପାଖରେ ପରିବେଷଣ କରି ପାରୁନାହିଁ ।

'ହ୍ୟୁମାନ ଡେଭେଲପମେଣ୍ଟ ରିପୋର୍ଟ' ଟେକ୍‌ନୋଲୋଜି ଗ୍ୟାପକୁ କିପରି ସଂକୋଚନ କରାଯାଇପାରିବ, ସେ ନେଇ କେତେକ ଉପାୟର ଅବତାରଣା ମଧ୍ୟ କରିଛି । ପୂର୍ବ ଏସୀୟ ରାଷ୍ଟ୍ର ଦକ୍ଷିଣ କୋରିଆ, ହଂକଂ ଏବଂ ସିଙ୍ଗାପୁରର ଉଦାହରଣ ଏଠାରେ ପ୍ରଣିଧାନଯୋଗ୍ୟ । ସେମାନେ କିପରି ପ୍ରଗତିର ରଥଚକ୍ରକୁ ଠିକଣା ରାସ୍ତାରେ ଟାଣି ନେଇ ଗନ୍ତବ୍ୟସ୍ଥଳରେ ପହଞ୍ଚି ପାରିଲେ, ସେଇ ଅଭୂତପୂର୍ବ ବୈଜ୍ଞାନିକ କଳା ଟିକକ ଆମକୁ ଆହରଣ କରିବାକୁ ପଡ଼ିବ । ସେମାନେ ଆଜି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଘୋଡ଼ା ପିଠିରେ ବସି ସଫଳ ରାଷ୍ଟ୍ରଭାବେ ବିଶ୍ୱରେ ଡିଣ୍ଡିମ ପିଟୁଛନ୍ତି । ସମୃଦ୍ଧ

ରାଷ୍ଟ୍ରମାନଙ୍କ ସହ ଉତ୍ତମ ଅର୍ଥନୈତିକ ଯୋଗସୂତ୍ର ସ୍ଥାପନା କରି ସେହି ରାଷ୍ଟ୍ରମାନଙ୍କର ବୈଜ୍ଞାନିକ କଳା କୌଶଳର ନାଡ଼ି ଚିପି ଏହି 'ଏସିଆନ ଟାଇଗର' ରାଷ୍ଟ୍ରମାନେ ପ୍ରବଳ ପରାକ୍ରମଶାଳୀ ଅର୍ଥନୈତିକ ମହାଶକ୍ତି ରୂପେ ଆଜି ପ୍ରତିଭାତ ହେଲେଣି । ''ଗବେଷଣା ଉନ୍ନୟନ କ୍ଷେତ୍ରରେ ପୁଞ୍ଜି ଲଗାଣ ପାଇଁ ସରକାରୀ ପ୍ରୋତ୍ସାହନ ନିତାନ୍ତ ଆବଶ୍ୟକ ଓ ଘରୋଇ ଉଦ୍ୟୋଗରେ ମଧ୍ୟ ସରକାରୀ ପ୍ରୋତ୍ସାହନର ଆବଶ୍ୟକତା ଯେ ଅପରିହାର୍ଯ୍ୟ'' - ଏହି ଏସୀୟ ରାଷ୍ଟ୍ରମାନଙ୍କର ସଫଳତାର କାହାଣୀ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରୁଛି ।

## ଗୁଣବତ୍ତା :

କୋରିଆ ସରକାର ଗବେଷଣା ଓ ଉନ୍ନୟନ ପାଇଁ ଟିକସ ମୁକ୍ତ ପୁଞ୍ଜି (Tax Exempt fund) ପ୍ରଦାନ କରିଥାଆନ୍ତି, ଯାହାକି ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଖର୍ଚ୍ଚ କରିବାକୁ ନିର୍ଦ୍ଦେଶ ଥାଏ । ଅନ୍ୟଥା ଟିକସ ଲାଗୁ ହୋଇଥାଏ । ପୁନଶ୍ଚ ଗବେଷଣା ପାଇଁ ବିଦେଶରୁ କୌଣସି ଯନ୍ତ୍ରପାତି କିଣାଗଲେ, ତା' ଉପରେ ଟ୍ୟାକ୍ସ କ୍ରେଡ଼ିଟ ତଥା ଟ୍ୟାକ୍ସ ଏବଂ ଡିଉଟିରେ କାଟ ପରି ସୁବିଧା ସୁଯୋଗ ମଧ୍ୟ ମିଳିଥାଏ । 'ହ୍ୟୁମାନ ଡେଭେଲପମେଣ୍ଟ ରିପୋର୍ଟ' ପୁନଶ୍ଚ ଉଲ୍ଲେଖ କରିଛି ଯେ କମ୍ପାନୀମାନେ ମର୍ଜର, ଆକ୍ୟୁଇଜିସନ, ଟେକ୍-ଓଭର ପ୍ରକ୍ରିୟା ଆଦି ମାଧ୍ୟମରେ ବଡ଼ ବଡ଼ ଉଦ୍ୟୋଗମାନ ସୃଷ୍ଟି କରି ସେମାନଙ୍କର ଆର୍ଥିକ ମେରୁଦଣ୍ଡକୁ ସୁଦୃଢ଼ କରୁଛନ୍ତି ଏବଂ ଅର୍ଥନୀତିକୁ ନିଜ କରାୟତ୍ତକୁ ଆଣିବା ପାଇଁ ସଦାସର୍ବଦା ଚେଷ୍ଟିତ ଅଛନ୍ତି । ସ୍ୟାମସଙ୍ଗ, ଦାଏଉ ଭଳି ବିଶାଳକାୟ ଉଦ୍ୟୋଗମାନେ ଏଭଳି ରାସ୍ତା ଅନୁସରଣ କରି ନିଜର ସ୍ଥିତିକୁ ବିଶ୍ୱ ବଜାରରେ ଜାହିର କରି ପାରିଛନ୍ତି ଓ ପ୍ରତିଯୋଗିତାମୂଳକ ବ୍ୟବସାୟରେ ସବୁତକ ବାଜି ମାରି ନେଉଛନ୍ତି । ଦିନ ପରେ ଦିନ ଅର୍ଥନୀତିରେ ବଳୀୟାନ ହୋଇ ଏଭଳି ସଫଳ ଉଦ୍ୟୋଗମାନେ ସରକାରଙ୍କଠାରୁ ଆବଶ୍ୟକୀୟ ଆର୍ଥିକ ସୁରକ୍ଷା ପାଇବାରେ ମଧ୍ୟ ପଛଘୁଞ୍ଚା ଦେଉନାହାନ୍ତି । ଦୀର୍ଘଦିନଧରି ସମସ୍ତ ସୁବିଧା ସୁଯୋଗ ଓ ଆର୍ଥିକ ସୁରକ୍ଷା ଉପଭୋଗ କରି ଆସୁଥିବା ଭାରତୀୟ ଘରୋଇ ଉଦ୍ୟୋଗମାନେ କାହିଁକି ସେଭଳି କୌଣସି ଚମତ୍କାରିତା ଦେଖେଇ ପାରୁନାହାନ୍ତି, ତାହା ଆଜି ପ୍ରଜ୍ଞାବାନ ପୁରୁଷ ଓ ବିଶେଷଜ୍ଞମାନଙ୍କ ପାଇଁ ଏକ ବିରାଟ ପ୍ରଶ୍ନବାଚୀ ହୋଇ ଠିଆ ହୋଇଛି । ଉଚ୍ଚଶିକ୍ଷାର ସୂଚୀପତ୍ର ଉଚ୍ଚ ମାନଯୁକ୍ତ ବୈଷୟିକ ଓ ବୈଜ୍ଞାନିକ କଳା କୌଶଳ ସମୃଦ୍ଧ ପାଠ୍ୟକ୍ରମକୁ ଆପଣେଇ ନେବା ଆଜି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପୁନଶ୍ଚ କୋରିଆର

ଉଦାହରଣ ନିଆଯାଉ - ସେଠାରେ ଶିକ୍ଷା ଘରୋଇ ପୁଞ୍ଜି ଲଗାଣ ଦ୍ୱାରା ପରିଚାଳିତ ହୋଇଥାଏ ଏବଂ ସେଠାକାର ଶିକ୍ଷକମାନେ ଓ.ଇ.ସି.ଡ଼ି. ରାଷ୍ଟ୍ର ଗୁଡ଼ିକର ଶିକ୍ଷକମାନଙ୍କ ଅପେକ୍ଷା ଅଧିକ ଦରମା ପାଇଥାନ୍ତି ।

ଆଉ ଏକ ଗୁରୁତ୍ୱପୂର୍ଣ୍ଣ କାରଣ ହେଲା, ଘରୋଇ ଉଦ୍ୟୋଗ ଓ ବିଶ୍ୱବିଦ୍ୟାଳୟ ମଧ୍ୟରେ ଅବା ଘରୋଇ ଉଦ୍ୟୋଗ ଓ ସରକାରୀ ଅନୁଦାନପ୍ରାପ୍ତ ଗବେଷଣା ଓ ଉନ୍ନୟନ ପ୍ରତିଷ୍ଠାନ ମଧ୍ୟରେ ଉତ୍ତମ ବନ୍ଧୁତ୍ୱ ସ୍ଥାପନ । ମୋବାଇଲ ଟେଲିଫୋନ କମ୍ପାନୀ ରାଜା 'NOKIA' ଫିନ୍‌ଲାଣ୍ଡର ଟାଂପିୟର ବୈଷୟିକ ବିଶ୍ୱବିଦ୍ୟାଳୟ ସହ ଗବେଷଣା ସମ୍ପର୍କ ସ୍ଥାପନ କରିଛି । ଆମେରିକାର ଆକାଡ଼େମିକ୍ ଗବେଷକମାନେ ସେମାନଙ୍କର ଗବେଷଣା ତତ୍ତ୍ୱଗୁଡ଼ିକୁ ରୁଟିନ୍‌ଭାବେ ପେଟେଣ୍ଟ କରିଦେଇଥାଆନ୍ତି ଏବଂ ନିଜର ଜ୍ଞାନଗାରିମାକୁ ପୁଞ୍ଜିକରି ଏମାନେ ନିଜେ ମଧ୍ୟ ଜଣେ ଜଣେ ଶିଳ୍ପୋଦ୍ୟୋଗୀ ଭାବେ ମୁଣ୍ଡଟେକି ଠିଆ ହୁଅନ୍ତି । ଅତ୍ୟନ୍ତ ଲୋକପ୍ରିୟ ଉଦାହରଣଟି ହେଲା ଆମେରିକାର ଏମ୍.ଆଇ.ଟି ପ୍ରତିଷ୍ଠାନର ଆକଷ୍ଟିକ୍ସ ବିଭାଗର ପ୍ରଫେସର ଶ୍ରୀ ଅମର ବୋଷ ଯାହାଙ୍କର ନାମ ବିଶ୍ୱରେ ହାଇ-ଟେକ୍ ଶବ୍ଦ ବ୍ୟବସ୍ଥା ସହ ଏକ ନିଶ୍ୱାସରେ ଉଚ୍ଚାରଣ କରାଯାଇଥାଏ ।

ଆଉ ଏକ ପ୍ରକ୍ଷେତ୍ର ଯହିଁରେ ଭାରତବର୍ଷ ନିଜର ରୂପ ଲାବଣ୍ୟ ଓ ଗୁଣାବଳୀକୁ ଜାଜ୍ୱଲ୍ୟମାନ କରି ପାରିଛି, ତାହାହେଲା - ଅତ୍ୟନ୍ତ ଉଚ୍ଚ ଶିକ୍ଷିତ ବୈଷୟିକ ମାନବ ସମ୍ବଳର ସୃଷ୍ଟି । ପରନ୍ତୁ ଏହା ରାଷ୍ଟ୍ର ପାଇଁ ଏକ ସୁବର୍ଣ୍ଣ ସୁଯୋଗ ହେବା ପରିବର୍ତ୍ତେ 'ବ୍ରେନ୍ ଡ୍ରେନ୍'ର ଶିକାର ହେଲା, ଯଦ୍ୱାରା ଭାରତବର୍ଷ ବର୍ଷକୁ ଦୁଇ ବିଲିୟନ ଆମେରିକୀୟ ଡଲାରର କ୍ଷତି ସହିଲା । କୋରିଆ ଓ ତାଇୱାନ୍ ଦିନେ ଠିକ୍ ଏହିପରି ସମସ୍ୟାର ସମ୍ମୁଖୀନ ହୋଇଥିଲେ । ପରନ୍ତୁ କୋରିଆ ତା'ର ଅର୍ଥନୀତିର ଅସାଧାରଣ ସୌନ୍ଦର୍ଯ୍ୟମୟ ଅଭିବୃଦ୍ଧି ଯୋଗୁଁ ଏହି ସମସ୍ୟାକୁ ସଠିକ୍ ରୂପେ ନିୟନ୍ତ୍ରଣ କରି ପାରିଲା ଓ ତାଇୱାନ ଏକ ଅନ୍ତଃରାଷ୍ଟ୍ରୀୟ ନେଟୱାର୍କ ମାଧ୍ୟମରେ ପୃଥିବୀର ବିଭିନ୍ନ ରାଷ୍ଟ୍ରରେ ବିଛେଇ ହୋଇ ପଡ଼ିଥିବା ତା'ର ଅଗଣିତ ଅଧିବାସୀଙ୍କ ସହଯୋଗ ଓ ସମନ୍ୱୟତା ଦ୍ୱାରା ଏହି ସମସ୍ୟାର ଜଡ଼କୁ ବଶୀଭୂତ କରି ପାରିଲା ।

**ସମାଜ**

**ତା- ୨୦.୮.୨୦୦୧**



# ଜ୍ଞାନ ସହସ୍ରାବ୍ଦରେ ଭାରତ

ନିକଟ ଅତୀତରେ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଭାରତର ସର୍ବଦିଗବ୍ୟାପ୍ତ ଅଭିବୃଦ୍ଧି ଓ ଉଜ୍ଜ୍ୱଳମୟ ଭବିଷ୍ୟତର କାମନା କରି ଏକବିଂଶ ଶତାବ୍ଦୀରେ ଭାରତବର୍ଷ କିପରି ଏକ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାକୁ ରୂପାନ୍ତରିତ ହୋଇପାରିବ, ସେ ନେଇ ଏକ ପଞ୍ଚସୂତ୍ରୀ କାର୍ଯ୍ୟକ୍ରମର ଶୁଭାରମ୍ଭ ଘୋଷଣା କରିଛନ୍ତି । ଆସୋସିଏସନ ଅଫ ଇଣ୍ଡିଆନ୍ ଚାମ୍ବର ଅଫ୍ କମର୍ସ ଆଣ୍ଡ ଇଣ୍ଡଷ୍ଟ୍ରି (Assocham) ଦ୍ୱାରା 'ଜ୍ଞାନ ସହସ୍ରାବ୍ଦରେ ଭାରତ' ଶିରୋନାମାରେ ଆୟୋଜିତ ମହାଅଧିବେଶନରେ ଉଦ୍‌ଘାଟନୀ ଅଭିଭାଷଣ ପ୍ରଦାନ କରି ଶ୍ରୀ ବାଜପେୟୀ କହିଲେ ଯେ ଏକ ଜ୍ଞାନାଶ୍ରୟୀ ସମାଜ ଆବିଷ୍କାରଧର୍ମୀ ନୂତନ ଦିଗନ୍ତ ଓ ଅନ୍ୱେଷାର ବାର୍ତ୍ତାବହ ହୋଇ ସୁସ୍ଥ ସାମାଜିକ ବିଧି ବ୍ୟବସ୍ଥା ଓ ପ୍ରଗତିର ପରିଚାୟକ ହୋଇଥାଏ । ଫଳତଃ ପ୍ରଗତିର ରାଜରାସ୍ତାରେ ପରିଦୃଷ୍ଟ ହେଉଥିବା ଯେ କୌଣସି ଚ୍ୟାଲେଞ୍ଜ ଓ ପ୍ରତିବନ୍ଧକର ସମ୍ମୁଖୀନ ହେବାପାଇଁ ତାହା ଆମକୁ ସିଂହ ସଦୃଶ ବଳୀୟାନ କରାଇଥାଏ । ସେହି ପଞ୍ଚସୂତ୍ରୀ କାର୍ଯ୍ୟକ୍ରମଗୁଡ଼ିକ ହେଲା :- (୧) ଏକ ଶିକ୍ଷାନୁରାଗୀ ସମାଜ (ଲର୍ଣ୍ଣିଂ ସୋସାଇଟି)ର ବିକାଶ କଳ୍ପେ ଆବଶ୍ୟକୀୟ ଶିକ୍ଷା ବ୍ୟବସ୍ଥାର ପ୍ରଚଳନ । (୨) ବିଶ୍ୱସ୍ତରୀୟ ସଂଯୋଗ (ଗ୍ଲୋବାଲ ନେଟ୍‌ୱାର୍କିଂ) (୩) ସରକାର, ଶିଳ୍ପ ଓ ଶିକ୍ଷା ବ୍ୟବସ୍ଥା ମଧ୍ୟରେ ସର୍ବୋତ୍କୃଷ୍ଟ ଗତିଶୀଳ ସମ୍ପର୍କ ସ୍ଥାପନା କରି ରାଷ୍ଟ୍ରୀୟ ନୀତିନିୟମ ନିର୍ଦ୍ଧାରଣ ଓ ତା'ର କାର୍ଯ୍ୟକାରୀତା (୪) ସୂଚନା ପ୍ରଯୁକ୍ତି ବିଦ୍ୟା, ଦୂରସଞ୍ଚାର, ଜୈବ ପ୍ରଯୁକ୍ତି ବିଦ୍ୟା, ଡ୍ରଗ ଡିଜାଇନ, ଆର୍ଥିକ ସେବା ଓ ଶିଳ୍ପ ପ୍ରତିଷ୍ଠାନର ପରିଚାଳନା ଆଦି କ୍ଷେତ୍ରରେ ରାଷ୍ଟ୍ରୀୟ ବୌଦ୍ଧିକ ପୁଞ୍ଜି ଓ ଦକ୍ଷତାର ସୁବିନିଯୋଗ (୫) କ୍ଷମତା ଓ ସୁଯୋଗର ସଦୁପଯୋଗ ମାଧ୍ୟମରେ ଆର୍ଥିକ ଓ ବ୍ୟବସାୟିକ କ୍ଷେତ୍ରରେ ସୁଦୂରପ୍ରସାରୀ ଅନ୍ତଃରାଷ୍ଟ୍ରୀୟ ଓ ଆନ୍ତଃନିଗମ ସଂଯୋଗ ସ୍ଥାପନ ।

ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟିକୋଣରେ ଉପରୋକ୍ତ ଏଜେଣ୍ଡାଗୁଡ଼ିକର ସଫଳ କାର୍ଯ୍ୟକାରୀତା ରାଷ୍ଟ୍ରୀୟ ଦକ୍ଷତାର ମୂଲ୍ୟାୟନ, ପରିସ୍ଫୁଟନ ଓ ଅଭିବୃଦ୍ଧିରେ ନିଶ୍ଚିତ ରୂପେ ଆଶାନୁରୂପ ସହାୟକ ହୋଇପାରିବ ଯଦ୍ୱାରା ଭାରତବର୍ଷ ଜ୍ଞାନ ସହସ୍ରାବ୍ଦରେ ଏକ ଜ୍ଞାନ ମହାଶକ୍ତି (ନଲେଜ୍ ସୁପର୍ ପାୱାର୍) ରୂପେ ଉଭାସିତ ହେବ । ବିଶେଷଜ୍ଞମାନେ ଭବିଷ୍ୟବାଣୀ ଶୁଣେଇଲେଣି ଯେ ଏହି ସହସ୍ରାବ୍ଦ, ଦୁଇଟି ଏସୀୟ ମହାଶକ୍ତିଙ୍କ ସହାସ୍ରାବ୍ଦ ହେବ ଓ ତନ୍ମଧ୍ୟରୁ ଭାରତବର୍ଷ ଗୋଟିଏ । ଏକ ଜ୍ଞାନାଶ୍ରୟୀ ସମାଜର ସର୍ଜନା ପାଇଁ ଦକ୍ଷତା, ପ୍ରଯୁକ୍ତି ବିଦ୍ୟା ଓ ଶିକ୍ଷାନୁରାଗର ପ୍ରଭୂତ ଆବଶ୍ୟକତା ସଙ୍ଗେ ସଙ୍ଗେ ପ୍ରଚୁର ପରିମାଣର ଆର୍ଥିକ ପୁଞ୍ଜିର ବିନିଯୋଗ ମଧ୍ୟ ହୋଇଥାଏ । ଏପରି ଏକ ଜ୍ଞାନାଶ୍ରୟୀ ସମାଜର ଚାରିତ୍ରିକ ବୈଶିଷ୍ଟ୍ୟ କିପରି ହୋଇଥାଏ, ଚାଲନ୍ତୁ ତା'ର ପର୍ଯ୍ୟାଲୋଚ଼ନା କରିବା :

(୧) ଜ୍ଞାନ ଓ ସୂଚ଼ନା ମୁଖ୍ୟ ଅର୍ଥଉପାର୍ଜନକାରୀ ଶକ୍ତିରୂପେ ପ୍ରତିଭାତ ହୋଇଥାଆନ୍ତି ।

(୨) ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଦ୍ରୁତତର ପରିବର୍ତ୍ତନ ।

(୩) ଗବେଷଣା ଓ ଉନ୍ନୟନରେ ମାତ୍ରାଧିକ ପୁଞ୍ଜି ଲଗାଣ ।

(୪) ସୂଚ଼ନା ଓ ସଂଚ଼ାର ପ୍ରଯୁକ୍ତିବିଦ୍ୟାର ବହୁଳ ବ୍ୟବହାର ।

(୫) ଜ୍ଞାନ ଭିତ୍ତିକ ବ୍ୟବସାୟର ଅଭିବୃଦ୍ଧି ।

(୬) ବହୁଳ କମ୍ପ୍ୟୁଟରୀକରଣ ଦ୍ୱାରା ବିଶ୍ୱ ସହଯୋଗୀତା ଓ ସମନ୍ୱୟତା ପ୍ରତିଷ୍ଠା ତଥା ମିଳିମିଶି କାମ କରିବାର ଉତ୍ତମ ସଂସ୍କୃତି ସ୍ଥାପନ ।

(୭) କୁଶଳୀ କର୍ମଶକ୍ତିରେ ଉତ୍ତରୋତ୍ତର ଅଭିବୃଦ୍ଧି ।

ଜ୍ଞାନାଶ୍ରୟୀ ସମାଜର ଚିନ୍ତାଧାରା ସମଗ୍ର ବିଶ୍ୱରେ ଏବେ ଏପରି ଭାବେ ବ୍ୟାପିଗଲାଣି ଯେ ଏହାକୁ ଏକ 'ଜ୍ଞାନ ବିପ୍ଳବ' ବୋଲି ଚିତ୍ରିତ କରାଯାଉଛି । ଏହି ବିପ୍ଳବକୁ ପରିଚ଼ାଳିତ କରୁଥିବା କେତେକ ମୁଖ୍ୟ କାରଣର ଆଲୋଚ଼ନା କରାଯାଉ :-

(୧) ବିଶ୍ୱ ଅର୍ଥନୈତିକ ଜଗତୀକରଣ ଆନ୍ତରାଷ୍ଟ୍ରୀୟ ପ୍ରତିଯୋଗିତାର ବୀଜରୋପଣ କରିବା ସଙ୍ଗେ ସଙ୍ଗେ ଜ୍ଞାନର ଏକତ୍ରୀକରଣ ମାଧ୍ୟମରେ ପ୍ରଗତିର ରାଜରାସ୍ତାରେ ଲମ୍ବା ଦୌଡ଼ ପକେଇ ଆଗକୁ ଆଗକୁ ମାଡ଼ି ଚାଲିବା ପାଇଁ ଉତ୍ସାହ ପ୍ରଦାନ କଲା ।

(୨) ଜ୍ଞାନର ଆହରଣ, ଜ୍ଞାନର ଭାଗିଦାରୀ ଓ ଜ୍ଞାନର ବ୍ୟବହାର ପାଇଁ ଆବଶ୍ୟକୀୟ ପ୍ରଯୁକ୍ତି ବିଦ୍ୟା ଦ୍ରୁତ ଗତିରେ ପରିବର୍ତ୍ତନଶୀଳ ହୋଇ ଚାଲିଛି, ଉଦାହରଣ ସ୍ୱରୂପ କମ୍ପ୍ୟୁଟର ଓ ଇଣ୍ଟରନେଟ ।

(୩) ଜ୍ଞାନର ସୃଷ୍ଟିରେ ଗବେଷଣା, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଦିନପରେ ଦିନ ଏହାର ସାହଚର୍ଯ୍ୟରେ ବ୍ୟବସାୟୀକ, ସାମାଜିକ ଓ ପରିବେଶଜନିତ ସମସ୍ୟାର ସମାଧାନ ସମ୍ଭବପର ହୋଇଥାଏ ।

(୪) ଜ୍ଞାନର ଅଭିବୃଦ୍ଧି ଗାଣିତିକ ସୂତ୍ରାନୁଯାୟୀ ସଦା ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ ହିଁ ହୋଇଥାଏ, ପରନ୍ତୁ ଶିଳ୍ପ ସମାଜର କଞ୍ଚାମାଲ ଉଦାହରଣ ସ୍ୱରୂପ ଜୀବାଶ୍ମ (ଫସିଲ ଫୁଏଲ୍) କେବଳ ଥରେ ମାତ୍ର ବ୍ୟବହାରରେ ଲାଗିରହିଥାଏ । ଜ୍ଞାନରୁ ଜ୍ଞାନ ସୃଷ୍ଟି ହୋଇ ମହାଜ୍ଞାନର ସମୁଦ୍ର ସୃଷ୍ଟି କରିଥାଏ । ଜ୍ଞାନର ସୃଷ୍ଟି ଓ ଅଭିବୃଦ୍ଧିର ଧାରା ଅସୀମ ଓ ଏହା କାଳଚକ୍ରର ବିବର୍ତ୍ତନବାଦରେ ତ୍ୱରାନ୍ୱିତ ହୋଇଥାଏ ।

ଭାରତବର୍ଷ ଏବେ ଏକ ସାମାଜିକ ପରିବର୍ତ୍ତନର ଘଡ଼ିସନ୍ଧି ମୁହୂର୍ତ୍ତ ଦେଇ ଗତି କରୁଛି । ଆମର ସମସ୍ତ କର୍ମ ଓ କର୍ମଲବ୍ଧ ଅର୍ଥ ଓ ଫଳାଫଳ ନୂତନ ଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଦ୍ୱାରା ବହୁଳ ଭାବେ ପରିବର୍ତ୍ତିତ ହେବ । ଜ୍ଞାନକୁ ଅନ୍ୟାନ୍ୟ ସମ୍ପତ୍ତି ସହ ତୁଳନା କରାଯାଏନା । ଜ୍ଞାନର ନିଜସ୍ୱତା ହିଁ ତା'ର ସମ୍ପତ୍ତି । ପ୍ରତ୍ୟେକ ନୂତନ ଉଦ୍ଭାବନ ଓ ଆବିଷ୍କାର ଅନ୍ୟ ଏକ ଉଦ୍ଭାବନ ଓ ଆବିଷ୍କାର ପାଇଁ ପଥ ଉନ୍ମୁକ୍ତ କରିଦେଇଥାଏ । ଜ୍ଞାନର ସାହଚର୍ଯ୍ୟରେ ଏକ ନିର୍ଦ୍ଦିଷ୍ଟ ସମୟଭିତ୍ତିକ ପରିଯୋଜନା ମାଧ୍ୟମରେ ଏକ ସର୍ବାଙ୍ଗ ସୁନ୍ଦର ସମାଜ ବ୍ୟବସ୍ଥାର ସର୍ଜନା ଆଜିର ଏକ ଜରୁରୀ ଆବଶ୍ୟକତା ହୋଇପଡ଼ିଛି ।

ଭାରତର ରସାୟନ ବିଜ୍ଞାନ ନଗରୀ ପୁନାଠାରେ ଅନୁଷ୍ଠିତ ହୋଇଥିବା ୮୭ତମ ବିଜ୍ଞାନ କଂଗ୍ରେସ ଅଧିବେଶନରେ ସଭାପତିତ୍ୱ କରି ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦର ମହାନିର୍ଦ୍ଦେଶକ ତଥା କେନ୍ଦ୍ର ସରକାରଙ୍କ ବିଜ୍ଞାନୀ ଓ ଶିଳ୍ପ ଗବେଷଣା ବିଭାଗର ସଚିବ ଡକ୍ଟର ରଘୁନାଥ ଆନନ୍ଦ ମାସେଲକର ଏହି ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାର ମୂଳତତ୍ତ୍ୱ ଉପରେ ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା କରିଥିଲେ । ତାଙ୍କ କହିବାନୁଯାୟୀ ସଂପ୍ରତି ଆମେ ଜ୍ଞାନ ବିପ୍ଳବର ପୁରୋଧା ହୋଇ ଜ୍ଞାନକୈନ୍ଦ୍ରିକ ବ୍ୟବସାୟ ଓ ଶିଳ୍ପ ଆଡ଼କୁ ଦ୍ରୁତ ଗତିରେ ମୁହେଁଇ ଚାଲିଛେ । ଆନ୍ତର୍ଜାତିକ ବାଣିଜ୍ୟ ବ୍ୟବସାୟ ତଦନୁଯାୟୀ ତା'ର ରୂପ ଓ ପରିପାଟୀରେ ନାଟକୀୟ ପରିବର୍ତ୍ତନ

ଆଣୁଛି । ଯେଉଁ ବାଣିଜ୍ୟ ବ୍ୟବସାୟ ଏକଦା ମୌଳିକ ପଦାର୍ଥ, ଯଥା: ଲୌହ ଆଦି ଖଣିଜ ପଦାର୍ଥ ଦ୍ୱାରା ବହୁଳଭାବେ ନିୟନ୍ତ୍ରିତ ହେଉଥିଲା, ତାହା ଆଜି ଜ୍ଞାନଭିତ୍ତିକ ପଦାର୍ଥଗୁଡ଼ିକ ଦ୍ୱାରା ସମ୍ପୂର୍ଣ୍ଣ ରୂପେ କର୍ତ୍ତୃତ୍ୱାଧୀନ ହୋଇଗଲାଣି ।

ଏକବିଂଶ ଶତାବ୍ଦୀରେ ଭାରତ ବିଶ୍ୱରେ କିପରି ଏକ ପ୍ରମୁଖ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାକୁ ସଫଳଭାବେ ରୂପାନ୍ତରିତ ହୋଇପାରିବ, ସେ ନେଇ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ବିଭାଗର ଅତ୍ୟନ୍ତ ଗୁରୁଦାୟିତ୍ୱ ରହିଛି । ଏ କ୍ଷେତ୍ରରେ ଏକ ଜାତୀୟ ଆଭିମୁଖ୍ୟ, ଦିଗ୍‌ଦର୍ଶନ ଓ ଚେତନାର ଅଭ୍ୟୁଦୟ ଅନସ୍ୱୀକାର୍ଯ୍ୟ । ଆବିଷ୍କାର ଓ ଉଦ୍ଭାବନଧର୍ମୀ ମାନସିକତାର ସଞ୍ଚାର, ଅର୍ଥନୀତି, ପରିବେଶ ଓ ସମାଜ ବିଜ୍ଞାନ ଆଦିକୁ ଗୋଟିଏ ଗୋଟିଏ ଲକ୍ଷ୍ୟ ରଖି ସେ ଦିଗରେ ଦ୍ରୁତ ଅଗ୍ରଗତି ଆମର କାମ୍ୟ ହେବା ଉଚିତ । ଯେହେତୁ ବହୁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାଭିତ୍ତିକ ପରିଯୋଜନାମାନ ଦୀର୍ଘସୂତ୍ରୀ କାର୍ଯ୍ୟକ୍ରମ ଉପରେ ପର୍ଯ୍ୟବେଶିତ, ତେଣୁ ଜ୍ଞାନକୈନ୍ଦ୍ରିକ ସମାଜ ବ୍ୟବସ୍ଥାର ସର୍ଜନାକୁ ମୂଳରୁ ହିଁ ମଜଭୂତ କରାଇବାକୁ ପଡ଼ିବ । ରାଷ୍ଟ୍ରୀୟ ଯୋଜନା ଓ ତହିଁର କାର୍ଯ୍ୟଶୈଳୀ ଏଠାରେ ପ୍ରଣିଧାନଯୋଗ୍ୟ ।

ରାଷ୍ଟ୍ରୀୟ ବୈଜ୍ଞାନିକ ଦିଗ୍‌ଦର୍ଶନକୁ ଆଗଙ୍ଗା କୁମାରୀକା ଗୋଟିଏ ରଜ୍ଜୁରେ ଆବଦ୍ଧ କରି ସମାଜର ସର୍ବାଙ୍ଗୀନ ମଙ୍ଗଳକଳ୍ପେ ତା'ର ପ୍ରକୃଷ୍ଟ ବିନିଯୋଗ ଦ୍ୱାରା ହିଁ ଭାରତବର୍ଷରେ ଏକ ଜ୍ଞାନାଶ୍ରୟୀ ସମାଜର ସର୍ଜନା ସମ୍ଭବପର ହୋଇପାରିବ । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ହେଉଥିବା ଅର୍ଥ ଲଗାଣରୁ କିପରି ରାଷ୍ଟ୍ରକୁ ସୁଫଳ ମିଳିପାରିବ, ତାହା ସମସ୍ତଙ୍କ ଧ୍ୟେୟ ହେବା ଉଚିତ । ବିଜ୍ଞାନର ଚାରୋଟି ମୁଖ୍ୟ ଲକ୍ଷ୍ୟ- ଇନୋଭେସନ, ସାମାଜିକ ଅଭ୍ୟୁଦୟ, ସୁସ୍ଥ ପରିବେଶ ଓ ଅର୍ଥନୈତିକ ଆତ୍ମନିର୍ଭରଶୀଳତା ପରସ୍ପରର ପରିପୂରକ । ଏକ ଜ୍ଞାନକେନ୍ଦ୍ରିକ ସମାଜ ବ୍ୟବସ୍ଥାର ସର୍ଜନାରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅବଦାନ ଅନନ୍ୟ ସାଧାରଣ । ଆମେ ବିଜ୍ଞାନର ଏହି ଚାରୋଟି ମୁଖ୍ୟ ଆଭିମୁଖ୍ୟକୁ ସମଗୁରୁତ୍ୱ ଦେଇ ନୂତନ ଜ୍ଞାନାଶ୍ରୟୀ ରାଷ୍ଟ୍ର ନିର୍ମାଣ ଯଜ୍ଞରେ ତା'ର ସୁବିନିଯୋଗ କରିବା ଏକାନ୍ତ ଆବଶ୍ୟକ । ବିଜ୍ଞାନର ଏ ଚାରୋଟି ମୁଖ୍ୟ ଆଭିମୁଖ୍ୟ ଉପରେ ସମ୍ୟକ୍ ଆଲୋଚନା କରାଯାଉ -

## (୧) ଇନୋଭେସନ ଲକ୍ଷ୍ୟ :

ଭାରତବର୍ଷର ଆବିଷ୍କାର ଓ ଉଦ୍ଭାବନଧର୍ମୀ କ୍ଷମତାରେ ଅଭିବୃଦ୍ଧି ଆଣିବା ପାଇଁ ଜ୍ଞାନର ସୃଷ୍ଟିକୁ ତ୍ୱରାନ୍ୱିତ କରିବାକୁ ପଡ଼ିବ ତଥା ମାନବ ସମ୍ବଳ, ସାମାଜିକ ପୁଞ୍ଜି,

ଶିକ୍ଷା ବ୍ୟବସ୍ଥା ଓ କମ୍ପ୍ୟୁଟରୀକରଣରେ ମଧ ଆଶାନୁରୂପ ଅଗ୍ରଗତି ଆଣିବାକୁ ପଡ଼ିବ । ଭାରତବର୍ଷରେ ନୂତନ ଯୁବ ପିଢ଼ିଙ୍କ ମନ ରାଇଜରେ ଆବିଷ୍କାର ଓ ଉଦ୍ଭାବନଧର୍ମୀ ମାନସିକତା ସୃଷ୍ଟି କରିବାରେ ଏକ ସଂସ୍କୃତି ସ୍ଥାପନା କରିବା ଆଜି ସର୍ବାଦୌ ଆବଶ୍ୟକ ହୋଇ ପଡ଼ିଛି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ନୂତନ ଜ୍ଞାନର ସୃଷ୍ଟି କରିବା ସଙ୍ଗେ ସଙ୍ଗେ ମାନବ ସମ୍ବଳର କ୍ଷମତା ଓ ଦକ୍ଷତାରେ ଅଭିବୃଦ୍ଧି ଆଣିବା; କମ୍ପ୍ୟୁଟରୀକରଣ ପ୍ରକ୍ରିୟାରେ ଦ୍ରୁତ ବିକାଶ ତଥା ଏକ ବ୍ୟବସାୟୀକ ଅନୁରାଗର ସାମାଜିକ ବାତାବରଣ ସୃଷ୍ଟି କରିବାରେ ସହାୟକ ହେବା ଉଚିତ, ଯଦ୍ୱାରା ଭାରତବର୍ଷ ବିଶ୍ୱ ଜ୍ଞାନଯୁଗରେ ସଂପୂର୍ଣ୍ଣ ରୂପେ ଅଂଶ ଗ୍ରହଣ କରିପାରିବ ।

## (୨) ଅର୍ଥନୈତିକ ଲକ୍ଷ୍ୟ :

ଭାରତୀୟ ଶିଳ୍ପ ସଂସ୍ଥାମାନଙ୍କର ସାମଗ୍ରୀକ ବିକାଶ, ଉତ୍ତରୋତ୍ତର ଉନ୍ନତି ଓ ପ୍ରତିଯୋଗିତା ପାଇଁ ଜ୍ଞାନର ଅବଦାନକୁ ଦିନ ପରେ ଦିନ ସମୃଦ୍ଧିତ କରିବାକୁ ପଡ଼ିବ, ଯଦ୍ୱାରା ନୂତନ ପ୍ରଣାଳୀ, ପଦାର୍ଥ, ବ୍ୟବସ୍ଥା ଓ ସେବା କ୍ଷେତ୍ରରେ ଯଥାର୍ଥ ଅଭିବୃଦ୍ଧି ହାସଲ କରାଯାଇ ପାରିବ । ଦ୍ୱିତୀୟ ଲକ୍ଷ୍ୟଟି ହେଲା, ନୂତନ ଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାଭିତ୍ତିକ ପରିବର୍ତ୍ତନକୁ ଆବିଷ୍କାର ଓ ଉଦ୍‌ବୋଧନଧର୍ମୀ ମାନସିକତାର ସୃଷ୍ଟି, ଉତ୍ପାଦନରେ ଅଭିବୃଦ୍ଧି ଓ ଅଧିକ ମୂଲ୍ୟଯୁକ୍ତ ପଦାର୍ଥର ପ୍ରସ୍ତୁତିକରଣରେ ଉପଯୁକ୍ତ ବିନିଯୋଗ ଦ୍ୱାରା ଅର୍ଥନୀତି ଅଧିକ ସୁସ୍ଥ ଓ ସୁଦୃଢ଼ ହୋଇପାରିବ ।

## (୩) ପରିବେଶ ଜନିତ ଲକ୍ଷ୍ୟ :

ଏକ ସୁସ୍ଥ ଓ ସୃଜନଧର୍ମୀ ପରିବେଶର ସଂସ୍ଥାପନ ପାଇଁ ପରିବେଶ ସମ୍ବନ୍ଧୀୟ ଯଥେଷ୍ଟ ଜ୍ଞାନର ଉପଲବ୍ଧୀକରଣ ଓ ବ୍ୟବହାର ସର୍ବାଦୌ ପ୍ରଣିଧାନ ଯୋଗ୍ୟ । ଏକ ପ୍ରକୃତି ଓ ମାନବଧର୍ମୀ ପରିବେଶର ରଚନା ପାଇଁ ଜୀବ ଜଗତ, ଭୌତିକ ଜଗତ, ସାମାଜିକ ବିଧି ବ୍ୟବସ୍ଥା ତଥା ଅର୍ଥନୈତିକ ଓ ସାଂସ୍କୃତିକ କ୍ରିୟାକଳାପମାନର ପ୍ରଭାବ ଅନନ୍ୟ ସାଧାରଣ । ପରିବେଶ ଓ ନାନାବିଧ ପ୍ରକ୍ରିୟା ସମ୍ବନ୍ଧୀୟ ଜ୍ଞାନ କିପରି ପରିବେଶର ଗୁଣାତ୍ମକମାନ ଓ ଗୁରୁତ୍ୱ ବୃଦ୍ଧିରେ ଅତ୍ୟନ୍ତ ସହାୟକ ହୋଇଥାଏ, ତାହା ଜାଣିବା ଆମର ଅତ୍ୟନ୍ତ ଜରୁରୀ । ଏକ ପରିବେଶ ବନ୍ଧୁ ସୁସ୍ଥ ସମାଜ ବ୍ୟବସ୍ଥାର ସର୍ଜନା ସରକାରଙ୍କର ସୁସ୍ଥ ପରିବେଶ ପ୍ରତିଷ୍ଠା ପ୍ରତି ଥିବା ଅନୁରାଗର ଏକ ଜ୍ୱଳନ୍ତ ଉଦାହରଣ ।

## (୪) ସାମାଜିକ ଲକ୍ଷ୍ୟ :

ସାମାଜିକ, ଜୀବଜଗତ, ପରିବେଶ, ସାଂସ୍କୃତିକ, ଆର୍ଥିକ ଓ ଭୌତିକ ଦୁନିଆର ସବିଶେଷ ଜ୍ଞାନ ଆହରଣ ଦ୍ୱାରା ଏକ ସର୍ବାଙ୍ଗ ସୁନ୍ଦର ଭାରତବର୍ଷର ସର୍ଜନା ସମ୍ଭବପର ହୋଇପାରିବ, ଯଦ୍ୱାରା ଦେଶ ନିଜର ଆପଣାର ପଣିଆକୁ ବଜେଇ ରଖିବା ସହ ନିଜର ସ୍ଥିତିକୁ ସୁଚିହ୍ନିତ କରିବା ସଙ୍ଗେ ସଙ୍ଗେ ବିଶ୍ୱ ସହଯୋଗ ଓ ସଦ୍‌ଭାବନାର ହାତ ମଧ ବଢ଼େଇ ପାରିବ । ଜ୍ଞାନର ଏହି ବିସ୍ଫୋରଣ ଦ୍ୱାରା ସମାଜର ନ୍ୟୂନରୁ ନ୍ୟୂନତମ ଦରିଦ୍ର ମଳିମୁଣ୍ଡିଆ ଦୀନ ଦୁଃଖି ଖଟିଖିଆ ମଣିଷଟି ଯେ ପର୍ଯ୍ୟନ୍ତ ଉପକୃତ ନ ହୋଇଛି, ସେ ପର୍ଯ୍ୟନ୍ତ ଜ୍ଞାନ ବାରିଧିର ଉତ୍‌କର୍ଷତା ପ୍ରତିପାଦିତ ହୋଇପାରିବନାହିଁ । ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଦେଶର ଅଗଣିତ ନାଗରିକମାନଙ୍କର ମୁହଁରେ ହସ ଟିକେ ଯଦି ନ ଫୁଟି ପାରିଲା, ତେବେ ଜ୍ଞାନ ଯୁଗର ଯଥାର୍ଥତା ବା ରହିଲା କେଉଁଠୁ ?

ଉପରେ ବର୍ଣ୍ଣିତ ଏହି ଚାରୋଟି ଆଭିମୁଖ୍ୟର ଯଥାର୍ଥ ପାଳନ ଜ୍ଞାନ ସହସ୍ରାବ୍ଦରେ ଭାରତବର୍ଷକୁ ଠିକଣା ଯାଗାରେ ପହଞ୍ଚେଇ ଦେବ । ଭାରତୀୟମାନେ ବିଶ୍ୱ ପ୍ରଗତିର ଚାବିକାଠିକୁ ନିଜ ହାତମୁଠାରେ ଧରିବେ ଓ ଜ୍ଞାନ ଯଜ୍ଞର ପୁରୋଧା ସାଜିବେ ବୋଲି ବିଶ୍ୱରେ ଚହଳ ପଡ଼ିଗଲାଣି । ସାମଗ୍ରୀକ ବିଶ୍ୱସାଫଲ୍ୟର ଅଧିକାରୀ ଭାରତୀୟମାନେ ହିଁ ହେବେ ବୋଲି ଚାରିଆଡ଼େ ହୁରି ପଡ଼ିଲାଣି ।

ଭାରତବର୍ଷକୁ ଏକ ଜ୍ଞାନକୈନ୍ଦ୍ରିକ ସମାଜ ବ୍ୟବସ୍ଥାକୁ ରୂପାନ୍ତରିତ କରାଇବାକୁ ହେଲେ ଦେଶରେ ଜ୍ଞାନର ସୁପରିଚାଳନା ଏକାନ୍ତ ଆବଶ୍ୟକ । ଜ୍ଞାନର ସୁପରିଚାଳନା ପାଇଁ ଏକ ରାଷ୍ଟ୍ରୀୟ କାର୍ଯ୍ୟକ୍ରମ ଏବେ ହାତକୁ ନିଆଯାଇଛି, ଯାହାର ପୁରୋଧା ଓ ପ୍ରାଣକର୍ତ୍ତା ସ୍ୱୟଂ କେନ୍ଦ୍ରସରକାରଙ୍କ ମୁଖ୍ୟ ବୈଜ୍ଞାନିକ ଉପଦେଷ୍ଟା ଭାରତରତ୍ନ ଡକ୍ଟର ଏ.ପି.ଜେ. ଅବଦୁଲ କଲାମ । ପ୍ରଧାନମନ୍ତ୍ରୀଙ୍କ ୫ ସୂତ୍ରୀ କାର୍ଯ୍ୟକ୍ରମର ପ୍ରଣୟନ ପାଇଁ ଯୋଜନା ଆୟୋଗର ଉପାଧ୍ୟକ୍ଷ ଶ୍ରୀ କୃଷ୍ଣଚନ୍ଦ୍ର ପନ୍ତଙ୍କ ଅଧ୍ୟକ୍ଷତାରେ ଏକ 'ଟାସ୍କ ଫୋର୍ସ' ଗଠନ କରାଯାଇଛି ଓ ଡକ୍ଟର କଲାମ ମଧ ଏହି କମିଟିର ମାନ୍ୟବର ସଦସ୍ୟ ଅଛନ୍ତି ।

ଡକ୍ଟର କଲାମଙ୍କ ଦୃଷ୍ଟିରେ ଭାରତର ବଳ (Strength), ଦୁର୍ବଳତା (Weakness), ସୁଯୋଗ (Oppertunity) ଓ ବିପଦ (Threat)ର ତନ୍ନତନ୍ନ ଅଧ୍ୟୟନ, ବିଶ୍ଳେଷଣ ଓ ଆବଶ୍ୟକ ସ୍ଥଳେ ପରିମାର୍ଜନା ଦ୍ୱାରା ହିଁ ଦୀର୍ଘମିଆଦି

ଅର୍ଥନୈତିକ ଓ ନିରାପତ୍ତା ଜନିତ ରାଷ୍ଟ୍ରୀୟ ଉଦ୍ଦେଶ୍ୟ ଗୁଡ଼ିକ ସାଧିତ ହୋଇ ପାରିବ । ଫଳସ୍ୱରୂପ ଜ୍ଞାନର ସୃଷ୍ଟି, ଉପଯୁକ୍ତ ଚିହ୍ନଟ ଓ ପ୍ରକୃଷ୍ଟ ପରାଭବ ସଫଳକାମୀ ହୋଇପାରିବ । ଜ୍ଞାନାଶ୍ରୟୀ ସମାଜରେ ପ୍ରତ୍ୟେକ ବ୍ୟକ୍ତିଙ୍କର ସିଦ୍ଧାନ୍ତ ନିର୍ଣ୍ଣୟ ପ୍ରକ୍ରିୟାରେ ଭାଗିଦାରୀ ରହିବା ନିତାନ୍ତ ଆବଶ୍ୟକ । ସୂଚ଼ନା ଓ ସଞ୍ଚାରର ଭିତ୍ତିଭୂମି ଏକ ବଳିଷ୍ଠ ଜ୍ଞାନୋଦୀପ୍ତ ସମାଜ ବ୍ୟବସ୍ଥାର ସର୍ଜନାରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ସ୍ୱଳ୍ପବ୍ୟୟ ତଥା ନିର୍ଦ୍ଦିଷ୍ଟ ସମୟଭିତ୍ତିକ କାର୍ଯ୍ୟକ୍ରମ ମାଧ୍ୟମରେ ଅଗଣିତ ଜନତାଙ୍କ ପାଖରେ ନାନାବିଧ ସୂଚ଼ନାର ସୁ-ସରବରାହ ଠିକଣା ରୂପେ ପହଞ୍ଚି ପାରିଥାଏ । ସୂଚ଼ନା ଓ ସଞ୍ଚାରର ସୁଦୃଢ଼ ଭିତ୍ତିଭୂମି ସୂଚ଼ନା ଅନ୍ତରାଷ୍ଟ୍ରୀୟକରଣ କରାଇବାରେ ମଧ୍ୟ ସଫଳ ଯୋଗଦାନ ଦେଇଥାଏ । ଯୋଜନା ଆୟୋଗ ଦ୍ୱାରା ଗଠନ କରାଯାଇଥିବା 'ଟାସ୍କ ଫୋର୍ସ' ନିମ୍ନଲିଖିତ ଧାରାରେ ରାଷ୍ଟ୍ରୀୟ ଉଦ୍ଦେଶ୍ୟ ଗୁଡ଼ିକୁ ମୁଖ୍ୟତଃ ଫଳବତୀ କରାଇବା ପାଇଁ ଚେଷ୍ଟିତ ହେବ ।

(୧) ଭାରତବର୍ଷକୁ ଏକ ପ୍ରବଳ ପରାକ୍ରମଶାଳୀ ଜ୍ଞାନ ମହାଶକ୍ତି ରୂପେ ବିଶ୍ୱ ବୁକୁରେ ସଗର୍ବେ ଦଣ୍ଡାୟମାନ ହେବାକୁ ହେଲେ, ସର୍ବସାଧାରଣ ଜଡ଼ିତ ଥିବା ଅତ୍ୟନ୍ତ ହିତକାରୀ ନୀତି ନିୟମର ମୁଦ୍ଦାଗୁଡ଼ିକୁ ସରଳ ଓ ପ୍ରାଞ୍ଜଳ ଭାବରେ ସମାଜ ପାଖରେ ପରିବେଷଣ କରିବାକୁ ପଡ଼ିବ; ଯଦ୍ଦ୍ୱାରା ଆମ ପ୍ରଚ଼ଳିତ ସମାଜ ବ୍ୟବସ୍ଥାର ନବଜନ୍ମ ସମ୍ଭବପର ହୋଇପାରିବ ।

(୨) ଜ୍ଞାନ ସମାଜର ନାଗରିକ ହେବାକୁ ହେଲେ ସମସ୍ତ ସୁବିଧା ସୁଯୋଗରୁ ବଞ୍ଚିତ ଥିବା ଅଗଣିତ ଭାଇ ଭଉଣୀମାନଙ୍କୁ କାଖେଇ କୋଳେଇ ଆମକୁ ଆପଣାର କରି ନେବାକୁ ପଡ଼ିବ, ଯଦ୍ଦ୍ୱାରା ସେମାନେ ଜ୍ଞାନ ସମାଜର ସର୍ବାଙ୍ଗୀନ ଉନ୍ନତି କଳ୍ପେ ନିଜର ଲୁହ ଲହୁକୁ ଏକାକାର କରିଦେଇ ପାରିବେ ଓ ଆମ କାନ୍ଧରେ କାନ୍ଧ ମିଳେଇ ପ୍ରଗତିର ରାଜରାସ୍ତାରେ ବାଟୋଇ ହୋଇଯିବେ ।

(୩) ଜନ ଚେତନା କାର୍ଯ୍ୟକ୍ରମର ଉପଯୁକ୍ତ ବିକାଶ ଓ ଶୁଭାରମ୍ଭ ଅଚିରେ ସମ୍ପାଦନା କରିବାକୁ ପଡ଼ିବ ।

(୪) ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ସହିତ ଜଡ଼ିତ ମୁଦ୍ଦାଗୁଡ଼ିକ ଉପରେ ଗବେଷଣା ଜାରି ରଖିବା ।

(୫) ଜ୍ଞାନ ପରିଚ଼ାଳନା ବ୍ୟବସ୍ଥାଗୁଡ଼ିକର ସୃଷ୍ଟିକର୍ତ୍ତା ଓ ଉନ୍ନୟନକାରୀମାନଙ୍କ ସହିତ ହାତରେ ହାତ ମିଳେଇ ସୂଚ଼ନା ଓ ସଞ୍ଚାର ଭିତ୍ତିଭୂମିର

ସାହଚର୍ଯ୍ୟରେ ଭାରତୀୟ ସଂସ୍କୃତିର ପରିପ୍ରକାଶ କରାଇବାରେ ସର୍ବଦା ବ୍ରତୀ ହେବା ।

(୬) ଭାରତବର୍ଷକୁ ଏକ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାକୁ ରୂପାନ୍ତରିତ କରାଇବାର ନିରବଚ୍ଛିନ୍ନ ପ୍ରକ୍ରିୟାକୁ ନେଇ ଏକ ବାର୍ଷିକ ବିବରଣୀର ପ୍ରକାଶନ ପାଇଁ କାର୍ଯ୍ୟାରମ୍ଭ କରିବା ।

(୭) ଏକ ଜାତୀୟ ମଞ୍ଚ ସୃଷ୍ଟିକରି ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ଉପରେ ଲଗାତାର ସର୍ବସାଧାରଣ ଆଲୋଚନା ଓ ବାଦ-ବିବାଦ ଜାରି ରଖିବା ।

(୮) ଭାରତୀୟ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥା ଉପରେ ଏକ ସ୍ୱତନ୍ତ୍ର 'ଓ୍ୱେବ ସାଇଟ' ସୃଷ୍ଟି କରିବା ଅତ୍ୟନ୍ତ ଆବଶ୍ୟକ ଓ ଜରୁରୀ ହୋଇ ପଡ଼ିଛି ।

ଶିକ୍ଷାବିତ୍, ଶାସନକର୍ତ୍ତା, ଶିଳ୍ପପତି ଓ ଜ୍ଞାନକର୍ମୀମାନଙ୍କ ସହ ଉତ୍ତମ ଯୋଗସୂତ୍ର ରକ୍ଷାକରି ଏହି 'ଟାସ୍କ ଫୋର୍ସ' ଗ୍ଲୋବାଲ୍ ନେଟଓ୍ୱାର୍କିଂ, ଶିକ୍ଷାନୁରାଗୀ ସମାଜର ସଂସ୍ଥାପନ, ଦେଶର ନୀତି ନିୟମ ନିର୍ଦ୍ଧାରଣ ଓ କାର୍ଯ୍ୟକାରୀତା ପ୍ରକ୍ରିୟାରେ ସରକାର, ଶିଳ୍ପ ସଂସ୍ଥା ଓ ଶିକ୍ଷାନୁଷ୍ଠାନମାନଙ୍କୁ ଓତଃପ୍ରୋତ ଭାବେ ଜଡ଼ିତ କରାଇବା, ଅର୍ଥନୈତିକ ଓ ବ୍ୟବସାୟ ସଂକ୍ରାନ୍ତୀୟ ଦୀର୍ଘସୂତ୍ରୀ ଗୁଣାତ୍ମକ ଯୋଗସୂତ୍ରର ସ୍ଥାପନା ତଥା ଶିକ୍ଷାର ଅଭିବୃଦ୍ଧି ପାଇଁ ଏକ ଆର୍ଥିକ ନିଗମର ସୃଷ୍ଟି ମାଧ୍ୟମରେ ଦୁର୍ବଳ ଓ ମେଧାବୀ ଛାତ୍ରମାନଙ୍କୁ ସାହାଯ୍ୟ ଆଦି ବହୁବିଧ ପ୍ରକ୍ରିୟା ଦ୍ୱାରା ନୂତନ ଜ୍ଞାନାଶ୍ରୟୀ ସମାଜ ବ୍ୟବସ୍ଥାର ସର୍ଜନା କରିବାକୁ ବଦ୍ଧପରିକର ।

ଇତିହାସ ସାକ୍ଷୀ, ଭାରତ ଯୁଗେ ଯୁଗେ ଏକ ବଳିଷ୍ଠ ଜ୍ଞାନ କୈନ୍ଦ୍ରିକ ମହାଶକ୍ତି ରୂପେ ବିଶ୍ୱ ବୁକୁରେ ମୁଣ୍ଡଟେକି ସଗର୍ବେ ଠିଆ ହୋଇଛି । ଏହି ହୃତ ଗୌରବର ପୁନରୁଦ୍ଧାର ଆଜି ଆମ କାନ୍ଧ ଉପରେ । ଡକ୍ଟର କଲାମଙ୍କ ଭାଷାରେ ୨୦୨୦ ମସିହା ସୁଦ୍ଧା ଏକ ବିକଶିତ ଭାରତବର୍ଷର ନବଜନ୍ମ କେବଳ ଏକ ସ୍ୱପ୍ନ ନୁହେଁ - ଏହା ଏକ ଧ୍ୟେୟ । ଭାରତୀୟମାନଙ୍କ ବୁଦ୍ଧିର ନିହାଣ ମୂନରେ ଏହି ନବନିର୍ମାଣ ପ୍ରକ୍ରିୟା ନିଶ୍ଚିତ ରୂପେ ସମ୍ଭବପର ହେବ । ଏହା ସ୍ୱତଃସିଦ୍ଧ ।

ସମୟ

ତା- ୧୧.୭.୨୦୦୧



# ଆମେରିକାର ସାଂପ୍ରତିକ ଅର୍ଥନୈତିକ ଶିଥିଳତା; ଭାରତ ପାଇଁ ଏକ ଚ୍ୟାଲେଞ୍ଜ ନା ସୁବର୍ଣ୍ଣ ସୁଯୋଗ ?

**ଭା**ରତୀୟ ଶିଳ୍ପସଂଘ ଦ୍ୱାରା କରାଯାଇଥିବା ଏକ ସର୍ଭେ ରିପୋର୍ଟରୁ ଜଣା ପଡ଼ିଛି ଯେ, ଆମେରିକାରେ ଦେଖା ଦେଇଥିବା ସାଂପ୍ରତିକ ଅର୍ଥନୈତିକ ଶିଥିଳତା ଭାରତୀୟ ସୂଚନା ପ୍ରଯୁକ୍ତି ବିଦ୍ୟା ଉପରେ ସେପରି କୌଣସି ଗୁରୁତର ପ୍ରଭାବ ପକାଇବ ନାହିଁ । ଏହି ରିପୋର୍ଟ ପୁନଶ୍ଚ କହିଛି ଯେ -ଆମେରିକାର ଏହି ଅର୍ଥନୈତିକ ଶିଥିଳତା ପରିସ୍ଥିତି ସେ ଦେଶରେ ଯଥେଷ୍ଟ ଉଦ୍‌ବେଗର କାରଣ ବୋଲି ପ୍ରତୀୟମାନ ହେଲେ ମଧ୍ୟ ଅପରପକ୍ଷରେ ଭାରତୀୟ ସଫ୍‌ଟ୍ୱେୟାର ଓ ସେବାକାରୀ କମ୍ପାନୀମାନଙ୍କ ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗର ଦ୍ୱାର ଉନ୍ମୁକ୍ତ କରି ଦେଇଛି । ଭାରତୀୟ ଶିଳ୍ପ ମହାସଂଘ ବିଶ୍ୱାସ କରେ ଯେ, ବଡ଼ବଡ଼ କମ୍ପାନୀମାନେ ଯେଉଁମାନେ କି ରକ୍ଷଣାବେକ୍ଷଣ କାର୍ଯ୍ୟକଳାପରେ ସଦାସର୍ବଦା ନିମଗ୍ନ ରହିଥାଆନ୍ତି, ସେମାନେ ଏହି ଅର୍ଥନୈତିକ ଶିଥିଳତାର ଅକ୍ରୋପସରୁ ନିଜକୁ ନିବୃତ କରି ରଖି ପାରିବେ ଓ ତଦ୍ୱାରା ସେତେଟା ପ୍ରଭାବିତ ହେବେ ନାହିଁ, କାରଣ ସଫ୍‌ଟ୍ୱେୟାର ଓ ସେବା ସଦାସର୍ବଦା ଅତ୍ୟାବଶ୍ୟକ ଶ୍ରେଣୀର ଅନ୍ତର୍ଭୁକ୍ତ ଅଟେ ଓ ସବୁଦିନେ ଏହା ଏକ ଅତ୍ୟାବଶ୍ୟକ ଅଙ୍ଗ ହୋଇ ରହିବ ମଧ୍ୟ ।

ଭାରତୀୟ ଶିଳ୍ପ ମହାସଂଘ ମତ ଦିଏ ଯେ, ସ୍ୱଳ୍ପମିଆଦୀ ପରିପ୍ରେକ୍ଷୀରେ ବାହ୍ୟ ଚାକଚକ୍ୟ ପ୍ରଭାବିତ ହେବାର ଯଥେଷ୍ଟ ସମ୍ଭାବନା ରହିଛି । ସର୍ଭେ କାର୍ଯ୍ୟ ହେଲାବେଳେ ନାନାବିଧ ପ୍ରଶ୍ନର ଉତ୍ତର ଦେଇ ଉତ୍ତରଦାତାମାନେ କହିଛନ୍ତି ଯେ, ସଂପ୍ରତି ଆମେରିକାରେ ଯେଉଁ ମଧ୍ୟମ ଓ ଦୀର୍ଘକାଳୀନ ଆର୍ଥିକ ଶିଥିଳତାର ଅଦିନିଆ ଝଡ଼ ଉଠିଛି, ତାହା ଆମେରିକାରେ ଥିବା ଭାରତୀୟ କମ୍ପାନୀମାନଙ୍କ ପାଇଁ ଏକ ସୁବର୍ଣ୍ଣ ସୁଯୋଗ ସୃଷ୍ଟି କରିଛି; ଯଦ୍ୱାରା ସେମାନେ ସେମାନଙ୍କର ପ୍ରକଳ୍ପଗୁଡ଼ିକୁ

ଆମେରିକାରୁ ଭାରତକୁ ସ୍ଥାନାନ୍ତରିତ କରିପାରିବେ । ପ୍ରକୃତରେ ଆମେରିକା ନିଗମମାନେ ଖର୍ଚ୍ଚ କାଟକୁ ଆଖି ଆଗରେ ରଖି ଭାରତୀୟ କମ୍ପାନୀମାନଙ୍କୁ ସେମାନଙ୍କର ଚାହିଦା ମୁତାବକ କାମ ପ୍ରଦାନ କରି ଉତ୍ପାଦିତ ବସ୍ତୁକୁ ଲଗାତାର ଭାରତରୁ ଆମେରିକାକୁ ରପ୍ତାନି କରିବା ଉଚିତ, ଯାହାକି ଏକ ଅତ୍ୟନ୍ତ ସଫଳ ଓ ଲୋଭନୀୟ ବ୍ୟବସାୟୀକ ଚିନ୍ତାଧାରା ଉପରେ ପର୍ଯ୍ୟବେଶିତ ।

ହିସାବ କରି ଦେଖାଯାଇଛି ଯେ, ଏ ବର୍ଷ ଆମେରିକାର ସୂଚନା ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ବ୍ୟୟବରାଦରେ ହ୍ରାସ ଘଟି ତାହା ୧୨ ପ୍ରତିଶତରେ ପହଞ୍ଚିବ, ଯାହାକି ୨୦୦୦ ମସିହାରେ ୨୨ ଓ ୧୯୯୯ ମସିହାରେ ୨୬ ପ୍ରତିଶତ ଥିଲା । ନିକଟ ଅତୀତରେ ମୁମ୍ବାଇରେ ହୋଇଥିବା ନ୍ୟାସନାଲ୍ ଆସୋସିଏସନ ଅଫ୍ ସଫ୍ଟୱେୟାର ଆଣ୍ଡ ସର୍ଭିସ କମ୍ପାନୀଜ୍ (ନ୍ୟାସକମ-୨୦୦୧) ଅଧିବେଶନରେ ମତ ପ୍ରକାଶ ପାଇଥିଲା ଯେ, ସଫ୍ଟୱେୟାର କ୍ଷେତ୍ରରେ ଚୀନ୍ ଓ ରୁଷିଆ ଭାରତ ପାଇଁ ଏକ ସମ୍ଭାବ୍ୟ ବିପଦ ସଙ୍କେତ ରୂପେ ସମ୍ମୁଖରେ ଆସି ଦଣ୍ଡାୟମାନ ହେଲେଣି ଏବଂ ତଦ୍‌ଜନିତ ପରିସ୍ଥିତିରେ ପୃଥିବୀ ପ୍ରସିଦ୍ଧ ବଡ଼ ବଡ଼ ସୂଚନା ପ୍ରଯୁକ୍ତିବିଦ୍ୟା କମ୍ପାନୀମାନଙ୍କର ଭାରତୀୟ ଶାଖାମାନେ ନୂତନ ନିଯୁକ୍ତି ପ୍ରକ୍ରିୟାରେ ମଧ୍ୟ ହ୍ରାସ କରାଇଲେଣି । ହେଲେ ସର୍ବସାଧାରଣଙ୍କ ମନରେ ଆଶା ଓ ବିଶ୍ୱାସର କିରଣ ଏବେ ବି ଜାଜ୍ୱଲ୍ୟମାନ ଅଛି ଓ ସେମାନେ ଗଭୀର ଆଶାବାଦୀ ଯେ, ସାଂପ୍ରତିକ ଅପ୍ରତ୍ୟାଶିତ ସୂଚନା ପ୍ରଯୁକ୍ତିବିଦ୍ୟା ଜନିତ ଆର୍ଥିକ ଶିଥିଳତା ପରିସ୍ଥିତିରେ ନିଶ୍ଚୟ ପରିବର୍ତ୍ତନ ଆସିବ ଏବଂ ବର୍ଷ ଶେଷ ଆଡ଼କୁ ପରିସ୍ଥିତି ପୁଣି ସୁଧୁରି ଯିବ ।

ନ୍ୟାସକମର ଅଧ୍ୟକ୍ଷ ଫିରୋଜ ଭାନ୍ଦ୍ରେୱାଲା କୁହନ୍ତି ଯେ, ଗ୍ଲୋବାଲ ସୂଚନା ପ୍ରଯୁକ୍ତିବିଦ୍ୟା ସେବା ପ୍ରଦାନ କ୍ଷେତ୍ରରେ ଏବେ ବି ଭାରତ ପ୍ରଥମ ସ୍ଥାନରେ ଅଛି । ୧୯୯୯-୨୦୦୦ ଆର୍ଥିକ ବର୍ଷରେ ବିଶ୍ୱର ଭାଗ୍ୟବାନ ଏକ ହଜାର କମ୍ପାନୀ ମଧ୍ୟରେ ୨୬୦ଟି କମ୍ପାନୀ ସେମାନଙ୍କର ସମସ୍ତ ସଫ୍ଟୱେୟାର ଆବଶ୍ୟକତା ଭାରତରୁ ପୂରଣ କରିଥିଲେ ଏବଂ ଆଗାମୀ କେଇ ବର୍ଷରେ ଏହି ସଂଖ୍ୟାରେ ବୃଦ୍ଧି ଘଟି ତାହା ୪୦୦କୁ ଟପିଯିବ ବୋଲି ନିଶ୍ଚିତରୂପେ ଆଶା କରାଯାଏ ।

ବିଶ୍ୱବ୍ୟାଙ୍କର ଏକ ଷ୍ଟଡ଼ି ରିପୋର୍ଟ ପ୍ରକାଶ କରିଛି ଯେ, ବିଶ୍ୱ ସଫ୍ଟୱେୟାର ଉନ୍ନୟନ ଆନ୍ତଃରାଷ୍ଟ୍ରୀୟ ବଜାରରେ ଭାରତର ସେୟାର ୧୯୯୯ରେ ୧୧.୯

ପ୍ରତିଶତ ଥିବାବେଳେ ୨୦୦୦ ମସିହାରେ ତହିଁରେ ବୃଦ୍ଧି ଘଟି ୧୯.୫ ପ୍ରତିଶତରେ ପହଞ୍ଚିଛି । ୧୯୯୧ ପରଠାରୁ ସଫ୍ଟୱେୟାର କ୍ଷେତ୍ର ଲଗାତାର ଭାବେ ୫୦ ପ୍ରତିଶତରୁ ଉର୍ଦ୍ଧ୍ୱ ବାର୍ଷିକ ଅଭିବୃଦ୍ଧି ହାର ହାସଲ କରି ଚାଲିଛି ଏବଂ ଏହା ମଧ୍ୟ ଦୃଢ଼ ଆଶା କରାଯାଉଛି ଯେ, ୨୦୦୮ ମସିହାବେଳକୁ ସଫ୍ଟୱେୟାର ଶିଳ୍ପ ସର୍ବସମୟ ଉଚ୍ଚତମ ମୂଲ୍ୟ ୮୭ ବିଲିୟନ ଡଲାରରେ ପହଞ୍ଚିବ, ଯାହାକି ୨୦୦୦-୨୦୦୧ ମସିହାରେ ମାତ୍ର ୮.୩୪ ବିଲିୟନ ଡଲାର ଥିଲା । ତଥାପି ଭାରତର ସଫ୍ଟୱେୟାର ରପ୍ତାନି ଅତିକଷ୍ଟରେ ବିଶ୍ୱବଜାରର ମାତ୍ର ୧ ପ୍ରତିଶତ ଭରଣା କରି ପାରୁଛି ।

ଭାରତବର୍ଷରେ ସୂଚନା ପ୍ରଯୁକ୍ତି ବିଦ୍ୟା ବିଶେଷଜ୍ଞଙ୍କ ଚାହିଦା ୨୦୦୦ ମସିହାରେ ୩.୪୦ ଲକ୍ଷ ଥିଲାବେଳେ ୨୦୦୫ ମସିହାରେ ତାହା ୮ ଲକ୍ଷରେ ପହଞ୍ଚିବ । ପରନ୍ତୁ ଦେଶରେ ଥିବା ସମସ୍ତ ବୈଷୟିକ ପ୍ରତିଷ୍ଠାନଗୁଡ଼ିକ ୨୦୦୨ ମସିହା ସୁଦ୍ଧା ୧.୬୫ ଲକ୍ଷ ସୂଚନା ପ୍ରଯୁକ୍ତି ବିଦ୍ୟା ବିଶେଷଜ୍ଞ ସୃଷ୍ଟି କରିପାରିବ । ନିକଟ ଅତୀତରେ ହୋଇଯାଇଥିବା ନ୍ୟାସକମ-୨୦୦୧ ସମ୍ମିଳନୀରେ ବେଲ୍ ଲାବୋରୋଟୋରୀର ପ୍ରେସିଡେଣ୍ଟ୍ ନନ୍ ରେସିଡେଣ୍ଟ ଇଣ୍ଡିଆନ୍ ଡକ୍ଟର ଅରୁଣ ନେତ୍ରାଭାଲି କହିଲେ ଯେ, ସଂପ୍ରତି ପୃଥିବୀର ୧୨ ପ୍ରତିଶତ ସୂଚନା ପ୍ରଯୁକ୍ତିବିଦ୍ୟା ବିଶେଷଜ୍ଞ ଭାରତୀୟ ହିଁ ଅଟନ୍ତି ।

ଅପର ପକ୍ଷରେ ପୃଥିବୀର ସମ୍ପୂର୍ଣ୍ଣ ସୂଚନା ପ୍ରଯୁକ୍ତିବିଦ୍ୟା କର୍ମଶକ୍ତିର ୩୦ ପ୍ରତିଶତ ଭାରତୀୟ ଇଞ୍ଜିନିୟର ଓ ବୈଷୟିକବିଦ୍‌ମାନେ ଅଟନ୍ତି । ପରନ୍ତୁ ନିକଟ ଅତୀତର ଦୃଶ୍ୟପଟ୍ଟ ଓ ଘଟଣା ପ୍ରବାହ ଏକ ଭିନ୍ନ ଭିନ୍ନ ଚିତ୍ର ଉପସ୍ଥାପନା କରୁଛି । ଏପରି ମନେ ହେଉଛି, ସତେ ଯେପରି ସମସ୍ତ ସମ୍ଭାବ୍ୟ ଭବିଷ୍ୟତ ରୂପରେଖ ଓ ହିସାବ ନିକାସ ଅଡୁଆ ତଡୁଆ ହୋଇଯାଉଛି । ନିଃସନ୍ଦେହରେ ଅରୁଣ ନେତ୍ରାଭାଲିଙ୍କ କହିବାନୁଯାୟୀ ପୃଥିବୀର ପ୍ରାୟ ୩୦ ପ୍ରତିଶତ ସୂଚନା ପ୍ରଯୁକ୍ତିବିଦ୍ୟା ବିଶେଷଜ୍ଞ ଭାରତୀୟ । ଏହା ମଧ୍ୟ ସତ ଯେ, ପୃଥିବୀର ପ୍ରାୟ ୭୦ ପ୍ରତିଶତ ସଫ୍ଟୱେୟାର ଶିଳ୍ପ ସେମାନଙ୍କର ସ୍ଥିତି ପାଇଁ ଆମେରିକା ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ହୋଇଥାଆନ୍ତି ।

ଆମେରିକାର ସାଂପ୍ରତିକ ଅର୍ଥନୈତିକ ଶିଥିଳତା ପରିସ୍ଥିତି ଭାରତର ସଫ୍ଟୱେୟାର ଶିଳ୍ପ ଓ ତତ୍‌ସହିତ ଜଡ଼ିତ ବିଶେଷଜ୍ଞମାନଙ୍କ ଉପରେ ତା'ର ପ୍ରଭାବ

ପକାଇ ଥିବାର ପରିଲକ୍ଷିତ ହେଲାଣି । ବହୁ ସଂଖ୍ୟାରେ ସୂଚନା ପ୍ରଯୁକ୍ତିବିଦ୍ୟା ବିଶେଷଜ୍ଞମାନେ ଆମେରିକା ଛାଡ଼ି ଭାରତକୁ ପଳେଇ ଆସିଲେଣି । ଯେଉଁମାନେ ଆମେରିକାରେ କଷ୍ଟେମଷ୍ଟେ ପଡ଼ି ରହିଲେ, ସେମାନଙ୍କର ଦରମା ଆଶାତୀତ ଭାବେ କମେଇ ଦିଆଯାଉଛି, ଅଥବା ସେମାନଙ୍କୁ ପୁଣି ଚାକିରିରୁ ବରଖାସ୍ତ କରିଦିଆଯାଉଛି । ଏହା ସେଠାରେ ଏକ ସାଧାରଣ ଘଟଣା ହୋଇଗଲାଣି । ଯେଉଁମାନେ ବି ତଥାପି ସମସ୍ତ ଦୟନୀୟ ପରିସ୍ଥିତିର ସାମ୍ନାସାମ୍ନି କରି ଆମେରିକାରେ କୌଣସିମତେ ମୁଣ୍ଡ ଗୁଞ୍ଜି ପଡ଼ି ରହିଲେ, ସେମାନେ ଭାରତକୁ ଦୌଡ଼ି ପଳେଇ ଆସିବା ପାଇଁ ଗୋଡ଼ ଟେକି କୌଣସି ସୁବିଧା ସୁଯୋଗର ଅପେକ୍ଷାରେ ବସି ରହିଛନ୍ତି । ଆମେରିକାରେ ଥିବା ସମସ୍ତ ଭାରତୀୟ ସୂଚନା ପ୍ରଯୁକ୍ତିବିଦ୍ୟା ବିଶେଷଜ୍ଞମାନଙ୍କ ଭିତରେ ଏବେ ଏକ କୋକୁଆ ଭୟ ଖେଳି ଗଲାଣି ଯେ, ତାଙ୍କ ହାତରେ କେତେବେଳେ ଆମେରିକା ଛାଡ଼ି ଚାଲିଯିବା ପାଇଁ 'ପିଙ୍କ୍ ସ୍ଲିପ୍' ଧରେଇ ଦିଆଯିବ ।

ବିଗତ କେଇମାସ ମଧ୍ୟରେ ବଡ଼ ବଡ଼ ସୂଚନା ପ୍ରଯୁକ୍ତିବିଦ୍ୟା କମ୍ପାନୀଗୁଡ଼ିକ ଯଥା- ସିସ୍କୋ, ନରଟେଲ, ଇନଟେଲ ଓ ହ୍ୱିଲେଟ ପାକର୍ଡ଼ ସେମାନଙ୍କର ବହୁ କର୍ମଚାରୀମାନଙ୍କୁ ଚାକିରିରୁ ଛଟେଇ କରିଛନ୍ତି । ଡିସେମ୍ବର ୨୦୦୦ ମସିହାରୁ ମାର୍ଚ୍ଚ ୨୦୦୧ ମସିହା ମଧ୍ୟରେ କେବଳ ମୋଟୋରୋଲା କମ୍ପାନୀ ୨୦ ହଜାର ସୂଚନା ପ୍ରଯୁକ୍ତିବିଦ୍ୟା ଚାକିରି କାଟ କରିଛନ୍ତି । ଇନଫରମେସନ୍ ଆସୋସିଏସନ୍ ଅଫ ଆମେରିକା ସୂତ୍ରରୁ ପ୍ରକାଶ ଯେ ଆମେରିକାରେ ଥିବା ଭାରତୀୟ ସୂଚନା ପ୍ରଯୁକ୍ତିବିଦ୍ୟା ବିଶେଷଜ୍ଞମାନଙ୍କ ମଧ୍ୟରୁ ୪୪ ପ୍ରତିଶତଙ୍କ ଚାକିରି କାଟ ହୋଇସାରିଲାଣି । ସର୍ବଶେଷ ସମ୍ବାଦରୁ ପ୍ରକାଶ ଯେ, ଆଗାମୀ ଦୁଇମାସ ମଧ୍ୟରେ ଅତି କମ୍‌ରେ ୧୦ ହଜାର ଭାରତୀୟ ସୂଚନା ପ୍ରଯୁକ୍ତିବିଦ୍ୟା ବିଶେଷଜ୍ଞ ଆମେରିକା ଛାଡ଼ି ଭାରତକୁ ବେକାର ହୋଇ ପଳେଇ ଆସିବେ ।

ଆମେରିକା ଅର୍ଥନୀତିରେ ଦେଖାଦେଇଥିବା ଏ ଓଲଟ ଢେଉ ହଠାତ୍ ରାତାରାତି ଆସି ଯାଇନି । ଆମେରିକା ଅର୍ଥନୀତିର ଅଭିବୃଦ୍ଧି ହାର ସେପ୍ଟେମ୍ବର ୨୦୦୦ ମସିହାରେ ତଳକୁ ଖସି ୨.୭ ପ୍ରତିଶତରେ ପହଞ୍ଚିଥିଲା, ଯାହାକି ବିଗତ ୩ ବର୍ଷ ମଧ୍ୟରେ ସର୍ବନିମ୍ନ ଥିଲା । ଜୁନ ୨୦୦୦ ମସିହାରେ ଏହି ଅଭିବୃଦ୍ଧି ହାର

୫.୬ ପ୍ରତିଶତ ଥିଲା । ଆମେରିକାର ଅର୍ଥନୀତିରେ ଶିଥିଳତା ପ୍ରଥମେ ଷ୍ଟକ୍ ମାର୍କେଟରେ ପରିଦୃଷ୍ଟ ହୋଇଥିଲା । ସୂଚନା ପ୍ରଯୁକ୍ତିବିଦ୍ୟା ଷ୍ଟକରେ ହ୍ରାସ ଅଗଣିତ ଡଟ୍ କମ୍ କମ୍ପାନୀର ଅନ୍ତର୍ଦ୍ଧାନର କାରଣ ହୋଇଥିଲା ।

କିନ୍ତୁ ଏ ପରିସ୍ଥିତିର ଶୁକ୍ଳ ପକ୍ଷ ବି ଅଛି । ଭାରତୀୟ ସଫ୍ଟୱେୟାର ଶିଳ୍ପର ନେତୃବର୍ଗମାନେ ମତ ପୋଷଣ କରନ୍ତି ଯେ, ଆମେରିକାର ଏହି ଅର୍ଥନୈତିକ ଧାରା ଭାରତକୁ ଲାଭଦାୟକ କରାଇବ । ସେମାନେ ଆଶା କରନ୍ତି ଯେ, ଭାରତ ଅଧିକ ବ୍ୟବସାୟ ପାଇବ ସେଥିପାଇଁ ସେମାନେ ଆମେରିକାର ଅର୍ଥନୈତିକ ଶିଥିଳତା ପରିସ୍ଥିତକୁ ଧନ୍ୟବାଦ ଦେଉଛନ୍ତି ।

ନ୍ୟାସକମ୍ କୁହେ ଯେ, ଆମେରିକାର ଅର୍ଥନୈତିକ ଶିଥିଳତା ପରିସ୍ଥିତି ସତ୍ତ୍ୱେ ମଧ୍ୟ ସଫ୍ଟୱେୟାର ଶିଳ୍ପର ଜାତୀୟ ଅଭିବୃଦ୍ଧି ହାର ନିଶ୍ଚିତ ରୂପେ ୪୦ରୁ ୫୦ ପ୍ରତିଶତ ମଧ୍ୟରେ ରହିବ । ନ୍ୟାସକମ୍‌ର ଉପାଧ୍ୟକ୍ଷ ଶ୍ରୀ ଅରୁଣ କୁମାର କୁହନ୍ତି ଯେ, ଏହି ଅଭିବୃଦ୍ଧି ହାର ଆଗାମୀ ଆର୍ଥିକ ବର୍ଷ ୨୦୦୧-୨୦୦୨ରେ ହିଁ ପରିଲକ୍ଷିତ ହେବ, କାରଣ ନ୍ୟାସକମ୍‌ର ସଦସ୍ୟମାନେ ଅନ୍ୟ ବଜାର ଉପରେ ଏବେ ତାଙ୍କର ଦୃଷ୍ଟି ସନ୍ନିବେଶିତ କରିଛନ୍ତି । ସେମାନେ ତାଙ୍କର ଦୃଷ୍ଟିକୋଣ ଆମେରିକାରୁ ହଟେଇ ୟୁରୋପ ଓ ଜାପାନ ଉପରେ କେନ୍ଦ୍ରୀଭୂତ କରିବେ । ସେ ଅତ୍ୟନ୍ତ ଦୃଢ଼ଯୁକ୍ତି ଉପସ୍ଥାପନ କରି କୁହନ୍ତି ଯେ, ସଫ୍ଟୱେୟାର ରପ୍ତାନି କ୍ଷେତ୍ରରେ ଅଭିବୃଦ୍ଧି ହାର ମ୍ୟାକ୍ କିନ୍‌ସେଙ୍କ ସମ୍ଭାବ୍ୟ ଭାବି ସୂଚନା ସହ ସମକକ୍ଷ ହେବ, ଯାହାକି ୨୦୦୮ ମସିହା ସୁଦ୍ଧା ୮୭ ବିଲିୟନ ଆମେରିକୀୟ ଡଲାରରେ ନିଶ୍ଚିତରୂପେ ପହଞ୍ଚିବ ।

ଅପରପକ୍ଷରେ ଏହା ମଧ୍ୟ ସ୍ପଷ୍ଟ ସୂଚନା ମିଳିଲାଣି ଯେ, ଆମେରିକାର ଏହି ଅର୍ଥନୈତିକ ଶିଥିଳତା ଭାରତର ସଫ୍ଟୱେୟାର ଶିଳ୍ପ ଉପରେ ତା'ର ବିକଟାଳ ଅସୁରରୂପ ପ୍ରଦର୍ଶନ କରିବା ଆରମ୍ଭ କରିଦେଲାଣି, ଯାହା ଫଳରେ କି ନ୍ୟାସକମ ୨୦୦୧-୨୦୦୨ ଆର୍ଥିକ ବର୍ଷ ପାଇଁ କରିଥିବା ସଫ୍ଟୱେୟାର ରପ୍ତାନି ସମ୍ଭାବ୍ୟ ରୂପରେଖକୁ ୯.୫ ବିଲିୟନ ଡଲାରରୁ ୮.୫ ବିଲିୟନ ଡଲାରକୁ ହ୍ରାସ କରିଛି । ଫଳତଃ ସଫ୍ଟୱେୟାର ରପ୍ତାନି ଅଭିବୃଦ୍ଧି ହାର ୨୦୦୧-୨୦୦୨ ଆର୍ଥିକ ବର୍ଷ ପାଇଁ ୪୦ରୁ ୪୫ ପ୍ରତିଶତ ମଧ୍ୟରେ ରହିବ ବୋଲି ନ୍ୟାସକମ୍‌ର ଅଧ୍ୟକ୍ଷ ଫିରୋଜ

ଭାନ୍ଦ୍ରେୱାଲ କହିଛନ୍ତି । ସେ କହିଛନ୍ତି ଯେ, ଭାରତର ସଫ୍ଟୱେୟାର ରପ୍ତାନି ୨୦୦୦-୨୦୦୧ ଆର୍ଥିକ ବର୍ଷରେ ୨୮,୫୦୦ କୋଟି (୬.୨ବିଲିୟନ ଡଲାର) ଟଙ୍କାକୁ ଟପିଥିଲା ବେଳେ ତା'ର ପୂର୍ବ ବର୍ଷ ଅର୍ଥାତ୍ ୧୯୯୯-୨୦୦୦ ଆର୍ଥିକ ବର୍ଷରେ ତାହା ୪ ବିଲିୟନ ଡଲାର ଥିଲା, ଯାହାକି ପ୍ରାୟ ୫୫ ପ୍ରତିଶତ ଅଧିକା ଥିଲା ।

ୱିପ୍ରୋର ଅଧକ୍ଷ ଶ୍ରୀ ଅଜିମ ପ୍ରେମଜୀ କୁହନ୍ତି ଯେ, ଏଭଳି ଗହନ ପରିସ୍ଥିତିରେ କମ୍ପାନୀ ପାଇଁ ନୂତନ ଆନ୍ତର୍ଜାତିକ ବଜାର ଖୋଜିବା ଅବଶ୍ୟମ୍ଭାବୀ ହୋଇପଡ଼ିଛି । ତତ୍ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଦେଶୀୟ କାରବାରରେ ଅଧିକ ଗୁରୁତ୍ୱ ପ୍ରଦାନ କରିବା ମଧ ଆଜି ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । ଏବେ ବି ଆଁମେରିକା ବଜାର ୱିପ୍ରୋ ସଫ୍ଟୱେୟାରର ୬୦ ପ୍ରତିଶତ ଖରିଦ୍‌ଦାର ଅଟେ । କିନ୍ତୁ ପରିସ୍ଥିତିକୁ ମୁହଁ ମୋଡ଼ି ଦେଲେ ତ ହବନି । ସେଥିପାଇଁ ଆମେ ଏବେ ୟୁରୋପ ଓ ଜାପାନ ବଜାରରେ ଆମ ସଫ୍ଟୱେୟାର ରପ୍ତାନିକୁ ତ୍ୱରାନ୍ୱିତ କରିବୁ । ୨୦୦୦-୨୦୦୧ ଆର୍ଥିକ ବର୍ଷରେ ଦେଶରେ ପ୍ରାୟ ସମସ୍ତ ବୃହତ୍ ସଫ୍ଟୱେୟାର କମ୍ପାନୀମାନେ ଅତ୍ୟନ୍ତ ଉତ୍ତମ ଆର୍ଥିକ ଫଳାଫଳ ପ୍ରଦର୍ଶନ କରିଛନ୍ତି । କିନ୍ତୁ ଷ୍ଟକ ମାର୍କେଟରେ ସେମାନଙ୍କର ଷ୍ଟକର କାର୍ଯ୍ୟକାରିତା ନାନାବିଧ ସନ୍ଦେହର କୁହେଳିକା ସୃଷ୍ଟି କରୁଥିବାରୁ ସେୟାର ହୋଲ୍ଡରମାନେ ଶଙ୍କା ପ୍ରକାଶ କରୁଛନ୍ତି ଯେ, ଏହି କମ୍ପାନୀମାନଙ୍କର ସଫଳତା ଲଗାତାର ଭାବେ କେତେକାଳ ବା ଦୀର୍ଘସ୍ଥାୟୀ ରହିବ । କିଛି ସେୟାର ହୋଲ୍ଡର୍‌ମାନେ ତରବରିଆ ଭାବେ ଭୟ ଓ ଆଶଙ୍କାରେ ପ୍ରପୀଡିତ ହୋଇ ସେମାନଙ୍କର ଷ୍ଟକ୍‌କୁ ଅନ୍ୟମାନଙ୍କୁ ବିକ୍ରୀ କରିଦେଉଥିବାରୁ ପରିସ୍ଥିତି ଲଗାମଛଡ଼ା ହୋଇଯାଉଥିବା ପରି ମନେ ହେଉଛି ।

ପୁଣି ଆମେରିକାର ପରିସ୍ଥିତି ଆଡ଼କୁ ଟିକେ ଆଖି ବୁଲାନ୍ତୁ । ଆମେରିକା ସରକାର ଭାରତୀୟ ସଫ୍ଟୱେୟାର ବିଶେଷଜ୍ଞମାନଙ୍କୁ ହାତରେ 'ପିଙ୍କ୍ ସ୍ଲିପ୍' ଧରେଇ ଦେଇ ଯେପରି ଭାରତ ମାଟିକୁ ବିଦା କରି ଦେଉଛନ୍ତି, ତାକୁ ଆମେ ଉପେକ୍ଷା କରିବା ବା କିପରି ? ଭାରତବର୍ଷ ତା'ର ସୁଯୋଗ୍ୟ ଉର୍ବର ମସ୍ତିଷ୍କଧାରୀ ଗୁଣଗ୍ରାହୀ ଭୂମିପୁତ୍ରମାନଙ୍କୁ ପୁଣି ଫେରିପାଉ ଥିବାରୁ ଆନନ୍ଦିତ, ଗର୍ବିତ ଓ ଉଲ୍ଲସିତ ମଧ । ଯେଉଁମାନେ ଦେଶପାଇଁ ଅଲୋଡ଼ା ଅଖୋଜା ଥିଲେ, ସେମାନେ ଆଜି ଆମର

ଗେହ୍ଲାପୁଅ । ଆମେ ତାଙ୍କୁ ବାଟବରଣି କରି ପାଛୋଟି ନେଉଛୁ । ଯେଉଁମାନେ ଦିନେ ବ୍ରେନ୍ ଡ୍ରେନ୍‌ର ଶୀକାର ହୋଇ ଦେଶଛାଡ଼ି ବିଦେଶ ମାଟିକୁ ଆପଣେଇ ନେଇଥିଲେ, ସେମାନେ ଆଜି ବିଦେଶ ମାଟିକୁ ସ୍ୟାଲୁଟ୍ କରି ଦେଶମାତୃକାର ସେବା ପାଇଁ ଅଣ୍ଟା ଭିଡ଼ି ଦେଲେଣି । ଏହି ଘର ବାହୁଡ଼ା ସୂଚ଼ନା ପ୍ରଯୁକ୍ତିବିଦ୍ୟା ବିଶେଷଜ୍ଞମାନଙ୍କୁ ରାଷ୍ଟ୍ରୀୟ ପୁଞ୍ଜି ଭାବେ ବିନିଯୋଗ କରି ଦେଶର ପ୍ରମୁଖ ଆଇ.ଟି. କମ୍ପାନୀମାନେ ପୁଣି ବିଶ୍ୱ ବଜାରକୁ କବ୍‌ଜା କରିବା ପାଇଁ ଯୋଜନା କଲେଣି ।

ଆମେରିକାର କ୍ଷତି ଭାରତ ପାଇଁ ଲାଭ ହେବ ବୋଲି ଅର୍ଥନୈତିକ ବିଶାରଦ ଓ ବିଶ୍ଳେଷଣକାରୀମାନେ ମତବ୍ୟକ୍ତ କଲେଣି । ନ୍ୟାସକମ୍ ଏହି ପରିସ୍ଥିତିରୁ ସମ୍ପୂର୍ଣ୍ଣ ଫାଇଦା ଉଠାଇବା ପାଇଁ ଯୋଜନା ପ୍ରଣୟନ କରୁଛି, ଯଦିଓ ଏହାର ବହୁଳ ପ୍ରତିଭାଧାରୀ ସଭାପତି ଦେଓ୍ୱାଙ୍ଗ ମେହେଟ୍ଟାଙ୍କ ମୃତ୍ୟୁ ସାମୟିକ ଭାବେ କିଛିଟା ଧକ୍କା ଦେଇଛି । ଭାରତ ସରକାର, ନ୍ୟାସକମ୍ ଓ ସଫ୍ଟୱେୟାର ଶିଳ୍ପ ଆଗରେ ବର୍ତ୍ତମାନ ଏକ ସୁବର୍ଣ୍ଣ ସୁଯୋଗ । ଏହି ସୁଯୋଗର ସଦୁପଯୋଗ କରାଯିବା ଉଚ଼ିତ । ପ୍ରତ୍ୟେକ ଚ୍ୟାଲେଞ୍ଜକୁ ଏକ ସୁଯୋଗରେ ରୂପାନ୍ତରିତ କରିବାରେ ହିଁ ତ ସଫଳତାର ପ୍ରକୃଷ୍ଟ ସ୍ୱାଦ ମିଳିଥାଏ !

ସମାଜ

ତା- ୨୫.୬.୨୦୦୧



# ଜ୍ଞାନର ଐଶ୍ୱର୍ଯ୍ୟ

**ବୈ**ଜ୍ଞାନିକ ସୁଯୋଗ ଓ ସମ୍ଭାବନାକୁ ଡେଇଁପଡ଼ି ହାତମୁଠାରେ ଜାବୁଡ଼ି ଧରିବାର ବେଳ ଏବେ ଆସି ଯାଇଛି । ଏହା ଅତ୍ୟନ୍ତ ଆନନ୍ଦର କଥା ଯେ ବିଶ୍ୱ ଅର୍ଥନୈତିକ ପୃଷ୍ଠଭୂମିରେ ଭାରତବର୍ଷ ଏକ ସୁସ୍ଥ ପ୍ରତିଯୋଗିତାମୂଳକ ଆଧିପତ୍ୟତା ଉପଭୋଗ କରୁଅଛି । ଏହାର ମୁଖ୍ୟ କାରଣଟି ହେଲା ଭାରତବର୍ଷର ମହତ୍ତର ଜ୍ଞାନ ଭଣ୍ଡାର । ବିଜ୍ଞାନ, ଇଞ୍ଜିନିୟରିଂ ବା ପ୍ରଯୁକ୍ତିବିଦ୍ୟା - ସବୁ କ୍ଷେତ୍ରରେ ଭାରତବର୍ଷର ଏକଚାଟିଆ ରାଜତ୍ୱ । ପୁନଶ୍ଚ ଏକ ବିଶାଳ ଇଂରାଜୀ ଭାଷାଭାଷୀ ମାନବ ସମ୍ବଳ ଭାରତର ଏହି ଗୌରବାନିତ୍ୱ ଐଶ୍ୱର୍ଯ୍ୟକୁ ଦ୍ୱିଗୁଣିତ ବୃଦ୍ଧି କରିବାରେ ସମ୍ପୂର୍ଣ୍ଣରୂପେ ସହାୟକ ହେଉଛି । ରାଷ୍ଟ୍ରର ନୀତି ନିୟମ ନିର୍ଦ୍ଧାରଣକାରୀ ଭାଗ୍ୟନିୟନ୍ତାମାନେ ଶିଳ୍ପ ସାମ୍ରାଜ୍ୟର ଶାସକମାନଙ୍କ ସହ ହାତରେ ହାତ ମିଳାଇ ଭାରତବର୍ଷର ଏହି ମହନୀୟ ସମ୍ପତ୍ତିର ଉତ୍ତରୋତ୍ତର ଅଭିବୃଦ୍ଧି କରିବାରେ ନିଶ୍ଚିତ ସହାୟକ ହେବେ -ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବିଶ୍ୱ ପ୍ରତିଯୋଗିତାର ମହାଦୌଡ଼ରେ ବାଜି ଜିଣିବା ପାଇଁ ହେଲେ, ଅନ୍ୟାନ୍ୟ ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ସହ ମଧ୍ୟ ସମତାଳରେ ଦୌଡ଼ିବାକୁ ପଡ଼ିବ । ଏହି ପରମ ସୁଯୋଗକୁ ଆଦୌ ହାତଛଡ଼ା କରାଯାଇ ନ ପାରେ । ବିଶେଷକରି ଚୀନ ଦେଶର କ୍ରମାଗତ ବୈଷୟିକ ଅଭିବୃଦ୍ଧି ପ୍ରକ୍ରିୟାକୁ ବ୍ରେକ୍ ଲଗାଇବାକୁ ହେଲେ ଆମକୁ ପ୍ରଯୁକ୍ତିବିଦ୍ୟାର ମହାଦୌଡ଼ରେ ନିଶ୍ଚୟ ଦୁଇ ପାହୁଣ୍ଡ ଆଗରେ ରହିବାକୁ ପଡ଼ିବ ।

ପରନ୍ତୁ ପାଞ୍ଚୋଟି ଅତି ଜଟିଳ ପନ୍ଥା ଯାହାକି ରାଷ୍ଟ୍ରର ଅଭିବୃଦ୍ଧି ପାଇଁ ଅତ୍ୟନ୍ତ ଜରୁରୀ, ତାହା ତୁରନ୍ତ କାର୍ଯ୍ୟକାରୀ ହେବା ପ୍ରଣିଧାନ ଯୋଗ୍ୟ । ତା'ହେଲେ ଯାଇ ଏହି ଜ୍ଞାନକୈନ୍ଦ୍ରିକ ଅଭିବୃଦ୍ଧି ପ୍ରକ୍ରିୟା ପ୍ରକୃତରେ ଫଳବତି ହୋଇ ପାରିବ । ସେଗୁଡ଼ିକ ହେଲା - ଶିକ୍ଷା, ଗବେଷଣା, ଯୋଗାଯୋଗ, ବୌଦ୍ଧିକ ସମ୍ପତ୍ତି ମାଲିକାନା ସ୍ୱତ୍ୱ ଓ ମାନବ ସମ୍ବଳର ଉପଯୁକ୍ତ ପରିଚାଳନା ।

ଏ ତାଲିକାର ଶୀର୍ଷ ସ୍ଥାନରେ 'ଶିକ୍ଷା ଓ ପ୍ରଶିକ୍ଷଣ'କୁ ଜାଣିଶୁଣି ରଖାଯାଇଛି । ଜ୍ଞାନକୈନ୍ଦ୍ରିକ ଅଭିବୃଦ୍ଧି ପ୍ରକ୍ରିୟାର ଶିଳାନ୍ୟାସ ପାଇଁ ଏକ ବଳିଷ୍ଠ ଭିତ୍ତିଭୂମି ସମ୍ପନ୍ନ ଶିକ୍ଷା ବ୍ୟବସ୍ଥା ଅତ୍ୟନ୍ତ ଆବଶ୍ୟକ । ଭାରତବର୍ଷରେ ଶିକ୍ଷା ବାବଦରେ ଜି.ଡ଼ି.ପିର ମାତ୍ର ୩.୨ ପ୍ରତିଶତ ବ୍ୟୟ ହୋଇଥାଏ, ଯାହାକି ଅନ୍ୟାନ୍ୟ ସମସ୍ତ ବିକାଶଶୀଳ ରାଷ୍ଟ୍ରମାନଙ୍କର ହାରାହାରି ବ୍ୟୟ ୩.୮ ପ୍ରତିଶତଠାରୁ ମଧ୍ୟ କମ୍ । ଉଚ୍ଚଶିକ୍ଷା କ୍ଷେତ୍ରରେ ଆମର ବ୍ୟୟ ବରାଦ ଜି.ଡ଼ି.ପିର ମାତ୍ର ୦.୧ ପ୍ରତିଶତ ଥିଲାବେଳେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଶିକ୍ଷା ବାବଦ ବ୍ୟୟ ବରାଦ ଜି.ଡ଼ି.ପିର ମାତ୍ର ୦.୦୫ ପ୍ରତିଶତ ଅଟେ ।

ଆମେ ଆମର ମୌଳିକ ଶିକ୍ଷା ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନ କରିବା ନିତାନ୍ତ ଅପରିହାର୍ଯ୍ୟ, ଯାହା ଫଳରେ କି ରାଷ୍ଟ୍ର ସମ୍ମୁଖରେ ଥିବା ଜନସଂଖ୍ୟା ବିସ୍ଫୋରଣ ଓ ସାମାଜିକ ଅଭ୍ୟୁଦୟ ପରି ଅଗଣିତ ସମସ୍ୟାର ସମାଧାନ କରିବାକୁ ଆବଶ୍ୟକୀୟ ପ୍ରୋତ୍ସାହନ ଦେବା ଉଚିତ, ଯାହାକି ଗବେଷଣା ଓ ଉନ୍ନୟନ କୈନ୍ଦ୍ରିକ ହେବା ନିତାନ୍ତ ବାଞ୍ଛନୀୟ ।

ଶିକ୍ଷାପରେ ଯେଉଁ ବିଭାଗଟି ଆମର ଦୃଷ୍ଟିଗୋଚର ହେବା ଉଚିତ ତାହା ହେଲା - 'ଗବେଷଣା' । ଆମେରିକା ସରକାର ବର୍ଷକୁ ୨୦୮ ବିଲିୟନ ଡଲାର ଅର୍ଥରାଶି ଗବେଷଣାରେ ଖର୍ଚ୍ଚ କରିଥାନ୍ତି, ଯାହାକି ତାଙ୍କ ଜି.ଡ଼ି.ପିର ୨.୬ ପ୍ରତିଶତ ଅଟେ । ପ୍ରକାରାନ୍ତରେ ତୁଳନାତ୍ମକଭାବେ ବିବେଚନା କଲେ ଭାରତବର୍ଷ ବର୍ଷକୁ ୩ ବିଲିୟନ ଆମେରିକୀୟ ଡଲାର ଗବେଷଣାରେ ଖର୍ଚ୍ଚ କରିଥାଏ, ଯାହାକି ତା'ର ଜି.ଡ଼ି.ପିର ୧ ପ୍ରତିଶତରୁ ମଧ୍ୟ କମ୍ ଅଟେ ।

ତୃତୀୟଟି ହେଲା, 'ଯୋଗାଯୋଗ' ବ୍ୟବସ୍ଥା । ଇତିହାସର ପୃଷ୍ଠା ଓଲଟାଇଲେ ଆପଣ ଜାଣି ପାରିବେ ଯେ ଯୁଗେ ଯୁଗେ ଯୋଗାଯୋଗ ବ୍ୟବସ୍ଥାରେ ଉନ୍ନତିଦ୍ୱାରା ସମାଜରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସି ପାରିଛି । ଆଜିର ପରିପ୍ରେକ୍ଷୀରେ ଦୂରସଞ୍ଚାର ବ୍ୟବସ୍ଥା ସ୍ୱଳ୍ପବ୍ୟୟରେ ଜ୍ଞାନର ସରବରାହ କରାଇବା, ସ୍ୱଳ୍ପ ସମୟ ମଧ୍ୟରେ ଜ୍ଞାନ ସାମ୍ରାଜ୍ୟ ମଧ୍ୟରେ ଥିବା ଦୂରତ୍ୱକୁ ସଙ୍କୁଚିତ କରାଇବା, ଲଗାତାର ଭାବେ ଶିକ୍ଷାରେ ଅଭିବୃଦ୍ଧି ଘଟାଇବା, ବଜାରର ପ୍ରତିଦ୍ୱନ୍ଦିତାକୁ ତୀବ୍ରତର କରାଇବା ଏବଂ ସର୍ବୋପରି ସୁସ୍ଥ ଶାସନ ବ୍ୟବସ୍ଥାର ପ୍ରଚଳନ କରାଇବାରେ ମହତ୍ତର ଅବଦାନ ଦେଇ ଚାଲିଛି ।

ତା'ପରେ 'ବୌଦ୍ଧିକ ସମ୍ପତ୍ତି ମାଲିକାନା ସ୍ୱତ୍ୱ' ଉପରେ ଆଲୋଚନା କରାଯାଉ । ଆଜିର ଦୁନିଆରେ ଜ୍ଞାନ ସଂରକ୍ଷଣ, ରକ୍ଷଣାବେକ୍ଷଣ ଓ ନିରାପତ୍ତା ଜ୍ଞାନର ସୃଷ୍ଟିଠାରୁ କୌଣସି ଗୁଣରେ କମ୍ ନୁହେଁ । ଉଭୟଙ୍କୁ ସମାନ ଗୁରୁତ୍ୱ ପ୍ରଦାନ କରାଯିବା ଉଚିତ । ପୁନଶ୍ଚ ଜ୍ଞାନର ନିରାପତ୍ତା ରକ୍ଷା କରିବାକୁ ଯାଇଁ ଅତ୍ୟଧିକ ଆଗ୍ରହ ପ୍ରଦର୍ଶନ ଦ୍ୱାରା ଉନ୍ନତ ଦେଶମାନଙ୍କ ଦ୍ୱାରା ଜାତୀୟ ସୁରକ୍ଷା ସହିତ ଜଡ଼ିତ କେତେକ ମୂଲ୍ୟବାନ ପେଟେଣ୍ଟର ପ୍ରୋଲିଫରେସନ ମାଧମରେ ଜ୍ଞାନର ଭବିଷ୍ୟତ ସରବରାହ ପ୍ରକ୍ରିୟାରେ ମଧ୍ୟ ବାଧା ସୃଷ୍ଟି ହେଉଛି । ଏହା ଏକାନ୍ତ ଆବଶ୍ୟକ ଯେ ବୌଦ୍ଧିକ ସମ୍ପତ୍ତି ମାଲିକାନା ସ୍ୱତ୍ୱର ପରିଚାଳନା ପ୍ରକ୍ରିୟା ଜ୍ଞାନକେନ୍ଦ୍ରିକ ଅଭିବୃଦ୍ଧିରେ ସହାୟକ ହେବା ବାଞ୍ଛନୀୟ ।

ପରିଶେଷରେ 'ମାନବ ସମ୍ବଳର ପରିଚାଳନା'କୁ ବିଚାରକୁ ନିଆଯାଉ । ଏକ ସୁସ୍ଥ ସର୍ଜନାଧର୍ମୀ ବାତାବରଣ ସୃଷ୍ଟି ମାଧମରେ ଯୋଗ୍ୟ ଓ କୁଶଳୀ ମାନବ ସମ୍ବଳକୁ ଦେଶମାତୃକାର ସେବାରେ ବିନିଯୋଗ କରିବା ପାଇଁ ଉପଯୁକ୍ତ ପ୍ରୋତ୍ସାହନ ଦେଇ ଦେଶ ମଧ୍ୟରେ ସେମାନଙ୍କୁ ଧରି ରଖିବା ଆଜି ଏକ ମସ୍ତବଡ଼ ଚ୍ୟାଲେଞ୍ଜ । ଆଜିର ଜଗତୀକରଣ ବାତାବରଣ ଓ 'ବର୍ଡ଼ର-ଲେସ୍' ଅର୍ଥାତ୍ ସୀମାହୀନ ପରିବେଶ ମଧ୍ୟରେ ଯୋଗ୍ୟ ଓ କୁଶଳୀ ମାନବ ସମ୍ବଳର ପାଦ ଆଉ ଦେଶମାତୃକାର ମାଟିକୁ ଛୁଉଁନାହିଁ । ତା'ର ଅମାପ ସ୍ୱପ୍ନକୁ ଚରିତାର୍ଥ କରିବା ପାଇଁ ସର୍ବୋତ୍କୃଷ୍ଟ ସୁଯୋଗ ଓ ଉନ୍ନତମାନର ଜୀବନଚର୍ଯ୍ୟାକୁ ସେ ଲମ୍ଫ ପ୍ରଦାନ କରି ହାତମୁଠାରେ ଜାବୁଡ଼ି ଧରିବାକୁ ଚାହୁଁଛି । ସେଥିପାଇଁ ସେ ତା'ର ଜ୍ଞାନର ଐଶ୍ୱର୍ଯ୍ୟକୁ ବିଶ୍ୱ ବଜାରରେ ବିକି ଦେବାକୁ ମଧ୍ୟ ପଛଘୁଞ୍ଚା ଦେଉନାହିଁ । ଜ୍ଞାନର ବିନିମୟରେ ଜୀବନର ସମସ୍ତ ସୁଖକୁ ସେ ଉପଭୋଗ କରିବାକୁ ଚାହୁଁଛି ।

ବିଶ୍ୱ ଜ୍ଞାନ କୁଣ୍ଡରୁ ଆଜି ଭାରତ ସମେତ ପୃଥିବୀର ସମସ୍ତ ରାଷ୍ଟ୍ର ସର୍ବୋତ୍କୃଷ୍ଟ ମାନବ ସମ୍ବଳ ଅଧିଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । ବିଶ୍ୱ ବଜାରକୁ ନିଜ ଅକ୍ତିଆରକୁ ଆଣିବାକୁ ହେଲେ ଭାରତ ଓ ଭାରତୀୟ ନିଗମଗୁଡ଼ିକ ନିଜକୁ ଏକ ଆକର୍ଷଣୀୟ ଲକ୍ଷ୍ୟସ୍ଥଳ ଭାବେ ପ୍ରତିଷ୍ଠିତ କରାଇବାକୁ ପଡ଼ିବ ।

ଇତିହାସ ସାକ୍ଷୀ, ଯିଏ ପରିବର୍ତ୍ତନକୁ ଗୋଟାପଣ ଆବୋରି ନ ନେଲା, ସେ ଇତିହାସର ଅଳିଆଗଦାରେ ପଡ଼ିରହିଲା ଅବା ବିଗତଦିନର ଡାଇନୋସର

ପରି ସମ୍ପୂର୍ଣ୍ଣ ବିଲୁପ୍ତ ହୋଇଗଲା । ଜୀବଜଗତ ବା ବ୍ୟବସାୟୀକ ପ୍ରତିଷ୍ଠାନ - ଉଭୟଙ୍କ କ୍ଷେତ୍ରରେ ଏହା ସତ୍ୟ ଅଟେ । ବିଗତ ଦିନର ଗୌରବମୟ ସ୍ମୃତିକୁ ପାଥେୟ କରି ଆମେ ନିଜକୁ ଗର୍ବିତ ମନେ କରୁଛୁ । ହେଲେ, ଆଜିର ମୁଖ୍ୟ ଚ୍ୟାଲେଞ୍ଜ୍ ହେଲା ଭବିଷ୍ୟତ ପାଇଁ ନୂଆ ନୂଆ ରାସ୍ତାର ସନ୍ଧାନ କରି ନୂଆ ନୂଆ ସୁଯୋଗ ଓ ସମ୍ଭାବନାକୁ ହାତ ମୁଠାରେ ଜାବୁଡ଼ି ଧରି ରାଷ୍ଟ୍ରୀୟ ଅଭିବୃଦ୍ଧି ହାରରେ ଉତ୍ତରୋତ୍ତର ଅଭିବୃଦ୍ଧି ଆଣିବାରେ ସଫଳ ଯୋଗଦାନ ଦେବା, ଯଦ୍ୱାରା ଭାରତୀୟ ନିଗମଗୁଡ଼ିକ ବିଶ୍ୱସ୍ତରୀୟ ଶିଳ୍ପ ସଂସ୍ଥାମାନଙ୍କ ସହ ନିଜକୁ ସମକକ୍ଷ ମଣିପାରିବେ ।

କଥାଟାକୁ ଆଉଟିକେ ଗୁଡ଼େଇ ତୁଡ଼େଇ ବିଶ୍ଳେଷଣ କରାଯାଉ । ଆପଣ ଜାଣି ନିଶ୍ଚୟ ଖୁସି ହେବେ ଯେ ବାୟୋଟେକ୍ନୋଲୋଜି କ୍ଷେତ୍ରରେ ଅଭିବୃଦ୍ଧିର ପ୍ରଭାବ ଆଜିଠୁଁ କାହିଁ କେତେଗୁଣ ବଢ଼ିଯିବ । ଦୁଃସାଧ ବ୍ୟାଧିର ଉପଯୁକ୍ତ ଚିକିତ୍ସା କରିବା, ହାତ ପାହାନ୍ତାରେ ଉପଲବ୍ଧ ହେଉଥିବା ସାଧନକୁ ନେଇ ଉତ୍ପାଦନରେ ଅଭିବୃଦ୍ଧି ଆଣିବା ତଥା ଛୋଟ ଛୋଟ ଫାର୍ମରୁ ଆରମ୍ଭ କରି ବୃହତ୍‌କାୟ କଳକାରଖାନା ଆଦି ପ୍ରତିଷ୍ଠା କରିବା ବାୟୋଟେକ୍ନୋଲୋଜି ଦ୍ୱାରା ସମ୍ଭବପର ହେବ । ଆହୁରି ଆଶ୍ଚର୍ଯ୍ୟର କଥା ଭବିଷ୍ୟତରେ ବାୟୋଟେକ୍ନୋଲୋଜିକୁ ବାୟୋଲୋଜି ସହ ଦୂରସମ୍ପର୍କ ଥିବା ବିଷୟବସ୍ତୁ, ଯଥା - ଇଲେକ୍‌ଟ୍ରୋନିକ୍ସ, କମ୍ପ୍ୟୁଟର ପ୍ରଣାଳୀ ଓ ବହୁବିଧ ବ୍ୟବହାରଯୋଗ୍ୟ ସାମଗ୍ରୀ ସହ ମଧ ଯୋଡ଼ି ଦିଆଯାଇ ପାରିବ ।

ଜ୍ଞାନକୈନ୍ଦ୍ରିକ ଅଭିବୃଦ୍ଧି ପ୍ରକ୍ରିୟା ମାଧ୍ୟମରେ କୃଷି କ୍ଷେତ୍ରରେ ବିସ୍ମୟାତୀତ ବିସ୍ମୟ ସୃଷ୍ଟି କରାଯାଇ ପାରିବ । ନୂତନ ଅର୍ଥନୈତିକ ବ୍ୟବସ୍ଥାର ତଥାକଥିତ ପ୍ରବକ୍ତାଗଣ ଭୁଲି ଯାଉଛନ୍ତି ଯେ - 'ଜ୍ଞାନ ଓ ଅଭିବୃଦ୍ଧି' କିପରି ପରସ୍ପରର ଅନୁପୂରକ ସବୁଜ ବିପ୍ଳବ, ତାହା ବହୁ ଆଗରୁ ପ୍ରମାଣ କରିଦେଇ ସାରିଛି । କମ୍ପ୍ୟୁଟର ବିଜ୍ଞାନ, ଭୂବିଜ୍ଞାନ ଓ ଜୀବ ବିଜ୍ଞାନର ଅମୂଲ୍ୟ ଜ୍ଞାନଭଣ୍ଡାରରୁ ନିତ୍ୟ ନୂତନ ଜ୍ଞାନାର୍ଜନ କରି କୃଷି ମାଧ୍ୟମରେ ଅତ୍ୟାଧୁନିକ ସବୁଜ ବିପ୍ଳବର ଶୁଭାରମ୍ଭ କରାଯାଇ ପାରିବ ।

ଭାରତୀୟ ଜନସଂଖ୍ୟାର କ୍ରମବର୍ଦ୍ଧିଷ୍ଣୁ ଅବୟବ ଉପରେ ଆଲୋକପାତ କଲେ ଜଣାପଡ଼େ ଯେ ୨୦୨୦ ମସିହାବେଳକୁ କର୍ମକ୍ଷମ ଭାରତୀୟ ମାନବ

ସମ୍ବଳ, ଯାହାକି ପ୍ରାୟ ୨୫ ରୁ ୬୦ ବର୍ଷ ବୟସ ମଧ୍ୟରେ ସୀମିତ ତହିଁରେ ବୃଦ୍ଧି ଘଟି ୬୦୦ ନିୟୁତରେ ପହଞ୍ଚିବ; ଯାହାକି ସମ୍ପୂର୍ଣ୍ଣ ଆମେରିକାର ସାଂପ୍ରତିକ ଜନସଂଖ୍ୟାର ପ୍ରାୟ ଦୁଇଗୁଣ । ଏହି କର୍ମକ୍ଷମ ମାନବ ସମ୍ବଳର ଅର୍ଦ୍ଧେକଙ୍କୁ ଯଦି ପ୍ରକୃତ ପ୍ରଶିକ୍ଷଣ ଦିଆଯାଇପାରେ, ତେବେ ସେମାନେ ଘଣ୍ଟାକୁ ଅତିକମ୍‌ରେ ୧୦ ଆମେରିକୀୟ ଡଲାରର ରାଜସ୍ୱ ଉତ୍ପନ୍ନ କରିପାରିବେ । ଏହା ସମ୍ଭବ ହେଲେ ଜି.ଡ଼ି.ପି.କୁ ଏହାର ଅବଦାନ ବାର୍ଷିକ ପ୍ରାୟ ୨ ଟ୍ରିଲିୟନ ଆମେରିକୀୟ ଡଲାର ହୋଇ ପାରିବ, ଯାହାକି ଆମର ସାଂପ୍ରତିକ ଜି.ଡ଼ି.ପି.ର ୫୦ ଗୁଣରୁ ଉର୍ଦ୍ଧ୍ୱ ଅଟେ !!

ତେଣୁ ସାଂପ୍ରତିକ ପରିସ୍ଥିତିର ସୂକ୍ଷ୍ମାତିସୂକ୍ଷ୍ମ ଅଧ୍ୟୟନ କରି ଭାରତୀୟ ନିଗମମାନେ ବିଜ୍ଞାନକୁ ନିଜ ହାତମୁଠାକୁ ଆଣି ପାରିଲେ, ଏପରି ଅସାଧାରଣ ଓ ଅଭୂତପୂର୍ବ ସୁଯୋଗଗୁଡ଼ିକୁ ଠିକଣା ବାଟରେ ପରିଚାଳିତ କରାଯାଇ ପାରିବ । ଜ୍ଞାନ ଯଜ୍ଞର ପୁରୋଧା ସାଜି ଆମର ବୈଜ୍ଞାନିକ ବନ୍ଧୁ ଓ ପ୍ରଯୁକ୍ତିବିଦ୍ୟା ବିଶାରଦମାନେ ନୂତନ ରାଷ୍ଟ୍ର ନିର୍ମାଣ ବ୍ରତରେ ନିଜର ସଫଳ ଯୋଗଦାନ ଦେଇପାରିବେ ।

**ସମୟ**

**ତା- ୧୨.୫.୨୦୦୧**





ରାସାୟନିକ ପ୍ରଯୁକ୍ତିବିଦ୍ୟାବିତ୍ ଡଃ. ଚିତ୍ତରଞ୍ଜନ ମିଶ୍ରଙ୍କ ଜନ୍ମ ୨ ଜୁନ୍ ୧୯୪୯ ମସିହା ଐତିହ୍ୟସମ୍ପନ୍ନ ଯାଜପୁର ଜିଲ୍ଲାର ବରୀ ବ୍ଲକ୍ ଅନ୍ତର୍ଗତ ଭବାନୀପୁର ଗ୍ରାମରେ । କଟକ ରେଭେନ୍ସା କଲେଜର ଛାତ୍ର ହୋଇ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୬୯ ମସିହାରେ ରସାୟନ ବିଜ୍ଞାନରେ ସ୍ନାତକ ଓ ୧୯୭୧ ମସିହାରେ ସ୍ନାତକୋତ୍ତର ଉପାଧି ଲାଭ । ଯାଦବପୁରସ୍ଥିତ ଦେଶର ସର୍ବପ୍ରଥମ ଗବେଷଣା ପ୍ରତିଷ୍ଠାନ ଇଣ୍ଡିଆନ୍ ଆସୋସିଏସନ୍ ଫର୍ ଦି କଲଟିଭେସନ୍ ଅଫ୍ ସାଇନ୍ସରେ ଉଚ୍ଚତର ଗବେଷଣାକରି କଲିକତା ବିଶ୍ୱବିଦ୍ୟାଳୟରୁ ୧୯୭୭ ମସିହାରେ ପି.ଏଚ୍.ଡି. ଉପାଧି ଲାଭ । ବାଙ୍ଗାଲୋରସ୍ଥିତ ଇଣ୍ଡିଆନ୍ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍ସରେ ପୋଷ୍ଟ-ଡକ୍ଟରାଲ ଗବେଷଣାକରି ପ୍ରଶଂସିତ ଓ ସମ୍ମାନିତ ।

ଡଃ. ମିଶ୍ର ସମ୍ପ୍ରତି ନ୍ୟାସନାଲ ଆଲୁମିନିୟମ୍ କମ୍ପାନୀ (ନାଲ୍କୋ)ର ଭୁବନେଶ୍ୱରସ୍ଥ କର୍ପୋରେଟ୍ କାର୍ଯ୍ୟାଳୟରେ ଗବେଷଣା ଓ ଉନ୍ନୟନ ବିଭାଗର ଡେପୁଟୀ ଜେନେରାଲ୍ ମ୍ୟାନେଜର ଓ ବିଭାଗୀୟ ମୁଖ୍ୟ ରୂପେ କାର୍ଯ୍ୟରତ ଅଛନ୍ତି । ଦୀର୍ଘ ୩୫ ବର୍ଷ ଧରି ରସାୟନ ବିଜ୍ଞାନ ଓ ରାସାୟନିକ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ମହତ୍ତ୍ୱର ଗବେଷଣା ତାଙ୍କୁ ଜଣେ ଯଶସ୍ୱୀ ଗବେଷକର ମର୍ଯ୍ୟାଦା ପ୍ରଦାନ କରିଛି । ଦେଶ ବିଦେଶର ବହୁ ଜର୍ଣ୍ଣାଲ୍‌ରେ ତାଙ୍କ ଗବେଷଣା ନିବନ୍ଧ ପ୍ରକାଶ ପାଇ ଆସୁଛି । ଜାତୀୟ ଓ ଆନ୍ତର୍ଜାତୀୟ ସେମିନାର, ସିମ୍ପୋଜିୟମ୍, କନ୍‌ଫରେନ୍ସ ଇତ୍ୟାଦିରେ ତାଙ୍କ ଗବେଷଣା ନିବନ୍ଧ ଉପସ୍ଥାପିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଛି । ଡଃ. ମିଶ୍ରଙ୍କୁ ମିଳିଛି ପ୍ରଚୁର ପ୍ରତିଷ୍ଠା, ସମ୍ମାନ ଓ ସ୍ୱୀକୃତି । ରସାୟନ ଶାସ୍ତ୍ରରେ ସର୍ବୋତ୍କୃଷ୍ଟ ଗବେଷଣା ନିବନ୍ଧ ପ୍ରକାଶ ପାଇଁ ଡଃ. ମିଶ୍ରଙ୍କୁ ୧୯୭୮ ଓ ୧୯୯୦ରେ ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ କେମିଷ୍ଟ୍ସ (ଇଣ୍ଡିଆ) ପକ୍ଷରୁ ପ୍ରଫେସର କେ. ଏ. ଥାକର ପୁରସ୍କାର ପ୍ରଦାନ କରାଯାଇଛି । 'ଡିଟର୍ଜେଣ୍ଟ ଗ୍ରେଡ୍ ଜିଓଲାଇଟ୍-ଏ' ପ୍ରଯୁକ୍ତି ବିଦ୍ୟା ଉଦ୍ଭାବନ ପାଇଁ ସର୍ବଶ୍ରେଷ୍ଠ ଜାତୀୟ ସମ୍ମାନ 'ଜାତୀୟ ଗବେଷଣା ଉନ୍ନୟନ ନିଗମ ୧୯୯୭ ସ୍ୱାଧୀନତା ଦିବସ ପୁରସ୍କାର' ଡଃ. ମିଶ୍ର ପାଇଛନ୍ତି । ନାଲ୍କୋ ପକ୍ଷରୁ ୧୯୯୮ ମସିହାରେ 'ଡିଟର୍ଜେଣ୍ଟ ଗ୍ରେଡ୍ ଜିଓଲାଇଟ୍-ଏ' ପ୍ରଯୁକ୍ତି ବିଦ୍ୟା ଉଦ୍ଭାବନ ପାଇଁ ମଧ୍ୟ ତାଙ୍କୁ 'ଆଉଟ୍‌ଷ୍ଟାଣ୍ଡିଙ୍ଗ୍ ଆଚିଭ୍‌ମେଣ୍ଟ ଆୱାର୍ଡ' ପ୍ରଦାନ କରାଯାଇଛି । ମିଳିତ ଜାତିସଂଘର ଜେନିଭାସ୍ଥିତ ବିଶ୍ୱ ବୌଦ୍ଧିକ ସମ୍ପତ୍ତି ମାଲିକାନା ସ୍ୱତ୍ତ୍ୱ (ୱିପୋ)ର ଆନ୍ତର୍ଜାତିକ ସ୍ୱର୍ଣ୍ଣପଦକ ମଧ୍ୟ ସେ ୧୯୯୮ ମସିହାରେ ଉପରୋକ୍ତ ଉଦ୍ଭାବନ ପାଇଁ ଲାଭ କରିଛନ୍ତି ।

ଡଃ. ମିଶ୍ର ୨୦୦୨ ମସିହାରେ ରାସାୟନିକ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଦେଶରେ ସର୍ବଶ୍ରେଷ୍ଠ ଗବେଷଣା ଓ ଉନ୍ନୟନ କାର୍ଯ୍ୟକ୍ରମ ପାଇଁ ଭାରତ ସରକାରଙ୍କ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ମନ୍ତ୍ରଣାଳୟ ଅଧିନସ୍ଥ ବିଜ୍ଞାନ ଓ ଶିଳ୍ପ ଗବେଷଣା ପରିଷଦର 'ଜାତୀୟ ପ୍ରଯୁକ୍ତିବିଦ୍ୟା ପୁରସ୍କାର' ପ୍ରଧାନମନ୍ତ୍ରୀଙ୍କ ଠାରୁ ଲାଭ କରିଛନ୍ତି । ପୁନଶ୍ଚ ଗବେଷଣା ଓ ଚାକିରି କ୍ଷେତ୍ରରେ ତାଙ୍କ ମହତ୍ତ୍ୱର ଅବଦାନ ଓ କାର୍ଯ୍ୟଦକ୍ଷତାକୁ ବିଚାର କରାଯାଇ ଆମେରିକାନ୍ ବାୟୋଗ୍ରାଫିକାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଡଃ. ମିଶ୍ରଙ୍କୁ Distinguished Leadership Award ପ୍ରଦାନ କରି ସମ୍ମାନିତ କରିଛି ।

ରାସାୟନିକ ପ୍ରଯୁକ୍ତିବିଦ୍ୟାବିତ୍ ଡଃ. ମିଶ୍ର ଇନ୍‌ଷ୍ଟିଚ୍ୟୁସନ୍ ଅଫ୍ କେମିଷ୍ଟ୍ସ (ଇଣ୍ଡିଆ)ର ଫେଲୋ ଓ ଚାଟାର୍ଡ଼ କେମିଷ୍ଟ, ଆମେରିକାନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କେମିଷ୍ଟ୍ସର ଫେଲୋ, କେମିକାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କାନାଡ଼ାର ସଭ୍ୟ, ରୟାଲ୍ ସୋସାଇଟି ଅଫ୍ କେମିଷ୍ଟ୍ରି, ଲଣ୍ଡନ୍‌ର ସଭ୍ୟ ଓ ଚାଟାର୍ଡ଼ କେମିଷ୍ଟ, ଓଡ଼ିଶା ବିଜ୍ଞାନ ଏକାଡ଼େମୀ, ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି, କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ, ଓଡ଼ିଶା କେମିକାଲ୍ ସୋସାଇଟି, ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କେମିକାଲ୍ ଇଞ୍ଜିନିୟର୍ସ, ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଟାଲ୍ସ ଓ ଇଣ୍ଡିଆନ୍ ସୋସାଇଟି ଅଫ୍ ଆନାଲିଟିକାଲ୍ ସାଇଣ୍ଟିଷ୍ଟ୍ସ (ବି.ଏ.ଆର୍.ସି.), ବମ୍ବେ ଆଦିର ଆଜୀବନ ସଦସ୍ୟ ରହିଛନ୍ତି । ବିଜ୍ଞାନକୁ ଲୋକାଭିମୁଖୀ କରିବା ସଙ୍ଗେ ସଙ୍ଗେ ଜନସାଧାରଣ, ବିଶେଷତଃ ଯୁବଗୋଷ୍ଠୀଙ୍କ ମନରେ ବିଜ୍ଞାନ ପ୍ରତି ଦୁର୍ବାର ଅଭୀପ୍ସା ସୃଷ୍ଟି କରିବାର ଅନିର୍ବାଣ ଲକ୍ଷ୍ୟ ରଖି ଡଃ. ମିଶ୍ର ଦୀର୍ଘଦିନ ହେଲା ନିରବଚ୍ଛିନ୍ନ ଭାବରେ ଜନପ୍ରିୟ ବିଜ୍ଞାନର ରଚନା କରି ଆସୁଛନ୍ତି । ରାଜ୍ୟର ପ୍ରମୁଖ ସମ୍ବାଦପତ୍ର ଓ ପତ୍ରପତ୍ରିକାର ବିଜ୍ଞାନ ପୃଷ୍ଠାରେ ଡଃ. ମିଶ୍ର ଜଣେ ପରିଚିତ ନାମ ।   ଜଣେ ସଫଳ ସ୍ତମ୍ଭକାର ଓ ଓଜସ୍ୱୀ ବକ୍ତାଭାବେ ମଧ୍ୟ ସେ ବେଶ୍ ଜନାଦୃତ । ତାଙ୍କର ଏହି ପ୍ରୟାସର ସ୍ୱୀକୃତି ସ୍ୱରୂପ ଡଃ. ମିଶ୍ର 'ଚଳାପଥ ସମ୍ମାନ, ବର୍ତ୍ତିକା ସମ୍ମାନ, ଶିପ୍ରିକା ସମ୍ମାନ, ସହକାର ସମ୍ମାନ, ମୃଣ୍ମୟୀ ସମ୍ମାନ, ବ୍ୟାସଦେବ ସମ୍ମାନ, ବିଜ୍ଞାନାଲୋକ ରୌପ୍ୟ ଜୟନ୍ତୀ ସମ୍ମାନ, ଓଡ଼ିଶା ବିଜ୍ଞାନ ଏକାଡ଼େମୀ ପୁରସ୍କାର, ରାଜଧାନୀ ପୁସ୍ତକ ମେଳା ପୁରସ୍କାର, ଭୁବନେଶ୍ୱର ପୁସ୍ତକ ମେଳା ପୁରସ୍କାର ଓ ସୁକୁମାର-ସୁନନ୍ଦା ଜନପ୍ରିୟ ବିଜ୍ଞାନ ପୁରସ୍କାର' ଆଦି ଲାଭ କରିଛନ୍ତି । ଦୂରଦର୍ଶନ କେନ୍ଦ୍ର, ଭୁବନେଶ୍ୱର ଓ ଆକାଶବାଣୀ, କଟକର ବିଜ୍ଞାନ ପତ୍ରିକା କାର୍ଯ୍ୟକ୍ରମ ସହ ସେ ଓତଃପ୍ରୋତ ଭାବେ ଜଡ଼ିତ । ଦେଶ ବିଦେଶ ଭ୍ରମଣର ବହୁ ସ୍ମୃତିର ଚାଦର ସେ ଘୋଡ଼େଇ ହୋଇଛନ୍ତି ଆପାଦମସ୍ତକ ।

ଡଃ. ମିଶ୍ର ବହୁମୁଖୀ ପ୍ରତିଭାର ଏକ ଅବ୍ୟକ୍ତ ଉତ୍ତାହାର । ବୈଜ୍ଞାନିକ ଗବେଷଣା ସହ ସାହିତ୍ୟାନୁରାଗ, ନୃତ୍ୟ, ସଙ୍ଗୀତରେ ନିଜକୁ ହଜାଇ ଦେବା ଡଃ. ମିଶ୍ରଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ବଳିଷ୍ଠ ନିଦର୍ଶନ । ସତ୍ୟ ଓ ସତ୍ୟାଭାଷର ଆପେକ୍ଷିକତା ଉପରେ ଏକ ଉଦାଗ୍ର କାବ୍ୟିକ ମନ୍ତବ୍ୟ ହେଉଛି ତାଙ୍କ ସାହିତ୍ୟକ କୃତିର ଦୁର୍ବାର ଆକର୍ଷଣ ।



ଠିକଣା :
ବି/୩, ଏଚ୍.ଆଇ.ଜି. କଲୋନୀ,
କରମୁଣ୍ଡା ହାଉସିଂବୋର୍ଡ଼, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୨୫୫୪୦୨୭